# ଉତ୍କଳ ପ୍ରସଙ୍ଗ


୫୫ମ ଭାଗ | ୧୨ଶ ସଂଖ୍ୟା | ଆଷାଢ଼-ଶ୍ରାବଣ | ଜୁଲାଇ- ୧୯୯୯





ବାର୍ଷିକ ଦେୟ : ଟ.୨୦.୦୦

ପ୍ରତିଖଣ୍ଡ : ଟ.୨.୦୦





ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗ ଦ୍ୱାରା ପ୍ରକାଶିତ

ଏବଂ

ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ ରେ ମୁଦ୍ରିତ



# ଶ୍ରୀ ଶ୍ରୀ ଜଗନ୍ନାଥାଷ୍ଟକ





କଦାଚିତ୍ କାଳିନ୍ଦୀତଟ ବିପିନ-ସଙ୍ଗୀତକବରୋ
ମୁଦାଭୀରୀ-ନାରୀ-ବଦନ କମଳାସ୍ୱାଦ-ମଧୁପଃ
ରମା-ଶମ୍ଭୁ-ବ୍ରହ୍ମାମରପତି ଗଣେଶାର୍ଚ୍ଚିତ ପଦୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୧।

ଭୁଜେ ସବ୍ୟେ ବେଣୁଂ ଶିରସି ଶିଖିପୁଚ୍ଛଂ କଟୀତଟେ
ଦୁକୂଳଂ ନେତ୍ରାନ୍ତେ ସହଚର କଟାକ୍ଷଂ-ବିଦଧତେ
ସଦା ଶ୍ରୀମଦ୍ ବୃନ୍ଦାବନ ବସତି ଲୀଳା-ପରିଚୟୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୨।

ମହାମ୍ଭୋଧେସ୍ତୀରେ କନକରୁଚିରେ ନୀଳଶିଖରେ
ବସନ୍ ପ୍ରାସାଦାନ୍ତେ ସହଜ ବଳଭଦ୍ରେଣ ବଳିନା
ସୁଭଦ୍ରା ମଧ୍ୟସ୍ଥଃ ସକଳ ସୁରସେବାବସରଦୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୩।

କୃପାପାରାବାରଃ ସଜଳଜଳଦଶ୍ରେଣୀ ରୁଚିରୋ
ରମାବାଣୀରାମଃ ସ୍ଫୁରଦମଳପଦ୍ମାକ୍ଷଣମୁଖୈଃ
ସୁରେନ୍ଦ୍ରୈରାରାଧ୍ୟଃ ଶ୍ରୁତିଗଣଶିଖା ଗୀତ ଚରିତୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୪।

ରଥାରୂଢୋ଼ଗଚ୍ଛନ୍ ପଥିମିଳିତ ଭୂଦେବପଟଳୈଃ
ସ୍ତୁତିପ୍ରାଦୁର୍ଭାବଂ ପ୍ରତିପଦ ମୁପାକର୍ଣ୍ୟ ସଦୟଃ
ଦୟାସିନ୍ଧୁର୍ବନ୍ଧୁଃ ସକଳଜଗତାଂ ସିନ୍ଧୁ ସୁତାୟାଃ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୫।

ପରବ୍ରହ୍ମାପୀଡ଼ଃ କୁବଳୟଦଳୋତ୍ଫୁଲ୍ଲନୟନୋ
ନିବାସୀ ନୀଳାଦ୍ରୌ ନିହିତ ଚରଣୋଽନନ୍ତଶିରସି
ରସାନନ୍ଦୋ ରାଧାସରସବପୁରାଲିଙ୍ଗନସୁଖୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୬।

ନ ବୈ ଯାଚେ ରାଜ୍ୟଂ ନ ଚ କନକ ମାଣିକ୍ୟ ବିଭବଂ
ନ ଯାଚେଽହଂ ରମ୍ୟାଂ ସକଳ ଜନ କାମ୍ୟାଂ ବରବଧୂମ୍
ସଦା କାଳେ କାଳେ ପ୍ରମଥପତିନା ଗୀତ ଚରିତୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୭।

ହର ତ୍ୱଂ ସଂସାରଂ ଦ୍ରୁତତରମସାରଂ ସୁରପତେ
ହର ତ୍ୱଂ ପାପାନାଂ ବିତତିମପରାଂ ଯାଦବପତେ
ଅହୋ ଦୀନାନାଥୋ ନିହିତମଚଳଂ ନିଶ୍ଚିତପଦଂ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୮।

ଜଗନ୍ନାଥାଷ୍ଟକଂ ପୁଣ୍ୟଂ ଯଃ ପଠେତ ପ୍ରୟତଃ ଶୁଚିଃ
ସର୍ବପାପ ବିଶୁଦ୍ଧାତ୍ମା ବିଷ୍ଣୁଲୋକଂ ସଗଚ୍ଛତି ।୯।

ଶଙ୍କରାଚାର୍ଯ୍ୟ





# ଶ୍ରୀକ୍ଷେତ୍ର

ଜଗତ ଜୀବନ ଦିନମଣି ରବି
ପ୍ରକାଶି ଜଗତେ ଅଭିନବ ଛବି,
ମଣ୍ଡିଣ ଜଗତ ସ୍ୱର୍ଣ୍ଣ କିରଣେ,
ସଜାଇ ଧରଣୀ ନବ ଆଭରଣେ,
ମୃତ ଜଗତକୁ ନିଦ୍ରାରୁ ଉଠାଇ
ନବୀନ ଉଦ୍ୟମ ଉତ୍ସାହେ ମତାଇ,
ଜଗତର ଯେତେ ନାଶି ଦୁଃଖରାଶି
ପ୍ରଭାତେ ନିମନ୍ତି ତୋହ ପଦେ ଆସି ।

ଯୋଗନିଦ୍ରା ଯହିଁ ଅନାଦି ପୁରୁଷ,
ନାଶ ଯାଏ ଯାହା ପରଶେ କଳୁଷ,
ଯା'ର ଗର୍ଭୁ ଜାତ ହେଲେ ସୁଧାକର,
ସୁଧା-ପ୍ରସୂ ସେହି ରତ୍ନର ଆକର,
ନାହିଁ ଯାର ଅନ୍ତ, ନାହିଁ ଯାର ଆଦି,
ହ୍ରାସ-ବୃଦ୍ଧି-ହୀନ ସେହି ବାରାନିଧି
ବଢ଼ାଇ ନିଜର ତରଙ୍ଗ-ଅଧର
ଦାସ ପ୍ରାୟେ ଚୁମ୍ବେ ତୋହର ପୟର ।

ଉତ୍ତାଳ ତରଙ୍ଗ ଉଠାଇ ସାଗର
ବଜ୍ରସମ କରି ଶବ୍ଦ ଭୟଙ୍କର
ଉଦ୍‌ଗାରିଣ ଫେନ ଗ୍ରାସିବାକୁ ଧରା
ମହାଆକ୍ରୋଶରେ ଆସୁଥାଇ ପରା ।
ଶ୍ୱେତ ବଳମାଳା ମୁକ୍ତା-ହାରସମ
ଦିଶୁଥାନ୍ତି ଆହା କେଡ଼େ ମନୋରମ ।

ଇନ୍ଦ୍ରଧନୁ-ବର୍ଣ୍ଣ ନିଜ ଅଙ୍ଗେ ବହି
ଶୋଭୁଥାନ୍ତି ନାନା ଶିଳ୍ପପୁଞ୍ଜ ତହିଁ ।
ଆର୍ଯ୍ୟ-ଗୌରବର ବିଜୟ-କେତନ,
ଉତ୍କଳ-ଶିଳ୍ପର ନିତ୍ୟ ନିବେଦନ
ସମୟ-ସାଗର-ତରଙ୍ଗ-ଆଘାତେ
କାଳର କରାଳ ମହା ଝଞ୍ଜାବାତେ
ହୋଇ ବିପର୍ଯ୍ୟସ୍ତ ଅବଶିଷ୍ଟ ଯାହା
ଅଛି, ତୋର ତହିଁ ଅଛି ସିନା ତାହା ।

କେନ୍ଦ୍ରସ୍ଥଳୀ ସାମୁଦ୍ରିକ ବାଣିଜ୍ୟର,
ରାଜନୈତିକର ସ୍ୱତନ୍ତ୍ର ଶିଖର,
ଅର୍ଦ୍ଧଚନ୍ଦ୍ରାଙ୍କିତ ବିଜୟ ନିଶାଣ,
ଉଡ଼ାଇ ଭାରତେ ଧରିଣ କୃପାଣ

ହିମାଚଳଠାରୁ କୁମାରିକାଯାଏ
ଜମାଇଲେ ଯେବେ ଯବନ ରଜାଏ,
ସେ କାଳେ ଉତ୍କଳ-ଗୌରବ-ଭାସ୍କର
ଗଜପତି-ଗୌଡ଼େଶ୍ୱର-ବଂଶଧର
ତୋ'ର ତହିଁ ସ୍ୱାଧୀନତା-ବୈଜୟନ୍ତୀ
ଉଡ଼ାଇ ରଖିଲେ ଅପୂର୍ବ କୀରତି ।

ସହସ୍ର ସହସ୍ର ତୀର୍ଥ-ଯାତ୍ରୀଗଣ
ଜୟ ଜଗନ୍ନାଥ କରି ଉଚ୍ଚାରଣ,
ଶତ ବାଧାବିଘ୍ନ କରି-ଅବହେଳା,
ଜଗନ୍ନାଥ ସ୍ୱାମୀ ନାମେ ବାନ୍ଧି ଭେଳା,
ଭୁଲି କ୍ଷୁଧା-ଜ୍ୱାଳା ଭୁଲିଣ ପିପାସା,
ଭୁଲି ପଥଶ୍ରମ, ଧରି ଏକ ଆଶା,
'ଜୟ ଜଗନ୍ନାଥ' ଗୀତ ଗାଇ ଗାଇ
ତୋହରି ଆଡ଼କୁ ଯାଉଛନ୍ତି ଧାଇଁ ।

ସାମ୍ୟବାଦିତାର ଉଡ଼ୁଛି ନିଶାଣ,
ପଣ୍ଡିତ ପାଷଣ୍ଡ ସକଳେ ସମାନ ।
ବ୍ରାହ୍ମଣ ଚଣ୍ଡାଳ ବସି ଏକାସନେ
କରନ୍ତି ଆହାର ଆନନ୍ଦିତ ମନେ ।
ଜାତି ଧର୍ମନିର୍ବିଶେଷେ ସର୍ବଜନ
ଏକାଧାରେ ବସି କରନ୍ତି ଭୋଜନ ।
ପତିତ ପାବନ ବାନା ଫରଫର
ଉଡ଼ି ପତିତଙ୍କୁ ଡାକେ ନିରନ୍ତର ।
ଶ୍ରୀହସ୍ତ ବଢ଼ାଇ ଜଗତ ଗୋସାଇଁ
ପାପୀଙ୍କୁ ଡାକନ୍ତି ନିସ୍ତାରିବା ପାଇଁ ।

ଧନ୍ୟରେ ଶ୍ରୀକ୍ଷେତ୍ର ତୋ'ର ବଡ଼ପଣ,
ଉତ୍କଳ ମାତାର ତୁହି ସାର ଧନ ।
ତୋ'ଲାଗି ଉତ୍କଳ ବିଖ୍ୟାତ ଜଗତେ,
ନୋହିଲେ ରହିଣ ଥାଆନ୍ତା ଗୁପତେ ।
ଜାଗୁ ଏ ଉତ୍କଳ ତୋ ଧର୍ମକୁହାଟେ,
ଚାଲନ୍ତୁ ସରବେ ଏବେ ସତବାଟେ ।
ତୋର ସାରଶିକ୍ଷା ଶିଖା ଉତ୍କଳରେ
ତରନ୍ତୁ ଓଡ଼ିଆ ତୋ' ଧର୍ମ ବଳରେ ।

● କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର

ସମ୍ପାଦକୀୟ

# ପ୍ରଭୁଙ୍କୁ ପ୍ରାର୍ଥନା



ମହାପ୍ରଭୁ ଶ୍ରୀଜଗନ୍ନାଥ,

ଅନାଦି କାଳରୁ ତମେ ଏ ବିଶ୍ୱ ବ୍ରହ୍ମାଣ୍ଡରେ ଅଜ୍ଞେୟ ଓ ରହସ୍ୟାବୃତ୍ତ ହୋଇ ରହିଛ । ମୁନି-ଋଷି-ତତ୍ତ୍ୱଦର୍ଶୀମାନେ ତମର ଆଦି-ଅନ୍ତ ଖୋଜି ପାଉନାହାଁନ୍ତି । ଦେବତାମାନେ ତମ ଦିବ୍ୟ-ସ୍ୱରୂପ ଦର୍ଶନ କରି ପାରି ନାହାଁନ୍ତି । ଛାର ମଣିଷ କାହୁଁ ଭେଦ କରିପାରିବ ତମର ସେ ଅଜ୍ଞାତ ରହସ୍ୟ ! କେତେ ମତ, କେତେ ତତ୍ତ୍ୱ, କେତେ ଧର୍ମ, କେତେ ଦର୍ଶନ, କେତେ ବୈଚିତ୍ର୍ୟ, କେତେ ବିରୋଧାଭାସର ବ୍ୟୂହ ଭିତରେ ତମେ ହୋଇ ଉଠିଛ, ଆହୁରି ଅବ୍ୟକ୍ତ, ଅଚିନ୍ତ୍ୟ ଓ କଳନାତୀତ । ତମ ପାଇଁ ସୃଷ୍ଟି ହୋଇଛି, କେତେ ପୁରାଣ, ଇତିହାସ, ସାହିତ୍ୟ-ସଂସ୍କୃତି, କାହାଣୀ, କିମ୍ବଦନ୍ତୀ । ତମରି ଅଶେଷ ମହିମା ବର୍ଣ୍ଣନାରେ ଉନ୍ମତ୍ତ ସମଗ୍ର ମାନବଜାତି ।

ତମେ ତ ଲୀଳାମୟ । ଅବତାରମାନଙ୍କର ଅବତାରୀ । ଯୁଗେ ଯୁଗେ ଅବତାର ନେଇ ସଂସାରର ସଂକଟ ମୋଚନ କରି ଆସିଛ । ଦୁଷ୍ଟଙ୍କୁ ଦମନ କରିଛ । ସାଧୁ-ସନ୍ଥଙ୍କୁ ପରିତ୍ରାଣ ଦେଇଛ । ଦୀନ, ଦୁଃଖୀ, ଦୁର୍ଗତଙ୍କ ଦୁଃଖ ଦୂର କରିଛ । ସତ୍ୟ ଯୁଗରେ ନୃସିଂହନାରାୟଣ, ତ୍ରେତୟାରେ ଶ୍ରୀରାମ, ଦ୍ୱାପରରେ ଶ୍ରୀକୃଷ୍ଣ, ପୁଣି କଳିଯୁଗରେ ଶ୍ରୀଜଗନ୍ନାଥ ରୂପରେ ଅବତୀର୍ଣ୍ଣ ହୋଇ କେତେ ଅଲୌକିକ ଲୀଳା ପ୍ରକାଶ କରିଛ । ଦାରୁଦେବତାରୁ ପରିଗ୍ରହ କରିଛ ପରଂବ୍ରହ୍ମ ସ୍ୱରୂପ ।

ତତ୍ତ୍ୱଦର୍ଶୀମାନଙ୍କ ଦୃଷ୍ଟିରେ, ତମେ ଶୂନ୍ୟ, ନିର୍ଗୁଣ, ନିରାକାର କିନ୍ତୁ ସାଧାରଣ ଭକ୍ତ ପାଖରେ ସଗୁଣ, ସାକାର । ପରମପୁରୁଷ ପୁରୁଷୋତ୍ତମ, ପତିତପାବନ । ଆର୍ତ୍ତତ୍ରାଣ । ଦୟାନିଧି । ଦୀନବନ୍ଧୁ । କରୁଣାସାଗର । ଅନାଥର ନାଥ ସର୍ବମଙ୍ଗଳ ଶ୍ରୀଜଗନ୍ନାଥ । ତମେ ନିଖିଳ ବ୍ରହ୍ମାଣ୍ଡର ଅଧୀଶ୍ୱର । ସୃଷ୍ଟିସ୍ଥିତି ସଂହାରର କାରଣ । ସ୍ୱୟଂ ନାରାୟଣ । ତୁମ ପାଖରେ ସବୁ ତତ୍ତ୍ୱ ତୁଚ୍ଛ । 'ବିଶ୍ୱାସେ ମିଳଇ ହରି ତର୍କେ ବହୁ ଦୂର ।'

ବିବିଧତା ମଧ୍ୟରେ ଏକତ୍ୱ ତମର ଅନନ୍ତ ଲୀଳାର ବୈଶିଷ୍ଟ୍ୟ । ତମକୁ ନେଇ ଗଢ଼ି ଉଠିଛି, ସାମ୍ୟ ଓ ସମନ୍ୱୟର ସଂସ୍କୃତି । ସଂହତି ଓ ସମ୍ପ୍ରୀତିର ମହାମନ୍ତ୍ରରେ ଅନୁରଣିତ ହୋଇଉଠିଛି, ତମର ପବିତ୍ର ପୀଠ । ତମ ଶ୍ରୀମନ୍ଦିରରେ ସବୁ ଦେବ-ଦେବୀଙ୍କ ସହାବସ୍ଥାନ । ତମକୁ କିଏ କେତେ ରୂପରେ ଦେଖୁଛି । କେତେ ଭାବ, ଭକ୍ତି ଓ ଉପଚାରରେ ଉପାସନା କରୁଛି । ସବୁ ଧର୍ମର ସାଧୁସନ୍ଥମାନେ ତମରିଠାରେ ଉପଲବ୍ଧି କରିଛନ୍ତି, ନିଜର ଉପାସ୍ୟ ଦେବତାଙ୍କ ସତ୍ତା । ତମର ଶାଶ୍ୱତ ସଂସ୍କୃତିର ସାଗରରେ ବିଲୀନ ହୋଇଯାଇଛି ସବୁ ଧର୍ମ, ମତ ଓ ବିଶ୍ୱାସର ଧାରା । ତମେ ସର୍ବନାମ । ଯିଏ ଯେଉଁ ନାମରେ ଡାକିଛି ସେହି ରୂପରେ ତାକୁ ଦେଖାଦେଇଛ । ତୁମେ ସର୍ବବ୍ୟାପୀ, ସର୍ବମୟ, ସର୍ବନିୟନ୍ତା, ଅନ୍ତର୍ଯାମୀ । ସମସ୍ତଙ୍କ ଅନ୍ତରର କଥା ଜାଣ । ଯିଏ ଯାହା କାମନା କରିଛି, ଅକୁଣ୍ଠିତ ଚିତ୍ତରେ ତା'ର ମନୋବାଞ୍ଛା ପୂରଣ କରିଛ ।

ତମର ଅମୃତମୟ ଚେତନାରେ ଘଟିଛି ବିଶ୍ୱର ସବୁ ଧର୍ମ, ଦର୍ଶନ, ତତ୍ତ୍ୱ ଓ ମତର ଅଦ୍ଭୁତ ସମନ୍ୱୟ । ଶବର, ଜୈନ, ବୌଦ୍ଧ, ଶାକ୍ତ, ବୈଷ୍ଣବ, ଗାଣପତ୍ୟ, ସୌର– ସବୁ ଧର୍ମ ଓ ସଂପ୍ରଦାୟର ତମେ ଆରାଧ୍ୟ ଦେବତା । ତମର ସଂସ୍କୃତି ବିଶ୍ୱ ସଂସ୍କୃତି, ଧର୍ମ ମାନବଧର୍ମ । ତମେ ଆର୍ଯ୍ୟ- ଅନାର୍ଯ୍ୟର ପରମାରାଧ୍ୟ ।

ତମ ଉପାସନାରେ ମନ୍ତ୍ର ତନ୍ତ୍ରର ଆବଶ୍ୟକତା ନାହିଁ । ଜାତି, ଧର୍ମ, ସଂପ୍ରଦାୟର ଭେଦ ନାହିଁ । ତମ ପୀଠରେ ଜାତି-ଅଜାତି, ଧନୀ-ଗରିବ, ବଡ଼-ସାନର ବିଚାର ନାହିଁ । ତମ ପାଖରେ ବିଲୁପ୍ତ ସବୁ ବିଭେଦ, ବ୍ୟବଧାନ । ତମେ ଗଣଦେବତା, ଜଗତର ଠାକୁର । ଭକ୍ତଙ୍କ ସହିତ ଏକାତ୍ମ, ଏକାକାର ହେବାକୁ, ସେମାନଙ୍କ ଗୁହାରି ଶୁଣିବାକୁ, ଦୁଃଖମୋଚନ କରିବାକୁ, ଧାଇଁ ଆସ ରତ୍ନସିଂହାସନର ମୋହ ଛାଡ଼ି, ଧୂଳିଧୂସରିତ ବଡ଼ଦାଣ୍ଡକୁ ।

ଯୁଗ ଯୁଗ ଧରି ମଣିଷ ଜାତିକୁ ତମେ ପ୍ରେମ, ମୈତ୍ରୀ, ସଂହତି ଓ ସହନଶୀଳତାର ବାର୍ତ୍ତା ଦେଇଆସୁଛ । ତମ ସିଂହଦ୍ୱାର ଦୁଃଖୀ, ରଙ୍କି, ପାପୀ, ତାପୀ ସମସ୍ତଙ୍କ ପାଇଁ ସାହାଣମେଲା । ତମ ବଡ଼ଦାଣ୍ଡରେ ରାଜା-ପ୍ରଜା, ଧନୀ-ଗରିବ, ବ୍ରାହ୍ମଣ-ଚାଣ୍ଡାଳ, ହିନ୍ଦୁ-ମୁସଲମାନ- ସମସ୍ତଙ୍କର ଅପୂର୍ବ ମେଳ । ତମ ଆଗରେ ଅହମିକା, ଅହଂକାର, ଆଭିଜାତ୍ୟ, ଆତ୍ମବଡ଼ିମାର ସ୍ଥାନ ନାହିଁ । ବିଶ୍ୱାବସୁଠାରୁ ଇନ୍ଦ୍ରଦ୍ୟୁମ୍ନଙ୍କ ପର୍ଯ୍ୟନ୍ତ, ସାଲବେଗଠାରୁ ଶ୍ରୀଚୈତନ୍ୟଙ୍କ ପର୍ଯ୍ୟନ୍ତ ସବୁଭକ୍ତ ତମର ପ୍ରିୟ ସନ୍ତାନ । ଦାସିଆ ବାଉରୀ ହାତରୁ ତମେ ନଡ଼ିଆ ଛଡେଇ ଖାଇଛ । ଜଗନ୍ନାଥ ଦାସଙ୍କ ଭକ୍ତିରେ ମହୋଦଧିକୁ ସାତଲହଡ଼ି ପର୍ଯ୍ୟନ୍ତ ଘୁଞ୍ଚାଇ ଆଣିଛ । ଛଦ୍ମ ଜୟଦେବ ବେଶରେ 'ଗୀତଗୋବିନ୍ଦ'ର ଅପୂର୍ଣ୍ଣ ପଦ ପୂରଣ କରିଛ । ରତ୍ନ ମୁଦି ବନ୍ଧା ଦେଇ ମାଣିକ ଗଉଡୁଣୀଠାରୁ ଦହି ଖାଇଛ । ଇନ୍ଦ୍ରଦ୍ୟୁମ୍ନଙ୍କ ପୁତ୍ର ରୂପେ ଗୟା ଶ୍ରାଦ୍ଧରେ ପିଣ୍ଡଦାନ କରିଆସୁଛ । ଗଜପତିଙ୍କ ପାଇଁ କାଞ୍ଚି ଅଭିଯାନରେ ଯାଇଛ । ରାଜରୋଷରେ ଭ୍ରଷ୍ଟ ବଳରାମ ଦାସଙ୍କ ପାଇଁ ନନ୍ଦିଘୋଷ ଛାଡ଼ି ଚାଲି ଆସିଛ ବାଙ୍କି ମୁହାଣ ବାଲିରଥକୁ । ଲକ୍ଷ ଯୋଜନରୁ ଗଜ ତାଳ ଶୁଣି ଚକ୍ରପେଶି ନକ୍ର ନାଶ କରିଛ । ଭକ୍ତ ପ୍ରହ୍ଲାଦର ପ୍ରାର୍ଥନାରେ ନୃସିଂହ ରୂପରେ ହିରଣ୍ୟକଶିପୁର ବକ୍ଷ ବିଦାରିଛ । କୁରୁସଭାରେ କୋଟିବସ୍ତ୍ର ପ୍ରଦାନ କରି ଦ୍ରୌପଦୀଙ୍କ ମାନ ରକ୍ଷା କରିଛ । ପ୍ରଳୟ ଜଳରୁ ଋଷି ମାର୍କଣ୍ଡେୟଙ୍କୁ ଉଦ୍ଧାର କରିଛ । କିଷ୍କିନ୍ଧାରେ ବାଳୀକୁ, ଲଙ୍କାରେ ରାବଣକୁ ନିଧନ କରିଛ । ବାଲ୍ୟ ସାଥୀ ସୁଦାମାକୁ ଐଶ୍ୱର୍ଯ୍ୟଶାଳୀ କରିଛ । ପାଣ୍ଡବମାନଙ୍କ ସହାୟତା କରି କୁରୁକୁଳ ବିନାଶ କରିଛ । ଏମିତି କେତେ ଅଲୌକିକ ଲୀଳାରେ ତମେ ନିଜର ଭକ୍ତବତ୍ସଳତା ପ୍ରଦର୍ଶନ କରିଯାଇଛ ।

ଜରା ଶବରର ଶରାଘାତରେ ତମେ ଶରୀର ତ୍ୟାଗ କରିଥିଲ । ତଥାପି ତା'ରି ବଂଶର ବିଶ୍ୱାବସୁକୁ ଦେଇଛ ନୀଳମାଧବ ରୂପରେ ତମର ଆଦିଦେବଙ୍କର ମର୍ଯ୍ୟାଦା । ବିଶ୍ୱାବସୁ ବଂଶଜ ଦଇତାମାନେ ତୁମର ଜ୍ଞାତି ଭାବରେ ଶ୍ରୀମନ୍ଦିରରେ ଏବେବି ସେବାରତ । ଅପୂର୍ବ ତମର ଉଦାରତା, ମହାନୁଭବତା ।

ତମେ ବିଶ୍ୱ ମୈତ୍ରୀ ଓ ମାନବିକତାର ପ୍ରତୀକ । ଯୁଗ ଯୁଗ ଧରି ଆମର ଆଦର୍ଶ ହୋଇ ରହିଛ । ତମର ପ୍ରାତ୍ୟହିକ ଜୀବନଯାତ୍ରାରେ ଆମ ସମାଜ, ସଂସ୍କୃତି ଓ ପରମ୍ପରାର ପ୍ରତିଫଳନ । ତମର ଯାନିଯାତ୍ରା, ଚଳଣି ଓ ପର୍ବପର୍ବାଣୀରେ ଆମ ପରିବାରର ପରିଚର୍ଯ୍ୟା । ସେଥିପାଇଁ ତମ ସହିତ ଆମର ଏତେ ଆତ୍ମୀୟତା, ଅନ୍ତରଙ୍ଗ ସମ୍ପର୍କ ।

ପ୍ରଭୁ, ଆମପ୍ରତି ତମେ କେତେ ସଦୟ, ସମ୍ବେଦନଶୀଳ, କରୁଣାମୟ । କିନ୍ତୁ ତମର ଦିବ୍ୟସନ୍ଦେଶ, ଜୀବନାଦର୍ଶ ଓ ମାନବୀୟ ଲୀଳାରୁ ଏବେବି ଆମେ କିଛି ଶିକ୍ଷାଲାଭ କରିପାରିଲୁ ନାହିଁ । ଆମର ଚିନ୍ତା, ଚେତନା, ଚଳଣି ଓ ଚରିତ୍ରରେ ସଂସ୍କାର ଆସିପାରିଲା ନାହିଁ । ବ୍ୟକ୍ତିଗତ ସ୍ୱାର୍ଥ ଓ ଭୌତିକ ବିକାଶ ପାଇଁ ଆମେ ଅହରହ ପାଗଳ । ଆମର ସାମାଜିକ, ସାଂସ୍କୃତିକ ଓ ରାଜନୈତିକ ଜୀବନରେ ଉଚ୍ଚ ଆଦର୍ଶ ଏବଂ ନୈତିକ ଓ ମାନବିକ ମୂଲ୍ୟବୋଧର ଘୋର ଅଭାବ ଓ ଅବକ୍ଷୟ ଦେଖାଦେଉଛି । ଅନୀତି, ଅନାଚାର, ଦୁର୍ନୀତି, ଭ୍ରଷ୍ଟାଚାରରେ ସମାଜ ବିପର୍ଯ୍ୟସ୍ତ ହୋଇପଡ଼ିଛି । ଅହମିକା, ଅହଂକାରରେ ଆମେ ଉନ୍ମତ୍ତ । ଈର୍ଷା, ହିଂସା, ବିଦ୍ୱେଷ ସମାଜକୁ ଗ୍ରାସ କରିବସିଛି । କୋଟି କୋଟି ଆର୍ତ୍ତ, ଅନାଥ, ଦଳିତ, ମର୍ଦ୍ଦିତ କରୁଣାର କୈବଲ୍ୟ ଟିକେ ପାଇଁ ତମ ପାଖରେ ଆକୁଳ ନିବେଦନ କରି ଆସୁଛନ୍ତି ।

ପ୍ରଭୁ, ମଣିଷ ଜାତିକୁ ଏ ଅଧୋଗତିରୁ ଉଦ୍ଧାର କର । ଆମ ମନରୁ ସମସ୍ତ କ୍ଷୁଦ୍ରତା, ଆବିଳତା ଓ ସଂକୀର୍ଣ୍ଣତା ଦୂର କର । ମୈତ୍ରୀ ଓ ମାନବିକତାର ମହାଭାବରେ ଏବଂ ସମଭାବନା ଓ ସମପ୍ରାଣତାର ସାମ୍ୟ- ଚେତନାରେ ଆମ ହୃଦୟକୁ ନିର୍ମଳ ଓ ସମୁଜ୍ଜ୍ୱଳ କର, ତମ ନିକଟରେ ଆମର ଏତିକି ପ୍ରାର୍ଥନା ।

ମହେଶ୍ୱର ମୂର୍ତ୍ତି ଆ:



# ନୀଳଚକ୍ରେ ହୋ ! ଦେଖ ଉଡୁଛି ବାନା !

● ମହାପାତ୍ର ନୀଳମଣି ସାହୁ

ଆମର ଏ ଜମ୍ବୁଦ୍ୱୀପ ଭରତଖଣ୍ଡ ଓଡ୍ରରାଷ୍ଟ୍ର ମଣ୍ଡଳର ପବିତ୍ର ଭୂଇଁରେ ଅବା କେତେ ଦେଉଳ ନାହିଁ । କେଉଁ ଦେଉଳର ଦଧିନଉତି ଉପରେ ଅବା କେତ ଉଡୁନାହିଁ । ବାନା କେଉଁଠି ଉଡୁ ନାହିଁ !! ସାରା ଓଡ଼ିଶାରେ ତ ଓଡ଼ିଆମାନେ ଖାଲି ଦେଉଳ ତୋଳି ଯାଇଛନ୍ତି ଶହ ଶହ ବର୍ଷ ଧରି । ଯୁଆଡ଼େ ଚାହିଁବ ଖାଲି ଦେଉଳ, ନହେଲେ ମଠ, ଗାଦୀ ନ ହେଲେ ଟୁଙ୍ଗୀ । କାହିଁ କେଉଁ ଧୂଧୂ ଅପନ୍ତରା ଭିତରେ, କିମ୍ବା ନଈ ସମୁଦ୍ର କୂଳରେ, ଅଥବା କେଉଁ ପାହାଡ଼ ପର୍ବତ ବଣ ଅରଣ୍ୟରେ ଯୁଆଡ଼େ ଚାହିଁବ ଖାଲି ଦେଉଳ । କାରୁକାର୍ଯ୍ୟ ଭର୍ତ୍ତି ଦେଉଳ । ଯେଉଁଠି କିଛି ନାହିଁ, ସେଠି କୂଅ ଖୋଳୁ ଖୋଳୁ ବାହାରି ପଡ଼ନ୍ତି ବୃଷଭଙ୍କ ସହିତେ ମହାଦେବ । ପୋଖରୀ ଖୋଳୁ ଖୋଳୁ ବାହାରି ପଡ଼େ ବୌଦ୍ଧ ବିହାରଟିଏ ।

ସମ୍ବଲପୁରରୁ ବାଲେଶ୍ୱର ଯାଏ-ବଲାଙ୍ଗୀରଠାରୁ କୋରାପୁଟ ଯାଏ-ମୟୂରଭଞ୍ଜରୁ ପାରଳାଖେମୁଣ୍ଡି ଯାଏ ଓଡ଼ିଶାରେ ଭଲା ଆଉ କଣ ଅଛି ? ଓଡ଼ିଆଙ୍କର ବି ଆଉ କଣ ଅଛି ? ଖାଲି ମଠ, ଦେଉଳ ସ୍ତୂପ । ଓଡ଼ିଆ ବଣିକର ଧନ ବଢ଼ିଲେ ଖାଲି ମନ୍ଦିର ଗଢ଼ିବେ । ଓଡ଼ିଆ ରାଜା ଜମିଦାରଙ୍କର ବି ବଳକାଧନ କି ଭିତ ସୁନା ଖର୍ଚ୍ଚ ହୁଏ ଏଇ ମଠ କି ମନ୍ଦିର ଗଢ଼ିବାରେ । ଠାକୁର ବସାଇ ପ୍ରତିଷ୍ଠା କରି ପୂଜାଧୂଜା ପାଇଁ ଶହ ଶହ ଏକର ଜମି ଖଞ୍ଜା କରିଛନ୍ତି ଧନବନ୍ତ ଓଡ଼ିଆମାନେ । ଓଡ଼ିଆ ଶିଳ୍ପୀ, କାରିଗର, ସୁପତିମାନେ ସେମାନଙ୍କ ବିନ୍ଧାଣୀ ପଣରେ ସୃଜନୀ ପ୍ରତିଭାର ଉତ୍କର୍ଷରେ ପଥରକୁ ଆକୃତିମୟ କରିଯାଇଛନ୍ତି । ଆଉ ସେଇ ପ୍ରସ୍ତରାକୃତିରେ ଜୀବନର ତରଙ୍ଗ ଖେଳେଇ ଯାଇଛନ୍ତି । ଯାନିଯାତ୍ରା, ପର୍ବପର୍ବାଣୀ, ଓଷାବ୍ରତ, ମେଳା ମଉଚ୍ଛବ-ଓଡ଼ିଆ ଜାତିର ଜୀବନଚର୍ଯ୍ୟାର ବିଶେଷତ୍ୱ । ଯୁଆଡ଼େ ଯାଅ-ହରେକ ଦେବ, ହରେକ ଦେବୀ ଉଭା ହୋଇଛନ୍ତି ଯତ୍ରତତ୍ର । ହେଇ ଦେଖ ସେଠି ଶଙ୍ଖଚକ୍ର ଗଦାଧାରୀ ବିଷ୍ଣୁଙ୍କ ମନ୍ଦିର । ଏଠି ଦେଖ ଗୋପସ୍ତ୍ରୀ ପରିବେଷ୍ଟିତ ଗୋପାଳ ଚୂଡ଼ାମଣି ମୁରଲୀଧାରୀ କୃଷ୍ଣଙ୍କ ମନ୍ଦିର । କେତେ ନାମରେ ସେ କେତେ ଗ୍ରାମରେ ଉଭା ହୋଇଛନ୍ତି କେତେ ଢଙ୍ଗରେ– କ୍ଷୀରଚୋରା ଗୋପୀନାଥ, ଟୋଟା ଗୋପୀନାଥ, ଲବଣୀଖିଆ ବାଳକୃଷ୍ଣ, ସାକ୍ଷୀଗୋପାଳ, ମଦନମୋହନ, ରାଧାକାନ୍ତ, ଗୋପୀବଲ୍ଲଭ, ରାଧାରମଣ, ବୃନ୍ଦାବନ ଚନ୍ଦ୍ର, ଗୋପଗୋବିନ୍ଦ, ଏମିତି ଏମିତି କେତେନାମ-ସହସ୍ରେ ନାମ । ସେଇମିତି ଭଗବାନ ଶିବମନ୍ଦିରମାନେ କେତେ ନାମରେ -ହରିହର, ହରିଶଙ୍କର, ଲୋକନାଥ, ପୂର୍ଣ୍ଣେଶ୍ୱର, ବକ୍ରେଶ୍ୱର, ଗୋକର୍ଣ୍ଣେଶ୍ୱର, ଶୋଭନେଶ୍ୱର, ସିଦ୍ଧନାଥ, ଲିଙ୍ଗେଶ୍ୱର, ନୀଳକଣ୍ଠେଶ୍ୱର, ଯକ୍ଷେଶ୍ୱର, ଲକ୍ଷେଶ୍ୱର, ତ୍ରିବେଣୀଶ୍ୱର, ସୋମେଶ୍ୱର, ହାଟକେଶ୍ୱର, ପାତାଳେଶ୍ୱର । ଏମିତି ଏମିତି କେତେ ନାମ, ସହସ୍ର ନାମ । ଆଉ କେଉଁଠି ଦେଖିବ ଆଦିମାତା ପରମ ମାହେଶ୍ୱରୀ ଦୁର୍ଗା-ରାଜ୍ୟଯାକ କେତେ ରୂପରେ, କେତେ ନାମରେ, କେତେ ଦେଉଳରେ ସେ ଆବିର୍ଭୂତା ହୋଇଛନ୍ତି । ମଙ୍ଗଳା, ସାରଳା, ବିରଜା, ଭଗବତୀ, ସମଲେଶ୍ୱରୀ, ଚର୍ଚ୍ଚିକା, ତାରେଣୀ, ଗୌରୀ, ତାରାତାରିଣୀ, ନାରାୟଣୀ, ମଣିନାଗେଶ୍ୱରୀ, କାଳିଜାଇ, କାଟକେଶ୍ୱରୀ, ଅମ୍ବିକେଇ...ଏମିତି ଏମିତି କେତେ ନାମ ସହସ୍ରେ ନାମ ।

ଖାଲି ଏତିକି ନୁହେଁ-ଗାଁ ଗାଁକେ ଗ୍ରାମଦେବତୀମାନେ ରହିଛନ୍ତି- କୁତାମଚଣ୍ଡୀ, ଆଲାମ୍ ଚଣ୍ଡୀ, କାଲୁଆ ମହୁରୀ, କାକଟେଇ, ଆକଟେଇ, ହରଚଣ୍ଡୀ, ମାଣିକେଇ, ବାହୁଡ଼େଇ, ବାସୁଳେଇ, ହିଙ୍ଗୁଳେଇ, ବୁଧେଇ, ଖଣ୍ଡୁଆଳୀ...ଏମିତି ଏମିତି କେତେ ନାମ ସହସ୍ରେ ନାମ । ଏମାନଙ୍କ ବ୍ୟତୀତ ପୁଣି ସାରା ଓଡ଼ିଶାରେ ଦେଖିବ ଗଣେଶ ମନ୍ଦିର, କାର୍ତ୍ତିକ ମନ୍ଦିର, ବ୍ରହ୍ମାଙ୍କ ମନ୍ଦିର, ପୁଣି କେଉଁଠି ଦେଖିବ ବିରଞ୍ଚିନାରାୟଣ ମନ୍ଦିର, ଚଉଷଠୀ ଯୋଗିନୀ ମନ୍ଦିର, ସୂର୍ଯ୍ୟନାରାୟଣ ମନ୍ଦିର । କେଉଁଠି ପୁଣି ବାରାହୀ, କେଉଁଠି ଦକ୍ଷିଣାକାଳୀ ତ କେଉଁଠି ପୁଣି ଶ୍ୟାମାକାଳୀଙ୍କ ମନ୍ଦିର । କେଉଁଠି ଗଡ଼ବିନାୟକ ମନ୍ଦିର, କେଉଁଠି ପୁଣି ଲକ୍ଷ୍ମୀ ନୃସିଂହ ମନ୍ଦିର କି ଦୁର୍ଗାମାଧବ ମନ୍ଦିର । କେଉଁଠି ପୁଣି ରଘୁନାଥ ମନ୍ଦିରତ କେଉଁଠି ପୁଣି ହନୁମାନ ମନ୍ଦିର । କେଉଁ ପାହାଡ଼ରେ ହରିଶଙ୍କର ମନ୍ଦିର ତ କେଉଁ ପର୍ବତ ଶିଖର ଉପରେ ବିଡ଼ାଳ ନୃସିଂହ କ୍ଷେତ୍ର ।

ଏତ ଗଲା ମନ୍ଦିର । ତା'ଛଡ଼ା ପୁଣି ଗାଁ ଗାଁକେ ମଠ-ଗାଁ ଗାଁକେ ଗାଦୀ ବ୍ରହ୍ମ-ଅଲେଖ-ଟୁଙ୍ଗୀ । ରାଧାକାନ୍ତ ମଠ, ଆର୍ତ୍ତତ୍ରାଣ ମଠ, ଗୁରୁଦାସ ସଦାବ୍ରତ ମଠ, ଗୋପାଳମଠ, ଆର୍ତ୍ତଦାସଙ୍କ ଗାଦୀ, ବାଉରୀ ଦାସଙ୍କ ଗାଦୀ, ଅଚ୍ୟୁତାନନ୍ଦଙ୍କ ଗାଦୀ, ହାଡ଼ୁଦାସଙ୍କ ଗାଦୀ–ଅସଂଖ୍ୟ ଗାଦୀ । ଗାଁ ଗାଁକେ ଭାଗବତ ଟୁଙ୍ଗୀ-ଭଜନ ଟୁଙ୍ଗୀ । ଗାଁ ଗାଁକେ ପୁଣି ବରଗଛ ବା ଅଶ୍ୱତ୍ଥ ଗଛ କୋରଡ଼ ଭିତରେ, ସାହାଡ଼ା କି ଜଙ୍ଗଲ ଗଛତଳେ, ଡେଙ୍ଗୁଳାବଣ ଭିତରେ ଥାଇ ପୂଜାପଣା ପାଉଛନ୍ତି କେତେ କେତେ ମହିମାବତୀ ଠାକୁରାଣୀମାନେ । ଛୋଟ ଛୋଟ ଆପଦବିପଦକୁ ସେଇମାନେଇ କେବଳ ସାହା ଭରସା । ଛାଟିଆଣୀ ମା-ପାଙ୍ଗୁଡ଼େଇ ମା-ସାକୁଳେଇ ମା-ବୁଢ଼ୀ ଠାକୁରାଣୀ ମା-କରୁଣେଇ ମା -ବାସେଳୀ ମା-ମାଣିକେଇ ମା-....ଏମିତି ଏମିତି ସହସ୍ରେ ଦେବତା ।

ପ୍ରତିଗାଁରେ ଭାଗବତ ଘର-ଭଜନ ଟୁଙ୍ଗୀ । ଭାଗବତ ଘର ଗାଁର କୋଠ ଅନୁଷ୍ଠାନ । ତା' ଭିତରେ ବିମାନ କି ଖଟୁଲୀ ଭିତରେ କୌଣସି ମୂର୍ତ୍ତି ନଥାନ୍ତି । କେବଳ ତାଳପତ୍ରରେ ଲିଖିତ ଭକ୍ତକବି ଜଗନ୍ନାଥ ଦାସଙ୍କ କୃତ ବାରସ୍କନ୍ଧ ଭାଗବତ ପୋଥିର ବିଡ଼ା । ଛିଟ କନା, ମୟୂରଚନ୍ଦ୍ରିକା, ତୁଳସୀପତ୍ର, ଜାଠଚମ୍ପା ଆଉ ଚନ୍ଦନ । ଅଧିକା କେଉଁଠି ଅବା ଶାଳଗ୍ରାମ ଶିଳା । ଏଠି ପ୍ରତିଦିନ ରାତି ଅଧଯାଏ ପଢ଼ା ହେଉଥାଏ ଭାଗବତ,

ହରିବଂଶ, ବିଷ୍ଣୁପୁରାଣ, ରାମାୟଣ, ମହାଭାରତ । ପୁରାଣ ପଣ୍ଡାଙ୍କ ଉଚ୍ଚକିତ ସ୍ୱର ସମବେତ ଶ୍ରୋତାମାନଙ୍କ କର୍ଣ୍ଣମୂଳରେ ଅପୂର୍ବ ସ୍ୱର୍ଗୀୟ ଭାବ ସୃଷ୍ଟି କରୁଥାଏ-

ଆରେ ଦକ୍ଷିଣ ମହୋଦଧି ତୀରେ ଯେ ବୃକ୍ଷ କଳ୍ପବଟେ
ଚନ୍ଦ୍ରଭାଗା ତୀର୍ଥ ଯେ କୋଣାର୍କ ନିକଟେ ।
ପୁରୁଷୋତ୍ତମ କ୍ଷେତ୍ର ଯେ କୋଟିଏ ତୀର୍ଥ ଘେନି
ବସିଲେ ହରି ବଳରାମ ସୁଭଦ୍ରା ଯେ ତିନି ।
ନ ଯା ନାନା ତୀର୍ଥ ନିଗମ ଦୂର ପନ୍ଥେ
କାଳ ପ୍ରମାଦେ ନପଣ ଶ୍ରୀଜଗନ୍ନାଥଙ୍କର ଦେଖନ୍ତେ ।
ଶ୍ରୀଜଗନ୍ନାଥ ନାମ କରସି ଉଚ୍ଚାର
ଲୋଭ ମୋହ ସଂସାରୁ ନରେ ହୁଅସି ବେଗେ ପାର ।

କୋଉ କୋଉ ଗାଁରେ ରହିଛି ଭଜନ ଟୁଙ୍ଗୀ । ଶୂନବାଦୀ, ପିଣ୍ଡ ବ୍ରହ୍ମାଣ୍ଡ ପଞ୍ଚସଖାଙ୍କ ଶିଷ୍ୟମାନେ ସେଠି ଭାତିରେ ଏକାଠି ହୋଇ ଶରୀର ଭେଦ ଭଜନ ଗାଉଥାନ୍ତି । ଖଞ୍ଜଣି ମାଡ଼ରେ ଗାଁ କମ୍ପୁଥାଏ-

ମନ କହୁଛିରେ; ବସି ହଂସକୁ ଖେଳା
ହଂସ ଉଡ଼ିଗଲେ, ହଂସ ଉଡ଼ିଗଲେ, ହଂସ ଉଡ଼ିଗଲେ
ବୁଡ଼ିବ ଭେଳା ।
କିମ୍ବା...
ରୂପରେଖ ନାହିଁ ହେ ଶୂନ୍ୟଦେହୀ ଅଛି ଉଭା ହୋଇ ।
କିମ୍ବା...
ଆରେ ଶୁଆ ଶାରୁ ଶାରୁ
ମିଛମାୟାରେ ପଡ଼ି ହେଉ ଲଡ଼ବଡ଼ ଲଡ଼ବଡ଼ ।
କିମ୍ବା...
ତିର୍ଥ ଦେଖି ଯିବାଗୋ ସହୀ !
ଦେଉଳରେ ତିର୍ଥ ଦେବତା ନାହିଁ ।
ସିନ୍ଧୁ-ତଟ-ବଟ-କୂଟରେ ପ୍ରକଟ
ଛାୟା କାୟା ବାରି ହୁଅନ୍ତି ନାହିଁ । ତିର୍ଥ ଦେଖି...

ଆଉ କୋଉ ଗାଁରେ କୀର୍ତ୍ତନ ଟୁଙ୍ଗୀରେ ରାଣୀହାଟୀ ଦକ୍ଷିଣୀ କୀର୍ତ୍ତନ ଚାଲିଥିବ-ପାଞ୍ଚହଳ ଝାଞ୍ଜ-ପାଞ୍ଚହଳ ମୃଦଙ୍ଗ ମାଡ଼ରେ କାନ ଅତଡ଼ା ପଡୁଥିବ । ଅଧା ଓଡ଼ିଆ ଅଧା ବଙ୍ଗଳା ଭାଷାରେ ଭଗବାନ ଶ୍ରୀକୃଷ୍ଣ ବା ଶ୍ରୀଚୈତନ୍ୟଙ୍କ ଦିବ୍ୟ ପ୍ରେମଲୀଳାର ବର୍ଣ୍ଣନା-

ଏକ ଦିନେ କୃଷ୍ଣଚନ୍ଦ୍ର ବୃନ୍ଦାବନେ ଗେଲ
ବିରହ ବାଂଶରୀ ଲୟା ବଜାଇ ଲାଗିଲ ।
କିମ୍ବା...
ସୁନାର ବରନ ପୋଷାପକ୍ଷୀଟିଏ କିଏ ସେ ଦେଖୁଛ ଭାଇ ?
ଶିକୁଳି ଛିଡ଼ାଇ ଯାଇଛି ପଳାଇ
କୃଷ୍ଣ ନାମ ଗାଇ ଗାଇ !
କିଏ ସେ ଦେଖୁଛ କହିଦିଅରେ !
ସେତ ଶଚୀମାତାଙ୍କର ନୟନତାରା !
ସେତ ବିଷ୍ଣୁପ୍ରିୟାଙ୍କର ହୃଦୟ ହାରା !
ସେତ ଦୀନଦୁଃଖୀଙ୍କର ଶୋକ ପାଶୋରା !
କିଏ ସେ ଦେଖୁଛ କହି ଦିଅରେ !

ଆଉ କୋଉଠି ଭାଗବତ ଟୁଙ୍ଗୀରୁ ଭାଗବତ ପଦମାନ ଭାସି ଆସୁଥିବ-

ଗୋବିନ୍ଦ ବିଚାରନ୍ତି ମନେ-ଆଜ ରମିବି ବୃନ୍ଦାବନେ
ଷୋଳ ସହସ୍ର ଗୋପନାରୀ-ମତେ ବରିଲେ ତପ କରି ।
ମୁଁ ତାଙ୍କ ପୂରାଇବି ଆଶ-ସେ ମୋର ଭକତ ବିଶ୍ୱାସ ।
(ଆନନ୍ଦେ ଏକ୍‌ବାର ହରିବୋଲ)

ଏମିତି ଏମିତି ସାରା ଓଡ଼ିଶାରେ ହଜାରେ ବର୍ଷଧରି କେତେ ମନ୍ଦିର, କେତେ ମଠ, କେତେ ଗାଦୀ କେତେ ଟୁଙ୍ଗୀ, କେତେ ଗ୍ରାମରେ କେତେ ଧର୍ମଚର୍ଚ୍ଚା ହୋଇ ଆସିଛି-କେତେ କୀର୍ତ୍ତନ , କେତେ ଭଜନ, କେତେ ଜଣାଣ, କେତେ ମାଳଣା, କେତେ ଉତ୍ସବ ,କେତେ ମେଳା, କେତେ ମହୋତ୍ସବ ଅନୁଷ୍ଠିତ ହୋଇ ଆସିଛି । ଓଡ଼ିଆ ଜାତି ସବୁ ଛାଡ଼ି ଧର୍ମକୁ ଧରିଛି । ଧର୍ମକୁ ଧରି ସବୁ ଛାଡ଼ିଛି । ହଜାର ବର୍ଷଧରି ଏ ଜାତିର ଧର୍ମସାଧନାର ଇତିହାସ ଯେମିତି ବ୍ୟାପକ, ସେମିତି ଗଭୀର-ସେମିତି ଜଟିଳ, ସେମିତି ବିଚିତ୍ର । ବୌଦ୍ଧ, ଜୈନ, ଶାକ୍ତ, ଶୈବ, ବୈଷ୍ଣବ, ଗାଣପତ୍ୟ, ସୌର, ତନ୍ତ୍ର, ଯୋଗ, ଭକ୍ତି ଜ୍ଞାନ ଆଉ ଶୂନ୍ୟ ସାଧନାର, ପିଣ୍ଡ ବ୍ରହ୍ମାଣ୍ଡ ଉପଲବ୍ଧିର ବହୁ ବିସ୍ତୃତ ଅଭୂତପୂର୍ବ ଭାବ-ଶବଳିତ ଅଭିଜ୍ଞତାରେ ଏ ଜାତିର ଆତ୍ମା ପରିପୁଷ୍ଟ ହୋଇଛି, ସିଦ୍ଧ ହୋଇଛି । ତା' ସାଙ୍ଗରେ ପୁଣି ଆସି ମିଳିତ ହୋଇଛି ଆଦିମ ଆରଣ୍ୟକ ଶବରସଂସ୍କୃତି ଓ ଧର୍ମଧାରଣାର କେତେ କେତେ ରହସ୍ୟ ରୋମାଞ୍ଚର ଅଦ୍ଭୁତ ସଂ ଅଭିଜ୍ଞତା-ଗୁଣି, ଗାରେଡ଼ୀ, ଫୁଙ୍କା, ଝଡ଼ା, ଉଡ଼ାଣ, ଉଚାଟ, ବଣ ଡାମେଣା,ଭୂତ ପ୍ରେତ ବେତାଳ, କାକ, ଉଲୁକ (ପେଚା), ଶିବା ପ୍ରଭୃ ଗୁହ୍ୟ ଗୋପ୍ୟାନ ସାଧନା ସବୁ । ଓଡ଼ିଆ ଚାଷୀ ବୈଶାଖ ମାସର ଦ୍ୱି ଦିହ ଖରାରେ ବିଲରେ ହଳ ବୁଲାଉ ବୁଲାଉ ତାର ଖରା ଶୁଖିଲା କଣ୍ଠରେ ଉଚ୍ଚକିତ ସ୍ୱରରେ ରହସ୍ୟଭରା ଗୀତଟିଏ ମନକୁ ଫା ବୋଲିଦିଏ -

ଆରେ, ବଡ଼ ଦେଉଳରେ ହୋ ବାନା ଉଡୁଛି ଫର ଫର
ରତ୍ନ ସିଂହାସନରେ ହୋ ବସିଛି କାଳିଆ ମେଲାଇ ବେନି କର ।
ସିଂହଦ୍ୱାରେ ଲାଗିଛି ହୋ ଶାଳିଆ ପିତଳ କବାଟ
ଜୟ ବିଜୟ ପାହାରୀ ହୋ ମାଛିକି ନାହିଁ ବାଟ ।
ଆରେ କୋଉବାଟେ ପଶିଲେ ଯବନେ ହୋ ଲୁଟିଲେ ରତ୍ନଙ୍କ ??

ସାରାବିଶ୍ୱର ମାନବ ସମାଜକୁ ଭାରତୀୟମାନଙ୍କର ଅବଦାନ କଣ ? ତାର ଉତ୍ତର ହେଲା ଧର୍ମ ବା ଆଧ୍ୟାତ୍ମ ସାଧନା ! ସେମିତି ସାରା ଭାରତବାସୀଙ୍କୁ ଓଡ଼ିଆ ଜାତିର ଅବଦାନ କଣ ବୋଲି ପ୍ରଶ୍ନ ହେଲେ ଖୁବ୍ ସ୍ପଷ୍ଟ ଓ ଦୃଢ଼ ଭାବରେ କହିଦେଇ ହେବ-ଧର୍ମ ଓ ଆଧ୍ୟାତ୍ମ ସାଧନର ଅଦ୍ଭୁତ, ବିଚିତ୍ର, ସମନ୍ୱୟୀ ଅଭିଜ୍ଞତା । ସବୁ ମତ ଓ ସବୁପଥର ସମ୍ମ ସମନ୍ୱୟ ଏଇ ଉତ୍କଳୀୟମାନ ପାଠରେ ହିଁ ସମ୍ଭବ ହୋଇଛି । ଓଡ଼ିଆଙ୍କର ପ୍ରାଣ, ମନ ଓ ଆତ୍ମା ଏହି ଭାବସାମ୍ୟ ଭିତରେ ପରିପୁଷ୍ଟ ହୋଇଛି । ଶଙ୍କର, ରାମାନୁଜ, ନାନକ, ଶ୍ରୀଚୈତନ୍ୟାଦି ମହାତ୍ମାମାନଙ୍କ ସମାଗମରେ ଏ ମାଟି ପବିତ୍ର ତୀର୍ଥ-ମାହାତ୍ମ୍ୟ ଲାଭ କରିଛି । ସାମ୍ୟ, ମୈତ୍ରୀ, ସମନ୍ୱୟ, ସହଯୋଗିତା, ତ୍ୟାଗ, ତିତିକ୍ଷା, ସତ୍ୟ, ପ୍ରେମ, କରୁଣା, ଅହିଂସାଦି ନୈ

ମୁକ୍ତର ବିନାଶ ପାଇଁ ଏ ଜାତି ଯୁଗ ଯୁଗ ଧରି ସାଧନା କରି ଆସିଛି । ଯୋଗ କରି ଆସିଛି । ଆହୁତି କରି ଆସିଛି । ଆତ୍ମ ସମର୍ପଣ କରି ଆସିଛି ।

ସେଥିପାଇଁ ଏ ଜାତିର ଇଷ୍ଟଦେବତା ପୁରୁଷୋତ୍ତମ ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ । ଏ ଜାତିର ଇଷ୍ଟବନ୍ଧୁ ମଧ ସେହି ପୁରୁଷୋତ୍ତମ ଜଗବନ୍ଧୁ ଜଗନ୍ନାଥ । ଶ୍ରୀକ୍ଷେତ୍ର ପୁରୁଷୋତ୍ତମ ହେଲା ଆମର ଇଷ୍ଟକ୍ଷେତ୍ର-ଆଉ ପରମବନ୍ଧୁଙ୍କ ଘର । ପୁରୀ ହେଲା ଆମର ସବୁତୀର୍ଥର ତୀର୍ଥ, ତୀର୍ଥରାଜ । ଆମପାଇଁ କ୍ଷେତ୍ର ଶିରୋମଣି । ସବୁ ଧାମ ଭିତରେ ଶ୍ରେଷ୍ଠଧାମ । ସବୁ ମଣ୍ଡଳରେ ମହାମଣ୍ଡଳ ।

ଆମ ପାଇଁ ଶ୍ରୀକ୍ଷେତ୍ରର ପ୍ରତି ଧୂଳିକଣା ପରମପବିତ୍ର "ବୈକୁଣ୍ଠରଜ" । ଆନନ୍ଦ ବଜାର ଭିତରେ ନିକ୍ଷିପ୍ତ ବିପର୍ଯ୍ୟସ୍ତ ଶୁଖିଲା ଅନ୍ନ କଣିକାଟିଏ ଆମର ପରମ ନିର୍ମାଲ୍ୟ । ମୃତ୍ୟୁ ବେଳର ଅଣଚାଶି ଅନ୍ତେଷ୍ଟିତ ଶେଷ ଢ଼ୋକଟି ଆମର ଆକାଂକ୍ଷା କରିଥାଏ, ଅପେକ୍ଷା କରିଥାଏ ସେହି ନିର୍ମାଲ୍ୟ ମିଶ୍ରିତ ପାଣି ଟୋପାଏ ପାନ କରିବାପାଇଁ । ଯେବେ ସେ ବେଳରେ କେହି ଆମ ପାଟିରେ ଦେଇଦେଲେ ଆମର ପ୍ରାଣବାୟୁ ଗୋଟିଏ ମାତ୍ର ନିଃଶ୍ୱାସରେ ଏ ମର୍ତ୍ତ୍ୟଭୂମି ଛାଡ଼ି ପରମ ନିର୍ବିରେ ଆରପାରିକି ଚାଲିଯାଏ । ପ୍ରତିଟି ଓଡ଼ିଆ ମୃତ୍ୟୁ ପୂର୍ବରୁ ଅଭିଳାଷ କରିଥାଏ, ତା'ର ଶବଟି ଯେପରି ଶ୍ରୀକ୍ଷେତ୍ରର ବେଳାଭୂମିରେ ଜଗନ୍ନାଥଙ୍କ ଦୃଷ୍ଟି ସମ୍ମୁଖରେ ସ୍ୱର୍ଗଦ୍ୱାରଠାରେ ଭସ୍ମୀଭୂତ ହୋଇ ସେହି ବାଲୁକାରାଶିରେ ମିଶି କ୍ଷେତ୍ର-ଧୂଳିରେ ପରିଣତ ହୋଇଯାଉ । ସେଥିଲାଗି ଓଡ଼ିଆର ଅନ୍ତରାତ୍ମା ପ୍ରତିଦିନ ଆକୁତି କରୁଥାଏ -

ଆଖି ମନ ଚାଲ ଯିବା-ଚକାନୟନ ଦେଖିବା
ଶଙ୍ଖ ନାଭି ମଣ୍ଡଳରେ ବେନିନେତ୍ର ପଖାଳିବା !

ମହାପ୍ରଭୁ ଏଇ କଥାରେ ମୋ ମନ-ନିତି ଦେଖୁଥିବି ନୀଳାଦ୍ରି ମଣ୍ଡପେ ବିଜେ ସୁନ୍ଦର ବଦନ । ଆମର କି ଧନୀ, କି ମାନୀ, କି ରଜା, କି ପ୍ରଜା, କି ବଣି, କି ସାଧୁ ସମସ୍ତଙ୍କର ଜୀବନରେ ଏପରି ସବୁ ଉଚ୍ଚାଟ ମୁହୂର୍ତ୍ତ ଆସିଥାଏ- ହଠାତ୍ କିପରି ମନ ପ୍ରାଣ ଶରୀରର ସବୁ ଅଙ୍ଗପ୍ରତ୍ୟଙ୍ଗ ଏକାବେଳକେ ଉଦ୍ବେଳ ହୋଇଉଠନ୍ତି । ଉନ୍ମତ୍ତ ମୁମୁକ୍ଷାରେ ତା'ର ନାଭିକମଳରୁ ହୃଦକମଳଯାଏ ମଣ୍ଡି ହୋଇଯାଏ । ସେ ପାଗଳ ପରି ଚିତ୍କାର କରି ଉଠେ-

ଯତ ମୋ ବଚନ ରାମା, ସତ ମୋ ବଚନ !
ଜଗନ୍ନାଥଙ୍କର ଚନ୍ଦ୍ରମୁଖ ଦେଖିବାରେ ମୋ ମନ
ଆରେ ମୁଁ କ୍ଷେତ୍ର ଯିବି ; ଆରେ ମୁଁ କ୍ଷେତ୍ର ଯିବି..
ଜଗନ୍ନାଥଙ୍କର ଶରଧାବାଲିରେ ନିତି ଚାଲୁଥିବି ।
ଆରେ ମୁଁ କ୍ଷେତ୍ର ଯିବି...
ଜଗନ୍ନାଥଙ୍କର ଗରୁଡ଼ ଖମ୍ବ ନିତି କୁଣ୍ଢାଉଥିବି ।
ଆରେ ମୁଁ କ୍ଷେତ୍ର ଯିବି...
ଜଗନ୍ନାଥଙ୍କର ଚଗଡ଼ା ଅନ୍ନ ନିତି ଖାଉଥିବି
ଆରେ ମୁଁ କ୍ଷେତ୍ର ଯିବି..

ଜଗନ୍ନାଥ ହିଁ ଓଡ଼ିଆଙ୍କର ଏକମାତ୍ର ଧ୍ୟେୟ । ସେହିଁ ଏକମାତ୍ର ଓଡ଼ିଆର ସାଧ ଓ ସାଧନା-ଲକ୍ଷ୍ୟ ଓ ମାର୍ଗ । ଜ୍ଞାନ ଓ ଜ୍ଞେୟ-ପ୍ରେମ ଓ ପ୍ରେମିକ । ଖାଲି ଆମର ନୁହଁ, ଆମ ରାଜ୍ୟର ଯେତେ ଦେବଦେବୀ ଯେଉଁଠି ଅଛନ୍ତି-ସମସ୍ତଙ୍କ ଉପରେ ସେ ନାଥ-ଶ୍ରୀଜଗନ୍ନାଥ ।

ଜଗବନ୍ଧୁ ପରି ଜଣେ ସାମନ୍ତ
ନାହିଁ ନାହିଁ ତ ।
ସେ ତ ଚଉଦ ଭୁବନ ବାରତା ଜାଣନ୍ତି
ଚକ୍ଷୁରେ ଦେଖନ୍ତି ତୁରିତ ।
ନାହିଁ ନାହିଁତ ! ଜଗବନ୍ଧୁ ପରି ଜଣେ ସାମନ୍ତ
କେହି ସରିକି ? ପ୍ରଭୁ ପଣେ ନୀଳାଦ୍ରି କେଶରୀକି ?
ଯା' ଠାରେ ପୂରିଛି ଦୀନ ଦୁଃଖୀ ଦୟା ନଖଠାରୁ ଶିଖା ସରିକି ?

ସେ କଣ କେବଳ ପ୍ରଭୁମାନଙ୍କ ଭିତରେ ମହାପ୍ରଭୁ ? ସାମନ୍ତମାନଙ୍କ ଭିତରେ ବଡ଼ ସାମନ୍ତ ? ସେ ମଧ ଆମ ଆଖିରେ ସବୁ ସୁନ୍ଦରଙ୍କ ଭିତରେ ସୁନ୍ଦରତମ ! ସବୁ ମାଧୁର୍ଯ୍ୟ ଭିତରେ ମଧୁରତମ ! ସେ ପରା-

ଜୟ ଜଗବନ୍ଧୁ ହେ ଯଦୁନନ୍ଦନ !
ଭୁଜବାଳୀ ହୃଦତଟ ଚନ୍ଦନ ।
ବଡ଼ ଦେଉଳେ ବିହାର ବଡ଼ ଡିଠା ବଡ଼ବୁଲ
କି ଶୋଭା ପାଉଛି କଳା ବଦନ !
ସେ ଯେଉଁ ଅଳକାପନ୍ତି-ଦେଖି ଭୁଲିଯିବେ ଯତି
ମୁନି ଜନଙ୍କର ମନ ମୋହନ ।
ସେ ଯେଉଁ ରଙ୍ଗ ଅଧର ପୂରି ରହିଛି ମଧୁର
ଭାଲେ ଗଜମୋତି ଅତି ଶୋଭନ ।
ବଡ଼ ବଡ଼ ଚକା ଆଖି-ଚକିଆର ଭୁଜ ଦେଖି
ତହିଁରେ ରହିଲା ଲାଗି ମୋ ମନ ।

ସେଥିପାଇଁତ ଶ୍ରୀଜଗନ୍ନାଥଙ୍କ ଛଡ଼ାମାଳ, ଧଡ଼ାକୁ ନିଜ ଗଳାରେ ପିନ୍ଧି ଧନ୍ୟ ହେବା ପାଇଁ ଓଡ଼ିଶାର ଦେବୀ ମାତୃକାମାନେ ଅତ୍ୟନ୍ତ ଆଗ୍ରହର ସହିତ ଲୋଭାର୍ଥିନୀ ହୋଇ ଅପେକ୍ଷା କରି ରହିଥାନ୍ତି । ବାଣପୁରର ଭଗବତୀ, କାକଟପୁରର ମଙ୍ଗଳା, ଝଙ୍କଡ଼ର ସାରଳା, ସମ୍ବଲପୁରର ସମଲେଶ୍ୱରୀ, ବାଙ୍କୀର ଚର୍ଚ୍ଚିକା, କଟକର ଚଣ୍ଡୀ, ଭୁବନେଶ୍ୱରର ଗୌରୀ-ସବୁଠାକୁରାଣୀମାନେ ଜଗନ୍ନାଥଙ୍କ ଛଡ଼ାମାଳ ଆଉ ପିଣ୍ଡା ପାଛୋଡ଼ା ପିନ୍ଧିବା ପାଇଁ ଖୁବ୍ ଆଗ୍ରହରେ ଅପେକ୍ଷା କରିଥାନ୍ତି । ଜଗନ୍ନାଥ ଅବଢ଼ା ମହାପ୍ରସାଦ ସେବା କରିବା ପାଇଁ ଲୋଳଜିହ୍ୱ ହୋଇ ରହିଥାନ୍ତି ।

ଓଡ଼ିଶାରେ ଅସଂଖ୍ୟ ତୀର୍ଥ ଆଉ ଧର୍ମପୀଠ । କିନ୍ତୁ ଶ୍ରୀକ୍ଷେତ୍ର ପୁରୀ ହେଲା ଓଡ଼ିଶାର ଆତ୍ମକେନ୍ଦ୍ର । ବର୍ଷକେ ଅନ୍ତତଃ ଥରେ ହେଲେ ବି ପୁରୀଧାମ ଯାଇ ଗରୁଡ଼ ଖମ୍ବକୁ କୁଣ୍ଢାଇ ଧରି ଶ୍ରୀଜଗନ୍ନାଥଙ୍କ ମୁଖାରବିନ୍ଦ ଦର୍ଶନ କଲେ ଓଡ଼ିଆଙ୍କ ପ୍ରାଣ ଜ୍ୱାଳା ଶୀତଳ ହୁଏ ନାହିଁ । ବଡ଼ ଦାଣ୍ଡରେ ଠିଆ ହୋଇ ବଡ଼ ଦେଉଳର ନୀଳଚକ୍ର ଉପରେ ଫରଫର ହୋଇ ଉଡ଼ୁଥିବା ପତିତପାବନ ବାନା ଉପରେ ଥରେମାତ୍ର ଆଖି ନ ପଡ଼ିଲେ ଓଡ଼ିଆଙ୍କୁ ଚତୁର୍ଦ୍ଦିଗ ଅନ୍ଧାର ଦେଖାଯାଏ । ବର୍ଷକେ ଥରୁଟିଏ ହେଲେ ବି ଆନନ୍ଦ ବଜାରରେ ବନ୍ଧୁବାନ୍ଧବ, କୁଟୁମ୍ବ ପରିଜନଙ୍କ ସହିତ ବସି, ଶ୍ରୀଜଗନ୍ନାଥଙ୍କ ଅବଢ଼ା, ଡାଲି, ମହୁର, ବେସର ପଙ୍ଗତ ନକଲେ ଓଡ଼ିଆଙ୍କ ପ୍ରାଣର କ୍ଷୁଧା ମେଣ୍ଟେ ନାହିଁ । ଓଡ଼ିଆଙ୍କ ସାରା ଶରୀରର ସମସ୍ତ ଇନ୍ଦ୍ରିୟ ଜଗନ୍ନାଥଙ୍କ ପ୍ରତି ଉନ୍ମୁଖୀ । ଜଗନ୍ନାଥଙ୍କୁ ନେଇ, ଜଗନ୍ନାଥଙ୍କ ପାଖରେ ଯେତେ କବିତା, ଭଜନ, ସ୍ତୁତି, ଜଣାଣ, ଓଡ଼ିଆ କବିମାନେ

ଲେଖି ଯାଇଛନ୍ତି, ସେପରି ଭାବେ ସାରା ଭୂଭାରତରେ ଆଉ କୌଣ ଦେବଦେବୀଙ୍କ ପାଇଁ ସେ ରାଜ୍ୟର କବିମାନେ ଲେଖିଛନ୍ତି କି ନାହିଁ ସନ୍ଦେହ । ସେହି ଭଜନ, ଜଣାଣଗୁଡ଼ିକ ଓଡ଼ିଆଙ୍କ ପ୍ରାଣର ସଙ୍ଗୀତ-ଆତ୍ମାର ବାଣୀ । ଓଡ଼ିଆଟିଏ ଯୋଉଠି ଥାଉ-ଦେଶରେ ଥାଉ କି ବିଦେଶରେ ଥାଉ, ତା' କାନରେ ଯଦି ଦୈବାତ୍ ଜଗନ୍ନାଥଙ୍କର ଜଣାଣଟିଏ ପଡ଼ିଯାଏ-

ବାଆ୍ରେଳା ଜାଣି କ୍ଷମା କର ନୋହିଲେ ରମା-ରମଣ
ଦଣ୍ଡେ ଦିଅ ଟାଳି
ତୁମଙ୍କୁ ଜଗନ୍ନାଥ ଆଜ ମୋ ମନୋରଥ,
ପୂର୍ଣ୍ଣ କରିବି ଦେଇ ଗାଳି ।
କିମ୍ବା
ବଳା ବୋଲା କିମ୍ବା ବଳା, କିମ୍ବା ବଳା ନ ଶୁଣ ହେ..
କିମ୍ବା
ଚକାନୟନଙ୍କୁ ପତିତ କେହି
ଚକାଇ ଖଗ ନିଶ୍ୱାସ ପକାଇ
ଡ଼କା ପକାଇ ଗରୁଡ଼ ପଛରେ
ଚକାରୀ ! ମୋ ଆର୍ତ୍ତ ଶୁଣ କର୍ଣ୍ଣରେ ହେ
ତୁମ୍ଭ ବାଜୁଛି ମହିମା ହେ !!
କିମ୍ବା
ଭୁଜତଳେ ମୋତେ ରଖ ମହାବାହୁ ! ବାହୁତଳେ ମୋତେ ରଖ
ବିପୁଳ ଭୁଜ ବିସ୍ତାରି ଦେଲେ ମହାପ୍ରଭୁ ! କି କରି ପାରିବ ଦୁଃଖ !
କିମ୍ବା
କୃପାସିନ୍ଧୁ ବଦନ କରି ଅବଲୋକନ କେଉଁ କରମହୀନ ଜନ
କାକୁସ୍ତର ହୋଇ କରଯୋଡ଼ି ଜଣାଇ ଗରୁଡ଼ ଖମ୍ବ ସନ୍ନିଧାନ ।

ଏଭଳି ପଦଗୁଡ଼ିକ ପ୍ରତି ଓଡ଼ିଆର କାନରେ ପଡ଼ିବାମାତ୍ରେ ତାର ହୃତ୍-କେନ୍ଦ୍ର ଉତ୍ଫୁଲ୍ଲିତ ହୋଇଉଠେ । ଓଡ଼ିଆଟିଏ ବିଦେଶରେ ରହିଥିଲେ ବି, ଜଗନ୍ନାଥଙ୍କ ମୂର୍ତ୍ତିଟିଏ ଦେଖିଲେ, କି ଫଟୋଟିଏ ଦେଖିଲେ କି ଭଜନଟିଏ ଶୁଣିଲେ, ସେହି ବିଦେଶ ଭୂଇଁ ମଧ ତାକୁ ସ୍ୱଦେଶ ମାତୃଭୂମି ବୋଲି ମନେ ହୁଏ । ଜଗନ୍ନାଥେ ଅଛନ୍ତି ବୋଲି ସିନା ଓଡ଼ିଶା ଦେଶ ଆମର ଏତେ ପ୍ରିୟ ! ଉତ୍କଳ କେବଳ ଆମର ଜନ୍ମଭୂମି ନୁହଁ-ଏହା ଆମ ପାଇଁ ପୁଣ୍ୟ ଭୂମି, ଦେବଭୂମି । ଏହି ଚେତନାରେ ଥାଇ ଆମେ ଆମ ପୁଣ୍ୟଦେଶ ଭାରତବର୍ଷକୁ ମଧ ଦେଖିଥାଉ-

ମୋ ଲେଖେ ଭାରତ ଶିଳା ଶାଳଗ୍ରାମ
ପ୍ରତିସ୍ଥାନ ମୋର ପ୍ରିୟ ପୁରୀଧାମ ।
ସକଳ ସଲିଳ ପଞ୍ଚତୀର୍ଥଜଳ
ପ୍ରତି ଧର୍ମାଳୟ ମୋର ନୀଳାଚଳ ।
ଭାରତର ପ୍ରତି ବୃକ୍ଷ କଳ୍ପବଟ
ପ୍ରଭୁ ଜଗନ୍ନାଥ ସର୍ବତ୍ର ପ୍ରକଟ ।

ଗଜପତି ମହାରାଜା ଅନଙ୍ଗଭୀମଦେବ ଏହି ଓଡ଼ିଶା ରାଜ୍ୟକୁ ଜଗନ୍ନାଥଙ୍କ ପାଦତଳେ ନ୍ୟାସ କରି ଅର୍ପଣ କରିଦେଇ ଘୋଷଣା କରିଥିଲେ-ଆଜିଠାରୁ ଏ ରାଜ୍ୟର ରାଜା ସ୍ୱୟଂ ଜଗନ୍ନାଥ । ମୁଁ ଓ ମୋର ବଂଶଧରମାନେ ଆଜିଠାରୁ ତାଙ୍କର ରାଉତରୂପେ ତାଙ୍କ ରାଜ୍ୟ ସମ୍ଭାଳିବାର ଦାୟିତ୍ୱରେ ରହିବେ । କେହି ଏହାର ଅନ୍ୟଥା ନ କରିବେ । ସେହିଦିନଠାରୁ ପ୍ରତିଟି ଓଡ଼ିଆ ଶ୍ରୀଜଗନ୍ନାଥଙ୍କୁ ତାର ରାଜା ବୋଲି ଜାଣେ-ତାର ଭାଗ୍ୟବିଧାତା ବୋଲି ଜାଣେ । ସେହିଁ ତାର ପ୍ରଭୁ ଗୃହାଧିପତି । ସେଇ କେବଳ ଆମର ଜନ୍ମ ମୃତ୍ୟୁର ନିର୍ଣ୍ଣାୟକ । ଓଡ଼ିଆଟିଏ ଘରେ ଥାଉ କି ବନସ୍ତରେ ଥାଉ, ସମୁଦ୍ର ଭିତରେ ଥାଉ କି ଅନ୍ତରୀକ୍ଷରେ ଥାଉ, ଜଗନ୍ନାଥଙ୍କ ଚକାଆଖିର ଦୃଷ୍ଟି ସର୍ବଦା ତା' ଉପରେ ଅପଲକ ହୋଇ ରହିଥାଏ ।

ଖାଣ୍ଟି ଓଡ଼ିଆ ଜାତକମେଳ କରାଇ ପୁଅ ଝିଅ ବାହାଘର ସ୍ଥିର କରେ ନାହିଁ । କନ୍ୟାପିତା ବରପିତା ପରସ୍ପର ହାତରେ ବା ମୁଣ୍ଡରେ ମହାପ୍ରସାଦ ବନ୍ଧାଇ ଦେଇ ସତ୍ୟ କରନ୍ତି, ସଙ୍କଳ୍ପ କରନ୍ତି । "ସର୍ବ ମଙ୍ଗଳଜଗନ୍ନାଥ" ବିଶ୍ୱାସରେ ଆମେ ସବୁ କଥା ତାଙ୍କୁର ଜଣାଇ ଦେଇ ସମ୍ପନ୍ନ କରୁ । ସବୁ ଉତ୍ସବରେ ସେହିଁ ଆମର ପହିଲି ବନ୍ଧୁ । ତାଙ୍କ ପାଖକୁ ପ୍ରଥମେ ନିମନ୍ତ୍ରଣ ଚିଟାଉ ଯାଏ । ତାଙ୍କ ପାଖକୁ ଆଗ ଭାଗଭୋଗ ପଠାଯାଏ । ଆମର ବିଶ୍ୱାସ, ସର୍ବ ସମ୍ପଦ ବିପଦରେ ସେହିଁ ଆମର ବନ୍ଧୁ ବିଶ୍ୱସ୍ତ ନିଭା କରନ୍ତି । ସେହିଁ କର୍ତ୍ତା ! ଆମେ ତାଙ୍କର କରଣ ।

ଜଗବନ୍ଧୁ ପରି ବନ୍ଧୁ ଆଉ ଅଛିକିରେ ?
ଦୀନବନ୍ଧୁ ପରି ବନ୍ଧୁ ଆଉ ଅଛିକିରେ ?
ସେ ଦୟାସାଗର ହରି-ହରିପାରେ ଦୁଃଖୀ ଭାରି
ଭକତି ମୁକତି ଦିଏ ଯାଚିକିରେ !
... ଜଗବନ୍ଧୁ ପରି ବନ୍ଧୁ ନାହିଁ ଜଗତେ ଜଣେ
ବନ୍ଧୁ କୁଶଳରେ ତାହାର କୁଶଳ ସବୁରି ହୃଦୟ ବାରତା ଜାଣେ ।
..ଜଗବନ୍ଧୁ ପରି ବନ୍ଧୁ ପାଶେ ଥାଉ ହାକର:
କାହାକୁ ଡରରେ ଭାଇ କହ ଆମର ?

ଆଜି ଅବଶ୍ୟ ଜଗନ୍ନାଥେ ଆମର ସାରାଜଗତର ନାଥ ହୋଇ ପ୍ରତିଷ୍ଠା ପାଇଲେଣି । ଆଜି ଭାରତର ସବୁ ବଡ଼ ବଡ଼ ନଗରରେ ଜଗନ୍ନାଥେ ବଇଠାମାଡ଼ି ବସିଛନ୍ତି । ଦିଲ୍ଲୀ, କଲିକତା, ମାଡ୍ରାସ, ବମ୍ବେ, ଅହମ୍ମଦାବାଦ ଜଗନ୍ନାଥେ ସାରା ଭାରତକୁ ଆବୋରି ବସିଛନ୍ତି । ସେମିତି ଲଣ୍ଡନ, ପାରିସ, ଜାପାନ, ସାନଫ୍ରାନସିସ୍କୋ-ସାରାବିଶ୍ୱକୁ ଜଗବନ୍ଧୁ କୋଳେଇ ଧରିଲେଣି । ଆଜି ମଧ ଶ୍ରୀଜଗନ୍ନାଥେ ସାରା ବିଶ୍ୱରେ ସର୍ବାଧିକ ପୂଜ୍ୟଦେବତା । ଯାହା ଜଣାଯାଉଛି ଭବିଷ୍ୟତରେ -ଏହି କ୍ଷର ଅକ୍ଷର ଓ କ୍ଷରାକ୍ଷର ବହିର୍ଭୂତ ମହାନ୍ ପୁରୁଷୋତ୍ତମ ତତ୍ତ୍ୱ ଓ ତତ୍ତ୍ୱ ଉପରେ ପ୍ରତିଷ୍ଠିତ ଏବଂ ସାମ୍ୟ, ମୈତ୍ରୀ, ପ୍ରୀତି, ସତ୍ୟ, ତ୍ୟାଗ, ସେବା, ଆତିଥେୟତା ଓ ସଂହତି ସମନ୍ୱୟର ମହାମହା ଭାବମାନଙ୍କର ଐଶ୍ୱର୍ଯ୍ୟବନ୍ତ ଓ ରହସ୍ୟମୟ ବ୍ରହ୍ମ ସ୍ୱରୂପ ଏହି ଦାରୁ ବିଗ୍ରହଙ୍କର ପୂଜା, ଆରାଧନା ଓ ଉପାସନା ସାରାବିଶ୍ୱରେ ଅଧିକରୁ ଅଧିକ ପ୍ରସାରିତ ହେବ । ଜଗନ୍ନାଥଙ୍କର ଏହି ପରମ ରହସ୍ୟମୟ ଦାରୁମୂର୍ତ୍ତିକୁ ଦେଖିବା ମାତ୍ରେ, ସାରାବିଶ୍ୱର ମଣିଷମାନଙ୍କ ଅନ୍ତର୍ଦର୍ଶନରେ ସେହି ସନାତନ ବେଦବାଣୀ ଲହରିତ ହୋଇଉଠିବ-

ହେ ଦୁର୍ଜ୍ଜନ ! ହେ ଦୁଃଖୀ ମଣିଷ ! ଅତଳ ଅଥଳ ଅସୀମ ଏଇ ଭବସମୁଦ୍ର ଭିତରେ ଉତ୍ତାଳ ତରଙ୍ଗ ଉପରେ ଭାସି ଚାଲିଛି ଏଇ ଯେଉଁ

ଅନୁପମ ଅପୂର୍ବ ଦାରୁବ୍ରହ୍ମ: ତାଙ୍କୁ ହିଁ ଆଶ୍ରୟ କରି ତୁ ଏ ଭବସମୁଦ୍ରକୁ ପାର ହୋଇ ଆରପଟକୁ ଚାଲିଯା । ସାଗରର ଅପରପାର୍ଶ୍ୱରେ ପହଞ୍ଚି ତୁ ଦେଖିବୁ, ଦାରୁବୋଲି ମନେକରି ତୁ ପରମ ବିଶ୍ୱାସରେ ଯାହାକୁ ଆଶ୍ରୟକରି ଏ ଭୟଙ୍କର ସମୁଦ୍ର ପାରି ହୋଇ ଆସିଲୁ-ସେ ସାମାନ୍ୟ କାଷ୍ଠ ଖଣ୍ଡିଏ ମାତ୍ର ନୁହେଁ । ସେହିଁ ସାକ୍ଷାତ ଦାରୁବ୍ରହ୍ମ-ଜଡ଼ୀଭୂତ କିନ୍ତୁ ପ୍ରାଣମୟ ପଦ୍ମୋତ୍ତରଦାୟୀ ପରମ ଚେତନା-ଲୋକ ଓ ଲୋକୋତ୍ତରର ପୁରୁଷୋତ୍ତମ ।

ତେବେ ଏକଥା ନିଶ୍ଚିତ ଯେ ଶ୍ରୀ ଜଗନ୍ନାଥ ଆମର ଏହି ପୂତ ପୁଣ୍ୟଭୂମି ଓଡ଼ିଶାକୁ ଛାଡ଼ି, ଓଡ଼ିଆଙ୍କର ଭାବମେଦୁରିତ କୃତଜ୍ଞତାକୁ ଅସ୍ୱୀକାର କରି ଆଉ କୁଆଡ଼େ ଚାଲିଯିବେ ନାହିଁ । ଶ୍ରୀ ଜଗନ୍ନାଥେ ଆମକୁ ଦୃଢ଼ ପ୍ରତିଶ୍ରୁତି ଦେଇଛନ୍ତି - ମୋର ମନ୍ଦିର ଥାଉ କି ନଥାଉ, ଅଥବା ମୋର ଏହି ବିଗ୍ରହ ଥାଉ କି ନଥାଉ-ମୋ ପାଖରେ ଛପନପଉଟି ଭୋଗନୈବେଦ୍ୟ ଲାଗି ହେଉ କି ନହେଉ-ମୋ ନିକଟରେ  ଛତିଶି ପାଟକ ସେବାକାରୀ ସେବା କରନ୍ତୁ କି ନକରନ୍ତୁ-ମୋ ପାଇଁ ବାରମାସରେ ତେରପର୍ବ ଅନୁଷ୍ଠାନ ହେଉ କି ନହେଉ-ସାରା ଓଡ଼ିଶାରେ ଦିଅର ମହାନ୍ତି କି ବନ୍ଧୁ ମହାନ୍ତି ଭଳି-ଦଇତା ବାଉରୀ କି ଯବନ ସାଲବେଗ ଭଳି-ଜଗନ୍ନାଥ ଦାସ କି ବଳରାମ ଦାସ ଭଳି ଜଣେ ଅଧେ ମାତ୍ର ଭକ୍ତ ଥିବା ପର୍ଯ୍ୟନ୍ତ-ଜଣେ ମାତ୍ର ପ୍ରେମୀ କି ଆର୍ତ୍ତ ହୃଦୟରୁ ଜଗବନ୍ଧୁ ଡ଼ାକ ଶୁଣିବା ପର୍ଯ୍ୟନ୍ତ ମୁଁ କଦାପିନ ଏହି ନୀଳାଚଳ ଶ୍ରୀକ୍ଷେତ୍ର ଛାଡ଼ି ମୁହୂର୍ତ୍ତେ ପାଇଁ ହେଲେ ବି କେଉଁଆଡ଼େ ଯିବି ନାହିଁ-ଯିବି ନାହିଁ-ଯିବିନାହିଁ  ।

ଆମର ପ୍ରଭୁ, ଆମର ବନ୍ଧୁ ଆମକୁ ଏହି ପ୍ରତିଶ୍ରୁତି ଦେଇଛନ୍ତି । ତିନିବାର ସତ୍ୟ କରିଛନ୍ତି । ଓଡ଼ିଆଙ୍କର ମହାଭାଗ୍ୟ । ସାରା ବିଶ୍ୱର ଜଗନ୍ନାଥପ୍ରେମୀମାନେ ଜାଣି ରଖନ୍ତୁ-ସୂର୍ଯ୍ୟ ପଶ୍ଚିମରେ ଉଦୟ ହୋଇ ପାରନ୍ତି- ଅଗ୍ନି ତାର ଦାହିକା ଶକ୍ତି ହରାଇ ପାରେ-ପର୍ବତମାନେ ଆକାଶରେ ଉଡ଼ି ପାରନ୍ତି-ଜଳସ୍ରୋତ ଊର୍ଦ୍ଧ୍ୱମୁଖୀ ବହିପାରେ -ଆକାଶ ବାୟୁଶୂନ୍ୟ ହୋଇପାରେ-ମାତ୍ର ଓଡ଼ିଆ ଜାତି ତାଙ୍କ ଜଗନ୍ନାଥଙ୍କୁ ମୁହୂର୍ତ୍ତେ ପାଇଁ ମଧ ଛାଡ଼ିବ ନାହିଁ କି ଜଗନ୍ନାଥେ  ବି ଓଡ଼ିଆଙ୍କୁ ନିମିଷେ ପାଇଁ ଛାଡ଼ିବେ ନାହିଁ । ଜଗନ୍ନାଥ ଓଡ଼ିଆଙ୍କ ପ୍ରାଣର ପ୍ରାଣ-ଦେହର ଦେହ-ମନର ମନ ଓ ଆତ୍ମାର ଆତ୍ମା ପରମାତ୍ମା । ଓଡ଼ିଆଙ୍କ ହୃଦୟ-ରାଜ୍ୟରେ ସେହିଁ ଏକମାତ୍ର ଅଧୀଶ୍ୱର-ଗତି, ମୁକ୍ତି,ଭକ୍ତି ଓ ଭୁକ୍ତିର ଦାତା ଓ ଧାତା । ସବୁ ଧନର ଆକର ସେ -ସର୍ବ ପ୍ରାପ୍ତିର ପ୍ରାପ୍ତି । ସବୁ ସାଧନାର ସାଧ । ସେ-ସବୁ ତପସ୍ୟାର ସିଦ୍ଧି । ଓଡ଼ିଆ ଜାତିର କ୍ଷେତ୍ର ସେଇ ପୁରୁଷୋତ୍ତମ-ପୁରୀ କ୍ଷେତ୍ରର ବି ସେଇ ପୁରୁଷୋତ୍ତମ । ଉତ୍କଳର ସାର୍ବଭୌମ ସମ୍ରାଟ ସେଇ-ଭାଗ୍ୟବିଧାତା ସେଇ- ଜନଗଣମନ ଅଧିନାୟକ ମଧ ସେହିଁ । ସେଥିପାଇଁ ତ-

ଉତ୍କଳେ ନେତାର ନାହିଁ ପ୍ରୟୋଜନ
ଉତ୍କଳର ନେତା ନିଜେ ନାରାୟଣ
ସେ କାଳୁ ଉତ୍କଳ ରାଜା ସ୍ୱୟଂ ଜଗନ୍ନାଥ
ଦଣ୍ଡବର୍ଣ୍ଣେ ଚତୁର୍ବର୍ଗ ଦେବାକୁ ସମର୍ଥ ହେ
ଉଚ୍ଚ ପ୍ରାସାଦ ଉଚ୍ଚ ପତାକା ଉଡ଼ାଇ
ଏ ପ୍ରଦେଶେ ସମଦର୍ଶୀ ପରେ କେହି ନାହିଁ ହେ

ଶ୍ରୀମହାପ୍ରସାଦ ଗନ୍ଧ, ପଦ ଘଣ୍ଟା ଘୋଷ
ଭକ୍ଷଣେ ଶ୍ରବଣେ ଯେ କିଲ୍‌ବିଷ-ବିଷ ନାଶ ହରେ ।

ଓଡ଼ିଆ ଜାତିର ସୁଦିନର ବନ୍ଧୁ ଜଗନ୍ନାଥ-ପୁଣି ଦୁର୍ଦ୍ଦିନର ବନ୍ଧୁ ମଧ ସେହି ଜଗନ୍ନାଥ । ଓଡ଼ିଆ ଜାତିର ପ୍ରତ୍ୟୟ ସେଇ ଜଗନ୍ନାଥ । ପ୍ରତୀତୀ ହେଉଛନ୍ତି ମଧ ସେହି ଜଗନ୍ନାଥ । ସେଇଥିପାଇଁ ଜଗନ୍ନାଥ'ଙ୍କଦର୍ଶନରେ ପୁରୀ ଅଭିମୁଖୀ ଓଡ଼ିଆ ଯାତ୍ରୀମାନେ ଦଳ ଦଳ ହୋଇ ଖାଲିପାଦରେ ଚାଲିଚାଲି ଗଲାବେଳେ ଦୁଇକୋଶ ବାଟ ଦୂରରୁ ସମାଗରା ପାଟର ଆରପଟେ ବିସ୍ତୃତ ଦିଗ୍‌ବଳୟକୁ ମହିମାନ୍ୱିତ କରି ଆକାଶକୁ ଭେଦି ରହିଥିବା ସେଇ ଗରିମାମୟ ବଡ଼ଦେଉଳଟି ଯେତେବେଳେ ସେମାନଙ୍କ ଦୃଷ୍ଟିଗୋଚର ହୁଏ ଏବଂ ସେଇ ଦେଉଳର ନୀଳଚକ୍ର ଉପରେ ଅହୋରାତ୍ର ଅନୁକୂଳେ ସୈନ୍ଧବ-ପବନରେ ଆନ୍ଦୋଳିତ ହୋଇ ଫର ଫର ହୋଇ ଉଡୁଥିବା ଉଡ୍ଡୀୟମାନ ପତିତପାବନ ବାନା ଯେତେବେଳେ ସେମାନଙ୍କ ଆଖିରେ ପଡ଼ିଯାଏ-ସେତେବେଳେ ସେମାନଙ୍କ ଦେହ ପ୍ରାଣ ଓ ମନକୁ ଆନନ୍ଦ ହିଲ୍ଲୋଳିତ କରି ସମ୍ମିଳିତ ସ୍ୱରରେ ଉଚ୍ଚାରିତ ହୋଇ ଉଠେ-

ନୀଳଚକ୍ରେ ହୋ ଦେଖ ଉଡୁଛି ବାନା,
ପତିତପାବନ ନାମଟି ଯା ନାଁ ।
ଆସ ଆସ ବୋଲି ପାତକୀମାନଙ୍କୁ
ଡ଼ାକୁଅଛି ପରା ଉଙ୍ଗାଇ ଅନା !
ନେତ ଧ୍ୱଜାବର ଉଡ଼ି ଫର ଫର
ଉଡ଼ାଇ ନେଉଛି ଭବ-ଯାତନା ।
ନୀଳଚକ୍ରେ ହୋ ! ଦେଖ ଉଡୁଛି ବାନା !

ଏ ବାନା ଉଡୁଛି ମାନେ ନୀଳାଦ୍ରିନାଥ ଶରଣ ପଶର ମହାପ୍ରଭୁ ଶ୍ରୀଜଗନ୍ନାଥେ ଶ୍ରୀମନ୍ଦିରରେ ରହିଛନ୍ତି । ଏହି ବାନା ହେଲା ବଳୀଆରଭୁଜ ମହାପ୍ରଭୁଙ୍କର ଶ୍ରୀହସ୍ତ । ସେହି  ହାତହଲାଇ ସେ ଦୁର୍ବଳ ବନ୍ଧୁମାନଙ୍କୁ, ଭକ୍ତମାନଙ୍କୁ,ପାପୀମାନଙ୍କୁ, ଦୁଃଖୀମାନଙ୍କୁ ପାଖକୁ ଡ଼ାକୁଛନ୍ତି ପରମ ଅଭୟ ଦେଇ,  ଆସ ଆସ ! ସମସ୍ତେ ମୋ ପାଖକୁ ଆସ । ସବୁ ଛାଡ଼ି ମୋ ପାଖକୁ ଚାଲି ଆସ । ଧର୍ମାଧର୍ମ ଭୁଲିଯାଇ ମୋ ପାଖକୁ ଚାଲିଆସ । ମୋରି ଉପରେ ଏକାନ୍ତ ବିଶ୍ୱାସ, ଏକାନ୍ତ ନିର୍ଭର ରଖ । ମୁଁ ତୁମକୁ ସବୁ ଦୁଃଖ ବିପଦ ଦୁରାଶ୍ରୟରୁ ରକ୍ଷା କରିବି । ସବୁ ପାପତାପରୁ ମୁଁ ତୁମକୁ ମୁକ୍ତି ଦେବି ।

"ପତାକା ଅଟଳ ଚଞ୍ଚଳ ଡ଼ାକେ ପାପୀଙ୍କି ଅବା ।
ଏ ନୀଳନଗ ନଗରକୁ ଆସ ପାରି କରିବା ।"
ଶଙ୍ଖ ଚକ୍ର ଗଦାପଦ୍ମ ମହାପ୍ରଭୁ ଧରିଛନ୍ତି ଆଶ୍ୱ କରି
ଦୁଃସହ ଦୁର୍ଗତି ଗ୍ରହ ପାତ୍ରୀମାନେ ଆଉକି ପଶିବେ ଡ଼ରି ?
ସେ ଯେ ଦୟା ସାଗର
ତାଙ୍କ ପଦ୍ମପାଦେ ଲୟ କର ।

ନୀଳଚକ୍ରରେ ଏହି ବାନା ଉଡୁଥିବା ଯାଏ-ମାଭୈଃ, ମାଭୈଃ, ମାଭୈଃ । ନିତ୍ୟ ସୈନ୍ଧବ ପବନରେ ହିଲ୍ଲୋଳିତ ଅହରହ ଉଡ୍ଡୀୟମାନ

ଏହି ବିଭୁ-ମହିମା-ପ୍ରଖ୍ୟାପକ ଆତଙ୍କନାଶନ ପତିତପାବନ ବାନା ସତେକି ଆମକୁ ପ୍ରତି ମୁହୂର୍ତ୍ତରେ ପ୍ରତ୍ୟୟ ଦେଇ ଆସୁଛି-

"ଓରେ ମୂଢ଼ ! ତୋଲୋ ତୋଲୋ ଶିର
ତୁମି ଅଛ, ଆମି ଅଛି, ସତ୍ୟ ଆଛେ ସ୍ଥିର ।"

ପିଣ୍ଡ ବ୍ରହ୍ମାଣ୍ଡ ଦର୍ଶନରେ ନିର୍ଜିତ ଓଡ଼ିଆ ଜାତି ଏ ଦେଉଳ, ଏ ଠାକୁର ଆଉ ଏ ବାନାକୁ କେବଳ ବାହ୍ୟ ଜଗତରେ ଦେଖି ନାହିଁ-ତାର ଅନ୍ତର ଜଗତରେ ବି ଦେଖିଛି । ନୀଳାଚଳପୁର ହେଲା ସହସ୍ରାର ଭିତରେ ଥିବା ସମୁଜ୍ଜ୍ୱଳ ଜ୍ୟୋତିର୍ମୟ ଭୂମି । ତାରି ଭିତରେ ରହିଛି ମଣିମୟ ରତ୍ନ- ମଣ୍ଡପ ଓ ତହିଁ ସମାସୀନ ଚତୁର୍ଦ୍ଧା-ମୂର୍ତ୍ତି ପୁରୁଷ, ପ୍ରକୃତି, ମହାକାଳ ଆଉ ସୃଷ୍ଟି ଚକ୍ର । ଜ୍ୟୋତିର୍ମୟ ଭୂମିର ଶିଖର ଦେଶରେ ଉଡୁଛି ମୁକ୍ତି ବା ମୋକ୍ଷ ବା ସିଦ୍ଧିର ପତାକା । ଅନ୍ତର୍ଦ୍ଦୃଷ୍ଟି ଖୋଲିଗଲେ, କୁଣ୍ଡଳିନୀ ଜାଗ୍ରତ ହୋଇଗଲେ, ଷଡ଼ଚକ୍ର ଭେଦି ଗଲେ ଉଜାଣି ନିଃଶ୍ୱାସ ବୁହାଇ ପାରିଲେ, ସେ ଦୃଶ୍ୟ ସେ ବାନା ପ୍ରତ୍ୟକ୍ଷ ହେବ ।

ଦେଖ, ଉଡୁଛିରେ ନୀଳାଚଳ ପୁରେ ବାନା....
ନୀଳାଚଳପୁରେ ବାନା ଉଡୁଛିରେ..
ନୀଳଚକ୍ରେ ହୋ ! ଦେଖ ଉଡୁଛି ବାନା !
ପତିତ ଜନଙ୍କୁ ଉଦ୍ଧାରିବା ପାଇଁ ଉଡ଼ାଇ ଅଛ ପତାକା...
ପତିତପାବନ ବାନା ଉଡ଼େ ଫରଫର ଅନା
ଉଡ଼େ ଫର ଫର ।
ଆକାଶେ ଲାଗିଛି ତା ମାଥ ।
ବଡ଼ ଦେଉଳେ ବିଜେ ଜଗନ୍ନାଥ ।

ନୀଳଚକ୍ରରେ ବାନା ଉଡୁଛି ହେ ଭାଇନା ! ଦେଖ, ଦେଖ, ଦାଦି ! ଚାହଁ ଚାହଁ, ନୀଳଚକ୍ରରେ କେମିତି ବାନା ଉଡୁଛି !
ଆରେ ପୁଅ ! ନୀଳଚକ୍ରକୁ ଅନା-ଉଡୁଛି ବାନା ।
ନାନୀ ଦେଖ୍ ଲୋ । ନୀଳଚକ୍ରରେ କେତେବଡ଼ ବାନା ଉଡୁଛି !
ସଖୀ ଦେଖ ଗୋ !ନୀଳଚକ୍ରେ ଉଡୁଅଛି ବାନା ।

ଗୋସେଇଁ ! ଉପରକୁ ଚାହିଁଲେ ବାନା ଉଡୁଛି ନୀଳଚକ୍ରରେ ପୁଣି ଭିତରକୁ ଅନେଇଲେ ବି ସେମିତି ବାନା ଉଡୁଛି ।

ନୀଳଚକ୍ରରେ-ବାନା ଉଡୁଛି- ସ୍ୱର୍ଗରେ, ମର୍ତ୍ତ୍ୟରେ, ପାତାଳରେ । ବାନା ଉଡୁଛି ପୁଣି ମନରେ, ହୃଦୟରେ, ଆତ୍ମାରେ । ସେଇ ବାନକୁ ଲୟ କରିଥାଅ ଜଗତେ ! ସେଇ ବାନା ଉପରେ ଭରସା ରହୁଥାଉ !

ହେ ଜଗନ୍ନାଥ ! ତୁମ ଦେଉଳର ନୀଳଚକ୍ର ଉପରେ ଏ ବାନା ଏମିତି ଉଡୁଥାଉ-ଉଡୁଥାଉ । ତୁମ ବାନାର ଟେକ ରହିଥାଉ ଅନନ୍ତ କାଳ ଯାଏ ମହାପ୍ରଭୁ ! ତୁମ ବାନା ଟେକ ରହୁ ।

*୮/୮ ବୀ,ଶହୀଦ ନଗର, ଭୁବନେଶ୍ୱର -୭*

# ଶ୍ରୀଜଗନ୍ନାଥ : ଏ ତ ସଭିଙ୍କ ନାଥ



● ଶ୍ରୀ ରାଜକିଶୋର ମିଶ୍ର

ନୀଳାଚଳ-ଶ୍ରୀକ୍ଷେତ୍ର-ପୁରୀର ଅଧିଦେବତା ଶ୍ରୀ ଜଗନ୍ନାଥ ସମସ୍ତଙ୍କୁ ଆକୃଷ୍ଟ କରି ରଖିଛନ୍ତି ଯୁଗ ଯୁଗ ଧରି । ଓଡ଼ିଶା ରାଜ୍ୟର ସେ ପ୍ରାଣକେନ୍ଦ୍ର, ଧର୍ମିକ ବିଶ୍ୱାସର ମୂଳ ଉତ୍ସ । ଆର୍ଥିକ-ସାମାଜିକ ତଥା ରାଜନୈତିକ ଘଟଣା ପ୍ରବାହର ସେ ଅନ୍ୟତମ ନାୟକ । ଶ୍ରୀଜଗନ୍ନାଥ-ଚେତନାର ଐତିହାସିକ ଅଭିବ୍ୟକ୍ତିର ବିଜ୍ଞାନ ସମ୍ମତ ଆକଳନରେ ଗବେଷକମାନେ ବିଭ୍ରାନ୍ତ ହୋଇଛନ୍ତି । ସେ ବେଦାତୀତ, ବେଦମାନେ ତାଙ୍କୁ ସ୍ପର୍ଶ କରିପାରି ନାହାନ୍ତି । ସମଗ୍ର ହିନ୍ଦୁ ଦର୍ଶନ ତାଙ୍କୁ ଆକଳନ କରିବା ପାଇଁ ଅସମର୍ଥ । ଭକ୍ତମାନଙ୍କର ଅମାପ ବିଶ୍ୱାସ, ଅହେତୁକ ନିର୍ଭରଶୀଳତା ଓ ଅତୁଟ ଆସ୍ଥା ତାଙ୍କୁ ଯୁଗେ ଯୁଗେ ରାଷ୍ଟ୍ର ଦେବତାର ମାନ୍ୟତା ଦେଇ ଆସିଛି ।

ବନବାସୀ ଶବର- ଆଦିବାସୀ ସଂପ୍ରଦାୟର ଅତି ଆପଣାର 'କିଟୁଂ' ଭାବରେ ସେ ପୂଜିତ ହେଉଥିବା କଥା ଐତିହାସିକମାନେ ସାକ୍ଷ୍ୟ ଦିଅନ୍ତି । ପୂର୍ବଘାଟ ପର୍ବତମାଳାର ମହେନ୍ଦ୍ରଗିରିର ଉତ୍ତୁଙ୍ଗ ଶିଖରରେ ବିରାଟ ପ୍ରସ୍ତର ଗାତ୍ରରେ ଉତ୍କୀର୍ଣ୍ଣ 'ଦାରୁବ୍ରହ୍ମ' ଆଲେଖ୍ୟରୁ ଆରମ୍ଭ କରି ସତ୍ୟନାରାୟଣ, ବୃକ୍ଷପୂଜା, ଶିଳାବ୍ରହ୍ମପୂଜା, ନୀଳମାଧବ ଆରାଧନା, ଫୁଲବାଣୀର କୁଆଗାଁ ପଞ୍ଚାୟତ ସୀମିତ ଅନ୍ତର୍ଗତ ବାଣେଡ଼ି ପଲ୍ଲୀରେ ଗଣ୍ଡମାନଙ୍କ ଦ୍ୱାରା ଅନୁଷ୍ଠିତ ହେଉଥିବା କଣ୍ଟେଇ ଯାତ୍ରା, କୋରାପୁଟର ଶାବର ଶ୍ରୀକ୍ଷେତ୍ରରେ ଆଦିବାସୀମାନଙ୍କର ଅନୁପମ ଭୂମିକାକୁ ଲକ୍ଷ୍ୟ କଲେ ହଜିଯାଇଥିବା କେଉଁ ଦୂରର ଅତୀତରେ ବର୍ତ୍ତମାନ ପୂଜିତ ଓ ବିଜ୍ଞାପିତ ପୁରୁଷୋତ୍ତମ-ଜଗନ୍ନାଥ ଯେ ଉତ୍କଳବାସୀଙ୍କର ହୃଦୟ କନ୍ଦରରେ ଆସୀନ ହୋଇଥିଲେ, ଏଥିରେ କୌଣସି ସନ୍ଦେହ ନାହିଁ ।

ଓଡ଼ିଶାର ଆଦିବାସୀ ଓ ଅଧିବାସୀମାନଙ୍କ ମଧ୍ୟରେ ଥିବା ସାଂସ୍କୃତିକ ତଥା ସାମାଜିକ ପାର୍ଥକ୍ୟ ସାମଗ୍ରିକ ଭାବରେ ଆମର ଧର୍ମ-ଧାରଣାକୁ ପ୍ରଭାବିତ କରିଛି । ଅଧିବାସୀମାନେ ଆର୍ଯ୍ୟ ସଂସ୍କୃତିର ପ୍ରାଞ୍ଜଳ ଦାୟାଦଭାବରେ ବେଦ, ଉପନିଷଦ, ବ୍ରାହ୍ମଣ, ସଂହିତା, ପୁରାଣ, ତନ୍ତ୍ର ଓ ଯୋଗାଚାର ଭିତରେ ଶ୍ରୀଜଗନ୍ନାଥଙ୍କୁ ଖୋଜି ଚାଲିଛନ୍ତି । ରାଜଶକ୍ତି, ଜାଗତିକ ସମ୍ପଦ ଓ କ୍ଷମତା କାଳକ୍ରମେ ସେମାନଙ୍କର ସହାୟକ ହୋଇଛି ଓ କ୍ରମ- ବିବର୍ତ୍ତନ ଶୈଳୀରେ ଆର୍ଯ୍ୟମାନଙ୍କର ଜୀବନଦର୍ଶନ, ରୁଚି ଓ ଆଧ୍ୟାତ୍ମିକ ବିଶ୍ୱାସ ଅଧିକ ଘନନିବିଡ଼ ହୋଇପାରିଛି । କୃଷି ଓ କୃଷିର ବିକାଶ ପାଇଁ ବଣଜଙ୍ଗଲ କ୍ରମଶଃ ସଙ୍କୁଚିତ ହେବାର ଯେଉଁ ନିଷ୍ଠୁର ଆବଶ୍ୟକତା ଆମେ ଲକ୍ଷ୍ୟ କରୁଛେ, ସେହିଭଳି ଶବର ବା ଆରଣ୍ୟ ସଭ୍ୟତା ଅହେତୁକ ଭାବରେ କ୍ରମଶଃ ଅପସାରିତ ହୋଇଚାଲିଛି ।

'ମନ୍ତ୍ରାଧୀନାଃ ଦେବତାଃ', ସତରେ କ'ଣ ମନର ଦେବତା ମନ୍ତ୍ରର ଅଧୀନ ? ଯେଉଁ ଲକ୍ଷ ଲକ୍ଷ ନରନାରୀ ଚକାଆଖିଆ ଜଗନ୍ନାଥଙ୍କର ଚକାଆଖିରେ ଆଖି ମିଳାଇ ଅପଲକ ନେତ୍ରରେ ଚାହିଁ ରହନ୍ତି, କି ମନ୍ତ୍ର ବୋଲନ୍ତି ସେମାନେ ? ହାତଗୋଡ଼ ନଥିବା କାଠ କଣ୍ଢେଇ (ସଚ୍ଚିଦାନନ୍ଦ ପୁରୁଷୋତ୍ତମଙ୍କର ଲୀଳାବପୁକୁ ଭକ୍ତମାନେ ମଧୁର-ବିଦ୍ରୂପରେ, ତନ୍ମୟତାରେ ଚିର ଅନ୍ତର ଭିତରକୁ ଟାଣି ଆଣନ୍ତି । ରତ୍ନସିଂହାସନରୁ ସବୁରି ଅଲକ୍ଷ୍ୟରେ ପ୍ରଭୁ ନୀରବ ପଦକ୍ଷେପରେ ବିଜେ କରିଆସନ୍ତି ଆତୁର ଭକ୍ତର ହୃଦୟ-ରଥକୁ ।

ପ୍ରଶ୍ନ ଉଠେ, ଏହି ଦେବତା କ'ଣ ସେଇ ଦାରୁବ୍ରହ୍ମ ଉଡ଼ବ, ଯେ ପୂର୍ବସାଗର କୂଳରେ ଚାରି ଶାଖା ମେଲି ବାଙ୍କିମୁହାଣରେ ଭାସି ଉଠିଥିଲେ ? ମହାଭାରତ ଯୁଦ୍ଧର ଅଘଟନଘଟନ ପଟୀୟସୀ ଶ୍ରୀକୃଷ୍ଣଙ୍କର ଲୀଳାଶରୀରର ଏ କ'ଣ ଅଦାହ୍ୟ କଟୀ- ଅସ୍ଥି ବିଶେଷ ? ଏ କ'ଣ ଜ୍ଞାନସିଦ୍ଧ ବୁଦ୍ଧ ? ଉଜ୍ଜ୍ୱଳ ନୀଳକାନ୍ତ ମଣି ? ଚତୁର୍ଭୁଜ ନୀଳମାଧବ ? ଗଣପତି ବ୍ରହ୍ମ ? ମର୍ଯ୍ୟାଦାପୁରୁଷୋତ୍ତମ ଶ୍ରୀରାମ ? ଅର୍ଦ୍ଧନାରୀଶ୍ୱର ? ଆଦ୍ୟ ଭୈରବ ? ଦକ୍ଷିଣକାଳିକା ? ମହାବ୍ୟାହୃତି ପ୍ରଣବ ?

ପ୍ରଶ୍ନ ଜାଲରେ ଛନ୍ଦି ହୋଇ ଅଧିକ ଭାରାକ୍ରାନ୍ତ ହୋଇ ଉଠୁଥିବା ପତିତପାବନ ଥରେ ଥରେ ଭକ୍ତମାନଙ୍କୁ ଲାଗେ, ପ୍ରଭୁ କ୍ରମଶଃ ନିଃସହାୟ ହୋଇ ପଡୁଛନ୍ତି ବୋଲି । ନିଷ୍ପଲକ ଆଖିରେ, ଅତୁଟ ଆବେଗରେ ସେ ଭକ୍ତମାନଙ୍କୁ ସାଉଁଟି ନେବାପାଇଁ ହାତ ଦୁଇଟିଙ୍କୁ ଅନନ୍ତ ବିସ୍ତୃତିକୁ ମେଲେଇ ଦେଇ ବସିଛନ୍ତି– ସମସ୍ତଙ୍କ ଆସିବା ବାଟକୁ ସତେ କି ଚାହିଁ ରହିଛନ୍ତି- କାର୍ତ୍ତିକର ରଣାଙ୍ଗନରୁ କୁମାରୀକାର ସଘୋଷ ଊର୍ମିମାଳା ପର୍ଯ୍ୟନ୍ତ ।

ଜାଲିଭଳି ମନେପଡ଼େ ଓ ଦେହରେ ଚମକ ଖେଳିଯାଏ । ସମ୍ବଲପୁରର ରେଳଷ୍ଟେସନ୍‌ରେ ରେଳଗାଡ଼ିର ପ୍ରତୀକ୍ଷାରେ ଥିବା ଛତିଶଗଡ଼ ପ୍ରାନ୍ତର କେତେକ ବୃଦ୍ଧ ଆଦିବାସୀଙ୍କର ମୋ' ପ୍ରତି ଘୃଣା ଓ ଆକ୍ଷେପକୁ । ଏକ ବିରଳ ମୁହୂର୍ତ୍ତରେ ସାମାନ୍ୟ ଆତ୍ମୀୟତା ସ୍ଥାପନ କରି ଜଗନ୍ନାଥଙ୍କ ସନ୍ଦର୍ଭରେ ମୁଁ ଯେତେବେଳେ ଆଳାପ ଆରମ୍ଭ କଲି, ଅତି କ୍ରୁଦ୍ଧ ଓ ଅବଜ୍ଞା ଭଙ୍ଗୀରେ ବୃଦ୍ଧଜଣକ ଧିକ୍କାର କରି ଗର୍ଜି ଉଠିଲେ– " ଆମ ଦେବତାଙ୍କୁ ତମେମାନେ ଖାଇବାକୁ ନଦେଇ ହନ୍ତସନ୍ତ କରିସାରିଲଣି । ଆମ ଗାଁ ମୁଣ୍ଡରେ ତା' ଛବିଟା ଖାଲି ଥାପି ଆମେ ସିନା ତାକୁ ମୁରୁଗା ଦେଉଛୁ... ।"

ଯେଉଁଦିନ ଶାବର ଶ୍ରୀକ୍ଷେତ୍ରରେ ପ୍ରଭୁଙ୍କର ପ୍ରତିଷ୍ଠା ଉତ୍ସବ ଅନୁଷ୍ଠିତ ହୁଏ ଏବଂ ସମସ୍ତ ପ୍ରକାର ବୈଦିକ ତଥା ଆର୍ଯ୍ୟସମ୍ମତ ବିଧିବିଧାନ ସମ୍ପର୍କରେ ଆଲୋଚନା ନିବିଡ଼ ହୋଇଉଠେ, ପାଖରେ ଥିବା କେତେଜଣ ବର୍ଷୀୟାନ ଆଦିବାସୀ ପରସ୍ପର ସହ ଆଳାପରେ ବ୍ୟସ୍ତ । ତାର ସାରମର୍ମ ହେଲା, 'ଜଙ୍ଗଲରେ ଆମେ ଯେତେବେଳେ ଗଛମୂଳେ ଦେବତା ଥାପୁ, କାହିଁ ଏତେ ମନ୍ତ୍ରଯନ୍ତ୍ର ତ ଦରକାର ପଡ଼େ ନି ?" ସେହିଦିନଠାରୁ ଶାବର ଶ୍ରୀକ୍ଷେତ୍ରରେ ଆର୍ଯ୍ୟ ଓ ଶାବର ସଂସ୍କୃତିର ଅପୂର୍ବ ସମନ୍ୱୟରେ ଶ୍ରୀ ବିଗ୍ରହ ପୂଜିତ ହେଉଛନ୍ତି । ମଧ୍ୟେ ମଧ୍ୟେ ଆଦିବାସୀମାନେ ତାଙ୍କ ପରିଚିତ ଓ ଅତ୍ୟନ୍ତ ଆତ୍ମୀୟ ଦେବତା ଜଗବନ୍ଧୁ-ଜଗନ୍ନାଥଙ୍କ ପାଇଁ ଟାଙ୍ଗୁରୀ, ଲାଠି, ଧନୁଶର, ଜାମା ପ୍ରଭୃତି ଉପଢୌକନମାନ ଆଣି ଶାବର ଶ୍ରୀକ୍ଷେତ୍ରରେ ଭେଟି ଦେବାର ଦେଖାଯାଏ । ସେମାନଙ୍କର ବିଶ୍ୱାସ, ପାରସ୍ପରିକ ଆକର୍ଷଣ ଓ ମମତ୍ୱବୋଧ ଏତେ ଗଭୀର ଯେ ଦେଖିଲେ ଆଶ୍ଚର୍ଯ୍ୟ ଲାଗେ ।

ଆଜିକୁ ପ୍ରାୟ ଚାଳିଶ ବର୍ଷ ତଳେ ସାଧକ ମହାପୁରୁଷ ତଥା ଆଦିବାସୀ ନେତା ଶ୍ରୀ ମଙ୍ଗେଇ ଗମାଙ୍ଗ ମରାଦଗୁଡ଼ାର ପାହାଡ଼ରେ ସାଧନା ଆରମ୍ଭ କଲେ । ତାଙ୍କରି ବଂଶର ପୂର୍ବପୁରୁଷ ବିଶ୍ୱାବସୁଙ୍କ ପ୍ରାଣର ଦେବତା ଯେଉଁଭଳି

ହେଲିକି ମୂର୍ତ୍ତି କରି ଅନ୍ତର୍ହିତ ହୋଇଗଲେ, ସେହି କଥାରେ ବାହୁଡ଼ ମଙ୍ଗୋଇ । ଶବରରାଜ ଜରାଙ୍କର ଦାରୁବ୍ରହ୍ମ ଆଜି ପୂଜା । ୧୯୩୬ ମସିହା ଜୁନ୍ ମାସ ୧୬ ତାରିଖ ମଧ୍ୟରାତ୍ରରେ ମାଙ୍ଗୋଇ ସ୍ୱପ୍ନାଦିଷ୍ଟ ହେଲେ "ମୁଁ ପୁଣି ଫେରି ଆସିଛି ମାଡାରତ୍ନମ୍' ରୂପରେ ମୁଁ ଅକ୍ଷରବ୍ରହ୍ମ । ଯଥୋପଦିଷ୍ଟ ହୋଇ ମାଙ୍ଗୋଇ ୨୪ଟି ଅକ୍ଷର (୧୮ ଟି ବ୍ୟଞ୍ଜନ ଓ ୬ଟି ସ୍ୱରବର୍ଣ୍ଣ) ଏବଂ ୯ଟି ସଂଖ୍ୟା ସୃଷ୍ଟି କଲେ ଓ ଏ ସମସ୍ତ ପ୍ରଣବ ଓଁକାର ମଧ୍ୟରେ ବିନ୍ୟସ୍ତ ହୋଇ ରହିଲେ, ଯାହାକି ପ୍ରତ୍ୟେକ ଶବରଙ୍କର ଏହା ଏବେ ଏକାନ୍ତ ଧ୍ୟେୟ । ପ୍ରତି ଅକ୍ଷୟ ତୃତୀୟା (ଶ୍ରୀକ୍ଷେତ୍ରରେ ରଥନିର୍ମାଣ ଅନୁକୂଳ ଦିନ) ମାଡାରତ୍ନମ୍ ବା ଅକ୍ଷରବ୍ରହ୍ମଙ୍କର ପୂଜାର୍ଚ୍ଚନା ବନବାସୀମାନେ ଓଡ଼ିଶାର ବିଭିନ୍ନ ସ୍ଥାନରେ କରିଆସୁଛନ୍ତି ।

ହଜାର ବର୍ଷରୁ ଅଧିକ ହେବ ଶବରପୂଜିତ ଦେବତା ପ୍ରଥମେ ପୁରୁଷୋତ୍ତମ ଓ ପରେ ଶ୍ରୀଜଗନ୍ନାଥ ରୂପରେ ପୂଜା ପାଇଲେଣି । ଆର୍ଯ୍ୟ ସଂସ୍କରଣରେ ସେ କେତେ ଯୁଗ ବିତେଇଲେଣି । ଗୁଣ୍ଡିଚା ମଣ୍ଡପରେ ଜ୍ୟେଷ୍ଠପୂର୍ଣ୍ଣିମାରେ ରାଣୀ ଗୁଣ୍ଡିଚା ଓ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କର ବର୍ତ୍ତମାନତାରେ ସେ ପ୍ରତିଭାତ ହେଲେ ଓ ପରେ ନୀଳଶୈଳର କଳ୍ପବଟ ସନ୍ନିକଟବର୍ତ୍ତୀ ଅପେକ୍ଷା ଭୂମିରେ ରତ୍ନସିଂହାସନରେ ବିଜେ ହେଲେ । ଦ୍ୱାଦଶ ଶତାବ୍ଦୀର ମଧ୍ୟଭାଗରେ ଗଙ୍ଗ ରାଜାଙ୍କ ମନ୍ଦିରରେ ବିଜେ କରିବା ପୂର୍ବରୁ ମହୋଦଧି କୂଳରେ ସେ ବିଜେ ଥିଲେ ବୋଲି କେତେକ କହନ୍ତି । ବର୍ତ୍ତମାନ ଉଭା ହୋଇଥିବା ମନ୍ଦିର କୁଆଡ଼େ ଅନେକ ଛୋଟଥିଲା, ସମୟ କ୍ରମେ ବାଲିରେ ସେ ଦେଉଳ ପୋତି ହୋଇଗଲା । ଜୀର୍ଣ୍ଣ ହୋଇଯିବାରୁ ଏବର ମନ୍ଦିର ସେହି ଯାଗାରେ ପୁଣି ଥରେ ଗଢ଼ାହେଲା ।

ଏହି ଅଦ୍ଭୁତ ଦିଅଁଙ୍କୁ ଦେଖିବାକୁ ଦକ୍ଷିଣରୁ ଆଦିଶଙ୍କର, ରାମାନୁଜ, ଶ୍ରୀବଲ୍ଲଭ ପ୍ରଭୃତି ଆସିଲେ । ପୂର୍ବରୁ ଆସିଲେ ଶଙ୍କରଦେବ, ଶ୍ରୀଚୈତନ୍ୟ । ଉତ୍ତର-ପଶ୍ଚିମରୁ ଆସିଲେ ନାନକ, ତୁଳସୀଦାସ, କବୀର ପ୍ରଭୃତି । ଧର୍ମର ପରିକ୍ରମାରେ ଆକୃଷ୍ଟ ହୋଇ ବୁଦ୍ଧ, ଅହି, ଅଶୀଗା ପ୍ରଭୃତି ଦେବର୍ଷିମାନଙ୍କର ମଠ ଗଢ଼ି ଉଠିଲା ଶ୍ରୀମନ୍ଦିରର ଚାରିପଟେ । ପରେ ପରେ ହିନ୍ଦୁ ଧର୍ମର ବିଭିନ୍ନ ଶାଖା ପ୍ରଶାଖାର ମଠମାନେ ମଧ୍ୟ ଶ୍ରୀକ୍ଷେତ୍ରକୁ ଆବୋରି ନେଲେ ତପୋଭୂମି ଭାବରେ । ଯାଜ୍ଞିକ, ତାନ୍ତ୍ରିକ, ଯୋଗୀ ଓ ସାଧକମାନଙ୍କର ସମାବେଶରେ ଶ୍ରୀକ୍ଷେତ୍ର ତଥା ପୁରୁଷୋତ୍ତମ କ୍ଷେତ୍ର ବିଶ୍ୱର ଏକ ଅନବଦ୍ୟ ଆଧ୍ୟାତ୍ମିକ ପୀଠ ଭାବରେ ପ୍ରତିଷ୍ଠା ଲାଭ କଲା । ଗୌଡ଼ଦେଶରୁ ପରମ ପରିବ୍ରାଜକ ଭକ୍ତି-ସ୍ୱରୂପ ତଥା ଶ୍ରୀରାଧାକୃଷ୍ଣଙ୍କ ମିଳିତତନୁ ଶ୍ରୀଚୈତନ୍ୟଙ୍କ ଓଡ଼ିଶା ଆଗମନ ଓ ତାଙ୍କର ଶ୍ରୀକ୍ଷେତ୍ରରେ ଦୀର୍ଘତମ ରହଣି ଶ୍ରୀଜଗନ୍ନାଥଙ୍କୁ ଗୋପୀଜନବଲ୍ଲଭ ବୃନ୍ଦାବନଚନ୍ଦ୍ର ଶ୍ରୀକୃଷ୍ଣ କରିବାରେ ଅଧିକ ସାହାଯ୍ୟ କଲା । ଓଡ଼ିଶାର ଭକ୍ତକବିମାନେ ଓ ପଞ୍ଚସଖା ଭକ୍ତମାନେ ଏହାକୁ ଅପେକ୍ଷିକ ସତ୍ୟଭାବରେ ଗ୍ରହଣ କଲେ ମଧ୍ୟ ସେମାନଙ୍କର ଭକ୍ତିବିଶ୍ୱାସରେ ନୀଳଚକ୍ରନାଥ ଜଗନ୍ନାଥଙ୍କୁ ପୂର୍ଣ୍ଣବ୍ରହ୍ମ । ସେ କୈବଲ୍ୟନାଥ, ନିରାକାର । ସାଧାରଣ ଓଡ଼ିଆଙ୍କରେ ସେ ବଡ଼ ବନ୍ଧୁ-ବଳୁଆ । ଶୁଭକାମରେ ସେ ଆଗ, ମଲାବେଳେ ବି ସେ । ଯେତେବେଳେ କୌଣସି ଦଳ, ସାଥିରେ ମହାପ୍ରସାଦ ଧରି ଶ୍ରୀ ଶଙ୍ଖକୁ ଅବଲମ୍ବି, ଶ୍ରୀବାଲାଙ୍କୁ ଲାଗେ ଠାକୁର ନିଜେ ବିଜେ କରିଛନ୍ତି । ତାଙ୍କଠି ଉଦାରତା, ଅସମୟରେ ଅକୁଣ୍ଠ ସାହାଯ୍ୟ, ଭେକ-ଅଭେକରେ ସମଭାବନା ହେବା କାହାଣୀଗୁଡ଼ିକ ଓଡ଼ିଆ ସାହିତ୍ୟକୁ ଏପରି ଚାବକ୍ତ କରି ତୋଳିଛି, ତା'ର ତୁଳନା ନାହିଁ । ମୁସଲମାନ ଭକ୍ତକବି ସାଲବେଗଙ୍କ ରଚିତ ଭକ୍ତି ସ୍ତୁତିଗୁଡ଼ିକ ମଧ୍ୟ ବେଶ୍ ମାର୍ମିକ ଓ ଅଶ୍ରୁଳ ନିବେଦନ, ଯାହାକି ଓଡ଼ିଆ ସାହିତ୍ୟର ଅମୂଲ୍ୟ ସମ୍ପଦ ।

କେତେ ଯେ ଯାନି ଯାତ୍ରା, ପର୍ବ ପର୍ବାଣି କାଳକ୍ରମେ ଲୋକମାନେ ଦେଖି ଦେଇଛନ୍ତି, ତା'ରି ବି କଳନା ନାହିଁ । ତାଙ୍କ ରୋଷଘରେ ଏବେ ବି, ଏକ ସମୟରେ ଦଶ ହଜାର ଲୋକ ଖାଇଲା ଭଳି ବ୍ୟବସ୍ଥା ଅଛି ।

ଏହି ଅଦ୍ଭୁତ ଦିଅଁ ଯାହାଙ୍କର ବାହ୍ୟିକରୂପ ହିନ୍ଦୁ ବିଗ୍ରହ ତତ୍ତ୍ୱରେ ଅଭିନବ । ସେହି ଅପାଣିପାଦ, ଅକର୍ଣ୍ଣ, ସାଧାରଣ ଦେବ-ଦୈତ୍ୟ-ମାନବଠାରୁ ଅଦ୍ଭୁତପୂର୍ବ ଭିନ୍ନରୂପ ଧାରଣ କରି, ଆପଦ ବିପଦରେ ସମସ୍ତଙ୍କ ପାଖରେ ଉଭା ହୋଇପାରୁଛନ୍ତି ଭାବିଲେ ମଣିଷ ବୁଦ୍ଧି ପାଚିଯାଏ । ନିର୍ଦ୍ଧାରିତ ଅବକାଶ-ସହିତାରେ ସେ ସମ୍ପୂର୍ଣ୍ଣ ଭାବରେ ଆର୍ଯ୍ୟ କି ଅନାର୍ଯ୍ୟର ମୂର୍ତ୍ତି । ପୂଜାପଣ୍ଡା ତାଙ୍କୁ ଭୋଗ ଲଗାନ୍ତି କିନ୍ତୁ ନୈବେଦ୍ୟ ନିର୍ମାଣ ଆର୍ଯ୍ୟେତରମାନେ କରନ୍ତି । ବର୍ଷରେ ମାସକ ପାଇଁ ସେ ଓଡ଼ୁ ବନବାସୀ ସମ୍ପ୍ରଦାୟଙ୍କ ଗହଣକୁ ଚାଲିଯାନ୍ତି ରୋଗର ଆତୁରତାରେ । ସେମାନେ ତାଙ୍କର ଅଙ୍ଗରକ୍ଷୀ । ଯେତେବେଳେ ରଥଯାତ୍ରା ହୁଏ ଓ ନବକଳେବର ହୁଏ, ସେତେବେଳେ ଦଇତାମାନେ ହିଁ ମୁଖ୍ୟ ଦାୟିତ୍ୱ ନିର୍ବାହ କରନ୍ତି । ନବକଳେବର ସମୟରେ ଦିଅଁଙ୍କର ଛଡ଼ି ଭାବରେ ସେମାନେ ପ୍ରେତାହ କାର୍ଯ୍ୟ କରନ୍ତି ଓ ଶୁଦ୍ଧି ହୁଅନ୍ତି ।

ଏହି ବିଡ଼ମ୍ବିତ ଭଲାକାରରେ ପୁଣି ଅବିଚ୍ଛେଦ୍ୟ ଭାବରେ ଗଢ଼ି ଉଠିଛି ବୌଦ୍ଧ ଅନୁଷ୍ଠାନ । ସ୍ମାର୍ତ୍ତ ତଥା ବୈଷ୍ଣବ ସମ୍ପ୍ରଦାୟର ପୂର୍ଣ୍ଣିତ ଅନୁଷ୍ଠାନଗୁଡ଼ିକୁ ମଧ୍ୟ ଉପେକ୍ଷା କରାଯାଇ ନାହିଁ ।

ଆଜି ଘୋଷଯାତ୍ରା, ପତିତପାବନ ଯାତ୍ରା । ଶ୍ରୀମନ୍ଦିରର ଶ୍ରୀରତ୍ନସିଂହାସନରୁ ଧାଡ଼ିରେ ପାହୁଣ୍ଡପରେ ପାହୁଣ୍ଡ ପକେଇ ପହଣ୍ଡିରେ ପ୍ରଭୁ ଓହ୍ଲାଇ ଆସୁଛନ୍ତି ବଡ଼ଦାଣ୍ଡକୁ । ବଡ଼ଦାଣ୍ଡରେ ଗହଗହ ଜନତା ଉଚ୍ଛୁଳି ଉଠୁଛି । ଦରଶନରେ ଥରେ ମନରେ, ଦେହରେ ବଢ଼ିଯାଏ ଦିଅଁ ଲାଗେ । ଚେତନା ଉତ୍ତୀର୍ଣ୍ଣ ହୁଏ । ମହୋଦଧିର ଉତ୍ତାଳ ଗର୍ଜନ ଢେଉ ଭୁକ୍ତିରେ ନିସ୍ତବ୍ଧ ଓ ନିଃଶେଷ ହୋଇଯାଏ । ସିଂହଦ୍ୱାରରୁ ଶ୍ରୀଗୁଣ୍ଡିଚା ମନ୍ଦିର-ଦୀର୍ଘ ୩ କିଲୋମିଟର ବ୍ୟାପୀ ଜନପଥଟି ହଠାତ୍ ଜନସମୁଦ୍ର ପାଲଟି ଯାଉଛି । ଭାରତର ବିଭିନ୍ନ ପ୍ରାନ୍ତରୁ ଛୁଟି ଆସୁଛି ଜନସ୍ରୋତ ।

ମେଘନାଦ ବେଢ଼ା, କୂର୍ମ ବେଢ଼ା ତଥା ଗଣ୍ଡାରାଜିରେ ଆବଦ୍ଧ ଥିବା ପ୍ରାଣର ଦେବତା, ଯେଉଁ ଥରେ ଥରେ ଅନସରକାଳରେ ରୋଗଶଯ୍ୟାରେ ପଡ଼ନ୍ତି, ସେ ଆଜି ବ୍ୟଗ୍ର, ବ୍ୟସ୍ତ ଚଞ୍ଚଳ । ଏହି ବ୍ୟସ୍ତତା କ'ଣ ପତିତ ବାଉରୀମାନଙ୍କ ପାଇଁ, ସାଲବେଗମାନଙ୍କ ପାଇଁ, ପହଞ୍ଚି ପାରୁନଥିବା ଆର୍ତ୍ତମାନଙ୍କ ପାଇଁ, ମୁକ୍ତାକାଶ ତଳେ କୌଣସି ପ୍ରକାରେ ଗୋଡ଼ ଘଷୁଥିବା ହୋଇଥିବା ବାଳବୃଦ୍ଧ ବନିତ-ଜନତା ପାଇଁ ?

ଆସ୍ଥା ଓ ବିଶ୍ୱାସକୁ ଏକାଠି ବାନ୍ଧି ରଖି ନନ୍ଦିଘୋଷର ଦଉଡ଼ା ଲୋକେ ଟାଣିଥିଲେ । ସେହି ଦଉଡ଼ିର ପ୍ରତିଟି ସୂତାରେ ପେଲି ହୋଇ ରହିଛି ଏ ଶତାବ୍ଦୀର ଜ୍ୱାଳା, ମର୍ମିକ ବ୍ୟଥା ଓ ବେଦନା । ଥରେ ଥରେ ଜନତାର ହାତରୁ ଯେତେବେଳେ ରଥ ଦଉଡ଼ି ଖସି ପଡ଼ୁଛି, ତା' ସହିତ ଖସି ପଡ଼ୁଛି ବ୍ୟଥା ଓ ବେଦନାର ନିଷ୍କରୁଣ ତଥା ଦଂଶିତ ଅନୁଭବଗୁଡ଼ିକ ।

ରଥ ଛକରେ ଚଳମାନ ମନ୍ଦିରଗୁଡ଼ିକ ଉଦ୍‌ଘୋଷଣା କରି ଚାଲିଛନ୍ତି ଶାନ୍ତି, ମୈତ୍ରୀ ଓ ବିଶ୍ୱଭ୍ରାତୃତ୍ୱ । ଦେବ ଓ ମାନବର ଏହି ଅପୂର୍ବ ସ୍ୱର୍ଣ୍ଣାଳୀର ମିଳନ ମୁହୂର୍ତ୍ତକୁ ଅଧିକ ଜୀବନ୍ତ ଓ ସମ୍ପ୍ରସାରିତ କରି ତୋଳିବା ହେଉଛି ଘୋଷଯାତ୍ରାର ଅନ୍ୟତମ ସଙ୍କେତ ।

ସମ୍ପାଦକ, ଓଡ଼ିଶା ରିଭ୍ୟୁ
ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଭୁବନେଶ୍ୱର



# ଜଗନ୍ନାଥ ତତ୍ତ୍ୱ ଓ ସମନ୍ୱୟବାଦ

● ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ

ପ୍ରାଚୀନ ପୁରାଣମାନଙ୍କରେ କୁହାଯାଇଛି ଯେ ସମଗ୍ର ପୃଥିବୀରେ ନୀଳାଚଳଧାମ ସଦୃଶ ପୁଣ୍ୟକ୍ଷେତ୍ର ଆଉ ନାହିଁ । ସାଧାରଣରେ କ୍ଷେତ୍ର ମାହାତ୍ମ୍ୟମାନଙ୍କରେ ଭକ୍ତମାନେ ସ୍ୱ ସ୍ୱ ଆରାଧ୍ୟ ଦେବତା ଓ ତାଙ୍କର ପୀଠ ବା କ୍ଷେତ୍ରକୁ ଅନ୍ୟାନ୍ୟମାନଙ୍କ ଅପେକ୍ଷା ଅଧିକ ଉଚ୍ଚ ସ୍ଥାନ ଦେଇଛନ୍ତି । ଏସବୁ ଉଚ୍ଛ୍ୱାସ ବାକ୍ୟରେ କ୍ଷେତ୍ରମାନଙ୍କରେ ଭକ୍ତମାନେ ନିଜ ଭକ୍ତି ଅନୁସାରେ କ୍ଷେତ୍ରମହାତ୍ମ୍ୟକୁ ବର୍ଣ୍ଣନା କରିଥାନ୍ତି । ବହୁ ପ୍ରାଚୀନ କାଳରୁ ମୁନିଋଷିମାନେ ନୀଳାଚଳଧାମ ଓ ଏ କ୍ଷେତ୍ରର ଅଧିଷ୍ଠାତା ଦେବତା ଜଗନ୍ନାଥଙ୍କୁ ବହୁ ଉଚ୍ଚସ୍ଥାନ ଦେଇଛନ୍ତି । ଏପରିକି , ମହୀତଳରେ ଶ୍ରୀକ୍ଷେତ୍ର ସଦୃଶ ପୁଣ୍ୟକ୍ଷେତ୍ର ଆଉ ଦ୍ୱିତୀୟ ନାହିଁ ବୋଲି କହିଛନ୍ତି ।

ସ୍କନ୍ଦପୁରାଣର ଉତ୍କଳ ଖଣ୍ଡରେ କୁହାଯାଇଛି,

ପୃଥିବ୍ୟାଂ ଗୋପିତଂ ସ୍ଥାନଂ ତବଚାପି ସୁଦୁର୍ଲ୍ଲଭମ୍ । "ଏ କ୍ଷେତ୍ରର ମହାତ୍ମ୍ୟ ସହଜରେ ଜଣାଯାଏ ନାହିଁ । ଏ କ୍ଷେତ୍ରକୁ ପରମ ଗୁହ୍ୟ କ୍ଷେତ୍ର ବୋଲି ମଧ୍ୟ କୁହାଯାଏ !" ଏକ୍ଷେତ୍ରର ପୀଠ ଦେବତା ଜଗନ୍ନାଥ । ଏ ହିଁ ସ୍ୱୟଂ ବିଷ୍ଣୁ । ଶ୍ରୀକ୍ଷେତ୍ର ସ୍ୱୟଂ ବିଷ୍ଣୁଙ୍କ ଆଳୟ । ଏହି କାରଣରୁ ଏ କ୍ଷେତ୍ରର ଅଧିଷ୍ଠାତା ଦେବତା ଜଗନ୍ନାଥ ଓ ତାଙ୍କର ଏ ନିବାସସ୍ଥାନ ପୃଥିବୀରେ ଅଦ୍ୱିତୀୟ ବୋଲି ପୁରାଣମାନଙ୍କରେ ପ୍ରଶସ୍ତିରେ ଲିଖିତ ଅଛି । ଭାରତବର୍ଷର ହିନ୍ଦୁମାନଙ୍କର ପ୍ରଧାନ ଚାରି ଧର୍ମକ୍ଷେତ୍ର ମଧ୍ୟରୁ ଶ୍ରୀକ୍ଷେତ୍ର ଅନ୍ୟତମ ଏବଂ କ୍ଷେତ୍ରମାହାତ୍ମ୍ୟର ଭକ୍ତମାନଙ୍କ ମତରେ ସର୍ବପ୍ରଧାନ ବିଷ୍ଣୁ କ୍ଷେତ୍ର ।

ଏ ପ୍ରଧାନ ବିଷ୍ଣୁକ୍ଷେତ୍ରର ମହିମା କୌଣସି ସଂକୀର୍ଣ୍ଣ ମତବାଦ ଉପରେ ପ୍ରତିଷ୍ଠିତ ନହେବାରୁ ଏହା ହିନ୍ଦୁଜଗତର ସର୍ବମାନ୍ୟ କ୍ଷେତ୍ର ରୂପେ ପୂଜା ପାଉଛି ।

ଏହି ପବିତ୍ର କ୍ଷେତ୍ରରେ ବିଷ୍ଣୁ, ଲକ୍ଷ୍ମୀ, ଦୁର୍ଗା ବା ବିମଳା ମଧ୍ୟ ପୂଜା ପାଉଛନ୍ତି । ଏମାନଙ୍କର ସ୍ୱତନ୍ତ୍ର ପୂଜାପାଠ ଅଛି । ପୁରାଣମାନଙ୍କରେ ଜଗନ୍ନାଥଙ୍କୁ ଶୈବ ଏବଂ ବଳଭଦ୍ରଙ୍କୁ ଶିବ ରୂପରେ କଳ୍ପନା କରାଯାଇଛି । ସ୍ୱୟଂ ସୁଭଦ୍ରା ଦେବୀଙ୍କୁ ଲକ୍ଷ୍ମୀ ବା ବିମଳା ରୂପେ କଳ୍ପନା କରାଯାଇଛି । ଜଗନ୍ନାଥଙ୍କ ପର୍ବପର୍ବାଣୀମାନଙ୍କରେ ଚତୁର୍ଦ୍ଧାମୂର୍ତ୍ତିଙ୍କ ସ୍ୱ ସ୍ୱ ଶକ୍ତିମାନଙ୍କୁ ମଧ୍ୟ ବିଭେ କରାଯାଇଥାଏ ବା ବିଷ୍ଣୁଙ୍କ ଶକ୍ତିରୂପେ ବା ସ୍ତ୍ରୀ ରୂପେ ଲକ୍ଷ୍ମୀଙ୍କୁ, ବଳଭଦ୍ରଙ୍କ ଶକ୍ତିରୂପେ ବା ସ୍ତ୍ରୀ ରୂପେ ବିମଳା ବା ତାଙ୍କର ପ୍ରତିନିଧିଙ୍କୁ ବିଭେ କରାହୋଇଥାଏ । ଲକ୍ଷ୍ମୀ, ସରସ୍ୱତୀ ଜଗନ୍ନାଥଙ୍କ ସ୍ତ୍ରୀଶକ୍ତି ରୂପେ, ବିମଳା ବଳଭଦ୍ରଙ୍କ ଶକ୍ତିରୂପେ ବିଭେ ହୋଇଥାନ୍ତି । ଏହି ଦେବଦେବୀମାନେ ସ୍ୱ ସ୍ୱ ପତି ଓ ପତ୍ନୀଙ୍କ ସହ ଅବସ୍ଥିତ ଥାଆନ୍ତି ।

ସ୍କନ୍ଦପୁରାଣର ଉତ୍କଳଖଣ୍ଡରେ ଲେଖାଅଛି ଯେ, ଏହି ଦାରୁମୂର୍ତ୍ତିମାନଙ୍କ ସମ୍ବନ୍ଧରେ ତର୍କ କରିବା ନିଷେଧ । ଏଥିରେ ମଧ୍ୟ କୁହାଯାଇଛି ଯେ ଏହି ଦାରୁମୂର୍ତ୍ତିଙ୍କୁ ଯେ ଯେଉଁ ଭାବରେ ଦର୍ଶନ କରେ, ତାକୁ ସେ ସେହି ଭାବରେ ଦେଖାଦେଇ ଚତୁର୍ବର୍ଗ ଫଳ ଦାନ କରିଥାନ୍ତି ।

ଜଗନ୍ନାଥଙ୍କୁ ଯେ ଯେତେ ରୂପରେ କଳ୍ପନା କଲେ ମଧ୍ୟ ସେ କୃଷ୍ଣ ରୂପେହିଁ ବିଶେଷ ଓ ମୁଖ୍ୟ ଭାବରେ ପୂଜିତ । ଜଗନ୍ନାଥ ହିଁ କୃଷ୍ଣ । କୃଷ୍ଣ ଜ୍ୟେଷ୍ଠଭ୍ରାତ ବଳରାମ ଭଗିନୀ ସୁଭଦ୍ରା ଓ ସ୍ୱ ଆୟୁଧ ସୁଦର୍ଶନ ଚକ୍ର ସହିତ ସିଂହାସନ ଉପରେ ପୂଜା ପାଉଛନ୍ତି । ଭଗବାନ ଶ୍ରୀକୃଷ୍ଣଙ୍କ ଦ୍ୱାରକା ଦ୍ୱାପର ଯୁଗରେ ସମୁଦ୍ରରେ ନିମଗ୍ନ ହୋଇଯିବା ପରେ ମହୋଦଧି କୂଳରେ ସେହି ଦ୍ୱାରକା ପୁରୁଷୋତ୍ତମ କ୍ଷେତ୍ର ରୂପରେ ଦେଖାଦେଇଥିଲା ଏବଂ ଏଠାରେ ମଧ୍ୟ ଦ୍ୱାରକାର ମାହାତ୍ମ୍ୟ ପ୍ରକାଶ ପାଇଥିଲା । ଏହି କଳ୍ପନା ହେତୁ ପୁରୀ ଦ୍ୱିତୀୟ ଦ୍ୱାରକା ବା କଳିଯୁଗ ଦ୍ୱାରକା ରୂପେ ପ୍ରତିପାଦିତ ହୋଇଛି ।

ପ୍ରଥମେ ଏହି କ୍ଷେତ୍ରରେ ଶବରମାନଙ୍କ ଦ୍ୱାରା ନୀଳମାଧବ ପୂଜା ପାଉଥିଲେ । ଏହି ନୀଳମାଧବ ହିଁ ବିଷ୍ଣୁ । ନୀଳମାଧବ ମୂର୍ତ୍ତି ଅନ୍ତର୍ଦ୍ଧାନ ହେବା ପରେ ପୁଣି ସେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ରୂପେ ପ୍ରକାଶିତ ହୋଇଥିଲେ । ଲୋକପ୍ରବାଦ ଓ ପ୍ରାଚୀନ କିମ୍ବଦନ୍ତୀରୁ ଜଣାଯାଏ ଯେ ଏହି ଦାରୁମୂର୍ତ୍ତି ଅତି ପ୍ରାଚୀନ କାଳରୁ ବିଦ୍ୟମାନ ଅଛନ୍ତି । ସାମୟିକ ସଂସ୍କାରାଦି କରାଯାଉଥିଲେ ମଧ୍ୟ ପ୍ରତିମାମାନଙ୍କର ରୂପ, ଆକାର ପ୍ରକାରରେ ବିଶେଷ ପରିବର୍ତ୍ତନ ଦେଖାଯାଏ ନାହିଁ । ସନାତନ ପ୍ରତିମା ସନାତନ କାଳରୁ ଏହିଠାରେ ଅବସ୍ଥାନ କରୁଥିବା କିମ୍ବଦନ୍ତୀ ଥିଲେ ମଧ୍ୟ ଆକାର ପ୍ରକାର ପୁରାଣ ଓ ଶାସ୍ତ୍ରାଦିରେ ନିର୍ଦ୍ଦିଷ୍ଟ ଭାଗମାପ ଅନୁସାରେ ଏହା ଗଠିତ ହୋଇ ଆସୁଅଛି ।

ଚତୁର୍ଦ୍ଧାମୂର୍ତ୍ତି ବିଷ୍ଣୁଙ୍କ ରୂପ ଏବଂ ଏହା ସର୍ବପ୍ରାଚୀନ ଦେବତା ବୋଲି ପୁରାଣମାନଙ୍କରେ କୁହାଯାଇଅଛି ।

ଜଗନ୍ନାଥାଦି ତ୍ରିମୂର୍ତ୍ତିଙ୍କୁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର– ଏହି ତ୍ରିମୂର୍ତ୍ତିଙ୍କ ସହ ଏକ ଥିବା ମଧ୍ୟ କୁହାଯାଇଥାଏ । ଜଗନ୍ନାଥ ବିଷ୍ଣୁ, ବଳଭଦ୍ର ଶିବ ଓ ସୁଭଦ୍ରା ବ୍ରହ୍ମାଙ୍କ କଳ୍ପିତ ରୂପ ବୋଲି ମଧ୍ୟ କୁହାଯାଇଥାଏ । ଆମ ଉତ୍କଳ ଦେଶରେ ଅତି ପ୍ରାଚୀନ କାଳରୁ ଏହି କଳ୍ପନା ବିଦ୍ୟମାନ ଥିଲା ଏବଂ ଏବେ ମଧ୍ୟ ଅଛି । ଏହି ଧାରଣା ବା ତତ୍ତ୍ୱବୋଧ ଜଗନ୍ନାଥଙ୍କ ପୂଜାଆରାଧନା, ଧର୍ମକର୍ମାଦି ଓ ଯାତ୍ରାପର୍ବାଦିରେ ନିର୍ଦ୍ଦିଷ୍ଟ ରୂପ ଧାରଣ କରିଛି ।

ପୂର୍ବେ ଶୈବ ଓ ବୈଷ୍ଣବମାନଙ୍କ ମଧ୍ୟରେ ବିବାଦ ଥିଲା । ବ୍ରହ୍ମ ପୁରାଣରେ ମଧ୍ୟ ଏହି ପ୍ରସଙ୍ଗରେ ଉଲ୍ଲେଖ ଅଛି । ବ୍ରହ୍ମପୁରାଣରେ ଲେଖାଅଛି ଯେ, ପୂର୍ବକାଳରେ ପୁରୁଷୋତ୍ତମ କ୍ଷେତ୍ର ବୈଷ୍ଣବ କ୍ଷେତ୍ର ବୋଲି ପରିଚିତ ହେଉଥିବାରୁ ଶୈବମାନଙ୍କ ମନରେ ଅସୂୟାଭାବ କ୍ରମ କ୍ରମେ ଜାତ ହୋଇପାରେ, ଏହି ଆଶଙ୍କାରେ ଏହାର ନିରାକରଣ ପାଇଁ ବହୁ ପ୍ରାଚୀନ କାଳରୁ ପୁରାଣମାନଙ୍କରେ ସମନ୍ୱୟର ଚେଷ୍ଟା ହୋଇଅଛି । ପ୍ରଳୟ କାଳରେ ମାର୍କଣ୍ଡେୟ ମୁନି ବଟପତ୍ରଶାୟୀ ବିଷ୍ଣୁଙ୍କୁ ଏହିପରି ପ୍ରାର୍ଥନା କରିଛନ୍ତି । "ହେ

ପ୍ରଭୁ ! ଏହି କ୍ଷେତ୍ରରେ ଶୈବ ଓ ବୈଷ୍ଣବ ଭେଦଭାବ ଦୂର କରିବା ନିମନ୍ତେ ସେ ଏକ ଶିବାଳୟ ପ୍ରତିଷ୍ଠା କରିବେ । ଏହି ପ୍ରସଙ୍ଗରେ ଭଗବାନ ମାର୍କଣ୍ଡେୟ ମୁନିଙ୍କୁ କହିଥିଲେ ଯେ, ନୀଳାଚଳଧାମରେ ହରିହର ପୂଜାର ମାନ୍ୟ ବର୍ଦ୍ଧିତ ହେବ । ଏହାଫଳରେ ବଳଭଦ୍ରଙ୍କୁ ଶିବ ରୂପରେ କଳ୍ପନା କରାଯାଇଛି । ଜଗନ୍ନାଥ କୃଷ୍ଣ ରୂପ ବଳଭଦ୍ର ଶିବରୂପ ଧାରଣ କରି ଶ୍ରୀମନ୍ଦିରରେ ପୂଜାପାଉ ଅଛନ୍ତି ।

ଆମ ଓଡ଼ିଶାର କବି ସାରଳାଦାସ ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥଙ୍କୁ ହର, ବ୍ରହ୍ମା ଓ ହରି ରୂପରେ କଳ୍ପନା କରିଛନ୍ତି ।

ରାମକୃଷ୍ଣ ସୁଭଦ୍ରା ଯେ ଏ ତିନି ପ୍ରତିମା

ଶ୍ରୀ ପୁରୁଷୋତ୍ତମେ ବିଜେ ହର, ହରି, ବ୍ରହ୍ମା ।

ବ୍ରହ୍ମା ଶାପବଶରୁ ସୁଭଦ୍ରା ରୂପ ଧାରଣ କରିଛନ୍ତି ବୋଲି ମଧ ସାରଳାଦାସ ଲେଖିଛନ୍ତି ।

ପୂର୍ବେ ଏ ଦେଶରେ ଶୈବ, ଶାକ୍ତ ଓ ବୈଷ୍ଣବମାନଙ୍କ ମଧ୍ୟରେ ପରସ୍ପର ମତବାଦକୁ ନେଇ ମତାନ୍ତର ଓ ଏହାର ଫଳ ମନାନ୍ତର ବହୁ ସ୍ଥଳରେ ବହୁ କାଳରେ ଦେଖାଯାଇଛି । ଏହି ମତମାନଙ୍କ ମଧ୍ୟରେ ଶୈବ, ବୈଷ୍ଣବ ଓ ଶାକ୍ତ ମତବାଦ ପ୍ରଧାନ । ଏ ତିନି ପ୍ରଧାନ ମତବାଦର ସମନ୍ୱୟ ନୀଳାଚଳଧାମର ଶ୍ରୀମନ୍ଦିରର ଶ୍ରୀପୀଠ ବା ସିଂହାସନରେ ସମନ୍ୱୟ କରାଯାଇଛି । ରତ୍ନବେଦୀରେ ଏକ ସିଂହାସନ ଉପରେ ବଳଭଦ୍ର ଶିବ ରୂପରେ, ବିଷ୍ଣୁ ଜଗନ୍ନାଥ ରୂପରେ, ସୁଭଦ୍ରା ବ୍ରହ୍ମା ରୂପରେ ଓ ସୁଦର୍ଶନ ସୂର୍ଯ୍ୟଙ୍କ ପ୍ରତୀକ ରୂପରେ ପୂଜା ପାଉଛନ୍ତି । ଏହିଠାରେ ହିନ୍ଦୁମାନଙ୍କର ଚାରି ପ୍ରଧାନ ଧର୍ମଗୋଷ୍ଠୀର ସମନ୍ୱୟ ହୋଇଛି ।

ପ୍ରାଚୀନ କାଳରୁ ଆମ ଓଡ଼ିଶାର ବହୁ ଲୋକ ଜଗନ୍ନାଥଙ୍କୁ ବୁଦ୍ଧ ବୋଲି କଳ୍ପନା କରିଛନ୍ତି । ଏହି କଳ୍ପନା ବହୁ ପ୍ରାଚୀନ କାଳରୁ ବୌଦ୍ଧ ଭକ୍ତମାନଙ୍କ ମଧ୍ୟରେ ମଧ ପ୍ରଚଳିତ ଥିଲା । ପ୍ରଣପତ୍ୟ ଜଗନ୍ନାଥ ବନ୍ଦନାଟି ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀରେ ଆମ ଓଡ଼ିଶାର କେତେ ଜଣ ବୌଦ୍ଧ ଭିକ୍ଷୁ ଜଗନ୍ନାଥଙ୍କୁ "ସର୍ବ ବୁଦ୍ଧମୟଂ ସିଦ୍ଧି ବ୍ୟାପିନଂ ଗଗନୋପମମ୍" ରୂପେ ସ୍ତୁତି କରିଛନ୍ତି । ଏହି କଳ୍ପନା ବୌଦ୍ଧ ବଜ୍ରଯାନ ପନ୍ଥାର ସାଧକମାନେ କରିଛନ୍ତି । ଏଥିରୁ ବୌଦ୍ଧ ବଜ୍ରଯାନୀ ସାଧକମାନେ ଜଗନ୍ନାଥଙ୍କୁ ଆରାଧନା କରୁଥିବା ସ୍ପଷ୍ଟ ହେଉଛି । ବଜ୍ରଯାନର ଜଣେ ପ୍ରଧାନ ସାଧକ ଇନ୍ଦ୍ରଭୂତି ଓଡ଼ିଶା ରାଜା ଥିଲେ । ଏ ରାଜା ଇନ୍ଦ୍ରଭୂତି ଓଡ଼ିଶାରୁ ଯାଇ ନେପାଳ, ତିବ୍ବତ ପ୍ରଭୃତି ରାଜ୍ୟରେ ବଜ୍ରଯାନ ପ୍ରଚାର କରିଥିଲେ । ସେତେବେଳକୁ ସେ ରାଜସିଂହାସନ ତ୍ୟାଗ କରି ବୌଦ୍ଧ ଭିକ୍ଷୁ ହୋଇ ବୌଦ୍ଧ ବଜ୍ରଯାନ ପ୍ରଚାର କରିଥିଲେ । ଇନ୍ଦ୍ରଭୂତିଙ୍କ ରାଜତ୍ୱ କାଳରେ ଜଗନ୍ନାଥ ଓ ବୁଦ୍ଧ ଏକ ଓ ଉଭୟେ ନିରାକାର ବୋଲି ସେ କଳ୍ପନା କରିଥିଲେ । ସେ ପ୍ରାର୍ଥନାରେ କହିଥିଲେ-

ପ୍ରଣିପତ୍ୟ ଜଗନ୍ନାଥ, ସର୍ବଜିନବରାର୍ଚ୍ଚିତଂ । *

ସର୍ବବୁଦ୍ଧମୟଂ ସିଦ୍ଧି, ବ୍ୟାପିନେ ଗଗନୋପମମ୍ ॥

ଏହି ସମନ୍ୱୟଭାବ ସମାଜର ବହୁ କ୍ଷେତ୍ରରେ ପ୍ରକାଶିତ ହୋଇଛି । ଜାତିବର୍ଣ୍ଣ ନିର୍ବିଶେଷରେ ସକଳ ଶ୍ରେଣୀର, ସକଳବର୍ଣ୍ଣର ଲୋକେ ଅସଙ୍କୋଚିତ ଚିତ୍ତରେ, ଏକ ପଙ୍କ୍ତିରେ ବସି, ଏକ ପତ୍ରରେ ମଧ ବସି ଜଗନ୍ନାଥଙ୍କ ପ୍ରସାଦ ସେବନ କରୁଛନ୍ତି । ଏଥିରେ ମଧ ଉଚ୍ଛିଷ୍ଟ, ଅନୁଚ୍ଛିଷ୍ଟ ବିଚାର ନଥାଏ । ବ୍ରାହ୍ମଣ ଓ ଚଣ୍ଡାଳ ଏକପତ୍ରରେ ବସି ଆନନ୍ଦ ଚିତ୍ତରେ ଅନ୍ନ ମହାପ୍ରସାଦ ସେବା କରୁଛନ୍ତି ।

ପୂଜା, ସେବା, ଅନ୍ନପ୍ରସାଦ ସେବନ ପ୍ରଭୃତି ବିଶିଷ୍ଟ ବିଷୟରେ ଜାତିବର୍ଣ୍ଣବିଚାର ନଥିବା ସମନ୍ୱୟ ଭାବର ପ୍ରଧାନ ଲକ୍ଷଣ । ଏହା ସମଗ୍ର ହିନ୍ଦୁ ଜଗତରେ ଅଭିନବ କହିଲେ ଅତ୍ୟୁକ୍ତି ହେବ ନାହିଁ । ଜଗନ୍ନାଥ ତତ୍ତ୍ୱ ହେଉଛି ଧର୍ମରେ ବିଭିନ୍ନ ମତବାଦର ସମନ୍ୱୟ ସ୍ଥଳୀ । ଦରିଦ୍ରନାରାୟଣ, ପତିତପାବନ, ଜନତା ଜନାର୍ଦ୍ଦନଙ୍କର ସମଦୃଷ୍ଟି ହିଁ ବିଶ୍ୱ ସଂସ୍କୃତିର ସାମ୍ୟବାଦକୁ ସଂସ୍ଥାପନ କରିଅଛି । ସମଦର୍ଶୀ ବ୍ୟକ୍ତି ହିଁ ହେଉଛ "ପୁରୁଷୋତ୍ତମ", ସର୍ବଲୋକହିତକର ଲୋକନାୟକ । "ଗୀତା"ରେ ଶ୍ରୀକୃଷ୍ଣ ପଣ୍ଡିତମାନଙ୍କର ଗୁଣବର୍ଣ୍ଣନା କରି କହି ଅଛନ୍ତି :-

"ସହଜଂ କର୍ମ କୌନ୍ତେୟ ସଦୋଷମପି ନ ତ୍ୟଜେତ୍ ।"

"ବିଦ୍ୟାବିନୟ ସମ୍ପନ୍ନେ ବ୍ରାହ୍ମଣେ ଗବି ହସ୍ତିନି

ଶୁନି ଚୈବ ଶ୍ୱପାକେ ଚ ପଣ୍ଡିତାଃ ସମଦର୍ଶିନଃ ।"

କୌଣସି ଜାତି ବା ବର୍ଣ୍ଣକୁ ଘୃଣା କଲେ ସମାଜ ତିଷ୍ଠି ପାରିବ ନାହିଁ । ଜନତାର ହିତାର୍ଥେ କର୍ମ କରିବା ହିଁ ଧର୍ମ । ପୁଣି ଯେଉଁମାନେ ପଣ୍ଡିତ, ସେମାନେ ସମସ୍ତଙ୍କୁ ସମାନ ଦୃଷ୍ଟିକୋଣରେ ଦେଖନ୍ତି, ଯେହେତୁ ସକଳ ପ୍ରାଣୀଙ୍କଠାରେ ଆତ୍ମାପୁରୁଷ ବିଦ୍ୟମାନ । ରାଷ୍ଟ୍ରନାୟକ (ରାଜା) ପ୍ରଜାମାନଙ୍କୁ ଉତ୍ତମ ରୂପେ ପାଳନ ଓ ରକ୍ଷଣ କରିବା ସକାଶେ ସମଗ୍ର ରାଜ୍ୟ ସ୍ୱ-ଇଷ୍ଟଦେବ-ଦେବୀଙ୍କ ଠାରେ ଉତ୍ସର୍ଗ କରିବା ପରମ୍ପରା ହିନ୍ଦୁଜଗତର ସଂସ୍କୃତି ଅଟେ । ପୁରୀର ରାଜାମାନେ ରାଜଗାଦି ପାଇବା ମାତ୍ରେ ଜଗନ୍ନାଥଙ୍କ ଠାରେ ରାଜ୍ୟର ସବୁ ସମ୍ପତ୍ତି ପ୍ରଜାପାଳନ ସକାଶେ ସମର୍ପଣ କରି ଶପଥପାଠ କରୁଥିଲେ । ଏହାର ତାତ୍ପର୍ଯ୍ୟ ଏହି ଯେ ଜଗନ୍ନାଥଙ୍କ ଆଶୀର୍ବାଦରୁ ରାଷ୍ଟ୍ର ଭ୍ରଷ୍ଟ ବା ପରାଧୀନ ନହେଉ । ରଥଯାତ୍ରା ସମୟରେ ରାଜା "ଛେରା ପହଁରା" କରନ୍ତି କାରଣ ପ୍ରଜାମାନଙ୍କ ଠାରୁ ରାଜା ଭିନ୍ନ ନୁହନ୍ତି ଓ ରାଜାଙ୍କ ଅନ୍ତରରେ ପ୍ରଜାମାନେ ବିଦ୍ୟମାନ । ଏହି ଭାବ ବେଦ ସମର୍ଥିତ ଅଟେ :-

"ପ୍ରଜାପତିଃ ପ୍ରଜୟା ସଂରରାଣଃ ॥"

(ଯର୍ଜୁର୍ବେଦ; ୩୨,୫.

ଯେପରି ଜଗନ୍ନାଥ ମନ୍ଦିରରେ, ବୈଷ୍ଣବମାନେ ମଧ ଶୈବ ଓ ଶକ୍ତି ଉପାସକ, ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିରରେ ଶିବଙ୍କ ଆରାଧନା ମଧ ବୈଷ୍ଣବୀ ମନ୍ତ୍ରରେ ହୁଏ । ଶିବଙ୍କ ଶକ୍ତି ବିମଳାଙ୍କ ପୀଠରେ ଶ୍ରୀମନ୍ଦିରର ପ୍ରସାଦ ସମର୍ପିତ ହେବାପରେ, ମହାପ୍ରସାଦ ହୁଏ । ହିନ୍ଦୁ ଜଗତରେ କେବଳ ଉତ୍କଳରେ ହିଁ ଶୈବ, ଶାକ୍ତ ଓ ବୈଷ୍ଣବ ସମନ୍ୱୟ ପୂଜା ପଦ୍ଧତି ଚଳି ଆସୁଛି । ଏହି ସର୍ବଧର୍ମ ସମନ୍ୱୟ ଭାବ ଉତ୍କଳରେ ଅତି ପ୍ରାଚୀନ କାଳରୁ ପ୍ରଚଳିତ ।

ଏ ସମନ୍ୱୟ ଭାବ ଜଗତକୁ ଉତ୍କଳର ଏକ ବିଶିଷ୍ଟ ଦାନ ।



୧ - ରଘୁନାଥ ବେଶ



କାଳୀୟଦଳନ ବେଶ - ୪



୨ - ହାତୀ ବେଶ



ଲକ୍ଷ୍ମୀନାରାୟଣ ବେଶ - ୫



୩ - ସୁନା ବେଶ



ବାଙ୍କଚୁଡ଼ ବେଶ - ୬



୭ - ବାମନ ବେଶ

ପଦ୍ମ ବେଶ - ୧୦





୮ - ନୃସିଂହ ବେଶ

ଗଜ ଉଦ୍ଧାରଣ ବେଶ - ୧୧





୯ - ଶ୍ରାଦ୍ଧ ବେଶ

ବଡ଼ସିଂଗାର ବେଶ - ୧୨



# ରଥର କେତେକ ପାର୍ଶ୍ୱ ଦେବତା



# ବଡ଼ ଦାଣ୍ଡରେ ରଥ ନିର୍ମାଣ







ରଥମାନଙ୍କ ଦୃଶ୍ୟ



ସାରଥୀ



ପହଣ୍ଡି କରି ଶ୍ରୀଜଗନ୍ନାଥ ନନ୍ଦିଘୋଷ ରଥରେ
ବିଜେ କରିବାକୁ ଯାଉଛନ୍ତି ।





ଅଲଙ୍କୃତ ରଥ ବଡଦାଣ୍ଡରେ
ଗଡ଼ି ଚାଲିଛି ।



ପୁରୀ ଗଜପତି ରଥରେ ଛେରାପହଁରା କରୁଛନ୍ତି ।



# ପୁରୁଷୋତ୍ତମ ତତ୍ତ୍ୱ ଓ ଶ୍ରୀଜଗନ୍ନାଥ

● ଡକ୍ଟର ଶରତ ଚନ୍ଦ୍ର ରଥ

ପୁରୁଷୋତ୍ତମ ତତ୍ତ୍ୱ ହେଉଛି ସତ୍-ଚିତ୍-ଆନନ୍ଦର ତତ୍ତ୍ୱ, ଯାହାକୁ ପ୍ରାପ୍ତ କରିବା ନିମନ୍ତେ ମାନବଜାତି ସତତ ପ୍ରୟାସୀ । ମାର୍ଗର ଭିନ୍ନତାରେ ତତ୍ତ୍ୱ ଭିନ୍ନ ହୁଏ ନାହିଁ । ତତ୍ତ୍ୱ ହିଁ ସତ୍ୟ ଏବଂ ସତ୍ୟ ହିଁ ତତ୍ତ୍ୱ । ଶ୍ରୀଜଗନ୍ନାଥ ହେଉଛନ୍ତି ପୁରୁଷୋତ୍ତମ ତତ୍ତ୍ୱର ପ୍ରତୀକ । ପୁରୁଷୋତ୍ତମ ପରମବ୍ରହ୍ମଙ୍କର କୌଣସି ରୂପ ନାହିଁ । ସେ ଅବତାର ନୁହନ୍ତି, ଅବତାରୀ । ଅବତାରମାନେ ତାଙ୍କୁ ଉପାସନା କରନ୍ତି । ଶ୍ରୀଜଗନ୍ନାଥଙ୍କର କୌଣସି ରୂପ ନାହିଁ । ସେ କେବଳ ପ୍ରତୀକ । ତାଙ୍କୁ ଦେବତାମାନେ ମଧ୍ୟ ଉପାସନା କରିଥାନ୍ତି । ଶ୍ରୀଜଗନ୍ନାଥଙ୍କର ମହାପ୍ରସାଦକୁ ସଂପ୍ରଦାୟ ନିର୍ବିଶେଷରେ ସମସ୍ତେ ଗ୍ରହଣ କରିଥାନ୍ତି । ସଚ୍ଚିଦାନନ୍ଦଙ୍କଠାରେ ଜାତି, ଧର୍ମ, ବର୍ଣ୍ଣର ଭେଦ ନଥିବାରୁ ସେ କୌଣସି ସୀମାରେ ଆବଦ୍ଧ ନୁହନ୍ତି । ପ୍ରତ୍ୟେକ ସୀମାକୁ ଅତିକ୍ରମ କରିପାରୁଥିବା ଅକଳ୍ପନୀୟ ଅସୀମତ୍ୱ ସେ । ଶ୍ରୀଜଗନ୍ନାଥଙ୍କଠାରେ ଜାତି, ଧର୍ମ ଓ ବର୍ଣ୍ଣର ଭେଦ ନାହିଁ । ସମସ୍ତ ସାଂପ୍ରଦାୟିକ ସସୀମତ୍ୱକୁ ଅତିକ୍ରମ କରି ଯାଉଥିବାରୁ ସମସ୍ତେ ତାଙ୍କୁ ମୁକ୍ତ କଣ୍ଠରେ ସ୍ୱୀକାର କରନ୍ତି ଓ ଆରାଧନା କରିଥାନ୍ତି । କେବଳ ଶ୍ରୀଜଗନ୍ନାଥ ନୁହନ୍ତି, ତାଙ୍କ ଧାମ ମଧ୍ୟ ଅପୂର୍ବ ମହନୀୟତାର ଉଚ୍ଚତମ ଉଚ୍ଚତାରେ ଅଧିଷ୍ଠିତ । ଏଇ ଧାମ ନାମିତ ହୋଇଛି ଆରାଧ୍ୟଙ୍କ ନାମରେ ଅର୍ଥାତ୍ ପୁରୁଷୋତ୍ତମଙ୍କ ନାମରେ । ଧାମର ନାମ ହୋଇଛି ପୁରୁଷୋତ୍ତମ ଧାମ । ଏପରି ସଂଯୋଜନା ପ୍ରାୟ ଅନ୍ୟତ୍ର ଦେଖାଯାଏ ନାହିଁ । କପିଳସଂହିତାରେ ଉଲ୍ଲେଖ କରାଯାଇଛି

"ସର୍ବେଷାଂ ଚୈବ କ୍ଷେତ୍ରାଣାଂ ରାଜା ଶ୍ରୀପୁରୁଷୋତ୍ତମଃ
ସର୍ବେଷାଂ ଚୈବ ଦେବାନାଂ ରାଜା ଶ୍ରୀପୁରୁଷୋତ୍ତମଃ"

ବିଭିନ୍ନ ସଂପ୍ରଦାୟ ବ୍ୟତୀତ ଜୈନ ଏବଂ ବୌଦ୍ଧ ତଥା ଅନ୍ୟାନ୍ୟ ଧର୍ମ ସାଧୁ ସନ୍ଥମାନେ ମଧ୍ୟ ପୁରୁଷୋତ୍ତମ ଧାମ ବା ପୁରୀଧାମକୁ ଅସୀମ ଶ୍ରଦ୍ଧା ଓ ଅଶେଷ ସମ୍ମାନ ନିବେଦନ କରିଥାନ୍ତି ।

ଶ୍ରୀଜଗନ୍ନାଥ ଯେ ପୁରୁଷୋତ୍ତମ ତତ୍ତ୍ୱର ପ୍ରତୀକ ଏହାର ଅନ୍ୟତମ କାରଣ ହେଉଛି, ସେ ସମସ୍ତ ଅବତାର ତଥା ଶକ୍ତିଙ୍କ ମନ୍ତ୍ର ମାଧ୍ୟମରେ ପୂଜିତ ହୁଅନ୍ତି । ମହାପ୍ରସାଦ ନିବେଦିତ ହେବାବେଳେ ଶ୍ରୀରାମ, ଶ୍ରୀକୃଷ୍ଣ, ଲକ୍ଷ୍ମୀ, ଦୁର୍ଗା, ବିଷ୍ଣୁ, ବିମଳା ସମେତ ବେଢ଼ା ଭିତରସ୍ଥ ଅନ୍ୟାନ୍ୟ ଦେବଦେବୀମାନେ ପ୍ରସାଦ ସେବନ ନିମନ୍ତେ ନିମନ୍ତ୍ରିତ ହୋଇ ଆସନ୍ତି । ଏହାଛଡ଼ା ଜଗନ୍ନାଥଙ୍କ ମନ୍ଦିରରେ ପାଳିତ ଓ ପ୍ରଚଳିତ ବହୁ ପର୍ବପର୍ବାଣୀରୁ ଜଣାଯାଏ ଯେ ଜଗନ୍ନାଥ ହେଉଛନ୍ତି ପୁରୁଷୋତ୍ତମଙ୍କର ପ୍ରତୀକ ।

ଏହି ତତ୍ତ୍ୱକୁ ସମର୍ଥନ କରିଛି ବହୁ ଶାସ୍ତ୍ର, ପୁରାଣ ତଥା ମହାପୁରୁଷଙ୍କ ବାଣୀ । ଘୋଷଯାତ୍ରାର ଅନ୍ୟନାମ ମହାବେଦୀ ଯାତ୍ରା, ଯଜ୍ଞମଣ୍ଡପ ଯାତ୍ରା ଏବଂ ଜନକପୁରୀ ଯାତ୍ରା । ଗୁଣ୍ଡିଚା ମନ୍ଦିରକୁ ମହାବେଦୀ, ଯଜ୍ଞ ମଣ୍ଡପ ତଥା ଜନକପୁରୀ କୁହାଯାଏ । ଇନ୍ଦ୍ରଦ୍ୟୁମ୍ନ ଏଠାରେ ବେଦୀ ନିର୍ମାଣ କରି ଅଶ୍ୱମେଧ ଯଜ୍ଞ କରିଥିଲେ ବୋଲି ଏହାର ନାମ ମହାବେଦୀ ପୁଣି ଯଜ୍ଞ ମଣ୍ଡପ । ଠାକୁରମାନଙ୍କର ଜନ୍ମ ଏଠାରେ ହୋଇଥିଲା ବୋଲି ଏହାର ନାମ ଜନକପୁରୀ । ଏ ସ୍ଥାନ ପ୍ରତି ଠାକୁରଙ୍କର ଅସୀମ ପ୍ରୀତି ରହିଛି ବୋଲି ରଥଯାତ୍ରାରେ ଠାକୁର ଏଠାକୁ ଆସିଥାନ୍ତି । ସ୍କନ୍ଦ ପୁରାଣରେ ଉଲ୍ଲେଖ ଅଛି ଯେ, ଶ୍ରୀଜଗନ୍ନାଥ କହୁଛନ୍ତି-

"ମମୋତ୍ପତ୍ତେଶ୍ଚ ନିଳୟଂ ପ୍ରୀତି କୃନ୍ମମ ଶାଶ୍ୱତମ୍
ବହୁକାଳ ସ୍ଥିତଶ୍ଚାହଂ ମମାସ୍ମିନ୍ ପ୍ରୀତିରୁତ୍ତମା"

ଅର୍ଥାତ୍ "ଏହା ମୋର ଜନ୍ମ ସ୍ଥାନ ବୋଲି ଶାଶ୍ୱତ ପ୍ରୀତିପ୍ରଦ । ଏହି ସ୍ଥାନରେ ମୁଁ ବହୁଦିନ ଅଧିଷ୍ଠିତ ଥିଲି । ତେଣୁ ଏଠାରେ ମୋର ଅସୀମ ପ୍ରୀତି ରହିଛି ।"

ମହାଯୋଗୀ ଶ୍ରୀ ଅରବିନ୍ଦ କହନ୍ତି, "ଜଗନ୍ନାଥଙ୍କ ରଥର ପ୍ରକୃତ ଆକୃତି ବା ନମୁନା କେହି ଜାଣନ୍ତି ନାହିଁ । କୌଣସି ଜୀବନ ଶିଳ୍ପୀ ତାଙ୍କୁ ଅଙ୍କନ କରିପାରନ୍ତି ନାହିଁ । ସେହି ଛବି ବିଶ୍ୱପୁରୁଷଙ୍କ ହୃଦୟରେ ପ୍ରସ୍ତୁତ ହୋଇ ନାନା ଆବରଣରେ ଆବୃତ ହୋଇରହିଛି ।" ପ୍ରକୃତରେ ଆତ୍ମିକ ସତ୍ତାର ନେତୃତ୍ୱରେ ଦେହ, ପ୍ରାଣ ଓ ମନର ସତ୍ତା ଯେଉଁଦିନ ପରିଚାଳିତ ହେବେ, ସେଇଦିନ ଶ୍ରୀଜଗନ୍ନାଥଙ୍କର ପୂର୍ଣ୍ଣାଙ୍ଗ ମହିମା ପ୍ରକଟିତ ହେବ ଏବଂ ଅନୁଭୂତ ହେବ ।

ପୁରୁଷୋତ୍ତମ ତତ୍ତ୍ୱରେ ଜ୍ଞାନ, ଭକ୍ତି ଓ କର୍ମ ଉପରେ ସୀମାହୀନ ଗୁରୁତ୍ୱ ଆରୋପିତ ହୁଏ । ଏ ତିନିଗୋଟି ଉପାଦାନ ଆଦୌ ପରସ୍ପରର ବିରୋଧୀ ନୁହଁନ୍ତି, ବରଂ ପରିପୂରକ । ଏଥିରୁ ଯେକୌଣସି ଗୋଟିଏ ଆସିଲେ ଅନ୍ୟ ଦୁଇଟି ନିଶ୍ଚୟ ଆସିଥାଆନ୍ତି । ଶ୍ରୀଜଗନ୍ନାଥ ଜ୍ଞାନୀ ପାଇଁ ଜ୍ଞାନର ପ୍ରତୀକ, କର୍ମୀ ପାଇଁ କର୍ମର ଈଶ୍ୱର ଏବଂ ଭକ୍ତ ପାଇଁ ଆରାଧ୍ୟ ଠାକୁର ।

ଶ୍ରୀଜଗନ୍ନାଥଙ୍କୁ ଦାରୁବ୍ରହ୍ମ ବୋଲି କୁହାଯାଏ । ଶ୍ରୀରାମ, ଶ୍ରୀକୃଷ୍ଣ, ନାରାୟଣ, ଶିବ ପ୍ରଭୃତି ଦେବତା ହେଉଛନ୍ତି ବ୍ରହ୍ମଙ୍କର ସଗୁଣରୂପ । ସଗୁଣ ଭଗବାନଙ୍କୁ ବ୍ରହ୍ମ ବୋଲି କୁହାଯାଏ ନାହିଁ । ଶ୍ରୀଜଗନ୍ନାଥ କୌଣସି ସଗୁଣ ରୂପ ନୁହଁନ୍ତି । ସେ ହେଉଛନ୍ତି ସାକ୍ଷାତ ସଚ୍ଚିଦାନନ୍ଦ ପୁରୁଷୋତ୍ତମଙ୍କର ବିଗ୍ରହ । ତେଣୁ ତାଙ୍କୁ ଦାରୁବ୍ରହ୍ମ ବୋଲି କୁହାଯାଏ । ମନ ମାଧ୍ୟମରେ ବ୍ରହ୍ମଙ୍କୁ ବିଚାର କରାଯାଇପାରେ ନାହିଁ । ସେ ସାକାର ଓ ନିରାକାର ଉଭୟର ଊର୍ଦ୍ଧ୍ୱରେ । ସେ ସ୍ୱତନ୍ତ୍ର ସ୍ୱରୂପରେ ପୁରୁଷୋତ୍ତମ କ୍ଷେତ୍ର ବା ପୁରୀ କ୍ଷେତ୍ରରେ ବିରାଜିତ । ଶିବ ପୁରାଣରେ ଉଲ୍ଲେଖ ଅଛି -

"ପୁରୁଷୋତ୍ତମାତ୍ ପରଂକ୍ଷେତ୍ରଂ ନାସ୍ତ୍ୟନ୍ୟତ୍ ଭବମୋଚନଂ
ତତ୍ର ସାକ୍ଷାତ୍ ପରଂବ୍ରହ୍ମ ଦାରୁବ୍ରହ୍ମଶରୀରଭୃତ୍" ।

ଅର୍ଥାତ୍ , "ମୁକ୍ତିଲାଭ କରିବା ସକାଶେ ପୁରୁଷୋତ୍ତମ କ୍ଷେତ୍ର ଛଡ଼ା ଅନ୍ୟକ୍ଷେତ୍ର ସଂସାରରେ ନାହିଁ । ଏହି କ୍ଷେତ୍ରରେ ସାକ୍ଷାତ ପରମବ୍ରହ୍ମ ଦାରୁବ୍ରହ୍ମ ରୂପେ ଶରୀର ଧାରଣ କରିଛନ୍ତି । ଉକ୍ତ ଶ୍ଳୋକର ପ୍ରଥମ ପାଦରେ ସ୍ପଷ୍ଟ ଭାବରେ ପୁରୀ କ୍ଷେତ୍ରକୁ ପୁରୁଷୋତ୍ତମ ଧାମ ଏବଂ ଦ୍ୱିତୀୟ ପାଦରେ ସାକ୍ଷାତ ପରମବ୍ରହ୍ମ ଦାରୁବ୍ରହ୍ମ ରୂପେ ଶରୀର ଧାରଣ କରିଛନ୍ତି ବୋଲି କୁହାଯାଇଛି ।

ପୁରୁଷୋତ୍ତମ ହିଁ ସ୍ୱୟଂ ବ୍ରହ୍ମ । ସେ ପୁରୁଷ ଓ ସେ ହିଁ ପ୍ରକୃତି । ଦୁଇଟି ତତ୍ତ୍ୱର ସମନ୍ୱୟ ଏକାଧାରରେ ତାଙ୍କଠାରେ ସମ୍ଭବ । ସୃଷ୍ଟି, ସ୍ଥିତି ଓ ପ୍ରଳୟ ଯେତେବେଳେ ସେ କରୁନାହାନ୍ତି ଅର୍ଥାତ୍ ସମାହିତ ସତ୍ତା ଭାବରେ ରହିଛନ୍ତି, ସେତେବେଳେ ତାଙ୍କୁ ପୁରୁଷ କୁହାଯାଏ । ଯେତେବେଳେ ଏହି ସବୁ କ୍ରିୟା ସଂପାଦନ କରୁଛନ୍ତି, ସେତେବେଳେ ତାଙ୍କୁ ପ୍ରକୃତି କୁହାଯାଏ । ଶ୍ରୀଜଗନ୍ନାଥଙ୍କଠାରେ ଏକାଧାରରେ ପୁରୁଷ ଓ ପ୍ରକୃତି ସମନ୍ୱିତ ହୋଇ ରହିଥିବାରୁ ସେ ହେଉଛନ୍ତି ପୁରୁଷୋତ୍ତମ ତତ୍ତ୍ୱର ପ୍ରତୀକ । ସେ ରାଧା ଓ କୃଷ୍ଣଙ୍କର ସମନ୍ୱିତ ଚେତନାର ପ୍ରତୀକ । ସେ ଏକାଧାରରେ ଗୌରାଙ୍ଗ ଓ ଦକ୍ଷିଣକାଳୀ ।

୧୨ଶ ଶତାବ୍ଦୀର ପ୍ରାରମ୍ଭରେ ମାଳବର ଜଣେ ରାଜାଙ୍କର ଏକ ଶିଳାଲିପିରେ ପୁରୁଷୋତ୍ତମ ନାମର ଉଲ୍ଲେଖ ଅଛି । ଏହି ଶିଳାଲିପିକୁ ନାଗପୁର ଶିଳାଲିପି ବୋଲି କୁହାଯାଏ । ଏହା ଖ୍ରୀ ୧୧୦୪ରେ ରଚିତ ବୋଲି ଜଣାଯାଏ । ଏଥିରେ ଉଲ୍ଲେଖ ରହିଛି ଯେ -

"ଦେବୋଽସୌ ପୁରୁଷୋତ୍ତମଃ ସଜଳବାଳାଶିଶ୍ରୟେ ଯଃ ଶ୍ରିୟା
ଯେନେଦଂ ବଳି ବୈରିବନ୍ଧବିଧୁରା ବିଶ୍ୱଂ ସମାଶ୍ୱାସିତଂ
ଯେନୋଧାରି ବସୁନ୍ଧରେତି ଜଧତଃ ସାନନ୍ଦମନ୍ଦାକ୍ଷତା
ତସ୍ୟ ପ୍ରାପ୍ୟ ପୟୋନିଧୌ କୁଧଲକୈଃ ବ୍ୟାଜସ୍ତୁତି ପ୍ରସ୍ତୁତା"

ଏତଦ୍‌ବ୍ୟତୀତ ପୁରୁଷୋତ୍ତମଙ୍କ ଉପସ୍ଥିତି ଯୋଗୁ ଏହି କ୍ଷେତ୍ର ଯେ ଜଗତରେ ଏକ ଦୁର୍ଲ୍ଲଭ କ୍ଷେତ୍ର ଏବଂ ଉତ୍କଳ ଦେଶ ମଧ୍ୟ ଜଗତରେ ଶ୍ରେଷ୍ଠ ବୋଲି ବ୍ରହ୍ମପୁରାଣରେ ଅବତାରଣା କରାଯାଇ କୁହାଯାଇଛି -

"ଆସ୍ତେ ତତ୍ର ମୁନିଶ୍ରେଷ୍ଠ ବିଖ୍ୟାତ ପୁରୁଷୋତ୍ତମଃ
ଯାବତ୍ ଉତ୍କଳ ମର୍ଯ୍ୟାଦାଦିକ୍ରମେଣ ପ୍ରକୀର୍ତ୍ତିତା
ତାବତ୍ କୃଷ୍ଣପ୍ରସାଦେନ ଦେଶସ୍ତ ପୁଣ୍ୟ ତମୋହି ସଃ
ଯତ୍ର ତିଷ୍ଠତି ବିଶ୍ୱାତ୍ମା ଦେଶେ ସ ପୁରୁଷୋତ୍ତମଃ"

ଅର୍ଥାତ୍ - "ହେ ମୁନିମାନେ, ସେହି କ୍ଷେତ୍ରରେ ବିଖ୍ୟାତ ପୁରୁଷୋତ୍ତମ ବିରାଜମାନ । ଦିଗବିଭାଗ ଅନୁସାରେ ଯେତେଦୂର ପର୍ଯ୍ୟନ୍ତ ଉତ୍କଳ ଦେଶର ସୀମା ଅଛି, ଯେଉଁଠାରେ ବିଶ୍ୱାତ୍ମା ପୁରୁଷୋତ୍ତମ ଜଗନ୍ନାଥ ବିରାଜମାନ, କୃଷ୍ଣଙ୍କର ପ୍ରସାଦରେ ସେହି ଦେଶ ପୁଣ୍ୟତମ" ।

ତନ୍ତ୍ର ଯାମଳ ଗ୍ରନ୍ଥର ୧୬ଶ ଖଣ୍ଡରେ ଉଲ୍ଲେଖ ଅଛି ଯେ -

"ଭାରତେ ଚୋତ୍କଳେ ଦେଶେ ଭୂସ୍ୱର୍ଗେ ପୁରୁଷୋତ୍ତମେ
ଦାରୁରୂପୀ ଜଗନ୍ନାଥୋ ଭକ୍ତାନାମଭୟପ୍ରଦଃ"

ତନ୍ତ୍ର ଯାମଳ ଗ୍ରନ୍ଥ ପ୍ରାୟ ଚତୁର୍ଥ ଶତାବ୍ଦୀ ବା ତତ୍ ପୂର୍ବରୁ ରଚିତ ହୋଇଥିବାର ଜଣାଯାଏ । ଅତଏବ ଖ୍ରୀଷ୍ଟାବ୍ଦ ୪ର୍ଥ ଶତାବ୍ଦୀ ବା ତତ୍ ପୂର୍ବରୁ ପୁରୁଷୋତ୍ତମ କ୍ଷେତ୍ରର ପ୍ରସିଦ୍ଧି ପ୍ରତିଷ୍ଠିତ ହୋଇସାରିଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଶଙ୍କରାଚାର୍ଯ୍ୟ ଶ୍ରୀକ୍ଷେତ୍ରକୁ ଆସିଲା ବେଳକୁ ଶ୍ରୀକ୍ଷେତ୍ର ପ୍ରତିଷ୍ଠା ଲାଭ କରିସାରିଥିଲା ପୁରୁଷୋତ୍ତମ କ୍ଷେତ୍ର ଭାବରେ ଓ ଶ୍ରୀଜଗନ୍ନାଥ ପ୍ରତିଷ୍ଠିତ ହୋଇସାରିଥିଲେ ପୁରୁଷୋତ୍ତମ ରୂପରେ । ନବମ ଶତାବ୍ଦୀରେ ମୁରାରୀ ମିଶ୍ରଙ୍କ ଦ୍ୱାରା ରଚିତ 'ଅନର୍ଘରାଘବ' ନାଟକରେ ଶ୍ରୀଜଗନ୍ନାଥଙ୍କୁ ପୁରୁଷୋତ୍ତମ ରୂପରେ ବର୍ଣ୍ଣନା କରାଯାଇଛି । ଏଥିରେ ଉଲ୍ଲେଖ ଅଛି ଯେ-

"ଭଗବତଃ ଶ୍ରୀ ପୁରୁଷୋତ୍ତମସ୍ୟ ଯାତ୍ରାୟାମୁପସ୍ଥାନୀୟ ସଭାସଦଃ" । ଏକାଦଶ ଶତାବ୍ଦୀର ମଧ୍ୟ ଭାଗରେ ଶ୍ରୀକୃଷ୍ଣ ମିଶ୍ରଙ୍କ ଦ୍ୱାରା ରଚିତ ହୋଇଥିଲା ସଂସ୍କୃତ ନାଟକ 'ପ୍ରବୋଧ ଚନ୍ଦ୍ରୋଦୟ' । ଏହି ନାଟକର ଦ୍ୱିତୀୟ ଅଙ୍କରେ ଜଗନ୍ନାଥଙ୍କ ମନ୍ଦିର ପ୍ରସଙ୍ଗ ସୂଚିତ । ଉକ୍ତ ନାଟକରେ ଶ୍ରୀ ଜଗନ୍ନାଥଙ୍କୁ ପୁରୁଷୋତ୍ତମ ନାମରେନାମିତ କରାଯାଇଛି । ନାଟ୍ୟକାରଙ୍କ ଭାଷାରେ -

"ଅହମୁତ୍କଳ ଦେଶାଦାଗତୋଽସ୍ମି । ଅସ୍ତିତତ୍ର ସାଗରତୀରେ ସଂନିବେଶ ପୁରୁଷୋତ୍ତମ ସଜ୍ଞିତଂ ଦେବାୟତନମ୍" ।

ଖ୍ରୀ ୧୧୩୭ରେ ବିହାରର ଗୟା ନିକଟସ୍ଥ ଗୋବିନ୍ଦ ଲିପିରୁ ଜଣାଯାଏ ଯେ ମନୋରଥ ନାମକ ଜଣେ ବ୍ୟକ୍ତି ପୁରୁଷୋତ୍ତମ କ୍ଷେତ୍ରକୁ ଆସିଥିଲେ । ଗୋବିନ୍ଦ ଲିପିରେ ଉଲ୍ଲେଖ ରହିଛି ଯେ -

"ଗତ୍ୱା ଶ୍ରୀ ପୁରୁଷୋତ୍ତମଂ ଭଗବ ହୃଦ୍ୟାମ୍ବୁତିଷ୍ଠପଠଂ
ପାରାବାରତଟ ପର୍ଣ୍ଣୟସା ଲସତ୍‌ଚନ୍ଦ୍ର ଚନ୍ଦ୍ରଗ୍ରହଣେଷି" ।

ବେଦର ଭାଷ୍ୟକାର ସାୟଣାଚାର୍ଯ୍ୟ (ଖ୍ରୀ ୧୩୦୦-ଖ୍ରୀ ୧୩୮୦)ଙ୍କ ବର୍ଣ୍ଣନାରୁ ପୁରୁଷୋତ୍ତମ ପାଠର ଦାରୁବ୍ରହ୍ମ ପୁରୁଷୋତ୍ତମଙ୍କର ସୂଚନା ମିଳେ । ସେ କହିଛନ୍ତି - 'ଅଦଃ ବିପ୍ରକୃଷ୍ଟ ଦେଶେ ବର୍ତ୍ତମାନ ଅପୁରୁଷଂ ନିର୍ମାତା ପୁରୁଷେଣ ରହିତଂ ଯଦ୍ଦାରୁ ଦାରୁମୟଂ ପୁରୁଷୋତ୍ତମାଖ୍ୟ ଦେବତା ଶରୀରଂ ସିନ୍ଧୋପାରେ ସମୁଦ୍ରତୀରେ ପ୍ଲବତେ ଜଳୋପରି ବର୍ତ୍ତତେ" । ଏହାର ସାରମର୍ମ ହେଲା - "ବର୍ତ୍ତମାନ ସମୁଦ୍ରରେ ପୁରୁଷୋତ୍ତମ ନାମକ ଦେବତାଙ୍କ ଶରୀର ଜଳ ଉପରେ ଭାସମାନ" । ଶ୍ରୀ ଜଗନ୍ନାଥ ଯେ ସ୍ୱୟଂ ପୁରୁଷୋତ୍ତମ, ଏହି ତଥ୍ୟଟି ଏଥିରୁ ସ୍ପଷ୍ଟ ।

ସ୍କନ୍ଦ ପୁରାଣ ଉତ୍କଳ ଖଣ୍ଡରେ ଉଲ୍ଲେଖ ରହିଛି ଯେ -

"ଅତୋ ଦଶାବତାରାଣାଂ ଦର୍ଶନାଦୈସ୍ତୁ ଯତ୍ ଫଳମ୍

x x x

ତତ୍ ଫଳଂ ଲଭତେ ମର୍ତ୍ତ୍ୟୋ ଦୃଷ୍ଟ୍ୱା ଶ୍ରୀପୁରୁଷୋତ୍ତମମ୍" ।

ଏହାର ସାରମର୍ମ ହେଉଛି, " ଏହି ହେତୁ ମତ୍ସ୍ୟାଦି ଦଶାବତାର ଦର୍ଶନାଦି କଲେ ଯେଉଁ ଫଳ ହୁଏ, ମାନବ କେବଳ ପୁରୁଷୋତ୍ତମଙ୍କ ଦର୍ଶନରେ ସେହି ଫଳ ଲାଭ କରିଥାଏ" । ପୁନଶ୍ଚ ଏହି ସ୍କନ୍ଦ ପୁରାଣର ଉତ୍କଳ ଖଣ୍ଡରେ ଋଷିମାନଙ୍କୁ ଜୈମିନୀ ଶ୍ରୀଜଗନ୍ନାଥଙ୍କ ବିବିଧ ଯାତ୍ରାର ଅନୁଷ୍ଠାନ ପ୍ରସଙ୍ଗ ଅବତାରଣା କଲାବେଳେ ଶ୍ରୀଜଗନ୍ନାଥଙ୍କୁ ପୁରୁଷୋତ୍ତମ ବୋଲି ଉଲ୍ଲେଖ କରିଛନ୍ତି । ଜୈମିନୀ କହୁଛନ୍ତି-

"ଶ୍ରୁଣ୍ୱତାଂ ତତ୍ତ୍ୱତୋ ବ୍ରୁହି ଯଥାଦେଶଂ କୃତଃପୁରା
ସର୍ବଥା ବର୍ତ୍ତତେ ଲୋକହିତାୟ ପୁରୁଷୋତ୍ତମଃ
ନାନାସ୍ତୁଣ ବିକାରୈଶ୍ଚ ନାନାରୂପ ବିଚେଷ୍ଟ ତୈଃ
ନାନାଭାବ ବିକାସେନ ବିହରଣ ଜଗନ୍ମୟଃ"

ଅର୍ଥାତ୍- "ଭଗବାନ ପୁରୁଷୋତ୍ତମ ସବୁବେଳେ ଲୋକମାନଙ୍କର ହିତ ପାଇଁ ନାନା ପ୍ରକାର ଲୀଳା କରିବାରେ ପ୍ରବୃତ୍ତ ହୋଇଥାନ୍ତି ଏବଂ ସେଥିପାଇଁ ସେହି ଜଗନ୍ମୟ ଜଗନ୍ନାଥ ଦେବ ନାନା ପ୍ରକାର ରୂପ ଧାରଣ

ନାନା ପ୍ରକାର ରୂପ ଓ ଚେଷ୍ଟାରେ ଏବଂ ନାନା ପ୍ରକାର ଭାବରେ ବିହାର କରନ୍ତି ।

୨ୟ ଅନଙ୍ଗଭୀମଦେବ ଖ୍ରୀ ୧୨୧୬ରେ ବର୍ତ୍ତମାନର ଶ୍ରୀମନ୍ଦିର ନିର୍ମାଣ କରିଥିଲେ । ମନ୍ଦିର ନିର୍ମାଣ ପ୍ରସଙ୍ଗରେ ମାଦଳାପାଞ୍ଜିରେ ପ୍ରଦତ୍ତ ବର୍ଣ୍ଣନାରେ ଶ୍ରୀକ୍ଷେତ୍ର ଶବ୍ଦ ପରିବର୍ତ୍ତେ ପୁରୁଷୋତ୍ତମ କଟକ ଶବ୍ଦ ରହିଛି । ମାଦଳାପାଞ୍ଜିରେ ଉଲ୍ଲେଖ ଅଛି "୨୧୫ ଙ୍କ ସାହି ଫଗୁଣ ଶୁକ୍ଳ ଦଶମୀ ତହାଁ ଏକାଦଶୀ ଗୁରୁବାରରେ ପୁରୁଷୋତ୍ତମ କଟକେ ପାତ୍ରମନ୍ତ୍ରୀ ସଭାସଦ୍‌ବର୍ଗଙ୍କୁ ସମ୍ବୋଧନ କରି ଏପରି ଆଜ୍ଞା ଶୁଣାଇଥିଲେ "- ଇତ୍ୟାଦି ଇତ୍ୟାଦି ।

ଶାରଳାମହାଭାରତର ଭୀଷ୍ମପର୍ବରେ ଶ୍ରୀଜଗନ୍ନାଥଙ୍କ ବର୍ଣ୍ଣନା ପ୍ରସଙ୍ଗରେ କବି ପୁରୁଷୋତ୍ତମ କ୍ଷେତ୍ର ଓ ପୁରୁଷୋତ୍ତମ ପ୍ରଭୁଙ୍କର ନାମ ଉଲ୍ଲେଖ କରିଛନ୍ତି । ତାଙ୍କ ଭାଷାରେ -

"ପୁରୁଷୋତ୍ତମ କ୍ଷେତ୍ର ଯେ କୋଟିୟେ ତୀର୍ଥ ଘେନି
ବସିଲେ ହରି ବଳରାମ ସୁଭଦ୍ରା ଯେ ତିନି

x x x

ପୁରୁଷମାନଙ୍କର ଉତ୍ତମ ଯେଣୁ ପୁରୁଷୋତ୍ତମ ନାମ
ପରମାନନ୍ଦ ସ୍ୱାମୀ ଅଧମ ଉଦ୍ଧାରଣ" ।

ପୁନଶ୍ଚ କାର୍ତ୍ତିକା ପର୍ବରେ କବି ସାରଳା ଦାସ ଶ୍ରୀଜଗନ୍ନାଥଙ୍କର ବିଭିନ୍ନ ନାମ ମଧ୍ୟରୁ ପୁରୁଷୋତ୍ତମ ନାମ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । କବିଙ୍କ ଭାଷାରେ -

"ଜୟତୁ ମାଧବ ପୁରୁଷଙ୍କର ଉତ୍ତମ
ଜୟତୁ ମାଧବ ପ୍ରସନ୍ନ ପରଂବ୍ରହ୍ମ"

ବ୍ରହ୍ମସ୍ଥାନିଧି ଗ୍ରନ୍ଥଟି ରଚିତ ହୋଇଛି ୧୬ଶ ଶତାବ୍ଦୀର ୨ୟ-ଚତୁର୍ଥାଂଶ ଭିତରେ । ଏଥିରେ ସ୍ରଷ୍ଟା ନାରାୟଣାନନ୍ଦ ଅବଧୂତ ସ୍ୱାମୀ ପ୍ରସଙ୍ଗକ୍ରମେ ଶ୍ରୀଜଗନ୍ନାଥଙ୍କ ମହିମା ବର୍ଣ୍ଣନା ଅବକାଶରେ ନୀଳାଚଳ କ୍ଷେତ୍ର, ଶ୍ରୀକ୍ଷେତ୍ର ଶବ୍ଦ ଉଲ୍ଲେଖ କରିବା ପରିବର୍ତ୍ତେ ପୁରୁଷୋତ୍ତମ କ୍ଷେତ୍ରର ନାମ ଉଲ୍ଲେଖ କରିଛନ୍ତି ।

ତାଙ୍କ ଭାଷାରେ - "ହାଦେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ସିଦ୍ଧମାନେ ସ୍ଥିରଚିତ୍ତ ଘେନି କରିଥାନ୍ତି ବାସ । ନିରନ୍ତରେ ବିଷୟରସେ ନିର୍ମାଲ୍ୟ ଅଛନ୍ତି" । ଇତ୍ୟାଦି ଇତ୍ୟାଦି ।

ଦିବାକର ଦାସଙ୍କ ରଚିତ ଜଗନ୍ନାଥ ଚରିତାମୃତ ଗ୍ରନ୍ଥରେ ବର୍ଣ୍ଣିତ ପୁରୁଷୋତ୍ତମ ଓ ଶ୍ରୀମଦ୍ ଭାଗବତ ଗୀତାର ପୁରୁଷୋତ୍ତମ ଅଭିନ୍ନ । ଶ୍ରୀମଦ୍ ଭଗବତ ଗୀତାର ପୁରୁଷୋତ୍ତମ ଯୋଗ ଅଧ୍ୟାୟର ୧୮ଶ ଶ୍ଳୋକରେ ଉଲ୍ଲେଖ ରହିଛି -

"ଯସ୍ମାତ କ୍ଷରମତୀ ତୋଽହମକ୍ଷରାଦପି ଚୋତ୍ତମଃ
ଅତୋଽସ୍ମି ଲୋକେ ବେଦେ ଚ ପ୍ରଥିତଃ ପୁରୁଷୋତ୍ତମଃ"

ଅର୍ଥାତ୍ - "ଯେହେତୁ ମୁଁ କ୍ଷରକୁ ଅତିକ୍ରମ କରି ଅବସ୍ଥିତ ଏବଂ ଅକ୍ଷରଠାରୁ ମଧ୍ୟ ମୁଁ ଉତ୍ତମ, ସେଥିପାଇଁ ହିଁ ଲୋକରେ (ଇହ ଲୋକରେ, ପୁରାଣାଦି ଶାସ୍ତ୍ରରେ) ଓ ବେଦରେ ମୁଁ ପୁରୁଷୋତ୍ତମ ନାମରେ ପ୍ରଖ୍ୟାତ ହୋଇଛି" ।

ଦିବାକର ଦାସଙ୍କ ଭାଷାରେ -

X X X X - ଏହି ଯେ ପୁରୁଷୋତ୍ତମ
ବ୍ରହ୍ମାଣ୍ଡ ପାଳନ କରନ୍ତି । ପୁଣି ଏ ସ୍ଥାନେ ଅବସ୍ଥିତି
ଏହି ଯେ କ୍ଷେତ୍ରଜ୍ଞ ପୁରୁଷ । କ୍ଷର ଅକ୍ଷର ଏ ବିଶେଷ ।
(ଜଗନ୍ନାଥ ଚରିତାମୃତ-୬ଷ୍ଠ ଅଧ୍ୟାୟ)

ପୁନଶ୍ଚ

"କ୍ଷର ଅକ୍ଷର ଅତିକ୍ରମ । କରି ବିରାଜେ ଏହି ଧାମ ।
(ଜଗନ୍ନାଥ ଚରିତାମୃତ-୧୨ଶ ଅଧ୍ୟାୟ)

ଅଚ୍ୟୁତାନନ୍ଦଙ୍କର ହରିବଂଶରେ ଶ୍ରୀଜଗନ୍ନାଥଙ୍କ ବନ୍ଦନା ଓ ବର୍ଣ୍ଣନା ବିଭିନ୍ନ ପରିପ୍ରେକ୍ଷୀରେ କରାଯାଇଛି । କବିଙ୍କ ଭାଷାରେ

"ନମାମି ଶ୍ରୀନୀଳଗିରି ହେ ପୁରୁଷୋତ୍ତମ
ସକଳ ବେଦ ପୁରାଣେ ଅଧିକ ତୋ'ନାମ"

ଜଗନ୍ନାଥ ଦାସଙ୍କର ଏକ ରଚନାର ନାମ ହେଉଛି "ଶ୍ରୀ ନିତ୍ୟଗୁପ୍ତ ଚୂଡ଼ାମଣିଃ" । ଏଥିରେ ପୁରୁଷୋତ୍ତମ କ୍ଷେତ୍ରକୁ ନିତ୍ୟ ଗୋଲୋକ ନାମରେ ନାମିତ କରାଯାଇଛି । କବି ଉଲ୍ଲେଖ କରିଛନ୍ତି -

" ଯଥା ଗୋଲୋକ ନଗରୀ ତଥା ଶ୍ରୀପୁରୁଷୋତ୍ତମଃ
ଲେଶ ମାତ୍ରଂ ନାସ୍ତି ଭିନ୍ନଂ ହ୍ୟେମେକତ୍ର ଭାବନା" ।

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ସ୍ୱରଚିତ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ ଉଲ୍ଲେଖ କରିଛନ୍ତି ଯେ ଏ କ୍ଷେତ୍ର ହେଉଛି ଶ୍ରେଷ୍ଠ । ଏହାର ନାମ ପୁରୁଷୋତ୍ତମ, କାରଣ ଏଠାରେ ସ୍ୱୟଂ ପୁରୁଷୋତ୍ତମ ଆବିର୍ଭୂତ ହୋଇଛନ୍ତି ଏବଂ ନାମୀଙ୍କ ନାମାନୁସାରେ କ୍ଷେତ୍ରର ନାମ ଏପରି ରଖାଯାଇଛି । 'ସୁଭଦ୍ରା ପରିଣୟ' କାବ୍ୟରେ କବି ଉଲ୍ଲେଖ କରିଛନ୍ତି-

"ସିନ୍ଧୁ ତଟେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରାଜ
ସାଧୁଜନେ ଅଛି ତହିଁ ବହୁତ ଆଶ୍ଚର୍ଯ୍ୟ ହେ" ।

'ଶଶିରେଖା' କାବ୍ୟରେ ପଦ୍ମନାଭ ଶ୍ରୀଚନ୍ଦନ ଶ୍ରୀଜଗନ୍ନାଥଙ୍କୁ ପୁରୁଷୋତ୍ତମ ଭାବରେ ବର୍ଣ୍ଣନା କରିଛନ୍ତି । ମଙ୍ଗଳାଚରଣରେ ସେ ଶ୍ରୀଜଗନ୍ନାଥଙ୍କୁ ଜଗତର କର୍ତ୍ତା, ଚତୁର୍ବର୍ଗଦାତା, ଦାରୁବ୍ରହ୍ମ ଓ ଶ୍ରୀପୁରୁଷୋତ୍ତମ ରୂପେ ବର୍ଣ୍ଣନା କରିଛନ୍ତି । ତାଙ୍କ ଭାଷାରେ -

"ଜୟ ଜୟ ଜଗନ୍ନାଥ ଜଗତ କରତା
ଧର୍ମ ଅର୍ଥ କାମ ମୋକ୍ଷ ଚତୁର୍ବର୍ଗଦାତା
ଦାରୁରୂପେ ବ୍ରହ୍ମ ବିଜେ କରି ନୀଳାଚଳେ
ଶ୍ରୀପୁରୁଷୋତ୍ତମେ ଯାହା କହନ୍ତି ଭୂତଳେ" ।

ଏହାଛଡ଼ା ରୀତିଯୁଗ ତଥା ଆଧୁନିକ ଯୁଗରେ ମଧ୍ୟ ଶ୍ରୀଜଗନ୍ନାଥଙ୍କୁ ବହୁସ୍ଥାନରେ ପୁରୁଷୋତ୍ତମ ନାମରେ ନାମିତ କରାଯିବାର ଦୃଷ୍ଟାନ୍ତ ରହିଛି । ପରିଶେଷରେ ସଂକ୍ଷେପରେ ଏତିକି କୁହାଯାଇପାରେ ଯେ ଶ୍ରୀପୁରୁଷୋତ୍ତମ ଓ ଶ୍ରୀଜଗନ୍ନାଥ ହେଉଛନ୍ତି ଏକ ଓ ଅଭିନ୍ନ ।

ପ୍ରାଧ୍ୟାପକ, ଓଡ଼ିଆ ବିଭାଗ, ବାଣୀବିହାର



# ଶ୍ରୀକୃଷ୍ଣସ୍ୱରୂପୀ ଜଗନ୍ନାଥଙ୍କ ରଥଯାତ୍ରା

● ଶ୍ରୀ ଜଗବନ୍ଧୁ ପାଢ଼ୀ

ଶ୍ରୀଜଗନ୍ନାଥଙ୍କ ପୃଥିବୀ ପ୍ରସିଦ୍ଧ ରଥଯାତ୍ରା ପ୍ରସଙ୍ଗର ଆରମ୍ଭରେ ବ୍ରହ୍ମ ପୁରାଣରେ ଏହାର ଫଳଶ୍ରୁତି କରାଯାଇ କଥିତ ହୋଇଛି:

ଗୁଣ୍ଡିକା ମଣ୍ଡପ ଯାନ୍ତଂ ଯେ ପଶ୍ୟନ୍ତି ରଥେ ସ୍ଥିତଂ
କୃଷ୍ଣ ବଳଂ ସୁଭଦ୍ରାଂ ଚ ତେ ଯାନ୍ତି ଭବନଂ ହରେଃ ।
ଯେ ପଶ୍ୟନ୍ତି ତଦା କୃଷ୍ଣ ସପ୍ତାହଂ ମଣ୍ଡପେ ସ୍ଥିତଂ
ହଳିନଂ ଚ ସୁଭଦ୍ରାଂ ଚ ବିଷ୍ଣୁଲୋକଂ ବ୍ରଜନ୍ତି ତେ ।

(ବ୍ରହ୍ମପୁରାଣ-୬୩ ଅଧ୍ୟାୟ ୧-୨ ଶ୍ଳୋକ)

ଏହି ପୁରାଣରେ ଗୁଣ୍ଡିଚା ଶବ୍ଦଟିକୁ ଗୁଣ୍ଡିକା (ଅନ୍ୟ କେତେକ ସଂସ୍କରଣରେ ଗୁଣ୍ଡିକା) ବୋଲି ଉଲ୍ଲେଖ କରି ପୁରାଣକାର ପ୍ରସିଦ୍ଧ ଶ୍ରୀଜଗନ୍ନାଥଙ୍କର ରଥଯାତ୍ରା ବିଷୟରେ ନିଜର ଅଭିମତ ପ୍ରମାଣିତ କରିଛନ୍ତି ସତ୍ୟ, କିନ୍ତୁ ସେ ଶ୍ରୀଜଗନ୍ନାଥଙ୍କ ତ୍ରିମୂର୍ତ୍ତିଙ୍କୁ କୃଷ୍ଣ, ବଳରାମ ଓ ସୁଭଦ୍ରା ବୋଲି ଅଭିହିତ କରିଥିବା ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ । କାରଣ ଏହି ପୁରାଣର ବର୍ଣ୍ଣନା ଅନୁସାରେ ମାଳବର ମହାରାଜ ଇନ୍ଦ୍ରଦ୍ୟୁମ୍ନ ଯେଉଁ ବିଗ୍ରହଙ୍କୁ ନିଜର ନବନିର୍ମିତ ମନ୍ଦିରରେ ପ୍ରତିଷ୍ଠା କରିଥିଲେ, ସେମାନେ ଶ୍ରୀକୃଷ୍ଣ, ବଳରାମ ଓ ସୁଭଦ୍ରା ହିଁ ଥିଲେ । ସମ୍ପୃକ୍ତ ଶ୍ଳୋକଟି ହେଉଛି ;–

କାରୟିତ୍ୱା ମହାବେଦ୍ୟାଂ ପ୍ରାସାଦଂ ଚୈବ ବିଶ୍ରୁତଂ
ତତ୍ର ସଙ୍କର୍ଷଣ କୃଷ୍ଣ ସୁଭଦ୍ରାଂ ସ୍ଥାପ୍ୟ ବୀର୍ଯ୍ୟବାନ୍ ।

(ବ୍ରହ୍ମପୁରାଣ ଅ.୪୧ ଶ୍ଳୋ-୧୧)

ମହାରାଜା ଇନ୍ଦ୍ରଦ୍ୟୁମ୍ନ ପ୍ରଥମ କରି ଏହି ତିନି ଦେବତାଙ୍କର ପ୍ରତିମା ଗଠନ କରିବା ଅବସରରେ ତାଙ୍କୁ ବ୍ରାହ୍ମଣ ରୂପଧାରୀ ବିଷ୍ଣୁ ଆଦେଶ ଦେଉଥିଲେ ;–

ଶିଳ୍ପିମୁଖ୍ୟାୟ ବିପ୍ରେନ୍ଦ୍ରଃ କୃଷ୍ଣସ୍ୟ ପ୍ରତିମାମିମା
କୃଷ୍ଣରୂପ ପରଂ ଶାନ୍ତଂ ପଦ୍ମପତ୍ରାୟତେକ୍ଷଣମ୍
ଶ୍ରୀବତ୍ସକୌସ୍ତୁଭଧରଂ ଶଙ୍ଖଚକ୍ର ଗଦାଧରମ୍ ।

(ବ୍ରହ୍ମପୁରାଣ ଅ.-୪୭, ଶ୍ଳୋ-୪୩-୪୪)

ବିଶ୍ୱକର୍ମା ମଧ୍ୟ ଏହିପରି ଶ୍ରୀକୃଷ୍ଣ ବିଗ୍ରହ ନିର୍ମାଣ କରିଥିଲେ–
ଦ୍ୱିତୀୟ ପ୍ରତିମାକାଶ ନୀଳଜୀମୂତସନ୍ନିଭ
ଅତସୀପୁଷ୍ପସଙ୍କାଶ ପଦ୍ମପତ୍ରାୟତେକ୍ଷଣମ୍
ପୀତବାସସମେତ୍ୟଙ୍କ ଶୁଭଂ ଶ୍ରୀବତ୍ସଲକ୍ଷଣଂ
ଚକ୍ରପୂର୍ଣ୍ଣକରଂ ଦିବ୍ୟଂ ସର୍ବପାପହରଂ ହରିମ୍ ।

(ବ୍ରହ୍ମପୁରାଣ- ଅ.-୪୭ -ଶ୍ଳୋକ-୫୨-୫୩)

ଏହି ସବୁ ଉଦ୍ଧୃତିରୁ ପ୍ରତିପାଦିତ ହୁଏ ଯେ ଶ୍ରୀ ନୀଳାଚଳରେ ଅଧିଷ୍ଠିତ ଜଗନ୍ନାଥ ମୌଳିକ ରୂପରେ ଶଙ୍ଖ-ଚକ୍ର-ଗଦାଧାରୀ ଶ୍ରୀବତ୍ସଲାଞ୍ଛନ କୌସ୍ତୁଭଶୋଭିତ ଲକ୍ଷ୍ମୀପତି ବିଷ୍ଣୁ ଥିଲେ ମଧ୍ୟ ଓ ତାଙ୍କର କୃଷ୍ଣରୂପ ଅନ୍ୟତମ ଅବତାର ହୋଇଥିଲେ ମଧ୍ୟ ପରବର୍ତ୍ତୀ କାଳରେ ସେହି ଅବତାର କୃଷ୍ଣଙ୍କୁ ଅବତାରୀ ପରମେଶ୍ୱର ପରମପୁରୁଷ ବିଷ୍ଣୁଙ୍କ ସହିତ ଏକ ବା ଅଭିନ୍ନ ରୂପରେ ଉପସ୍ଥାପିତ କରିବାର ଯେଉଁ ଉଦ୍ୟମ ହୋଇଥିଲା, ତାହାରି ପ୍ରଭାବରେ ବ୍ରହ୍ମପୁରାଣର ପୁରାଣକାର ପରବ୍ରହ୍ମ ପରମେଶ୍ୱର ମହାବିଷ୍ଣୁ ସ୍ୱରୂପ ଜଗନ୍ନାଥଙ୍କର ରଥଯାତ୍ରାକୁ କୃଷ୍ଣଙ୍କର ରଥଯାତ୍ରା ବୋଲି ଉଲ୍ଲେଖ କରିଛନ୍ତି । ଭାଗବତ ମହାପୁରାଣରେ ଶ୍ରୀକୃଷ୍ଣଙ୍କର ମହିମା ଖ୍ୟାପନ କରି ପ୍ରଥମରୁ ହିଁ କୁହାଯାଇଛି:–

ଅବତାରା ହ୍ୟସଂଖ୍ୟେୟା ହରେଃ ସତ୍ତ୍ୱନିଧେର୍ଦ୍ୱିଜାଃ
ଯଥା ବିଦାସିନଃ କୁଲ୍ୟାଃ ସରସଃ ସ୍ୟୁଃ ସହସ୍ରଶଃ
ଋଷୟୋ ମନବୋ ଦେବା ମନୁପୁତ୍ରା ମହୌଜସଃ
କଳାଃ ସର୍ବେ ହରେରେବ ସପ୍ରଜାପତୟସ୍ତଥା
ଏତେ ଚାଂଶକଳାଃ ପୁଂସଃ କୃଷ୍ଣସ୍ତୁ ଭଗବାନ୍ ସ୍ୱୟଂ
ଇନ୍ଦ୍ରାରି ବ୍ୟାକୁଳଂ ଲୋକଂ ମୃଡୟନ୍ତି ଯୁଗେ ଯୁଗେ ।

(ଭାଗବତ ମହାପୁରାଣ- ୧ମ ସ୍କନ୍ଧ- ଅ-୩, ଶ୍ଳୋ-୨୬-୨୮)

ଏହାର ଅର୍ଥ ହେଉଛି– ହରି ବା ବିଷ୍ଣୁ ହେଉଛନ୍ତି ସତ୍ତ୍ୱଗୁଣର ଭଣ୍ଡାର । ଯେପରି ସଦା ପ୍ରବହମାନ ନଦୀରୁ ହଜାର ହଜାର ନାଳ ବାହାରିଥାନ୍ତି, ସେହିପରି ହରିଙ୍କଠାରୁ ସବୁ ଋଷି, ସବୁ ମନୁ, ସବୁ ଦେବତା, ମନୁପୁତ୍ର, ପ୍ରଜାପତି ସମସ୍ତେ ଜନ୍ମ ହୋଇଛନ୍ତି । ସେମାନେ ସମସ୍ତେ ସେହି ହରିଙ୍କର ହିଁ କଳା, କିନ୍ତୁ ସେମାନେ ତାଙ୍କର ଅଂଶ କଳା, ଅଥଚ କୃଷ୍ଣ ହେଉଛନ୍ତି ସ୍ୱୟଂ ଭଗବାନ୍, ଅର୍ଥାତ ଷୋଳ କଳାରେ ପରିପୂର୍ଣ୍ଣ । ଯେତେବେଳେ ଜଗତ ଇନ୍ଦ୍ରାରି ବା ଅସୁରମାନଙ୍କ ଦ୍ୱାରା ଉତ୍ପୀଡ଼ିତ ହୋଇ ବ୍ୟାକୁଳ ହୋଇଯାଏ, ସେତେବେଳେ ଭଗବାନ ବିଷ୍ଣୁ ଅବତାର ଗ୍ରହଣ କରନ୍ତି । ଏହି କଥା ଗୀତାରେ ମଧ୍ୟ ଶ୍ରୀକୃଷ୍ଣ ସ୍ୱୟଂ ଅର୍ଜୁନଙ୍କୁ କହିଥିବା ସର୍ବଜନ ବିଦିତ ।

ଭାଗବତର ପୂର୍ବ ଉଦ୍ଧୃତିରେ 'ପୁଂସଃ' ଶବ୍ଦଟିକୁ ଲକ୍ଷ୍ୟ କରାଯାଇପାରେ । ଏଠାରେ 'ପୁଂ' ବା ପୁରୁଷ ଶବ୍ଦଦ୍ୱାରା ଯେଉଁ ପରମତତ୍ତ୍ୱଙ୍କର ନିର୍ଦ୍ଦେଶ କରାଯାଇଛି, ସେ ବେଦୋକ୍ତ ପୁରୁଷସୂକ୍ତର ଦେବତା ସହସ୍ରଶୀର୍ଷା, ସହସ୍ରାକ୍ଷ, ସହସ୍ରପାଦ ପୁରୁଷଙ୍କ ବ୍ୟତୀତ ଅନ୍ୟ କେହି ହୋଇ ନପାରନ୍ତି । କାରଣ ଏହି ଭାଗବତରେ ହିଁ ତାଙ୍କର ପ୍ରଥମ ଷୋଡ଼ଶ କଳାତ୍ମକ ରୂପ ପୁରୁଷ ବୋଲି କୁହାଯାଇଛି–

"ଜଗୃହେ ପୌରୁଷଂ ରୂପଂ ଭଗବାନ୍ ମହଦାଦିଭିଃ
ସମ୍ଭୂତଂ ଷୋଡ଼ଶକଳାମାଦୌ ଲୋକସିସୃକ୍ଷୟା ।"

(ଭାଗବତ- ସ୍କନ୍ଧ-୩, ଅ-୩, ଶ୍ଳୋ-୧)

ଅର୍ଥାତ୍ ଯେତେବେଳେ ନିରାକାର, ନିର୍ଗୁଣ, ନିର୍ବିକାର ବ୍ରହ୍ମ ଜଗତ ସୃଷ୍ଟି କରିବାର ଇଚ୍ଛା କରନ୍ତି, ସେହି ସମୟରେ ସେ ନିଜର ଷୋଳ କଳାରେ ପୁରୁଷର ରୂପ ଧାରଣ କରନ୍ତି । ତହିଁରେ ମହତ୍, ଅହଙ୍କାର ପ୍ରଭୃତି ୨୩ ତତ୍ତ୍ୱ ରହିଥାଏ । ନୀଳାଚଳର ଜଗନ୍ନାଥ ସେହି ପୁରୁଷ ବା ପୁରୁଷୋତ୍ତମ ରୂପ । ଶ୍ରୀଜଗନ୍ନାଥଙ୍କର ମୌଳିକ ନାମ ପୁରୁଷୋତ୍ତମ । ବିଭିନ୍ନ ପୁରାଣ, କାବ୍ୟ, ଅଭିଲେଖ, ଦର୍ଶନ ଇତ୍ୟାଦିରେ ତାଙ୍କର ଏହି ନାମ ପ୍ରସିଦ୍ଧ । ସ୍କନ୍ଦ ପୁରାଣର ଉତ୍କଳଖଣ୍ଡରେ ଉଲ୍ଲେଖ ଅଛି ଯେ ମହାରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଅନୁରୋଧରେ ବ୍ରହ୍ମା ମର୍ତ୍ତ୍ୟଲୋକକୁ ଆଗମନ କରି ଯେତେବେଳେ ତାଙ୍କ ଦ୍ୱାରା ନିର୍ମିତ ମନ୍ଦିରରେ ନବନିର୍ମିତ ଦେବବିଗ୍ରହମାନଙ୍କୁ ପ୍ରତିଷ୍ଠା କରିଥିଲେ, ସେହି କାଳରେ ସେ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ସେହି ପୁରୁଷସୂକ୍ତ ମନ୍ତ୍ରକୁ ହିଁ ପ୍ରୟୋଗ କରିଥିଲେ । ଯଥା:-

"ଦ୍ୱିଷଡ଼କ୍ଷର ମନ୍ତ୍ରେଣ ବଳଭଦ୍ରମପୂଜୟତ୍
ସୂକ୍ତେନ ପୌରୁଷେଣୈନଂ ନାରାୟଣମନାମୟମ୍
ଦେବୀ ସୂକ୍ତେନ ଚକ୍ରଂ ଚ ଦ୍ୱାଦଶାକ୍ଷରକେଣ ଚ
ପୂଜୟିତ୍ୱାନୁଗ୍ରହାୟ ପାର୍ଥିବସ୍ୟ ନ୍ୟବେଦୟତ୍ ।"

(ସ୍କନ୍ଦ ପୁରାଣ- ଉତ୍କଳଖଣ୍ଡ- ଅ-୨୯, ଶ୍ଳୋ-୩-୪୬)

ଅର୍ଥାତ୍ ବ୍ରହ୍ମା ଦ୍ୱାଦଶାକ୍ଷର ମନ୍ତ୍ରରେ ବଳଭଦ୍ରଙ୍କୁ, ପୌରୁଷ ସୂକ୍ତରେ ନାରାୟଣଙ୍କୁ, ଦେବୀସୂକ୍ତରେ ସୁଭଦ୍ରାଙ୍କୁ ଓ ଦ୍ୱାଦଶାକ୍ଷର ମନ୍ତ୍ରରେ ଚକ୍ରଙ୍କୁ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ପ୍ରତି ଅନୁଗ୍ରହ ପୂର୍ବକ ପୂଜା କରିଥିଲେ । ତେଣୁ ଏହାଦ୍ୱାରା ପ୍ରତିପାଦିତ ହୁଏ ଯେ ନୀଳାଦ୍ରିପତି ଜଗନ୍ନାଥ ପୁରୁଷସୂକ୍ତର ଦେବତା ପୁରୁଷ ବା ପୁରୁଷୋତ୍ତମ । ସେ ହିଁ ନାରାୟଣ ବା ବିଷ୍ଣୁ ଓ ସେ ହିଁ ବିଷ୍ଣୁଙ୍କର ଷୋଡ଼ଶକଳାରେ ପରିପୂର୍ଣ୍ଣ କୃଷ୍ଣ । ବ୍ରହ୍ମସଂହିତାରେ ଏହାର ଆଉ ଏକ ପ୍ରମାଣ ରହିଛି । ତାହା ହେଉଛି:-

"ରାମାଦିମୂର୍ତ୍ତିଷୁ କଳାନିୟମେନ ତିଷ୍ଠନ୍
ନାନାବତାରମକରୋଦ୍ ଭୁବନେଷୁ କିନ୍ତୁ
କୃଷ୍ଣଃ ସ୍ୱୟଂ ସମଭବତ୍ ପରମଃ ପୁମାନ୍ ଯୋ
ଗୋବିନ୍ଦମାଦିପୁରୁଷଂ ତମହଂ ଭଜାମି । (ଶ୍ଳୋକ-୩୯)

ଏହାର ଅର୍ଥ ହେଉଛି- ଯେଉଁ ପରମ ପୁରୁଷ (ପୁରୁଷୋତ୍ତମ) ସ୍ୱୟଂ ଭଗବାନ୍ ରାମ ପ୍ରଭୃତି ମୂର୍ତ୍ତିମାନଙ୍କରେ କଳାନିୟମରେ ଅବସ୍ଥାନ କରି ଭୁବନମାନଙ୍କରେ ଭିନ୍ନ ଭିନ୍ନ ଅବତାର ଗ୍ରହଣ କରିଥିଲେ, ସେ ସ୍ୱୟଂ କୃଷ୍ଣ ହୋଇ ଜନ୍ମ ହୋଇଥିଲେ । ସେହି ଆଦିପୁରୁଷ ଗୋବିନ୍ଦଙ୍କୁ ମୁଁ ଭଜନ କରୁଛି ।

ଏହି ଦୃଷ୍ଟିରୁ ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ହେଉଛି ଶ୍ରୀକୃଷ୍ଣଙ୍କର ରଥଯାତ୍ରା । ସ୍କନ୍ଦପୁରାଣର ଉତ୍କଳଖଣ୍ଡରେ ଗୁଣ୍ଡିଚା ଯାତ୍ରାର ବର୍ଣ୍ଣନା ଅବସରରେ ଜଗନ୍ନାଥଙ୍କର ଏହି ସମସ୍ତ ନାମର ଉଲ୍ଲେଖ କରାଯାଇଛି ଯଥା:-

(୧) କରେ କୃତ୍ୱା ଜଗନ୍ନାଥଂ ଭ୍ରାମୟିତ୍ୱା ରଥୋତ୍ତମେ
ରାମଂ କୃଷ୍ଣଂ ସୁଭଦ୍ରାଂ ଚ ରଥମଧ୍ୟେ ନିବେଶୟେତ୍

(ସ୍କନ୍ଦ ପୁରାଣ-ଉତ୍କଳଖଣ୍ଡ-ଅ-୩୩, ଶ୍ଳୋ-୫୦)

(୨) ମହାବେଦ୍ୟାଂ ବ୍ରଜନ୍ତଂ ତଂ ରଥସ୍ଥଂ ପୁରୁଷୋତ୍ତମଂ
ବଳଭଦ୍ରଂ ସୁଭଦ୍ରାଂ ଚ ଜନ୍ମକୋଟିଶତୋଦ୍ଭବଂ
ଦୃଷ୍ଟ୍ୱା ପାପଂ ନାଶୟନ୍ତି ନାତ୍ର କାର୍ଯ୍ୟା ବିଚାରଣା । (ଏତ୍ର- ଶ୍ଳୋ-୫୯)

୩) ପଶ୍ୟନ୍ତି ଯେ ରଥେ ଯାନ୍ତଂ ଦାରୁବ୍ରହ୍ମ- ସନାତନଂ
ପଦେ ପଦେଽଶ୍ୱମେଧସ୍ୟ ଫଳଂ ତେଷାଂ ପ୍ରକୀର୍ତ୍ତିତମ୍ (ଏତ୍ର ଶ୍ଳୋ-୬୫)
୪) ଗୁଣ୍ଡିଚାମଣ୍ଡପଂ ଯାନ୍ତଂ କୃଷ୍ଣଂ ଭକ୍ତିସମନ୍ୱିତଃ
ନ ମାତୁର୍ଗର୍ଭବାସସ୍ୟ ସ ଚ ଦୁଃଖମବାପ୍ନୁୟାତ୍ (ଏତ୍ର-ଶ୍ଳୋ-୭୧)

ଏଥିରେ ପ୍ରଥମ ଶ୍ଳୋକ ଓ ଚତୁର୍ଥ ଶ୍ଳୋକରେ କୃଷ୍ଣ ଶବ୍ଦ, ଦ୍ୱିତୀୟ ଶ୍ଳୋକରେ ପୁରୁଷୋତ୍ତମ ଶବ୍ଦ ଓ ତୃତୀୟ ଶ୍ଳୋକରେ ସନାତନ ଦାରୁବ୍ରହ୍ମ ଶବ୍ଦ ଲକ୍ଷଣୀୟ । ପ୍ରଥମ ଶ୍ଳୋକରେ ପ୍ରତିମାମାନଙ୍କୁ ରଥ ଉପରେ ସ୍ଥାପନ ଓ ଅନ୍ୟ ତିନି ଶ୍ଳୋକରେ ସେମାନଙ୍କର ଗୁଣ୍ଡିଚା ମଣ୍ଡପ ପ୍ରତି ଗମନର ସୂଚନା ଦିଆଯାଇଛି । ଏଥିରୁ ପ୍ରତିପାଦିତ ହେଉଛି ଯେ ଶ୍ରୀଜଗନ୍ନାଥ ପରଂବ୍ରହ୍ମ ତଥା ଦାରୁରୂପୀ ହୋଇଥିବାରୁ ଦାରୁବ୍ରହ୍ମ, ପରମ ପୁରୁଷ ହୋଇଥିବାରୁ ପୁରୁଷୋତ୍ତମ ଓ ସ୍ୱୟଂ ଭଗବାନ ହୋଇଥିବାରୁ କୃଷ୍ଣ । ଏ ସବୁ ରୂପ ଓ ନାମ ସେହି ଏକ ପରମ ତତ୍ତ୍ୱର ବାଚକ । ଏ ରଥଯାତ୍ରା ତାଙ୍କର ହିଁ ଯାତ୍ରା ।

ହେଲେ, କୌଣସି ପୁରାଣରେ ଭଗବାନ ପୁରୁଷୋତ୍ତମ ବା ଜଗନ୍ନାଥ କେଉଁ ଉଦ୍ଦେଶ୍ୟରେ କେବେ ରଥଯାତ୍ରାର ବିଧାନ କରିଥିଲେ, ତାହାର ଉଲ୍ଲେଖ ନାହିଁ । ସାଧାରଣ ଭାବରେ କହିଲେ ଏହା ହେଉଛି ପତିତପାବନ ଯାତ୍ରା । କେବଳ ପତିତମାନଙ୍କୁ ଉଦ୍ଧାର କରିବା ଏହି ଯାତ୍ରା ବିଧାନର ଅଭିପ୍ରାୟ । ସେପରି କହିବାକୁ ଗଲେ ପୁରାଣମାନଙ୍କରେ ଏହି ଯାତ୍ରାର ଫଳଶ୍ରୁତି କ୍ରମରେ ବହୁତ କଥା କୁହାଯାଇଛି, ଯଥା- ଜ୍ୟୋତିର୍ମୟ ପଦ ପ୍ରାପ୍ତି, ବିଷ୍ଣୁପଦ ପ୍ରାପ୍ତି, ଶତକୋଟି ଜନ୍ମର ପାପନାଶ, ସ୍ୱର୍ଗଗଙ୍ଗାରେ ସ୍ନାନର ଫଳପ୍ରାପ୍ତି, ସହସ୍ର ଅଶ୍ୱମେଧର ଫଳପ୍ରାପ୍ତି, ବ୍ରହ୍ମଲୋକପ୍ରାପ୍ତି, ମୋକ୍ଷପ୍ରାପ୍ତି ପ୍ରଭୃତି । କିନ୍ତୁ ପରମ ପୁରୁଷ ବିଷ୍ଣୁ ଅମୃତ ବା ମୋକ୍ଷଫଳ ପ୍ରଦାନ କରୁଥିଲେ ମଧ ସେ ସ୍ୱୟଂ ଲୀଳା କରନ୍ତି ନାହିଁ । ଅବତାର ରୂପରେହିଁ ଲୀଳାପ୍ରକାଶ କରନ୍ତି । ଅତଏବ ସେ ପୂର୍ଣ୍ଣାବତାର କୃଷ୍ଣ ରୂପରେ ରଥଯାତ୍ରାର ଲୀଳା କରିଥିବା ଓ ତାହାରି ଅନୁସରଣରେ ଶ୍ରୀଜଗନ୍ନାଥଙ୍କର ରଥଯାତ୍ରା ପ୍ରତିବର୍ଷ ଅନୁଷ୍ଠିତ ହେଉଥିବା ବିଶ୍ୱାସ କରାଯାଏ । ଅବଶ୍ୟ ଭାଗବତ, ବ୍ରହ୍ମବୈବର୍ତ୍ତ, ବିଷ୍ଣୁପୁରାଣ ପ୍ରଭୃତିରେ ଶ୍ରୀକୃଷ୍ଣଲୀଳା ଅବତାରଣା କରାଯାଇଥିବା ସ୍ଥଳରେ କୌଣସିଠାରେ ଭଗବାନ କୃଷ୍ଣ ରଥଯାତ୍ରାର ପ୍ରବର୍ତ୍ତନ କରିଥିବା ଉଲ୍ଲେଖ ନାହିଁ । ପୁରୀ ଗେଜେଟିୟରରେ ଶ୍ରୀଯୁକ୍ତ ମନମୋହନ ଚକ୍ରବର୍ତ୍ତୀଙ୍କ ସହାୟତାରେ ଓମାଲିସାହେବ ଉଲ୍ଲେଖ କରିଛନ୍ତି ଯେ ଶ୍ରୀଜଗନ୍ନାଥଙ୍କର ରଥଯାତ୍ରା ଶ୍ରୀକୃଷ୍ଣଙ୍କର ଗୋକୁଳଠାରୁ ମଥୁରା ଯାତ୍ରାର ସ୍ମାରକୀ । ଦ୍ୱାପର ଯୁଗରେ ଶ୍ରୀକୃଷ୍ଣ ଓ ତାଙ୍କର ଜ୍ୟେଷ୍ଠଭ୍ରାତା ବଳରାମ ଗୋପପୁରରେ ପାଳିତ ହୋଉଥିବା ଓ ମଥୁରାର ରାଜା କଂସର ଆଦେଶରେ ଅକ୍ରୂର ନାମକ ସେନାପତି ସେମାନଙ୍କୁ ରଥରେ ବସାଇ ମଥୁରାଯାତ୍ରା କରିଥିବା ଅତ୍ୟନ୍ତ ପ୍ରସିଦ୍ଧ । ପୁଣି କେତେକ ବୈଷ୍ଣବ କହନ୍ତି ଯେ କୌଣସି ସମୟରେ ଦେବୀ ସୁଭଦ୍ରା ନଗର ଦର୍ଶନ ପାଇଁ ଇଚ୍ଛା ପ୍ରକାଶ କଲେ । ସେତେବେଳକୁ ଶ୍ରୀକୃଷ୍ଣ ଦ୍ୱାରକାର ରାଜା ହୋଇ ସାରିଲେଣି । ଭଉଣୀର ଇଚ୍ଛା ପୂରଣ ନିମନ୍ତେ ଉଭୟ କୃଷ୍ଣ ଓ ବଳରାମ ତାଙ୍କୁ ଗୋଟିଏ ରଥରେ ବସାଇ ଓ ସ୍ୱୟଂ ଦୁଇଗୋଟି ରଥରେ ତାଙ୍କର ଦୁଇ ପାର୍ଶ୍ୱରେ ରହି ନଗର ଭ୍ରମଣ କରିଥିଲେ । ଏହି ରଥଯାତ୍ରା ଏହି ଘଟଣାର ସ୍ମାରକୀ ହୋଇପାରେ । ଏପରି ଘଟଣା ଘଟିଥିବାର ଭାଗବତ ପ୍ରଭୃତି କୃଷ୍ଣଲୀଳା ବର୍ଣ୍ଣନାତ୍ମକ

ପୁରାଣରେ ନାହିଁ । ଆସାମର ବୈଷ୍ଣବ କବି ଶ୍ରୀଧର କନ୍ଦଳି ଯେଉଁ ଘୁନୁଚା କୀର୍ତ୍ତନ ପଦାବଳୀ ଆସାମୀୟ ଭାଷାରେ ରଚନା କରିଛନ୍ତି, ତହିଁରେ ସେ ଘୁନୁଚା ବା ଗୁଣ୍ଡିଚା ଦେବୀଙ୍କର ପରିଚୟ ଦେଇଛନ୍ତି । ଏହି ଘୁନୁଚା ଦେବୀ ସର୍ବସୌଭାଗିନୀ ଥିଲେ । ସେ ଶ୍ରୀକୃଷ୍ଣଙ୍କୁ ବିବାହ କରିଥିଲେ ଓ ତାଙ୍କର ପରମ ପ୍ରିୟା ଥିଲେ । ଶ୍ରୀକୃଷ୍ଣ ସମସ୍ତ ଗୋପବାଳକମାନଙ୍କ ସହିତ ସେହି ଘୁନୁଚା ମନ୍ଦିରକୁ ବିଜୟ କରିଥିଲେ । ତାହାରି ସ୍ମରଣ ପାଇଁ ପୁରୀର ରଥଯାତ୍ରା ଅନୁଷ୍ଠିତ ହେଉଛି । କିନ୍ତୁ ଏହି ଉପାଖ୍ୟାନ ମଧ ଭାଗବତାଦି ପୁରାଣମାନଙ୍କରେ ନାହିଁ । ତେଣୁ ଶ୍ରୀଜଗନ୍ନାଥଙ୍କର ରଥଯାତ୍ରା ଦ୍ୱାପର ଯୁଗରେ କୃଷ୍ଣ ରୂପରେ ଲୀଳା କରିଥିବା ଭଗବାନ ପରମପୁରୁଷ ବିଷ୍ଣୁଙ୍କର କୃଷ୍ଣାବତାରର ଲୀଳା ନୁହେଁ । ପୂର୍ବୋକ୍ତ ଆଖ୍ୟାନଗୁଡ଼ିକ କେବଳ କାଳ୍ପନିକ । ପରମବ୍ରହ୍ମସ୍ୱରୂପୀ ଓ ପୁରୁଷୋତ୍ତମରୂପୀ ଶ୍ରୀକୃଷ୍ଣ କଳିଯୁଗରେ ପାପୀମାନଙ୍କୁ ସଂସାର ବନ୍ଧନରୁ ପରିତ୍ରାଣ କରିବା ପାଇଁ ଯେପରି ଜଗନ୍ନାଥ ରୂପରେ ପୂଜିତ ହେଉଛନ୍ତି, ଏହି ରଥଯାତ୍ରା ତାଙ୍କର ସେହି କଳିଯୁଗ ଲୀଳାର ଅଂଶବିଶେଷ । ଏହା ସହିତ ଦ୍ୱାପରଯୁଗୀୟ କୃଷ୍ଣଲୀଳାର କୌଣସି ସମ୍ବନ୍ଧ ନାହିଁ ।

ସ୍କନ୍ଦପୁରାଣରେ ଏହି ଯାତ୍ରାକୁ ମହାବେଦୀ ମହୋତ୍ସବ ବୋଲି କୁହାଯାଇଛି । ଦ୍ୱାପର ଯୁଗରେ ମଧ ଏହି ମହାବେଦୀ କୁରୁକ୍ଷେତ୍ର ରୂପରେ ଥିବାର ମହାଭାରତ ବର୍ଣ୍ଣନାରୁ ଜଣାଯାଏ । ମହାଭାରତର ବନପର୍ବରେ ଉଲ୍ଲେଖ ଅଛି ଯେ ରାଜା ଯୁଧିଷ୍ଠିର ତାଙ୍କର ବନବାସ କାଳରେ ଲୋମଶ ଋଷିଙ୍କର ପରାମର୍ଶକ୍ରମେ ଏହି ମହାବେଦୀରେ ଆରୋହଣପୂର୍ବକ ସମୁଦ୍ରସ୍ନାନ କରିଥିଲେ । ବର୍ତ୍ତମାନର ଗୁଣ୍ଡିଚା ମନ୍ଦିର ସେହି ମହାବେଦୀ ହୋଇପାରେ । ଏହାର ପବିତ୍ରତା ପ୍ରତିଷ୍ଠା କରିବା ପାଇଁ ଶ୍ରୀଜଗନ୍ନାଥ ବା ଶ୍ରୀକୃଷ୍ଣ ପ୍ରତିବର୍ଷ ସେଠାକୁ ରଥରେ ଆରୋହଣ କରି ଯାତ୍ରା କରନ୍ତି । ତାହା ହିଁ ରଥଯାତ୍ରାର ଉତ୍ପତ୍ତିର କାରଣ ।

ବଳଭଦ୍ର ଗଳି, ପୁରୀ

• • •

# ନମାମି ପୁରୁଷୋତ୍ତମମ୍

● କୁମାରକବି ଅରକ୍ଷିତ ପ୍ରଧାନ

ଜଗନ୍ନାଥ ଜଗବନ୍ଧୁ ରାମ କୃଷ୍ଣ ଈଶ୍ୱର ।
ଭକ୍ତି ମୁକ୍ତି ଶାନ୍ତି ଦାତା ଗତି ସାରା ବିଶ୍ୱର ॥
ଧର୍ମ ଅର୍ଥ କାମ ମୋକ୍ଷ ଚତୁର୍ବର୍ଗ ବିଧାତା ।
ବିଦ୍ୟା ବୁଦ୍ଧି ସିଦ୍ଧି ନିଧି ପ୍ରଦାୟକ ଦେବତା ॥
ନୀଳାଚଳ ବାସୀ ରାଶି ସୁଖ ଦୁଃଖ ତାରଣ ।
କମନୀୟ କଳାକାନ୍ତି ମୂର୍ତ୍ତି ମନ ହରଣ ॥
ନୀଳ ସିନ୍ଧୁ ତୀର ସାର ଶ୍ରୀବାମେଘା ମନ୍ଦିର ।
କାଳମେଘ ତନୁ ଶୋଭା ଧରି ଦିଶେ ସୁନ୍ଦର ॥
ବଳଭଦ୍ର ଭଦ୍ରା ଚକ୍ର ସୁଦର୍ଶନ ସହିତ ।
ହରଷରେ ଚଳାଉଛ ଭବ ଭାବ ବୋଇତ ॥
ସୃଷ୍ଟି ସ୍ଥିତି ଲୟବସ୍ତୁ ଧ୍ୟେୟ କରି ସତତ ।
ମହାପ୍ରେମ ସୁହୃଦ ନିତି ପାଳୁ ଅଛ ଜଗତ ॥
ଜୟ ଜୟ ଜଗନ୍ନାଥ ନୀଳଗିରି ବିହାରୀ ।
ନାଥ ନେତ୍ର ପଥୁ ମୋର ଯାଅ ନାହିଁ ବାହାରି ॥
ଦାରୁ ତନୁ ଭଗବାନ ସତ୍ୟ ଶିବ ସୁନ୍ଦର ।
ନିତ୍ୟ ବ୍ରହ୍ମ ନିରଞ୍ଜନ ପ୍ରୀତି ଚାଳକବର ॥

ଭକ୍ତ ଚିତ୍ତ ଚିନ୍ତାମଣି ଶ୍ରୀମନ୍ଦିର ସବିତା ।
କବି କଳା କଳ୍ପନାର କମନୀୟ କବିତା ॥
ସୀମାତୀତ ଜ୍ଞାନସିନ୍ଧୁ କୃପା ବିନ୍ଦୁ ସାଗର ।
ସୁରାସୁର ନର ବରଦାତା ପ୍ରିୟ ଠାକୁର ॥
କ୍ଷିତି ଆପତେଜ ବାୟୁ ଶୂନ୍ୟ ପଞ୍ଚତତ୍ତ୍ୱରେ ।
ଶବ୍ଦ ସ୍ପର୍ଶ ରୂପ ରସ ଗନ୍ଧ ତବ ସଙ୍ଗରେ ॥
ବାହୁ ଟେକି ଟେକି ତୁମେ ଯାଚି ଦିଅ ଅଭୟ ।
ଦୀନ ହୀନ ଅକିଞ୍ଚନ ଅଶରଣ ଆଶ୍ରୟ ॥
କୃପାକଳ୍ପତରୁ ତୁମେ ସର୍ବଜନ ଜୀବନ ।
ତବ ଶୁଭାଶିଷ ବଳେ ଚଳେ ତିନି ଭୁବନ ॥
କବି ଅରକ୍ଷିତ ଚିତ୍ତ ବିମୋହିତ ଚନ୍ଦ୍ରମା ।
ଜଗନ୍ନାଥ ମହାପ୍ରଭୁ ଭବସିନ୍ଧୁ ତ୍ରାହିମା ॥

ଟିଳିକା ଚିହ୍ନଟି
ବିନୋଦ ବିହାର
ଓଷ୍ଣୁଆପଡ଼ା
ଛୁଟ୍ଟିଗିରି, ପୁରୀ



# ଶ୍ରୀ ଜଗନ୍ନାଥଙ୍କ ରୂପ ପରିକଳ୍ପନାରେ ଇତିହାସ ଓ କିମ୍ବଦନ୍ତୀ

● ଡକ୍ଟର ଉମେଶ ଚନ୍ଦ୍ର ଚିହ୍ନରା

ହିନ୍ଦୁ ଦେବ ଦେବୀଙ୍କ ରୂପଠାରୁ ସଂପୂର୍ଣ୍ଣ ସ୍ୱତନ୍ତ୍ର ଓ ଅଭିନବ ଏହି ଜଗନ୍ନାଥଙ୍କ ରୂପ ପରିକଳ୍ପନା ନେପଥ୍ୟରେ ଯେଉଁ ଇତିହାସ ଓ କିମ୍ବଦନ୍ତୀ ରହିଛିମାନ, ତାହାକୁ ସମାଲୋଚକମାନେ ମୁଖ୍ୟତଃ ଚାରି ଶ୍ରେଣୀରେ ବିଭକ୍ତ କରିଛନ୍ତି । ପୌରାଣିକ, ଆଧ୍ୟାତ୍ମିକ, ଐତିହାସିକ ଓ କିମ୍ବଦନ୍ତୀମୂଳକ ।

ଶ୍ରୀଜଗନ୍ନାଥଙ୍କ ପୌରାଣିକତା ସଂପର୍କରେ ସ୍କନ୍ଦପୁରାଣ, ବ୍ରହ୍ମପୁରାଣ, ପଦ୍ମପୁରାଣ, କପିଳ ସଂହିତା, ନୀଳାଦ୍ରି ମହୋଦୟ ଓ ନାରଦ ପୁରାଣ ପ୍ରଭୃତିର ନାମ ଉଲ୍ଲେଖନୀୟ । ଏତଦ୍ ବ୍ୟତୀତ ଓଡ଼ିଆରେ ଲିଖିତ କେତେକ ପୁରାଣରେ ମଧ୍ୟ ଜଗନ୍ନାଥଙ୍କ ମୂର୍ତ୍ତିତତ୍ତ୍ୱ ସମ୍ବନ୍ଧରେ ବିଭିନ୍ନ ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । 'ସ୍କନ୍ଦ ପୁରାଣ'ର ବିଷୟବସ୍ତୁ ଅନୁସାରେ ଅବନ୍ତୀର ରାଜା ଇନ୍ଦ୍ରଦ୍ୟୁମ୍ନ ସ-ସୈନ୍ୟେ ନାରଦଙ୍କ ସହିତ ଉତ୍କଳକୁ ନୀଳମାଧବ ଦର୍ଶନ ନିମିତ୍ତ ଯାଇଥିଲେ । ସେଠାରେ ପହଞ୍ଚିବା ପରେ, ପୂର୍ବରୁ ପୂଜା ପାଇ ଆସୁଥିବା ନୀଳମାଧବ ଅନ୍ତର୍ଦ୍ଧାନ ହୋଇଯାଇଥିଲେ । ଏହାପରେ ରାଜା ନାରଦଙ୍କ ପରାମର୍ଶରେ ଅଶ୍ୱମେଧ ଯଜ୍ଞ ଆରମ୍ଭ କରିଥିଲେ । ଯଜ୍ଞ ଶେଷ ହେବା ଦିନ ରାତିରେ ସେ ସ୍ୱପ୍ନରେ ଜାଣିଲେ ଯେ ଏକ ଚତୁଃଶାଖା ବିଶିଷ୍ଟ ମହାଦାରୁ ସମୁଦ୍ରରେ ଭାସି ଆସିବ ଏବଂ ତାକୁ ଆଣି ମୂର୍ତ୍ତିଗଠନ କରି ପ୍ରତିଷ୍ଠା କରିବାକୁ ହେବ । ତଦନୁସାରେ କାର୍ଯ୍ୟ କରାଗଲା । ସ୍ୱୟଂ ନୀଳମାଧବ ବୃଦ୍ଧ ବର୍ଦ୍ଧକୀ ରୂପରେ ଆସି ମହାବେଦୀ (ଅଧୁନା ଗୁଣ୍ଡିଚା ମନ୍ଦିରର ସିଂହାସନ) ଥିବା ଆବଦ୍ଧ ପ୍ରକୋଷ୍ଠରେ ମୂର୍ତ୍ତି ନିର୍ମାଣ ଆରମ୍ଭ କଲେ । ଏହା ସମାପ୍ତ ହେବାକୁ ସେ ଏକୋଇଶ ଦିନ ସମୟ ଧାର୍ଯ୍ୟ କରିଥିଲେ । ମାତ୍ର ପଞ୍ଚଦଶ ଦିନ ଶେଷରେ ପ୍ରକୋଷ୍ଠର ଦ୍ୱାର ଖୋଲିବାରୁ ଦେଖାଗଲା ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ ଓ ସୁଦର୍ଶନ ଏହିପରି ଚାରୋଟି ମୂର୍ତ୍ତି ଅସଂପୂର୍ଣ୍ଣଭାବେ ସେଠାରେ ବିରାଜମାନ କରିଛନ୍ତି । ଏହାପରେ ରାଜା ଏକ ଦେବାଳୟ ନିର୍ମାଣ କଲେ ଓ ନାରଦଙ୍କ ଉପଦେଶାନୁସାରେ ବ୍ରହ୍ମାଙ୍କୁ ନିମନ୍ତ୍ରଣ କରି ଆଣି ଉକ୍ତ ମୂର୍ତ୍ତିର ପ୍ରତିଷ୍ଠା କରିଥିଲେ ।

'ବ୍ରହ୍ମପୁରାଣ'ରେ ଅନୁରୂପ ବର୍ଣ୍ଣନା ରହିଥିଲେ ହେଁ ଚାରୋଟି ମୂର୍ତ୍ତି ପରିବର୍ତ୍ତେ ତିନୋଟି ମୂର୍ତ୍ତି ନିର୍ମିତ ହେବା କଥା ଉଲ୍ଲେଖ ଅଛି । 'ନାରଦ ପୁରାଣ' ରେ ମଧ୍ୟ ପ୍ରାୟ ଏହି ବିଷୟ ବର୍ଣ୍ଣିତ । 'ସ୍କନ୍ଦ ପୁରାଣ' ବ୍ୟତୀତ ଅନ୍ୟ ପୁରାଣମାନଙ୍କରେ ତିନୋଟି ମୂର୍ତ୍ତି ବିଷୟର ଉଲ୍ଲେଖ ରହିଛି । 'ସ୍କନ୍ଦ ପୁରାଣ'ରେ ବର୍ଣ୍ଣିତ ବିଷୟବସ୍ତୁ ଅନୁସାରେ ଚତୁର୍ଦ୍ଧା ମୂର୍ତ୍ତି ମଧ୍ୟରୁ ଜଗନ୍ନାଥ ଓ ବଳଭଦ୍ର ଚତୁର୍ଭୁଜ । ଦୁହେଁ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଧାରଣ କରିଛନ୍ତି । ସୁଭଦ୍ରା ଲକ୍ଷ୍ମୀ ସ୍ୱରୂପିଣୀ, ଦୁଇ ହସ୍ତ ବିଶିଷ୍ଟା । ତାଙ୍କର ଗୋଟିଏ ହସ୍ତରେ ପଦ୍ମ ଓ ଅନ୍ୟ ହସ୍ତଟି ଅଭୟ ମୁଦ୍ରାରେ ପ୍ରସାରିତ ।

'ବ୍ରହ୍ମପୁରାଣ'ରେ ବର୍ଣ୍ଣିତ ବିଗ୍ରହମାନଙ୍କ ମଧ୍ୟରୁ ଜଗନ୍ନାଥ ଓ ବଳଭଦ୍ର ଦୁଇ ହସ୍ତ ବିଶିଷ୍ଟ । ଏ ସଂପର୍କରେ ଏଠାରେ ଉଲ୍ଲେଖଯୋଗ୍ୟ ଯେ କୋଣାର୍କରେ ଖୋଦିତ ଜଗନ୍ନାଥଙ୍କ ବିଗ୍ରହ ଦ୍ୱିଭୁଜ ବିଶିଷ୍ଟ । ବର୍ତ୍ତମାନର ଜଗନ୍ନାଥ ମୂର୍ତ୍ତି ସହିତ ଏହି ଖୋଦିତ ମୂର୍ତ୍ତିର ସାଦୃଶ୍ୟ ରହିଅଛି ।

ସାରଳା ଦାସଙ୍କ ବର୍ଣ୍ଣନା ଅନୁସାରେ ପୂର୍ବକାଳରେ ବିନ୍ଧ୍ୟ ଧଉଳା ପର୍ବତର ଏକ ଅଶ୍ୱତ୍ଥ ବୃକ୍ଷ ମୂଳରେ ଶବରମାନେ ଶବରୀ ନାରାୟଣ ରୂପରେ ପୂଜା କରୁଥିଲେ । କାହ୍ନୁରାଜା ଗାଳମାଧବ ଶବରୀ ନାରାୟଣଙ୍କୁ ଧଉଳାରୁ ନୀଳଗିରିକୁ ଆଣି ପୂଜା କଲେ । ସେତେବେଳେ ଶବର ପଲ୍ଲୀରେ ଜରାଶବର ନଥିଲା । ଶ୍ରୀକୃଷ୍ଣଙ୍କ ପିଣ୍ଡ ଅନୁସନ୍ଧାନ କରିବା ଉଦ୍ଦେଶ୍ୟରେ ସେ କୋଣାର୍କ ନିକଟରେ ବାସ କରୁଥିଲା । ବିରାଟବଂଶୀ ରାଜା ମଧୁକେଶରଙ୍କ ପୁତ୍ର ଇନ୍ଦ୍ରଦ୍ୟୁମ୍ନ ନୀଳଗିରିଠାରେ ଅବସ୍ଥାନ କରିବେ ବୋଲି ଶୁଣି ବିଶ୍ୱାବସୁ ନାମକ ବ୍ରାହ୍ମଣଙ୍କ ଦ୍ୱାରା ସେଠାରେ ଏକ ମନ୍ଦିର ନିର୍ମାଣ କଲେ । ତା'ପରେ ଭଗବାନ ଜରାଶବରକୁ ସ୍ୱପ୍ନରେ ଆଦେଶ ଦେଲେ ଯେ ସେ ବୌଦ୍ଧ ରୂପରେ ନୀଳଗିରିରେ ଅବସ୍ଥାନ କରିବେ । ରୋହିଣୀ କୁଣ୍ଡରେ କାୟା ବଦଳାଇ ବୌଦ୍ଧ ଅବତାର କାୟା ଦେଖାଇବେ । କିଛିଦିନ ପରେ ଭଗବାନ ରୋହିଣୀ କୁଣ୍ଡରେ ଦାରୁରୂପରେ ଅବତୀର୍ଣ୍ଣ ହେଲେ । ବାସୁବିପ୍ର ଓ ଜରାଶବର, ଏ ଦୁହିଁଙ୍କ ଦ୍ୱାରା ଦାରୁକୁ କୁଣ୍ଡ ମଧ୍ୟରୁ ଉପରକୁ ଅଣାଗଲା । ସ୍ୱୟଂ ବିଶ୍ୱକର୍ମା ଜରା ଶବର ସହିତ ମୂର୍ତ୍ତି ଗଠନ କାର୍ଯ୍ୟ କଲେ । ତାଙ୍କ ନିର୍ଦ୍ଦେଶମତେ ମନ୍ଦିରର ସବୁ ଦ୍ୱାର ବନ୍ଦ ହେଲା ଓ ମୂର୍ତ୍ତି ଗଠନ କାର୍ଯ୍ୟ ଶେଷ ହେବା ପର୍ଯ୍ୟନ୍ତ ଦ୍ୱାର ନଖୋଲିବା ପାଇଁ ଆଦେଶ ହେଲା । ପନ୍ଦର ଦିନ ପରେ କୌଣସି ଶବ୍ଦ ଶୁଣା ନଯିବାରୁ ସନ୍ଦେହ କରି ରାଜା ମନ୍ଦିର ଦ୍ୱାର ଖୋଲି ଦେଖନ୍ତେ, ଜଗନ୍ନାଥ, ବଳଭଦ୍ର- ସୁଭଦ୍ରାଙ୍କ ଅସଂପୂର୍ଣ୍ଣ ମୂର୍ତ୍ତିତ୍ରୟ ସିଂହାସନ ଉପରେ ବିରାଜମାନ କରିଛନ୍ତି । ସେହିଦିନଠାରୁ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ତିନିମୂର୍ତ୍ତି ସେହିପରି ଅବସ୍ଥାରେ ଶ୍ରୀମନ୍ଦିରରେ ପୂଜା ପାଇ ଆସୁଅଛନ୍ତି । ଜଗନ୍ନାଥ ହେଲେ ବିଷ୍ଣୁ, ବଳଭଦ୍ର ହେଲେ ଶିବ ବା ରୁଦ୍ର ଓ ସୁଭଦ୍ରା ହେଉଛନ୍ତି ବ୍ରହ୍ମା । ସଂସ୍କୃତ ପୁରାଣର ବିଷୟବସ୍ତୁ ଅତିରିକ୍ତ ଶବରୀ ନାରାୟଣ ରୂପରେ ପୂଜା, ବିରାଟବଂଶୀ ରାଜା ମଧୁ କେଶରଙ୍କ ପୁତ୍ର ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ନୀଳଗିରିରେ ସ୍ଥାପନ, କୃଷ୍ଣଙ୍କ ଅପୋଡ଼ାପିଣ୍ଡ ଦାରୁ ରୂପରେ ରୋହିଣୀ କୁଣ୍ଡରେ ପ୍ରକାଶ ପାଇବା ଓ ଭଗବାନ ଅବତୀର୍ଣ୍ଣ ହୋଇଥିବା କଥା ସାରଳା ଦାସ ତାଙ୍କ ମହାଭାରତରେ ଉଲ୍ଲେଖ କରିଛନ୍ତି ।

ସାରଳା ଦାସଙ୍କ ପରବର୍ତ୍ତୀ କବି ନୀଳାମ୍ବର ଦାସ ତାଙ୍କ 'ଦେଉଳତୋଳା' ଗ୍ରନ୍ଥରେ ମୂର୍ତ୍ତିଗଠନ ସଂପର୍କରେ ଯେଉଁ ବର୍ଣ୍ଣନା କରିଛନ୍ତି,

ତାହା ସଂପୂର୍ଣ୍ଣ ରୂପେ ସାରଳା ଦାସଙ୍କ ବର୍ଣ୍ଣିତ ମହାଭାରତର ବିଷୟବସ୍ତୁ ନୁହେଁ । ଏଥିରେ ବର୍ଣ୍ଣିତ ମୂର୍ତ୍ତି ନିର୍ମାଣ ସମ୍ବନ୍ଧରେ ଅଛି, "ମାଳବ ଦେଶର ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ନାରଦ କହିଲେ, ପୂର୍ବ ସାଗର ତଟରେ ନୀଳମାଧବ ଶବର ଦ୍ୱାରା ପୂଜିତ ହେଉଛନ୍ତି । ଏହା ଜାଣିବା ପାଇଁ ନିଜର ମନ୍ତ୍ରୀ ବିଦ୍ୟାପତିଙ୍କୁ ସେ ସେଠାକୁ ପଠାଇଲେ । ବିଦ୍ୟାପତି ସେଠାରେ ପହଞ୍ଚି ଅବଗତ ହେଲେ ଯେ ବିଶ୍ୱାବସୁ ଶବର ନୀଳମାଧବଙ୍କୁ ଗୋପନରେ ଘଞ୍ଚ ଜଙ୍ଗଲ ମଧ୍ୟରେ ଲୁଚାଇ ପୂଜା କରୁଅଛି । ବିଦ୍ୟାପତି ବିଶ୍ୱାବସୁର ଅତିଥି ହୋଇ ପରେ ତାଙ୍କ କନ୍ୟା ସାହାଯ୍ୟରେ ନୀଳମାଧବଙ୍କୁ ଦର୍ଶନ କଲେ । ଏହାପରେ ସେ ଇନ୍ଦ୍ରଦ୍ୟୁମ୍ନଙ୍କୁ ଉକ୍ତ ସମ୍ବାଦ ଜଣାଇଲେ । ଇନ୍ଦ୍ରଦ୍ୟୁମ୍ନ ସ-ସୈନ୍ୟେ ଉତ୍କଳ ଯାତ୍ରା କଲେ । କଟକ ଜିଲ୍ଲାର ବାଙ୍କୀ ଅନ୍ତର୍ଗତ ଚର୍ଚ୍ଚିକା ଠାରେ ବିଶ୍ୱାବସୁ ସହିତ ଇନ୍ଦ୍ରଦ୍ୟୁମ୍ନଙ୍କର ସାକ୍ଷାତ ହେଲା । ଦୁହେଁ ମିତ୍ର ହେଲେ । ପରସ୍ପରର ମିତ୍ରତା ମଧ୍ୟରେ ନୀଳମାଧବ ଅନ୍ତର୍ଦ୍ଧାନ ହୋଇଯାଇଥିଲେ । ଏହା ଶୁଣି ଇନ୍ଦ୍ରଦ୍ୟୁମ୍ନ ଏକୋଇଶ ଦିନ ପର୍ଯ୍ୟନ୍ତ ଅନଶନ ପୂର୍ବକ ଧାରଣା ଦେଲେ । ଦିନେ ସ୍ୱପ୍ନାଦେଶ ହେଲା ଯେ ନୀଳମାଧବ ଦାରୁ ରୂପରେ ସମୁଦ୍ରରେ ଭାସୁଛନ୍ତି । ରାଜା ତାଙ୍କୁ ଆଣି ମୂର୍ତ୍ତି ନିର୍ମାଣ କରି ସ୍ଥାପନ କରନ୍ତୁ । ସ୍ୱୟଂ ବିଶ୍ୱକର୍ମା ଆସି ଏକ ବନ୍ଦ ପ୍ରକୋଷ୍ଠ ମଧ୍ୟରେ ଗୋପନଭାବେ ମୂର୍ତ୍ତି ନିର୍ମାଣ କରିବେ । ନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ ଦ୍ୱାର ବନ୍ଦ ରହିବା ପାଇଁ ଇନ୍ଦ୍ରଦ୍ୟୁମ୍ନ ସମସ୍ତ ବ୍ୟବସ୍ଥା କରାଇଲେ ସତ, କିନ୍ତୁ ନିର୍ଦ୍ଦିଷ୍ଟ ଦିନ ପୂର୍ବରୁ ରାଣୀ ଗୁଣ୍ଡିଚାଙ୍କ ଅନୁରୋଧରେ ଦ୍ୱାର ଖୋଲି ଦେଲେ । ରାଜା ଦ୍ୱାର ଖୋଲି ଅର୍ଦ୍ଧ ନିର୍ମିତ ତିନୋଟି ମୂର୍ତ୍ତି ଦେଖିବାକୁ ପାଇଲେ । ସେହି ମୂର୍ତ୍ତି ହିଁ ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥ ।

ନୀଳାମ୍ବର ଦାସଙ୍କ ବ୍ୟତୀତ ଅଷ୍ଟାଦଶ ଶତାବ୍ଦୀର ଶିଶୁ କୃଷ୍ଣ ଦାସଙ୍କ "ଦେଉଳ ତୋଳା" ନାମକ ଓଡ଼ିଆ ପୁରାଣରେ ମୂର୍ତ୍ତି ଗଠନ ସଂପର୍କରେ ଭିନ୍ନ ଘଟଣାର ଅବତାରଣା କରାଯାଇଛି । ସେଥିରେ ବିଶ୍ୱାବସୁ ଶବରର କନ୍ୟା ଲଳିତା ସହିତ ଅବନ୍ତୀ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ମନ୍ତ୍ରୀ ବିଦ୍ୟାପତିର ବିବାହ, ନୀଳମାଧବଙ୍କୁ ଦର୍ଶନ ସମୟରେ ପଣତରେ ମାଟିରାଶି ନେବା ଘଟଣାଟି ଅଧିକ ବର୍ଣ୍ଣିତ ହୋଇଥିଲେ ହେଁ ମୂର୍ତ୍ତି ଗଠନ ବର୍ଣ୍ଣନା ପ୍ରାୟ ସମାନ ।

ପଞ୍ଚସଖା ସିଦ୍ଧସାଧକମାନଙ୍କ ମଧ୍ୟରୁ ଯଶୋବନ୍ତ ଦାସ ତାଙ୍କର "ପ୍ରେମଭକ୍ତି ବ୍ରହ୍ମଗୀତା"ରେ ଜଗନ୍ନାଥଙ୍କ ମୂର୍ତ୍ତିତତ୍ତ୍ୱ ସମ୍ବନ୍ଧରେ ଏକ ଆଧ୍ୟାତ୍ମିକ ଧାରଣା ପ୍ରଦାନ କରିଛନ୍ତି । ରତ୍ନ ସିଂହାସନରେ ବିରାଜିତ ତ୍ରି-ମୂର୍ତ୍ତି ହେଉଛି ଓଁକାରରୂପୀ । ଏମାନଙ୍କର ବୀଜମନ୍ତ୍ର ହେଉଛି ହ୍ଲୀଂ-ଶ୍ରୀଂ-କ୍ଲୀଂ । ହ୍ଲୀଂ ହେଉଛନ୍ତି ବଳଭଦ୍ର, ଶ୍ରୀଂ ହେଉଛନ୍ତି ସୁଭଦ୍ରା ଓ କ୍ଲୀଂ ହେଉଛନ୍ତି ଜଗନ୍ନାଥ । ଯଶୋବନ୍ତ ଦାସ ସୁଦର୍ଶନଙ୍କ ବିଷୟ ଉଲ୍ଲେଖ ପୂର୍ବକ ଚତୁର୍ଦ୍ଧା ମୂର୍ତ୍ତି ସମ୍ପର୍କରେ ସ୍ୱୀକାରୋକ୍ତି ପ୍ରଦାନ କରିଛନ୍ତି । ସେ ସୁଦର୍ଶନଙ୍କୁ 'ମହାଶୂନ୍ୟ ବ୍ରହ୍ମ ଜ୍ୟୋତି" ବୋଲି ଉଲ୍ଲେଖ କରିଛନ୍ତି । ପୁଣି ଏହି ଚାରି ମୂର୍ତ୍ତି- ହ-ରେ-କୃ-ଷ୍ଣ ମହାମନ୍ତ୍ରର ପ୍ରତୀକ ବୋଲି ମଧ୍ୟ କହିଛନ୍ତି ।

ପଞ୍ଚସଖା ମଧ୍ୟର ଅନ୍ୟତମ ସାଧକ ଭକ୍ତକବି ଜଗନ୍ନାଥ ଦାସ ତାଙ୍କ "ଦାରୁବ୍ରହ୍ମ ଗୀତା"ରେ ଜଗନ୍ନାଥଙ୍କ ମୂର୍ତ୍ତିତତ୍ତ୍ୱ ସଂପର୍କରେ ଏକ ବର୍ଣ୍ଣନା ପ୍ରଦାନ କରିଛନ୍ତି । ସେଥିରେ ଶବରର ଶରାଘାତରେ ଶ୍ରୀକୃଷ୍ଣଙ୍କ ଦେହତ୍ୟାଗ ପରେ ପାଣ୍ଡବମାନେ ଆସି ସହଦେବଙ୍କ ପରାମର୍ଶକ୍ରମେ ଦେହତ୍ୟାଗ ସ୍ଥାନଠାରୁ ଚାରିଶହ କ୍ରୋଶ ଦୂରରେ ଥିବା ନୀଳଗିରି ନିକଟସ୍ଥ ସ୍ୱର୍ଗଦ୍ୱାରଠାରେ ପିଣ୍ଡ ଦାହ କରିବାକୁ ସ୍ଥିର କରିଛନ୍ତି । ଚନ୍ଦନ କାଠରେ ଏକ ଖଟ ତିଆରି କରି ସେଥିରେ ଶ୍ରୀକୃଷ୍ଣଙ୍କୁ ଶୁଆଇ ନୀଳଗିରିକୁ ଆଣିଛନ୍ତି । ଏହାପରେ ନୀଳସୁନ୍ଦର ବଣରୁ ଚନ୍ଦନ କାଠ ଆଣି ସେଥିରେ ଶ୍ରୀକୃଷ୍ଣଙ୍କ ମୃତ ଶରୀର ରଖି ଅଗ୍ନି ସଂଯୋଗ କରିଛନ୍ତି । ପିଣ୍ଡ କିନ୍ତୁ ଅଗ୍ନିରେ ଦଗ୍ଧ ହେଲା ନାହିଁ । ଏପରିକି ଗୋଟିଏ ଲୋମ ମଧ୍ୟ ପୋଡ଼ିଲା ନାହିଁ । ଏହି ସମୟରେ ଶୂନ୍ୟବାଣୀ ଶୁଣାଗଲା " ଏ ପିଣ୍ଡ ଅଗ୍ନିରେ ଦଗ୍ଧ ହେବ ନାହିଁ, ଏହାକୁ ସମୁଦ୍ରରେ ମେଲିଦିଅ ।" ଶୂନ୍ୟବାଣୀ ଅନୁସାରେ ପାଣ୍ଡବମାନେ ସମୁଦ୍ରରୁ ଜଳ ଆଣି ଅଗ୍ନି ଶୀତଳ କରି ପିଣ୍ଡଟିକୁ ସମୁଦ୍ରରେ ମେଲି ଦେଲେ । କିଛି ଦିନ ପରେ ଏହି ପିଣ୍ଡ ଆସି କୂଳରେ ଲାଗିଲା । ଦିନେ ବସୁ ଶବର ମୃଗୟା କରିବାକୁ ଯିବା ସମୟରେ ବାଙ୍କି ମୁହାଣ ନିକଟରେ ପିଣ୍ଡକୁ ଭାସୁଥିବାର ଦେଖିଲା । ଏହା ପରେ ସେ ସେହି ପିଣ୍ଡକୁ ଆଣି ରୋହିଣୀ କୁଣ୍ଡ ନିକଟସ୍ଥ ବଟ ମୂଳରେ ରଖିଲା ଏବଂ ସେହିଦିନଠାରୁ କନ୍ଦମୂଳ ଭୋଗ ଲଗାଇ ପୂଜା କଲା । ଚନ୍ଦ୍ରବଂଶୀ ରାଜା ଇନ୍ଦ୍ରଦ୍ୟୁମ୍ନ ବିଷ୍ଣୁ ଅନୁସନ୍ଧାନରେ ବ୍ରାହ୍ମଣମାନଙ୍କୁ ଚାରି ଦିଗକୁ ପ୍ରେରଣ କଲେ । ପୂର୍ବ ଦିଗରୁ ଆସିଥିବା ବ୍ରାହ୍ମଣ ଶବରଠାରୁ ବଟବୃକ୍ଷ ମୂଳରେ ବିଷ୍ଣୁ ପୂଜା ପାଉଥିବାର ଜାଣି ରାଜାଙ୍କୁ ଖବର ଦେଲେ ଏବଂ ରାଜା ଆସି ପହଞ୍ଚିଲା ବେଳକୁ ସେଠାରୁ ବିଷ୍ଣୁମୂର୍ତ୍ତି ଅନ୍ତର୍ଦ୍ଧାନ ହୋଇଯାଇଥିଲେ । ରାଜା ଏହା ଦେଖି ମନଦୁଃଖରେ ଥିବା ଅବସ୍ଥାରେ ରାତ୍ରିରେ ସ୍ୱପ୍ନାଦେଶ ପାଇଲେ ଯେ ବାଙ୍କି ମୁହାଣରେ ଏକ ଦାରୁ ଭାସି ଆସିବ । ତାଙ୍କୁ ଆଣି ମୂର୍ତ୍ତି ନିର୍ମାଣ କରି ପ୍ରାସାଦରେ ପ୍ରତିଷ୍ଠା କରିବାକୁ ହେବ । ରାଜା ସେ ଦାରୁକୁ ଆଣି ପ୍ରାସାଦ ମଧ୍ୟରେ ରଖିଲେ । ଷୋଳ ଦିନ ପରେ କବାଟ ଖୋଲି ଦେଖିଲେ ଚତୁର୍ଦ୍ଧାମୂର୍ତ୍ତି ବିରାଜମାନ କରିଛନ୍ତି । ବଙ୍ଗଳାର ମୁକୁନ୍ଦରାମଙ୍କ 'ଚଣ୍ଡୀ ମଙ୍ଗଳ' କାବ୍ୟରେ ମଧ୍ୟ ମୂର୍ତ୍ତି ନିର୍ମାଣ ସଂପର୍କରେ ଠିକ୍ ଏହିପରି ବର୍ଣ୍ଣନା କରାଯାଇଅଛି । ବଳରାମ ଦାସଙ୍କ 'ଦେଉଳତୋଳା'ରେ ମୂର୍ତ୍ତି ନିର୍ମାଣ ସଂପର୍କୀୟ ବିଷୟ ମଧ୍ୟ ପୂର୍ବୋକ୍ତ ବିଷୟ ଅନୁରୂପ । କବି ଦିବାକର ଦାସ ତାହାଙ୍କ "ଜଗନ୍ନାଥ ଚରିତାମୃତ"ରେ ଶ୍ରୀ ଜଗନ୍ନାଥଙ୍କୁ ଚତୁର୍ଦ୍ଧାମୂର୍ତ୍ତି ବୋଲି କହିଛନ୍ତି ।

ଭଗବାନ ବିଷ୍ଣୁଙ୍କୁ କୃଷ୍ଣାବତାର ରୂପରେ ପୂଜା କରାଯିବା ପରମ୍ପରା ଭାରତରେ ଗୁପ୍ତ ଯୁଗରୁ ପ୍ରବର୍ତ୍ତିତ ହୋଇଅଛି । ଏହା ପୁରାଣ, କାବ୍ୟ, ଇତିହାସ ତଥା ଅଭିଲେଖମାନଙ୍କରୁ ପ୍ରମାଣିତ । ଏଲ୍ଲାହାବାଦ ନିକଟସ୍ଥ ପ୍ରୟାଗ ଏବଂ ପ୍ରୟାଗ ସଂଗ୍ରହାଳୟରେ ସଂରକ୍ଷିତ ଏକ ମୂର୍ତ୍ତିରେ କୃଷ୍ଣାବତାରର ସଂକେତ, ଖ୍ରୀଷ୍ଟୀୟ ୪ର୍ଥ-୫ମ ଶତାବ୍ଦୀରେ ନିର୍ମିତ ହୋଇଥିବା ଦେବଗଡ଼ର ଦଶାବତାର ମନ୍ଦିରରେ ଶ୍ରୀବିଷ୍ଣୁଙ୍କର ଲୀଳାୟିତ ମୂର୍ତ୍ତି ଏବଂ ଚାଲୁକ୍ୟ ରାଜବଂଶ (ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀ) ରାଜତ୍ୱ କାଳରେ ଅନେକ ମନ୍ଦିର ଗାତ୍ରରେ କାଳୀୟ ଦଳନ, ଗୋବର୍ଦ୍ଧନ ଗିରି ଧାରଣ ପ୍ରଭୃତି କୃଷ୍ଣ ଲୀଳା ସମ୍ବଳିତ ମୂର୍ତ୍ତି ଏହା ପ୍ରମାଣିତ କରିଥାଏ । ଓଡ଼ିଶାର ପ୍ରାଚୀନ ମନ୍ଦିର ଗାତ୍ରରେ ମଧ୍ୟ ଏତାଦୃଶ ମୂର୍ତ୍ତି ଦେଖିବାକୁ ମିଳେ । ଭୁବନେଶ୍ୱରର ଲିଙ୍ଗରାଜ, ସ୍ୱର୍ଣ୍ଣଜାଳେଶ୍ୱର ମନ୍ଦିର ଏବଂ ଶ୍ରୀମନ୍ଦିରରେ କୃଷ୍ଣଲୀଳା ସମ୍ବଳିତ ବିଗ୍ରହମାନଙ୍କରୁ ସ୍ପଷ୍ଟ ହୁଏ ଯେ ଦ୍ୱାଦଶ ଶତାବ୍ଦୀ ପୂର୍ବରୁ କୃଷ୍ଣଲୀଳା ବା ଗୋପଲୀଳା ଓଡ଼ିଶାରେ ଜନପ୍ରିୟତା ଲାଭ କରିଥିଲା ।

'ବ୍ରହ୍ମପୁରାଣ'ରେ ଶ୍ରୀବିଗ୍ରହ ସଂପର୍କିତ ବିଷୟଟିକୁ ଦୁଇଟି ସ୍ଥଳରେ ଦୁଇପ୍ରକାରେ ବର୍ଣ୍ଣନା କରାଯାଇଛି । ପ୍ରଥମଟି ହେଲା– ସତ୍ୟ ଯୁଗରେ ମାଳବ ଦେଶର ରାଜା ଇନ୍ଦ୍ରଦ୍ୟୁମ୍ନ ବିଷ୍ଣୁଙ୍କୁ ପୂଜା କରିବା ଆଶାରେ ସ-ସୈନ୍ୟେ ଅବନ୍ତୀରୁ ବାହାରି ଉତ୍କଳ ରାଜ୍ୟରେ ପହଞ୍ଚିଲେ । ଦକ୍ଷିଣ ସମୁଦ୍ର ତୀରରେ ପୂର୍ବରୁ ବିରାଜମାନ କରୁଥିବା ଭଗବାନ ପୁରୁଷୋତ୍ତମ ନିଜର ଇନ୍ଦ୍ରନୀଳମୟ ପ୍ରତିମାକୁ ଗୁପ୍ତ କରି ଦେଇଥିଲେ । ଇନ୍ଦ୍ରଦ୍ୟୁମ୍ନ ସେଠାରେ ଏକ ମନୋରମ ମନ୍ଦିର ନିର୍ମାଣ କରି ସେହି ମନ୍ଦିରରେ ବିଷ୍ଣୁମୂର୍ତ୍ତି ପ୍ରତିଷ୍ଠା କରିବାକୁ ବିଚାର ବିମର୍ଶ କରିବାରେ ସ୍ୱୟଂ ନାରାୟଣ ସ୍ୱପ୍ନାଦେଶ ଦେଇ ସମୁଦ୍ରକୂଳରେ ଭାସମାନ ଏକ ମହାବୃକ୍ଷର ସନ୍ଧାନ ଦେଲେ । ସ୍ୱପ୍ନାଦେଶାନୁସାରେ ସମୁଦ୍ର ତୀରରେ ରାଜା ପରଦିନ ସେହି ମହାବୃକ୍ଷକୁ ଦର୍ଶନ କଲେ । ସେ ବୃକ୍ଷର ନାମ ଓ ଜାତି ଅଜ୍ଞାତ ଥିଲା । ରାଜା ସେହି ବୃକ୍ଷକୁ ଛେଦନ କରିବା ପରେ ଭଗବାନ ନିଜେ ବିଶ୍ୱକର୍ମା ବ୍ରାହ୍ମଣ ବେଶରେ ଉପସ୍ଥିତ ହୋଇ ତାଙ୍କ ଆଦେଶାନୁସାରେ ଉକ୍ତ ବୃକ୍ଷର ଦାରୁରେ ତିନିଗୋଟି ମୂର୍ତ୍ତି ନିର୍ମାଣ କରିବାକୁ ପ୍ରତିଶ୍ରୁତି ଦେଲେ । ମୂର୍ତ୍ତିତ୍ରୟ ମଧ୍ୟରେ ପ୍ରଥମ ମୂର୍ତ୍ତି ଶ୍ରୀକୃଷ୍ଣଙ୍କର ହେବ । ତାହା କୃଷ୍ଣବର୍ଣ୍ଣ, ପରମଶାନ୍ତ, ଚକ୍ଷୁ ପଦ୍ମ ନେତ୍ରପରି, ବକ୍ଷରେ ଶ୍ରୀବତ୍ସ ଲାଞ୍ଛନ ଓ କୌସ୍ତୁଭ ତଥା ଭୁଜରେ ଶଙ୍ଖ, ଚକ୍ର, ଗଦା ଥିବ । ଦ୍ୱିତୀୟ ମୂର୍ତ୍ତି ଗୌରାଙ୍ଗ କ୍ଷୀରତୁଲ୍ୟ ବର୍ଣ୍ଣ, ସ୍ୱସ୍ତିକ ଚିହ୍ନ ଯୁକ୍ତ, ଅନନ୍ତ ନାଗ ଯୁକ୍ତ ମସ୍ତକ ମହାବଳବାନ ଓ ଲଙ୍ଗଳଧାରୀ ହେବ । ତୃତୀୟ ମୂର୍ତ୍ତିଟି ବାସୁଦେବଙ୍କ ଭଗ୍ନୀ ସୁଭଦ୍ରାଙ୍କର ହେବ । ସେ ସ୍ୱର୍ଣ୍ଣବର୍ଣ୍ଣା ଓ ଅତି ଶୋଭନା ହୋଇଥିବେ ।

ଦ୍ୱିତୀୟଟି ହେଲା– ଏକଦା ସ୍ୱୟଂ ସୃଷ୍ଟିକର୍ତ୍ତା ବ୍ରହ୍ମା ଦେବଶିଳ୍ପୀ ବିଶ୍ୱକର୍ମାଙ୍କୁ ଡାକି ପୃଥିବୀରେ ବାସୁଦେବଙ୍କର ପ୍ରତିମା ନିର୍ମାଣ କରିବାକୁ କହିଲେ । ଯାହାଙ୍କୁ ଦର୍ଶନ କରି ଇନ୍ଦ୍ରାଦି ଦେବତାଗଣ ତଥା ମନୁଷ୍ୟଗଣ ସୁଖ ଲାଭ କରିବେ । ବିଶ୍ୱକର୍ମା ସେହିପରି ଏକ ସୁନ୍ଦର ପ୍ରତିମା ନିର୍ମାଣ କଲେ । ବ୍ରହ୍ମା ନିଜେ ସେହି ବିଗ୍ରହଙ୍କୁ ପ୍ରତିଷ୍ଠା କଲେ । ଇନ୍ଦ୍ର ଏକଦା ବ୍ରହ୍ମଲୋକକୁ ଆସି ଏହି ପ୍ରତିମାକୁ ନିଜ ପୁରକୁ ଘେନିଗଲେ ଓ ପୂଜାଆରାଧନା କଲେ । ତ୍ରେତୟା ଯୁଗରେ ଦୈତ୍ୟରାଜ ରାବଣ ଇନ୍ଦ୍ରଙ୍କୁ ପରାସ୍ତ କରି ଏ ପ୍ରତିମାଙ୍କୁ ନେଇଗଲେ । ଭାଇ ବିଭୀଷଣ ପୂଜା ଆରାଧନା ପାଇଁ ରାବଣଙ୍କୁ ପ୍ରାର୍ଥନା କରନ୍ତେ, ରାବଣ ତାଙ୍କୁ ତାହା ପ୍ରଦାନ କଲେ । ପରେ ରାମଚନ୍ଦ୍ରଙ୍କ ଦ୍ୱାରା ରାବଣ ବଧ ହେବାରୁ ଲଙ୍କାର ରାଜଗାଦୀ ପ୍ରଦାନ କରି ସେହି ବାସୁଦେବ ପ୍ରତିମାଙ୍କୁ ନେଇ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ କରିଥିଲେ । କିଛିଦିନ ପରେ ଅନୁଜ ଭରତଙ୍କୁ ରାଜ୍ୟର ଦାୟିତ୍ୱ ଦେଇ ନିଜେ ବାସୁଦେବଙ୍କ ପୂଜାରେ କାଳାତିପାତ କଲେ । ରାଜତ୍ୱ ଶେଷରେ ସେହି ବିଗ୍ରହଙ୍କୁ ସମୁଦ୍ରରାଜଙ୍କୁ ପ୍ରଦାନ କରି ବିଷ୍ଣୁଲୋକକୁ ଗମନ କଲେ । ଦ୍ୱାପର ଯୁଗରେ ଭଗବାନ ଶ୍ରୀକୃଷ୍ଣ ଓ ବଳରାମ ଅବତାର ଗ୍ରହଣ କରି ଦୈତ୍ୟାସୁର ବିନାଶ ପୂର୍ବକ ଧର୍ମ ରକ୍ଷା କଲେ । ଏହି ସମୟରେ ବରୁଣରାଜ ସର୍ବ ବାଞ୍ଛା ଫଳପ୍ରଦ ବାସୁଦେବଙ୍କୁ ସର୍ବଲୋକ ହିତାର୍ଥେ ଏହି ପୁଣ୍ୟ କ୍ଷେତ୍ର ଶ୍ରୀପୁରୁଷୋତ୍ତମ ଠାରେ ଜଳ ମଧ୍ୟରୁ ଉଦ୍ଧାର କରି ସ୍ଥାପନା କଲେ । ସେହିଦିନଠାରୁ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ଦେବ ଦେବ ବାସୁଦେବ, ସର୍ବକାମପ୍ରଦ ପ୍ରଭୁ ବିରାଜମାନ କରିଅଛନ୍ତି ।

'ନାରଦପୁରାଣ'ର ବର୍ଣ୍ଣନା 'ବ୍ରହ୍ମପୁରାଣ'ରେ ବର୍ଣ୍ଣିତ ପ୍ରଥମୋକ୍ତ ବର୍ଣ୍ଣନା ସହିତ ପ୍ରାୟ ସମାନ । କେବଳ ପାର୍ଥକ୍ୟ ଏତିକି ଯେ ''ବ୍ରହ୍ମପୁରାଣ'ରେ ବର୍ଣ୍ଣିତ ପ୍ରତିମା ନିର୍ମାଣ ନିମିତ୍ତ ରାଜା ଇନ୍ଦ୍ରଦ୍ୟୁମ୍ନ ବିଶ୍ୱକର୍ମାରୂପୀ ଭଗବାନଙ୍କୁ ନିର୍ଦ୍ଦେଶ ଦେଇଥିବା ବେଳେ 'ନାରଦ ପୁରାଣ'ରେ ଭଗବାନ ବିଷ୍ଣୁ ବ୍ରାହ୍ମଣ ବେଶରେ ଉପସ୍ଥିତ ହୋଇ ବ୍ରାହ୍ମଣବେଶୀ ବିଶ୍ୱକର୍ମାଙ୍କୁ ପ୍ରତିମା ନିର୍ମାଣ କରିବାକୁ ଆଦେଶ ଦେଇଥିଲେ । ତା'ପରେ ଏହି ତିନିଗୋଟି ପ୍ରତିମା କ୍ଷଣକମାତ୍ରରେ ହିଁ ନିର୍ମିତ ହୋଇଥିଲା ଓ ଇନ୍ଦ୍ରଦ୍ୟୁମ୍ନ ତିନି ବିଗ୍ରହଙ୍କୁ ବିମାନାକାର ରଥରେ ବସାଇ ନିର୍ମିତ ହୋଇଥିବା ମନ୍ଦିରକୁ ଆଣି ତହିଁରେ ପ୍ରତିଷ୍ଠା କଲେ ।'
'ପଦ୍ମପୁରାଣ'ରେ ବର୍ଣ୍ଣିତ ବିଷୟବସ୍ତୁ ହେଉଛି– ଶ୍ରୀ ନୀଳ ପର୍ବତରେ ଏକ ସୁନ୍ଦର ସ୍ୱର୍ଣ୍ଣମୟ ଦେବାଳୟ ଅବସ୍ଥିତ । ତନ୍ମଧ୍ୟରେ ଏକ ସ୍ୱର୍ଣ୍ଣ ସିଂହାସନ ଉପରେ ଭଗବାନ ପୁରୁଷୋତ୍ତମ ଚତୁର୍ଭୁଜ ରୂପରେ ବିରାଜମାନ କରିଥିଲେ । ତାଙ୍କର ଶରୀର କିରୀଟ, ହାର, କେୟୁର ଓ କର୍ଣ୍ଣ ପ୍ରଭୃତି ଆଭୂଷଣ ଦ୍ୱାରା ଶୋଭା ପାଉଥିଲା । କର୍ଣ୍ଣରେ କୁଣ୍ଡଳ ମଧ୍ୟ ଶୋଭା ପାଉଥିଲା । ଚଣ୍ଡ, ପଚଣ୍ଡ, ବିଜୟ ପ୍ରଭୃତି ପରିକରଗଣ ତାଙ୍କର ସେବାରେ ନିଯୁକ୍ତ ଥିଲେ ।

''ସ୍କନ୍ଦ ପୁରାଣ'ର ଉତ୍କଳ ଖଣ୍ଡରେ ଶ୍ରୀଜଗନ୍ନାଥଙ୍କ ବିଗ୍ରହ ସଂପର୍କରେ କେତେକ ପୃଥକ୍ ବିବରଣୀ ମିଳିଥାଏ । ମାଳବରାଜା ଇନ୍ଦ୍ରଦ୍ୟୁମ୍ନ ନୀଳାଚଳଠାରେ ଶ୍ରୀବିଷ୍ଣୁଙ୍କର ଦାରୁମୟୀ ବିଗ୍ରହ ନିର୍ମାଣ କରିବାକୁ ଚାହିଁବାରୁ ଦୈବୀବାଣୀ ଅନୁସାରେ ଜଣେ ବୃଦ୍ଧ ବର୍ଦ୍ଧକୀ ସେହି ପ୍ରତିମା ନିର୍ମାଣ କରିବାକୁ ଆସିଥିଲେ । ଗୋଟିଏ ଆବଦ୍ଧ ଗୃହରେ ସେ ରହି ପ୍ରତିମା ନିର୍ମାଣ କରିଥିଲେ । ପନ୍ଦର ଦିନ ପରେ ରାଜା ଦ୍ୱାର ଉନ୍ମୁକ୍ତ କରି ଚତୁର୍ଦ୍ଧା ମୂର୍ତ୍ତି ଶ୍ରୀଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କୁ ଦିବ୍ୟ ସିଂହାସନାରୂଢ଼ ହୋଇଥିବାର ଦେଖିଥିଲେ । ଭଗବାନ ବିଷ୍ଣୁଙ୍କର ହସ୍ତରେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଶୋଭା ପାଉଥିଲା । ବଳଭଦ୍ର ପନ୍ନଗ ଭୂଷଣ ଅନନ୍ତ ଦେବ ଗଦା, ମୂଷଳ, ଚକ୍ର, ଓ ପଦ୍ମ ଧାରଣ କରିଥିଲେ । ତାଙ୍କର ମସ୍ତକରେ ସାତଗୋଟି ଫଣା ବିଶିଷ୍ଟ ଅନନ୍ତ ନାଗ ଶୋଭା ପାଉଥିଲେ । ସୁଭଦ୍ରା ଏକ ହସ୍ତରେ ବର ପଦ୍ମ ଓ ଅନ୍ୟ ହସ୍ତରେ ଅଭୟମୁଦ୍ରା ଧାରଣ କରିଥିଲେ । ଏହା ସହିତ ଏହି ଦେବତାମାନଙ୍କର ସ୍ୱରୂପ ବର୍ଣ୍ଣନା କରି ସ୍କନ୍ଦ ପୁରାଣ ପ୍ରକାଶ କରିଛି ଯେ ସୁଭଦ୍ରା ହେଉଛନ୍ତି ସ୍ୱୟଂ ଲକ୍ଷ୍ମୀ । କୃଷ୍ଣାବତାରରେ ବଳରାମ ଓ କୃଷ୍ଣଙ୍କର ସଂପର୍କ ଅତି ନିବିଡ଼ । ବଳରାମ ଲୀଳାବତାରୀ କୃଷ୍ଣଙ୍କୁ ପରିତ୍ୟାଗ କରି କ୍ଷଣେମାତ୍ର ରହି ନପାରନ୍ତି । ପୁଣି ଏକ ଗର୍ଭରୁ ଉତ୍ପନ୍ନ ହୋଇଥିବା ହେତୁ ସେ (ସୁଭଦ୍ରା) ଭଗ୍ନୀ ସଦୃଶା । ଭଗବାନ ବିଷ୍ଣୁ ପୁରୁଷ ନାମରେ ଓ ଲକ୍ଷ୍ମୀ ସ୍ତ୍ରୀ ରୂପରେ ପୂଜିତା । ସୁଭଦ୍ରା ଭଗବାନଙ୍କର ଶକ୍ତି ସ୍ୱରୂପିଣୀ ଅଟନ୍ତି । ସୁଦର୍ଶନ ଚକ୍ର ଅଗ୍ର ଭାଗରେ ରହି ବିଷ୍ଣୁଙ୍କ ହସ୍ତରେ ବିରାଜମାନ । ସେ ବିଷ୍ଣୁଙ୍କର ଚତୁର୍ଥ ରୂପ । 'ସ୍କନ୍ଦପୁରାଣ'ରେ ଭଗବାନଙ୍କର ଚତୁର୍ଦ୍ଧା ମୂର୍ତ୍ତିର ଦୁଇଗୋଟି ରୂପ ବର୍ଣ୍ଣନା କରାଯାଇଛି । ଗୋଟିଏ ତାଙ୍କର ତାନ୍ତ୍ରିକ ରୂପ ଓ ଅନ୍ୟଟି ଲୌକିକ ରୂପ ।

'ସ୍କନ୍ଦ ପୁରାଣ' ପରେ 'ନୀଳାଦ୍ରି ମହୋଦୟ' ବର୍ଣ୍ଣନାନୁସାରେ ରତ୍ନସିଂହାସନାରୂଢ଼ ଶ୍ରୀଜଗନ୍ନାଥ, ବଳଭଦ୍ର, ସୁଭଦ୍ରା, ସୁଦର୍ଶନ, ଭୂଦେବୀ, ଶ୍ରୀଦେବୀ ଓ ମାଧବ ସପ୍ତ ରୂପରେ ପ୍ରକାଶିତ । 'ନୀଳାଦ୍ରି ମହୋଦୟ' ରଚନା ବେଳକୁ ବହୁ ଧର୍ମ ଯାନଙ୍କର ଶ୍ରୀକ୍ଷେତ୍ରକୁ ଆଗମନ ଓ ଶ୍ରୀପୁରୁଷୋତ୍ତମଙ୍କ ଠାରେ ନିଜ ନିଜ ଇଷ୍ଟ ଦେବଙ୍କୁ ପ୍ରତ୍ୟକ୍ଷ କରିବା ସହିତ ସେହି ସେହି ଧର୍ମୀୟ ଭାବନାର ସଂକେତ ସ୍ୱରୂପ ଚତୁର୍ଦ୍ଧା ମୂର୍ତ୍ତି ସପ୍ତ

ରୂପରେ ପ୍ରତିଷ୍ଠିତ ହୋଇଥିବା ସମ୍ଭବପର । ଏହି ପରିବର୍ତ୍ତନର କାରଣ ସମ୍ପର୍କରେ ସେଭଳି ବଳିଷ୍ଠ ପ୍ରମାଣ ଅଦ୍ୟାବଧି ମିଳିନାହିଁ । ଗଙ୍ଗବଂଶର ପ୍ରତିଷ୍ଠାତା ଅନନ୍ତବର୍ମା ଚୋଡ଼ଗଙ୍ଗ ଦେବ ଶ୍ରୀକ୍ଷେତ୍ରରେ ପୁରୁଷୋତ୍ତମଙ୍କ ପାଇଁ ମନ୍ଦିର ନିର୍ମାଣ କରିଥିଲେ । ତାଙ୍କର ପୌତ୍ର ରାଜରାଜ ଦେବ ନିଜର ତାମ୍ର ଶାସନରେ ଏହି ମନ୍ଦିର ସମ୍ପର୍କରେ ଯାହା ଉଲ୍ଲେଖ କରିଛନ୍ତି, ସେଥିରୁ ଜଣାଯାଏ ଯେ ପୁରୁଷୋତ୍ତମ ହିଁ ଏହି ମନ୍ଦିରରେ ଅଧିଷ୍ଠିତ ହୋଇଥିଲେ ।

"ପ୍ରାସାଦଃ ପୁରୁଷୋତ୍ତମସ୍ୟ ନୃପତି କୋ ନାମ କର୍ତ୍ତୁଂ କ୍ଷମଃ
ତସୈ୍ୟତ୍ୟାଦି ନୃପୈରୂପେକ୍ଷିତ ମୟଂ ଚକ୍ରେଽଥ ଗଙ୍ଗେଶ୍ୱରଃ ।"
(ରାଜରାଜ ଦେବ ୩ୟଙ୍କର ଦାସଗୋବା ତାମ୍ରଶାସନ)

ଏହାଦ୍ୱାରା ସହଜରେ ଅନୁମେୟ ଯେ ଗରୁଡ଼ ସ୍ତମ୍ଭଠାରୁ ରତ୍ନବେଦୀକୁ ଚାହିଁଲେ ସିଂହାସନାରୂଢ଼ ମୁଖ୍ୟ ଚତୁର୍ଦ୍ଧା ମୂର୍ତ୍ତି ସମ୍ପୂର୍ଣ୍ଣ ରୂପେ ଦୃଶ୍ୟମାନ ହୁଅନ୍ତି ନାହିଁ । ଗର୍ଭଗୃହରେ ପ୍ରଥମରୁ ପୁରୁଷୋତ୍ତମ ବିଗ୍ରହଙ୍କର ଅଧିଷ୍ଠାନ ପରିକଳ୍ପନା କରାଯାଇଥିବା ସମ୍ଭବପର । ସେଥିପାଇଁ ଶ୍ରୀମନ୍ଦିରର ଦକ୍ଷିଣ ଦିଗରେ ମୁକ୍ତି ମଣ୍ଡପ ନିକଟସ୍ଥ ନୃସିଂହ ମନ୍ଦିର କାନ୍ଥରେ ଥିବା ଶିଳାଲିପିରେ ପୁରୁଷୋତ୍ତମଙ୍କୁ ଦାପଦାନ କଥା ଖୋଦିତ ହୋଇଅଛି । ଏଥିରୁ ସ୍ପଷ୍ଟ ଅନୁମାନ କରାଯାଇପାରେ ଯେ ମନ୍ଦିର ନିର୍ମାଣ ପରେ ପ୍ରଥମେ ଶ୍ରୀପୁରୁଷୋତ୍ତମଙ୍କ ଏକକ ବିଗ୍ରହ ରତ୍ନସିଂହାସନ ମଣ୍ଡନ କରୁଥିଲେ । ପରେ ଚତୁର୍ଦ୍ଧା ମୂର୍ତ୍ତି ଓ ତତ୍‌ପରେ ସପ୍ତ ବିଗ୍ରହ ସେଠାରେ ସ୍ଥାପିତ ହୋଇଛନ୍ତି । ସୁତରାଂ ଏକକ ଶ୍ରୀପୁରୁଷୋତ୍ତମ ବିଗ୍ରହ ପରବର୍ତ୍ତୀ ପର୍ଯ୍ୟାୟରେ ତ୍ରିମୂର୍ତ୍ତି, ଚତୁର୍ଦ୍ଧାମୂର୍ତ୍ତି ଓ ଶେଷରେ ସପ୍ତ ରୂପରେ ପୂଜିତ ହୋଇଥିଲେ । ଏହି ସପ୍ତ ବିଗ୍ରହ ମଧ୍ୟରୁ ଦୁଇ (ଶ୍ରୀଦେବୀ ଓ ଭୂଦେବୀ) ମୂର୍ତ୍ତି ଦାରୁ ବା କାଷ୍ଠରେ ନିର୍ମିତ ନହୋଇ ଧାତୁ ନିର୍ମିତ ଅଟନ୍ତି । ଆଜି ପୂଜିତ ହେଉଥିବା ବିଗ୍ରହମାନେ ଉତ୍କଳରେ ବହୁ ପ୍ରାଚୀନ କାଳରୁ ପ୍ରଚଳିତ ଉପାସନାର ଯେ କ୍ରମ ବିବର୍ତ୍ତନର ପରିଣତି, ଏଥିରେ ସନ୍ଦେହ ନାହିଁ । ମୋଟାମୋଟି ଭାବରେ ଦେଖିଲେ ଜଣାଯାଏ ଯେ, ପୁରାଣ, ଇତିହାସ ଓ କିମ୍ବଦନ୍ତୀରେ ବର୍ଣ୍ଣିତ ମୂର୍ତ୍ତି ନିର୍ମାଣ ସମ୍ପର୍କରେ ଯାହା ପ୍ରକାଶ ପାଇଛି, ସେସବୁ ସେହି ଚତୁର୍ଦ୍ଧା ମୂର୍ତ୍ତି ଓ କେତେକ ପୁରାଣରେ ଯାହା ବର୍ଣ୍ଣାଯାଇଛି ତାହା ତ୍ରିମୂର୍ତ୍ତିର ନିର୍ମାଣର କଥା । ସବୁ ଶାସ୍ତ୍ରରେ ନିର୍ଦ୍ଦିଷ୍ଟ ଦିବସ ପୂର୍ବରୁ ରୁଦ୍ଧଦ୍ୱାର ଉନ୍ମୁକ୍ତ ହେବାର କାରଣ ଏହି ଅଧାଗଢ଼ା ମୂର୍ତ୍ତି ବୋଲି ବର୍ଣ୍ଣନା କରାଯାଇଛି ଏବଂ ଶୂନ୍ୟବାଣୀରେ ସାନ୍ତ୍ୱନା ପ୍ରଦତ୍ତ ହୋଇଅଛି ଯେ ନିଜ ଇଚ୍ଛାରେ ସେ ଏହିପରି ପ୍ରକଟିତ ହୋଇ କଳିଯୁଗରେ ପୂଜା ପାଇବେ । ଏହି ଅପୂର୍ଣ୍ଣତା ମଧ୍ୟରେ ସତେ ଯେପରି ପୂର୍ଣ୍ଣତାର ବ୍ୟଞ୍ଜନାରେ ସେମାନେ ପ୍ରତିଭାତ ।

*ପ୍ରାଧ୍ୟାପକ, ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟ,ପୁରୀ*

• • •

# ନନ୍ଦିଘୋଷ

ଶ୍ରୀଜଗନ୍ନାଥଙ୍କ ରଥର ନାମ ନନ୍ଦିଘୋଷ । ଏହା ଇନ୍ଦ୍ରଙ୍କ ପ୍ରଦତ୍ତ । ଉଚ୍ଚତା ୩୩ ହାତ ପାଞ୍ଚ ଆଙ୍ଗୁଳି । ୮୩୨ ଖଣ୍ଡ କାଠରେ ନିର୍ମିତ । ୧୬ଟି ଚକ । ଏହାର ରକ୍ଷକ ସ୍ୱୟଂ ଗରୁଡ଼ । ଧ୍ୱଜାରେ ହନୁମାନଜୀ ବିରାଜମାନ କରନ୍ତି । ଆୟୁଧ ଚକ୍ର ଓ ଶଙ୍ଖ । ରଥର ଆବରଣ ରକ୍ତପୀତ । ରଥ ଶିରରେ ଅବସ୍ଥିତ ଦେବତା କଲ୍ୟାଣ ସୁନ୍ଦର । ଶକ୍ତି ବିମଳା ଓ ବିରଜା । ରଥର ଚତୁଃପାର୍ଶ୍ୱରେ ନବ ଦେବତା ବିଦ୍ୟମାନ ଯଥା-ହନୁମାନ, ରାମ, ଲକ୍ଷ୍ମଣ, ନାରାୟଣ, କୃଷ୍ଣ, ଗୋବର୍ଦ୍ଧନଧାରଣ, ଚିନ୍ତାମଣି, ରାଘବ ଓ ନୃସିଂହ । ରଥର ଅଶ୍ୱମାନେ ହେଲେ ଶଙ୍ଖ, ବଳାହକ, ଶ୍ୱେତ ଓ ହରିଦାଶ୍ୱ । ସାରଥୀଙ୍କ ନାମ ଦାରୁକ । ରଥର ରଜ୍ଜୁ ହେଲେ ଶଙ୍ଖଚୂଡ଼ ନାମ୍ନୀ ନାଗୁଣୀ । ରଥର ମୁଖ ହେଲେ ନନ୍ଦୀମୁଖ । ରଥର ଦେବୀ ହେଉଛନ୍ତି ଯୋଗମାୟା । ରଥଭୈରବ ଏକପାଦ । ବନ୍ଦ ଓ କୁବେର ଚାରଣ । ରଥ ଯକ୍ଷ ହେଲେ ହର୍ଯ୍ୟକ୍ଷ । ରଥ ଗର୍ଭାଧୀଶ୍ୱର ହେଉଛନ୍ତି ହିରଣ୍ୟଗର୍ଭ । ରଥଶକ୍ତି ହେଲେ ବିମଳା । ଉତ୍ତର୍ଷଣୀ -କ୍ରିୟା, ଯୋଗା, ଆଖ୍ୟା, ଅନୁଷା, ପ୍ରଜ୍ଞା ଓ ମେଧା । ରଥି ପଟାରେ ନାରଦ, ଦେବଳ, ବ୍ୟାସ, ଶୁକ: ପରାଶର, ବଶିଷ୍ଠ, ବିଶ୍ୱାମିତ୍ର, ରୁଦ୍ର ଆଦି ଅଷ୍ଟ ଋଷି ବିଦ୍ୟମାନ । ରଥ କୁମ୍ଭର ନାମ ହିରଣ୍ମୟ । ଦ୍ୱାରପାଳ ହେଲେ ଜୟ ଓ ବିଜୟ । କେତନର ନାମ ତ୍ରୈଲୋକ୍ୟମୋହିନୀ । ରଥର ଅଧୀଶ୍ୱର-ଶ୍ରୀଜଗନ୍ନାଥ ।



# ଚତୁର୍ଦ୍ଧା ମୂର୍ତ୍ତିରେ ଅବସ୍ଥାପିତ ବ୍ରହ୍ମ

● ଡକ୍ଟର ବିଚିତ୍ରାନନ୍ଦ ମହାନ୍ତି

ଆତ୍ମଶକ୍ତି ବା ଚିତ୍‌ଶକ୍ତି ଯୋଗୁଁ ଶବ ଓ ଜୀବ (ଜୀବନ୍ତ ମାନବ) ମଧ୍ୟରେ ପାର୍ଥକ୍ୟ ପରିଲକ୍ଷିତ ହୁଏ । ସନାତନ ଧର୍ମର ପ୍ରଭାବରେ ଧାର୍ମିକ ଜନତା କାଠ, ପଥର, ଗଛ, ମାଛ, ସର୍ବତ୍ର ଈଶ୍ୱରଙ୍କ ସତ୍ତା ଉପଲବ୍ଧି କରୁଥିବାରୁ ଈଶ୍ୱରଙ୍କୁ ସର୍ବବ୍ୟାପକ, ସର୍ବଶକ୍ତିମାନ୍ ଓ ବିଶ୍ୱନିୟନ୍ତା ଭାବରେ ଅବଧାରଣ କରିଥାନ୍ତି । ତ୍ରିକାଳଦର୍ଶୀ ମୁନିଋଷିଙ୍କ ଦିବ୍ୟଜ୍ଞାନ ଲୋକମାନଙ୍କ ମଧ୍ୟରେ ଏପରି ଜନପ୍ରିୟତା ଲାଭ କରିଅଛି ଯେ ତା' ପ୍ରଭାବରେ ଶିକ୍ଷାଲୋକଠାରୁ ଦୂରରେ ଥିବା ସନାତନ ପରମ୍ପରା ବିଶ୍ୱାସୀ ନିରକ୍ଷର ବ୍ୟକ୍ତିଗଣ ସୁଦ୍ଧା ଦିବ୍ୟ ଗୂଢ଼ ତତ୍ତ୍ୱଜ୍ଞାନର ଅଧିକାରୀ ହୋଇ ସର୍ବତ୍ର ବ୍ରହ୍ମସତ୍ତାର ବିଦ୍ୟମାନତା ଅନୁଭବ କରନ୍ତି ।

ଶ୍ୱେତାଶ୍ୱେତର ଉପନିଷଦ୍‌ରେ (୩-୧୦) ବ୍ରହ୍ମଙ୍କ ସ୍ୱରୂପ ବର୍ଣ୍ଣନା କରି କୁହାଯାଇଛି,

"ଅପାଣିପାଦୋ ଜବନୋଗ୍ରହୀତା
ପଶ୍ୟତ୍ୟଚକ୍ଷୁ ସ ଶୃଣୋତ୍ୟକର୍ଣ୍ଣଃ
ସ ବେତ୍ତି ବେଦ୍ୟଂନଚ ତସ୍ୟାସ୍ତି ବେତ୍ତା
ତମାହୁରଗ୍ର୍ୟଂ ପୁରୁଷଂ ମହାନ୍ତମ୍ ।"

ହାତ ନ ଥାଇ ମଧ୍ୟ ସେ ସମସ୍ତ ଦ୍ରବ୍ୟ ଗ୍ରହଣ କରନ୍ତି । ପାଦ ନ ଥାଇ ମଧ୍ୟ ସେ ସବୁଠାରୁ ବେଗଗାମୀ । ଆଖି ନ ଥାଇ ସୁଦ୍ଧା ସେ ସବୁ ଦେଖିପାରନ୍ତି । କର୍ଣ୍ଣ ନ ଥିଲେ ମଧ୍ୟ ସେ ସବୁରି କଥା (ଦୁଃଖ) ଶୁଣିପାରନ୍ତି । ସେ ସବୁରି ନିୟନ୍ତା । ତାଙ୍କର କଥା ଜାଣିବାରେ ବା କାହାର ସାଧ ଅଛି ? ଏହିପରି କ୍ରିୟାଶୀଳ କର୍ତ୍ତା ହେଉଛନ୍ତି ମହାନ୍ ପୁରୁଷ- ପୁରୁଷୋତ୍ତମ ।

ସେହି ଦିବ୍ୟଜ୍ୟୋତିଷ୍ମାନ୍ ପୁରୁଷଙ୍କ ସମ୍ପର୍କରେ କୁହାଯାଇଛି,

"ବେଦାହମେତଂ ପୁରୁଷଂ ମହାନ୍ତମ୍,
ଆଦିତ୍ୟ ବର୍ଣ୍ଣଂ ତମସଃ ପୁରସ୍ତାତ୍,
ତମେବ ବିଦିତ୍ୱା ଅତି ମୃତ୍ୟୁମେତି
ନାନ୍ୟଃ ପନ୍ଥା ବିଦ୍ୟତେଽୟନାୟ" ।।

ସୂର୍ଯ୍ୟଭଳି ପ୍ରଜ୍ୱଳିତ କାନ୍ତିଯୁକ୍ତ ସେହି ମହାନ୍ ପୁରୁଷଙ୍କୁ ମୁଁ ଜାଣିଛି । ସେ ସକଳ ଅଜ୍ଞାନ ଅନ୍ଧକାରର ଊର୍ଦ୍ଧ୍ୱରେ ଅବସ୍ଥାନ କରନ୍ତି । ତାଙ୍କୁ ହିଁ କେବଳ ଜାଣିପାରିଲେ ମୃତ୍ୟୁ-ବିଭୀଷିକାରୁ ଉଦ୍ଧାର ମିଳିବ । ଯା' ଛଡ଼ା ଅନ୍ୟ କିଛି ପନ୍ଥା ନାହିଁ ।

ଶ୍ରୀମଦ୍‌ଭଗବଦ୍ ଗୀତାରେ ବିଶ୍ୱରୂପ ପ୍ରଦର୍ଶନ କରିବାବେଳେ ଭଗବାନଙ୍କର ଯେଉଁ ମୂର୍ତ୍ତି ସନ୍ଦର୍ଶନ କରି ମୋହାବିଷ୍ଟ ଅର୍ଜ୍ଜୁନଙ୍କ ମନରେ ଭକ୍ତିର ଶକ୍ତି ପ୍ରବାହିତ ହୋଇ ତାହାଙ୍କୁ ସୁଷୁପ୍ତିରୁ ଜାଗ୍ରତ କରିଥିଲା, ସେ ମୂର୍ତ୍ତିର ବର୍ଣ୍ଣନା କରାଯାଇଛି –

"ଅନେକ ବାହୂଦରବକ୍ତ୍ରନେତ୍ରଂ
ପଶ୍ୟାମି ତ୍ୱାଂ ସର୍ବତୋଽନନ୍ତ ରୂପମ୍,
ନାନ୍ତଂ ନ ମଧ୍ୟଂ ନ ନ ପୁନସ୍ତବାଦିଂ
ପଶ୍ୟାମି ବିଶ୍ୱେଶ୍ୱର ବିଶ୍ୱରୂପଂ" ।

ହେ ପ୍ରଭୁ ! ମୁଁ ଦେଖିପାରୁଛି ସେଇ ଗୋଟିଏ ମୂର୍ତ୍ତିର ଅନେକ ବାହୁ, ଅନେକ ଉଦର, ଅନେକ ମୁଖ ଓ ଅନେକ ଚକ୍ଷୁ । ସବୁଠାରେ ତୁମର ସେ ଅନନ୍ତ ରୂପର ସ୍ୱରୂପ ଦେଖୁଛି, ତାର ଆଦି ନାହିଁ, ମଧ୍ୟ ନାହିଁ କିମ୍ବା ଅନ୍ତ ନାହିଁ । ସେହି ନିତ୍ୟ, ଅଚିନ୍ତ୍ୟ, ଅପ୍ରାକୃତ, ଅନାଦି, ଅନନ୍ତ ସ୍ୱୟଂଭୂତ ଓ ସଂସାରର ସାର ହେଉଛ ତୁମେ ବିଶ୍ୱର ଈଶ୍ୱର, ବିଶ୍ୱସ୍ୱରୂପ ବିଶ୍ୱରୂପ । ଦୃଶ୍ୟମାନ୍ ଓ ଅଦୃଶ୍ୟମାନ୍ ପ୍ରତିଟି ବସ୍ତୁ ତାଙ୍କଠାରୁ ସୃଷ୍ଟି ହୁଅନ୍ତି ଓ ପୁଣି ତାଙ୍କରି ମଧ୍ୟରେ ବିଲୀନ ହୋଇଯାଆନ୍ତି ।

ସେହି ବ୍ରହ୍ମଙ୍କର ପରିକଳ୍ପନା ସମଗ୍ର ଜଗତର ନାଥ ଜଗନ୍ନାଥ ରୂପରେ ଶ୍ରୀକ୍ଷେତ୍ରର ରତ୍ନବେଦିକାରେ ବିରାଜିତ ଚତୁର୍ଦ୍ଧାମୂର୍ତ୍ତି । ସେହି ମହାନ୍ ପୁରୁଷ ପୁରୁଷୋତ୍ତମ ରୂପରେ ଦେବତାଙ୍କ ମଧ୍ୟରେ ଶ୍ରେଷ୍ଠ ଓ ତାହାଙ୍କ ଅଧିଷ୍ଠିତ କ୍ଷେତ୍ର ମଧ୍ୟ ସମସ୍ତ ତୀର୍ଥ ମଧ୍ୟରେ ଶ୍ରେଷ୍ଠ ।

"ସର୍ବେଷାମପି ଦେବାନ ରାଜା ଶ୍ରୀପୁରୁଷୋତ୍ତମଃ
ସର୍ବେଷାମପି କ୍ଷେତ୍ରାଣାଂ ରାଜା ଶ୍ରୀପୁରୁଷୋତ୍ତମଃ" ।

ସେହି ବ୍ରହ୍ମଙ୍କଠାରୁ ଆରମ୍ଭ ଓ ବ୍ରହ୍ମଙ୍କ ଉଚ୍ଛିଷ୍ଟ ଏ ଜଗତ୍, ତାଙ୍କରି ମାୟା ଶକ୍ତିରେ ଆବଦ୍ଧ ହୋଇ ପୁନର୍ବାର ତାଙ୍କରି ଭିତରେ ନିଶ୍ଚିହ୍ନ ହେଉଛି । ଶ୍ୱେତାଶ୍ୱେତର ଉପନିଷଦରେ କଥିତ ବ୍ରହ୍ମଙ୍କର ସ୍ୱରୂପ ପୁରାତନ ପୁରୀ କ୍ଷେତ୍ରରେ ପୁରୁଷୋତ୍ତମ ଜଗନ୍ନାଥଙ୍କ ସ୍ୱରୂପରେ ରୂପାୟିତ ହୋଇଥିବା ନିଃସନ୍ଦେହ । ତେଣୁ ଏହାର ବ୍ୟାଖ୍ୟା ବା ବିଶ୍ଳେଷଣ ଅନାବଶ୍ୟକ । ଯୋଗୀମାନଙ୍କ ହୃଦୟାକାଶରେ ଯେଉଁ ଦିବ୍ୟଜ୍ୟୋତି ଉଦ୍ଭାସିତ ହୁଅନ୍ତି ସେ ହିଁ ନୀଳାଚଳରେ ଦାରୁ ରୂପରେ ମୂର୍ତ୍ତିମନ୍ତ ହୋଇଛନ୍ତି ବୋଲି ମହର୍ଷି ବ୍ୟାସ ସପର୍ଷିଙ୍କୁ କହିଛନ୍ତି ।

ସ୍କନ୍ଦ ପୁରାଣରେ ସୁଭଦ୍ରାଙ୍କୁ ଭଦ୍ରଦାୟିନୀ, ଭଦ୍ର ସ୍ୱରୂପା ଓ ଭଦ୍ରକାଳୀ ଭାବରେ ଏବଂ ତନ୍ତ୍ର ମତରେ ଶ୍ରୀଜଗନ୍ନାଥଙ୍କୁ ଦକ୍ଷିଣକାଳିକା ବୋଲି ଅଭିହିତ କରାଯାଇଛି । କିନ୍ତୁ ଶ୍ରୀମନ୍ଦିରରେ ଜଗନ୍ନାଥଙ୍କୁ ଗୋପାଳ ମନ୍ତ୍ରରେ, ବଳଭଦ୍ରଙ୍କୁ ଶିବ ମନ୍ତ୍ରରେ ଓ ସୁଭଦ୍ରାଙ୍କୁ ଶକ୍ତି ମନ୍ତ୍ରରେ ପୂଜା କରାଯାଉଥିବାରୁ ଏଠାରେ ବୈଷ୍ଣବ, ଶୈବ ଓ ଶାକ୍ତ ଉପାସନାର ଧାରା ଅବ୍ୟାହତ ରହିଅଛି ।

ନୀଳଗିରିରୁ ନୀଳମାଧବଙ୍କ ଅନ୍ତର୍ଦ୍ଧାନ ପରେ ଶୋକାର୍ତ୍ତ ଇନ୍ଦ୍ରଦ୍ୟୁମ୍ନଙ୍କୁ ନୃସିଂହ ମୂର୍ତ୍ତି ସ୍ଥାପନ କରି ପୂଜା କରିବା ପାଇଁ ନାରଦ କହିଛନ୍ତି–

"ସ୍ଥାପୟାମାସତୋ ରାଜନ୍,
ନୃସିଂହ ଦାରୁଣାମୁଖମ୍,
ଅବର୍ହିତୋ ହି ଭଗବାନ୍,
ପ୍ରତ୍ୟକ୍ଷୋଽସୌ ନୃ କେଶରୀ" ।

ବୈଶାଖ ଶୁକ୍ଳ ଚତୁର୍ଦ୍ଦଶୀରେ ଶ୍ରୀମନ୍ଦିରରେ ନୃସିଂହଙ୍କ ଜୟନ୍ତୀ ଉତ୍ସବ ପାଳିତ ହୋଇ ପୁରୁଷୋତ୍ତମ-ନୃସିଂହଙ୍କୁ ଆରାଧନା କରାଯାଉଛି । ଏହି ନୃସିଂହ ଯଜ୍ଞ ନୃସିଂହ ରୂପରେ ଗୁଣ୍ଡିଚାଘର (ଜନକ ପୁରୀ-ଯେଉଁଠାରେ ଶ୍ରୀଜଗନ୍ନାଥ ବିଗ୍ରହ ପ୍ରଥମେ ଜାତ ବା ନିର୍ମିତ ହୋଇଥିଲେ) ନିକଟରେ ଏବଂ ମୁକ୍ତ ନୃସିଂହ ରୂପରେ ମୁକ୍ତ ମଣ୍ଡପ (ମୁକ୍ତି ମଣ୍ଡପ) ନିକଟରେ ଆବିର୍ଭୂତ ହୋଇଥିବା ସର୍ବବାଦୀ ସମ୍ମତ ।

ଜୀବ ମଧ୍ୟରେ ଚିତ୍ ଶକ୍ତି ସ୍ୱରୂପରେ ଈଶ୍ୱର ସତ୍ତା ବିଦ୍ୟମାନ୍ ଥିବା ପରି ଦାରୁମାନଙ୍କ ମଧ୍ୟରେ ବ୍ରହ୍ମ ଅବସ୍ଥାପିତ ହୋଇ ଦାରୁବ୍ରହ୍ମ ନାମର ସାର୍ଥକତା ପ୍ରତିପାଦନ କରିଥାନ୍ତି । ନବକଳେବର କାଳରେ ପ୍ରାଚୀନ କଳେବରରୁ ନୂତନ କଳେବରକୁ ଅର୍ଥାତ୍ ଘଟରୁ ଘଟକୁ ବ୍ରହ୍ମଙ୍କୁ ସ୍ଥାନାନ୍ତରିତ କରାଯାଏ । ବିଜୟ ଅମାବାସ୍ୟାର ନିଶାର୍ଦ୍ଧରେ ଘନଘୋର ଅନ୍ଧକାରମୟ ପରିବେଶରେ ଏହି ଗୋପନ କାର୍ଯ୍ୟ ସମ୍ପନ୍ନ ହେଉଥିବାରୁ କେବଳ ସେବାୟତଙ୍କ ବ୍ୟତୀତ ଅନ୍ୟ କେହି ଏ ଗୋପନ ତତ୍ତ୍ୱ ସମ୍ପର୍କରେ ଜ୍ଞାତ ନ ଥାନ୍ତି ।

ଯୋଡ଼ା ଆଷାଢ଼ ପଡ଼ିବା ବର୍ଷ ଚତୁର୍ଦ୍ଧା ମୂର୍ତ୍ତିଙ୍କ ନବ କଳେବର ହେବା ଏକ ସାଧାରଣ କଥା ହୋଇଥିଲେହେଁ ଓ ପ୍ରତି ବାରବର୍ଷରେ ଥରେ ଏପରି ସମୟ ଆସିବା ଲୋକବିଶ୍ୱାସ ଥିଲେହେଁ ଐତିହାସିକ ବିବରଣୀ ମତେ ଏଥିରେ ବ୍ୟତିକ୍ରମ ହୋଇଥିବା ସୂଚୀତ । ଐତିହାସିକ ସୂତ୍ରରୁ ଜ୍ଞାତ ହୁଏ, ମହାପ୍ରଭୁମାନଙ୍କର ନବକଳେବର ୧୫୦୯, ୧୫୨୫, ୧୬୦୯, ୧୬୧୦, ୧୬୧୫, ୧୬୧୭, ୧୬୨୨, ୧୬୨୫, ୧୬୯୮, ୧୭୧୪, ୧୭୩୧, ୧୭୩୩, ୧୭୪୪, ୧୭୫୨, ୧୭୭୧, ୧୭୯୦, ୧୮୦୯, ୧୮୨୮, ୧୮୩୭, ୧୮୫୫, ୧୮୭୪, ୧୮୯୩, ୧୯୧୨, ୧୯୩୧, ୧୯୫୦, ୧୯୬୯, ୧୯୭୭ ଓ ୧୯୯୬ରେ ଅନୁଷ୍ଠିତ ହୋଇଅଛି । ଏଥିରୁ ବୋଧ ହେଉଛି, ବିଭିନ୍ନ ସମୟରେ ମୋଗଲ ଆକ୍ରମଣ ଯୋଗୁଁ ଶ୍ରୀଜୀଉମାନେ ବଢ଼ାଛାଡ଼ି ଓଡ଼ିଶାର ବିଭିନ୍ନ ସ୍ଥାନରେ ରହି ପୁନରାବର୍ତ୍ତନ ପରେ ନବକଳେବର ଗ୍ରହଣ ପୂର୍ବକ ଅବସ୍ଥାନ କରନ୍ତି । ଏହି କାରଣରୁ ଏକ ବର୍ଷ, ପାଞ୍ଚବର୍ଷ, ୨ବର୍ଷ, ୩ବର୍ଷ ବ୍ୟବଧାନରେ ମଧ୍ୟ ଏହି ପ୍ରକ୍ରିୟା ସଂଘଟିତ ହେବା ଅନୁମାନ ।

ବିଦ୍ୟମାନ ଶ୍ରୀମନ୍ଦିର ନିର୍ମାଣ ସମ୍ପର୍କରେ ରାଜରାଜ ଦେବଙ୍କ ପ୍ରଦତ୍ତ ତାମ୍ରଶାସନରେ ଉଲ୍ଲେଖ ଅଛି ଯେ ପୂର୍ବ ନରପତିମାନଙ୍କ ଦ୍ୱାରା ଉପେକ୍ଷିତ ହୋଇଥିବା ଶ୍ରୀଜଗନ୍ନାଥ ମନ୍ଦିର ଗଙ୍ଗେଶ୍ୱର ବା ଚୋଡ଼ଗଙ୍ଗଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ଐତିହାସିକମାନେ ଏହି ମନ୍ଦିରର ନିର୍ମାଣ କାଳ ୧୧୩୫ ଖ୍ରୀଷ୍ଟାବ୍ଦ ପରବର୍ତ୍ତୀ ବୋଲି ସିଦ୍ଧାନ୍ତ କରିଥିଛନ୍ତି । ତେବେ ଏହି ମନ୍ଦିର ନିର୍ମାଣ କାଳଠାରୁ ୧୫୦୯ ଅର୍ଥାତ୍ ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱ ମଧ୍ୟରେ ନବକଳେବରର କୌଣସି ପ୍ରକାର ଧାରାବାହିକ ସୂଚନା ମିଳୁନାହିଁ ।

୧୫୬୮ ଖ୍ରୀଷ୍ଟାବ୍ଦରେ କଳାପାହାଡ଼ର ଶ୍ରୀମନ୍ଦିର ଆକ୍ରମଣ, ଶ୍ରୀଜଗନ୍ନାଥଙ୍କୁ ହାତୀ ପଛରେ ବାନ୍ଧି ନେଇ ଗଙ୍ଗାକୂଳରେ ପୋଡ଼ିବା ଓ ଅର୍ଦ୍ଧଦଗ୍ଧ ବିଗ୍ରହ ମଧ୍ୟରୁ ବହୁ କଷ୍ଟରେ ବିଶର ମହାନ୍ତି ଉଦ୍ଧାର କରି ଓ ମୃଦଙ୍ଗ ଖୋଳ ମଧ୍ୟରେ ପୂରାଇ ଆଣି ଗଡ଼କୁଜଙ୍ଗରେ ରଖିବା ଓ ପରେ ବ୍ରହ୍ମଙ୍କୁ ନେଇ ମହାରାଜା ରାମଚନ୍ଦ୍ର ଦେବ ଦାରୁ ମଧ୍ୟରେ ପୂର୍ଣ୍ଣ କରାଇ ବଡ଼ ଦେଉଳରେ ସ୍ଥାପନ କରିବା ଯୋଗୁଁ ବ୍ରହ୍ମଙ୍କ ବିଷୟ ଚର୍ଚ୍ଚା ମଧ୍ୟକୁ ଆସିଲା । ତା' ପୂର୍ବରୁ ଲୋକେ ଠାକୁରଙ୍କ ଭିତରେ ଥିବା ଠାକୁର ବା ଦାରୁ ମଧ୍ୟରେ ଥିବା ବ୍ରହ୍ମଙ୍କ ବିଷୟରେ ଅବହିତ ନ ଥିଲେ ।

ସର୍ବାଙ୍ଗ ସୁନ୍ଦରୀ କାବ୍ୟରେ କବି ଲୋକନାଥ ବିଦ୍ୟାଧର ବର୍ଣ୍ଣନା କରିଛନ୍ତି, ପାଦପାଣି ନ ଥିବା ଜଗତର ନାଥଙ୍କ ମଧ୍ୟରେ ଥିବା ଗୋପନ ବସ୍ତୁକୁ ବାଣପୁରବାସୀ ଦେଖିବା ସୁଯୋଗ ପାଇ ଧନ୍ୟ ହୋଇଛନ୍ତି । ଏହି ବ୍ରହ୍ମଙ୍କ ସମ୍ବନ୍ଧେ କୌଣସି ସୂଚନା ମିଳେନାହିଁ ।

ବିଜୟ ଅମାବାସ୍ୟାର ଅନ୍ଧକାର ମଧ୍ୟରେ ନବକଳେବର କାଳରେ ଘଟରୁ ଘଟକୁ ବ୍ରହ୍ମ ପରିବର୍ତ୍ତନ କରୁଥିବା ସେବକମାନେ ଆଖିରେ ଅନ୍ଧପୁଟୁଳି ଓ ହାତରେ ପାଟକନା ଗୁଡ଼ାଇଥିବାରୁ ସେମାନେ ବ୍ରହ୍ମ ଯେ କି ଜାତି ପଦାର୍ଥ, ତାହା ଅନୁଭବ କରି ପାରନ୍ତି ନାହିଁ । ଏହି ଗୋପନ ତଥ୍ୟ ପ୍ରକାଶ କରିବା ନିଷିଦ୍ଧ ।

ନବକଳେବର ପରେ ସେବାୟତମାନେ ବ୍ରହ୍ମଙ୍କ ଉପରେ ଦେଉଥିବା ତୁଳସୀ ଜଳ ଅନ୍ୟଥରକୁ ସେହିପରି ସବୁଜ ଓ ସତେଜ ରହିଥିବା ଓ ଏହି ଜଳ ତୁଳସୀ ଲାଭର ପ୍ରତ୍ୟକ୍ଷ ଅନୁଭୂତି ଏ ଲେଖକ ସମେତ ଅନେକଙ୍କ ସୌଭାଗ୍ୟରେ ଘଟିଛି । ଚତୁର୍ଦ୍ଧାମୂର୍ତ୍ତିଙ୍କ ସମ୍ପର୍କରେ ଏପରି ଅଲୌକିକ ଘଟଣା ଅବିଶ୍ୱାସ୍ୟ ବୋଧ ହେଲେବି ସତ୍ୟ ପ୍ରମାଣ ହୁଏ ।

ଏହି ବ୍ରହ୍ମଙ୍କୁ କେହି ଉତ୍କୃଷ୍ଟ ଜାତିର ହୀରା, କେହି ବୁଦ୍ଧଦେବଙ୍କ ଦନ୍ତଧାତୁ ଓ କେହି କେହି ଶାଳଗ୍ରାମ ଶିଳା ବୋଲି କଳ୍ପନା କରିଥାନ୍ତି । ଏ ସମ୍ପର୍କରେ କୌଣସି ଐତିହାସିକ ବା ବୈଜ୍ଞାନିକ ଉତ୍ତର ଦେଇ ପାରି ନାହାନ୍ତି । କେବଳ "ବିଶ୍ୱାସେ ମିଳଇ କୃଷ୍ଣ ତର୍କେ ବହୁଦୂର" ନ୍ୟାୟରେ ଶ୍ରୀକୃଷ୍ଣଙ୍କ ଅପୋଡ଼ା ପିଣ୍ଡ ବା ନାଭିକମଳର ଅଂଶ ବିଶେଷ ଥାଇପାରେ ବୋଲି ସାରଳାଦାସଙ୍କ ମହାଭାରତ ବର୍ଣ୍ଣନାରୁ ଜଣାଯାଏ ।

ଶ୍ରୀମନ୍ଦିରର ବହୁ ଘଟନା ମାଦଳା ପାଞ୍ଜିରେ ବର୍ଣ୍ଣିତ ହୋଇଛି । ମାଦଳା ପାଞ୍ଜିକୁ ଇତିହାସର ସ୍ୱୀକୃତି ଦିଆ ନ ଗଲେ ବି ଏଥି ବର୍ଣ୍ଣିତ ବହୁଘଟଣା ଇତିହାସର ବିଭିନ୍ନ ବିବରଣୀ ଯଥା :- ତାମ୍ର ଶାସନ, ଅଭିଲେଖ ଆଦି ସହିତ ମେଳ ଖାଉଥିବାରୁ ଏହାକୁ ଐତିହାସିକ ଉପାଦାନର ସୂତ୍ରଭାବରେ ଗ୍ରହଣ କରାଯାଇପାରେ ।

ଐତିହାସିକ କାଳର ପ୍ରତିଲୋମରେ ଗତି କରି ଏ ସମ୍ପର୍କରେ ଅନୁସନ୍ଧାନ ବା ଅନୁଧ୍ୟାନ କରିବା ସଙ୍ଗତ ।

ନବକଳେବର ସହିତ ବନଯାଗ ଯାତ୍ରା ଓ କାକଟପୁରର ଦେଉଳି ମଠରେ ରହି ସେବାୟତମାନେ ମଙ୍ଗଳା ଠାକୁରାଣୀଙ୍କ ଆରାଧନା କରନ୍ତି । ସ୍ୱପ୍ନେଶ୍ୱରୀ ମନ୍ତ୍ର ଜପକରି ଶୟନ କରି ଶୟନ କାଳରେ ଠାକୁରାଣୀଙ୍କଠାରୁ ଦାରୁମାନଙ୍କ ସନ୍ଧାନ ପାଇଁ ସ୍ୱପ୍ନାଦେଶ ପାଇଥାନ୍ତି । ଏତଦୃଷ୍ଟେ ପ୍ରାଚୀ ଉପତ୍ୟକାସ୍ଥିତ ଆଦିଶକ୍ତି ମହାମଙ୍ଗଳାଙ୍କ ସହିତ

ଯେହେତୁ ଶ୍ରୀଜଗନ୍ନାଥଙ୍କ ନବକଳେବରର ପ୍ରକ୍ରିୟା ଘନିଷ୍ଠଭାବେ ଜଡ଼ିତ । ଘଟମଙ୍ଗଳା, ମହାମଙ୍ଗଳା, ସର୍ବମଙ୍ଗଳା, ବଟମଙ୍ଗଳା, ବାଟମଙ୍ଗଳା, ଦକ୍ଷିଣମଙ୍ଗଳା ଓ ଝାଡ଼ିରା ମଙ୍ଗଳା ନାମରେ ବିଭିନ୍ନ ସ୍ଥାନରେ ଆରାଧିତା । ଜଗନ୍ନାଥଙ୍କ ସହିତ ମା' ମଙ୍ଗଳାଙ୍କ ଆରାଧନା ଓଡ଼ିଶାରେ ବିଶେଷ ଲୋକପ୍ରିୟ । ବୃକ୍ଷଦାରୁ ଅନ୍ୱେଷଣ ପାଇଁ ନିର୍ଦ୍ଦେଶ ଦେଉଥିବାରୁ ନବକଳେବର ସହିତ ମଙ୍ଗଳାଙ୍କ ଆରାଧନା ମଧ୍ୟ ଅତି ପ୍ରାଚୀନ । ପ୍ରାଚୀ ଉପତ୍ୟକାରେ ଅବସ୍ଥିତ ନିଆଳିର ଶୋଭନେଶ୍ୱର ମନ୍ଦିର, ଭୁବନେଶ୍ୱରର ମେଘେଶ୍ୱର ମନ୍ଦିର ଚୋଡ଼ଗଙ୍ଗଙ୍କ କନିଷ୍ଠ ପୁତ୍ର ଅନିୟଙ୍କଭୀମଦେବଙ୍କ ଦ୍ୱାରା ନିର୍ମିତ ହୋଇଥିବା ଶିଳାଲିପିରୁ ଜଣାଯାଏ । ଏଗୁଡ଼ିକ ଦ୍ୱାଦଶ ଶତାବ୍ଦୀରେ ନିର୍ମାଣ କରାଯାଇଥିବାରୁ ପ୍ରାଚୀ ଉପତ୍ୟକା ଦ୍ୱାଦଶ ଶତାବ୍ଦୀରେ ସମୃଦ୍ଧ ଥିବା ଏବଂ ପବିତ୍ର ପ୍ରାଚୀ ନଦୀ ବାଣିଜ୍ୟାଦି କାର୍ଯ୍ୟ ପାଇଁ ସୁବିଧା ଥିବା ଜଣାଯାଏ । ଏହି ନଦୀର ଉତ୍ପତ୍ତିସ୍ଥଳ କାଠଯୋଡ଼ି ନଦୀର ଉତ୍ପତ୍ତିସ୍ଥଳ ପୂର୍ବରୁ ବାରଙ୍ଗ ବାଟେ ଫୁଲନଖରା, ଅଡ଼ସପୁର, ନିଆଳି ଓ କାକଟପୁର ଦେଇ ସମୁଦ୍ରରେ ପଡ଼ିଥିଲା । ପରବର୍ତ୍ତୀ କାଳରେ କାଠଯୋଡ଼ିର ଏକ ଶାଖା କୁଆଖାଇ ରୂପେ ପ୍ରବାହିତ ହେବାରୁ ପ୍ରାଚୀ ନଦୀ ତା' ସହିତ ମିଶିଯାଇ ବାଲିଅନ୍ତାଠାରେ ଦୟା ଓ ଭାର୍ଗବୀ ରୂପେ ଦୁଇ ବିଭକ୍ତ ହେଲା । ଏଥିରୁ ବୋଧ ହୁଏ ମହାନଦୀରୁ ପ୍ରାଚୀ ନଦୀବାଟେ ନିଆଳି ଓ କାକଟପୁର ଦେଇ ନୌଚଳାଚଳ ହେଉଥିଲା ଏବଂ ଏହି ସମୟରେ ପ୍ରାଚୀ ଅବବାହିକାରେ ଦ୍ୱାଦଶ ମାଧବ, ଶକ୍ତି ଓ ଶିବଙ୍କ ମନ୍ଦିରମାନ ନିର୍ମାଣ କରାଯାଉଥିଲା । ଧଉଳି ପାହାଡ଼ ଦେଇ ପ୍ରବାହିତ ଦୟା ନଦୀର ଦକ୍ଷିଣ ଦିଗରେ କାକୁଡ଼ିଆ ଓ ବୁଢ଼ାପଡ଼ା ଗ୍ରାମରେ ଦୁଇଟି ମନ୍ଦିର ରହିଛି । କାକୁଡ଼ିଆ ମନ୍ଦିରଟି ରାଜରାଣୀ ମନ୍ଦିର ସଦୃଶ । ଭାର୍ଗବୀ ନଦୀରୁ କୁଶଭଦ୍ରା ନଦୀ ବାହାରି ଯାଇଅଛି । ତେବେ ପ୍ରାଚୀନ ଜଗନ୍ନାଥ ସଡ଼କ ଭାର୍ଗବୀ ନଦୀ କଡ଼ରେ ଯାଇ ପିପିଲି ଓ ସାକ୍ଷୀଗୋପାଳ ଦେଇ ପୁରୁଷୋତ୍ତମକୁ ଯାଉଥିଲା ।

ଦଶମ ଶତାବ୍ଦୀରେ ସୋମବଂଶୀ ମହାରାଜା ମହାଶିବଗୁପ୍ତ ଯଯାତି (୧ମ) ୯୩୧ ଖ୍ରୀଷ୍ଟାବ୍ଦ ବେଳକୁ ଓଡ଼ିଶାର ଉପକୂଳ ଅଞ୍ଚଳରେ ରାଜତ୍ୱ ବିସ୍ତାର କରିଥିଲେ । ମାଦଳାପାଞ୍ଜିର ବିବରଣୀ ଅନୁସାରେ ସେ ୧୪୬ ବର୍ଷ ତଳୁ ସୋନପୁର ଗୋପାଳି (ଚିଳିକାର କୋଟ ସମଲାଇ) ଠାରେ ପାତାଳି ହୋଇଥିବା ଶ୍ରୀଜଗନ୍ନାଥଙ୍କୁ ଅଣାଇ ପୁରୀଠାରେ ୩୮ ହାତ (୫୭ଫୁଟ) ଉଚ୍ଚତା ବିଶିଷ୍ଟ ଦେଉଳ ତୋଳାଇ ତହିଁରେ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ପ୍ରତିଷ୍ଠିତ କରାଇଥିଲେ । ସେ ମଧ୍ୟ ବୌଦ୍ଧ ଧର୍ମପାଳକ ଭୌମବଂଶର ରାଜଧାନୀ ବିରଜା କ୍ଷେତ୍ରରେ ଶ୍ରୀଭଗମ ନିର୍ମାଣ, କାନ୍ୟକୁବ୍ଜରୁ ୧୦,୦୦୦ ବ୍ରାହ୍ମଣ ଅଣାଇ ଦଶାଶ୍ୱମେଧ ଯଜ୍ଞ ପୀଠ ଓ ଘାଟ ପ୍ରତିଷ୍ଠା ଏବଂ ଭୁବନେଶ୍ୱରଠାରେ ଉତ୍ତୁଙ୍ଗ ଲିଙ୍ଗରାଜ ମନ୍ଦିର ନିର୍ମାଣ କରାଇଥିଲେ ।

ଯଯାତିଙ୍କ ମନ୍ଦିର ନିର୍ମାଣର ୧୪୬ ବର୍ଷ ପୂର୍ବରୁ ପ୍ରାୟ ୭୮୫ ଖ୍ରୀଷ୍ଟାବ୍ଦରେ ଭୌମବଂଶୀ ମହାରାଜା ଶୁଭାକର ଦେବ ୧ମ (ମାଦଳାପାଞ୍ଜି ବର୍ଣ୍ଣିତ ଶୋଭନ ଦେବ) ଙ୍କ ସମୟରେ ରାଷ୍ଟ୍ରକୂଟ ରାଜା ୩ୟ ଗୋବିନ୍ଦଙ୍କ ଆକ୍ରମଣ କାଳରେ ଶ୍ରୀଜଗନ୍ନାଥ ସୋନପୁର ଯାଇ ପାତାଳି ହୋଇଥିଲେ । ମାଦଳାପାଞ୍ଜିରେ ବର୍ଣ୍ଣିତ ରକ୍ତବାହୁ ଆକ୍ରମଣକୁ ଐତିହାସିକ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ରାଷ୍ଟ୍ରକୂଟ ଆକ୍ରମଣ ବୋଲି ଅଭିହିତ କରିଥିଲେ ଏବଂ ଏହା ଅନ୍ୟାନ୍ୟ ଐତିହାସିକମାନଙ୍କ ଦ୍ୱାରା ସମର୍ଥିତ । ଅଧ୍ୟାପିକା ଶ୍ରୀମତୀ ଉଷା ରାୟ ଉଲ୍ଲେଖ କରିଛନ୍ତି, ୧ମ ଶୁଭାକର ଦେବ ଏହି ଆକ୍ରମଣ ବେଳେ ଦେବତାଙ୍କୁ ରକ୍ଷା କରିବାକୁ ପୁରୀଠାରୁ ମୂର୍ତ୍ତିକୁ ସୋନପୁର ନେଇ ଯାଇଥିଲେ ।

ଶୁଭାକର ୧ମ ନିଜେ ବୌଦ୍ଧ ଥିଲେ ଓ ପରମ ସୌଗତ ଉପାଧି ଧାରଣ କରିଥିଲେ । କିନ୍ତୁ ସେ ଅନ୍ୟାନ୍ୟ ଧର୍ମ ପ୍ରତି ଉଦାର ଥିଲେ । ତାଙ୍କ ପତ୍ନୀ ମାଧବୀ ଦେବୀ ଥିଲେ ଶୈବ ଏବଂ ୭୯୦ ଖ୍ରୀଷ୍ଟାବ୍ଦରେ ମାଧବେଶ୍ୱର ମନ୍ଦିର ନିର୍ମାଣ କରିଥିଲେ ।

ଉତ୍କଳ ବିଶ୍ୱବିଦ୍ୟାଳୟରେ ସୁରକ୍ଷିତ ପୁରୀର ପଟ୍ଟଯୋଷୀ ମହାପାତ୍ରଙ୍କ ଗୃହରୁ ପ୍ରାପ୍ତ ମାଦଳାପାଞ୍ଜିର ଆଂଶିକ ନକଲ ହୋଇଥିବା ଏକ ପତ୍ରରେ ଉଲ୍ଲେଖ ଅଛି, "ରକ୍ତବାହୁ ଆସନ୍ତେ ଲେପ ମୂର୍ତ୍ତି ଜଗନ୍ନାଥଙ୍କୁ ଖୋଳରେ ପୂରାଇ ସୁନାବତୀ ବିନତା ନିବଣ୍ଣା ଦଣ୍ଡକୁ ଘେନି ପାତାଳି କରିଲେ ଯେମନ୍ତ କି କେହି ନ ଦେଖିବେ ନ ଜାଣିବେ । ସ୍ୱର୍ଣ୍ଣବତୀ ପୁର କୂଟ ସମଲାଇ କୂଟ ଗୁମ୍ଫାରେ ଦୟିତା ତୀର୍ଥକରି କାଳିଆ ବିଅଁଙ୍କୁ ଆକୁଳେ ପାତାଳି କଲେ ସେଠାରେ ଥୋକେ ରହିଲେ ।" ସଙ୍ଗେ ଯାଇଥିବା ସେବକମାନେ ସୋନପୁରରେ ବାସିନ୍ଦା ହୋଇ ରହିବା ପ୍ରାଚୀସମିତି ପ୍ରକାଶିତ ମାଦଳାପାଞ୍ଜିରୁ ଜଣାଯାଏ । ଠାକୁରଙ୍କୁ ନିଆଯାଇଥିବା ଡଙ୍ଗାକୁ କୋଶଳି ଡଙ୍ଗା କୁହାଯାଏ । ଶ୍ରୀଜଗନ୍ନାଥଙ୍କ ଜନ୍ମ ଦିବସ ଭାବରେ ପାଳିତ ଦେବସ୍ନାନ ପୂର୍ଣ୍ଣିମା ଦିନ 'କୋଶଳି' ଡଙ୍ଗାରେ ମହାପ୍ରସାଦ ଜଳ ରଖି ତାହାକୁ 'ବୈକୁଣ୍ଠ ତୋରାଣି' ଭାବରେ ଭକ୍ତମାନେ ପାନକରି ଗାଆନ୍ତି-

"କୋଶଳି ଡଙ୍ଗାରେ ବିଜେ ବଢ଼ିଲା<br>
କୂଟସମଲାଇ ତୀରଥ ହେଲା ।<br>
ଡଙ୍ଗା ତୋରାଣିରେ ମହତ ଫଳ<br>
ବଇକୁଣ୍ଠ ଗତି ମୁକତି ଢଳ ।"

୧ମ ଯଯାତିଙ୍କ ଦ୍ୱାରା ମନ୍ଦିର ନିର୍ମାଣ ହେବାପରେ କନ୍ଦର୍ପ ଉର୍ଦ୍ଧ-ପାଦ ଶାରଦୀୟ ଦୁର୍ଗାପୂଜା ଅବସରରେ ଦେବୀ ବିରଜାଙ୍କୁ ପ୍ରଣାମ କରି ପୁରୁଷୋତ୍ତମ କ୍ଷେତ୍ରରେ କାର୍ତ୍ତିକ ଶୁକ୍ଳ ନବମୀ ବୃହସ୍ପତି ବାସରେ ନୀଳେନ୍ଦ୍ରମଣି ବିଗ୍ରହଙ୍କୁ ଘେନି ଜଗନ୍ନାଥ ସଡ଼କରେ ଆସି ନୀଳକଣ୍ଠଙ୍କୁ ଦର୍ଶନ କଲେ । ଇନ୍ଦ୍ରଦ୍ୟୁମ୍ନରେ ସ୍ନାନକରି ଶୈବନାଥ ଗୁରୁପୀଠରେ ଛତା ପକାଇ ରହିଲେ । ସେଠାରେ ଦ୍ୱିମୁଖ ବିଶିଷ୍ଟ ଅର୍ଦ୍ଧନାରୀଶ୍ୱର ଭୈରବ ମୂର୍ତ୍ତି ଗୋରକ୍ଷ-ମତ୍ସ୍ୟେନ୍ଦ୍ର ପନ୍ଥୀ ପୀଠ କରିଥିଲେ । ସେଠାରେ ଶ୍ରୀଜଗନ୍ନାଥଙ୍କୁ ରଖାଯାଇଥିବାରୁ ଏହା ଅନ୍ତର୍ବେଦୀ ମଠ ନାମରେ ଖ୍ୟାତ ଥିଲା । ଏହିଠାରୁ ପ୍ରଭୁ ଅନ୍ତର୍ବେଦୀକୁ ଗଲେ ।

ଆଚାର୍ଯ୍ୟ ଶଙ୍କର (୭୮୮-୮୨୦) ନବମ ଶତାବ୍ଦୀର ପ୍ରଥମ ପାଦରେ ପୁରୀ ଆସି ଭୋଗବର୍ଦ୍ଧନ ମଠ ପ୍ରତିଷ୍ଠା କରି ତଦୀୟ ଶିଷ୍ୟ ପଦ୍ମପାଦତୀର୍ଥଙ୍କୁ ପ୍ରଥମ ମଠାଧୀଶ କରାଇଲେ । ଆଚାର୍ଯ୍ୟ ଶଙ୍କରଙ୍କ ନିର୍ଦ୍ଦେଶରେ ପଦ୍ମପାଦ ଚତୁର୍ଦ୍ଧାମୂର୍ତ୍ତି ସ୍ଥାପନ କରିଥିଲେ । ମାଦଳା ପାଞ୍ଜିରେ ଏହା ଉଲ୍ଲିଖିତ ।

ଶ୍ରୀଜଗନ୍ନାଥଙ୍କ ଦାରୁ ମଧ୍ୟରେ ଇନ୍ଦ୍ରନୀଳମଣି ମୂର୍ତ୍ତି, ବଳଭଦ୍ରଙ୍କ ଦାରୁ ମଧ୍ୟରେ ଚତୁଃଚକ୍ରଧାରୀ ବାସୁଦେବ ମୂର୍ତ୍ତି, ସୁଭଦ୍ରାଙ୍କ ଦାରୁରେ ପ୍ରତ୍ୟକ୍ଷ ବାମାବର୍ତ୍ତୀ କୁଣ୍ଡଳିନୀ, ଚକ୍ରରାଜ ସୁଦର୍ଶନଙ୍କ ମଧ୍ୟରେ ଚକ୍ରଯନ୍ତ୍ର ଆରୋପରେ ବୋଲି ପଦ୍ମଶ୍ରୀ ପଣ୍ଡିତ ସଦାଶିବ ରଥଶର୍ମା "ପୁରୁଷୋତ୍ତମ

"ସ୍ଥୂଳଯାମ୍ୟାଗ୍ରତୋ ଭାତନ୍,
ନୃସିଂହ ଦାରୁଣାମୁଖମ୍,
ଅର୍ଚ୍ଚିତୋ ହି ଚରାଚାନ୍,
ପ୍ରତ୍ୟକ୍ଷାଃଯୌ ନୃ କେଶରୀ" ।

ବୈଶାଖ ଶୁକ୍ଳ ଚତୁର୍ଦ୍ଦଶୀରେ ଶ୍ରୀମନ୍ଦିରରେ ନୃସିଂହଙ୍କ ଜୟନ୍ତୀ ଉତ୍ସବ ପାଳିତ ହୋଇ ପୁରୁଷୋତ୍ତମ-ନୃସିଂହଙ୍କୁ ଆରାଧନା କରାଯାଉଛି । ଏହି ନୃସିଂହ ଯଜ୍ଞ ନୃସିଂହ ରୂପରେ ମୁକ୍ତିଚାପର (ଜନକ ପୁରା-ଯେଉଁଠାରେ ଶ୍ରୀଜଗନ୍ନାଥ ବିଗ୍ରହ ପ୍ରଥମେ ଜାତ ବା ନିର୍ମିତ ହୋଇଥିଲେ) ନିକଟରେ ଏବଂ ମୁକ୍ତ ନୃସିଂହ ରୂପରେ ମୁକ୍ତ ମଣ୍ଡପ (ମୁକ୍ତି ମଣ୍ଡପ) ନିକଟରେ ଆବିର୍ଭୂତ ହୋଇଥିବା ସର୍ବବାଦୀ ସମ୍ମତ ।

ଜୀବ ମଧ୍ୟରେ ଚିତ୍ ଶକ୍ତି ସ୍ୱରୂପରେ ଈଶ୍ୱର ସତ୍ତା ବିଦ୍ୟମାନ ଥିବା ପରି ଦାରୁମାନଙ୍କ ମଧ୍ୟରେ ବ୍ରହ୍ମ ଅବସ୍ଥାପିତ ହୋଇ ଦାରୁବ୍ରହ୍ମ ନାମର ସାର୍ଥକତା ପ୍ରତିପାଦନ କରିଥାନ୍ତି । ନବକଳେବର କାଳରେ ପ୍ରାଚୀନ କଳେବରରୁ ନୂତନ କଳେବରକୁ ଅର୍ଥାତ୍ ଘଟରୁ ଘଟକୁ ବ୍ରହ୍ମଙ୍କୁ ସ୍ଥାନାନ୍ତରିତ କରାଯାଏ । ବିଜୟ ଅମାବାସ୍ୟାର ନିଶାର୍ଦ୍ଧରେ ଘନଘୋର ଅନ୍ଧକାରମୟ ପରିବେଶରେ ଏହି ଗୋପନ କାର୍ଯ୍ୟ ସମ୍ପନ୍ନ ହେଉଥିବାରୁ କେବଳ ସେବାୟତଙ୍କ ବ୍ୟତୀତ ଅନ୍ୟ କେହି ଏ ଗୋପନ ତତ୍ତ୍ୱ ସମ୍ପର୍କରେ ଜ୍ଞାତ ନ ଅଛନ୍ତି ।

ଯୋଡ଼ା ଆଷାଢ଼ ପଡ଼ିବା ବର୍ଷ ଚତୁର୍ଦ୍ଧା ମୂର୍ତ୍ତିଙ୍କ ନବ କଳେବର ହେବା ଏକ ସାଧାରଣ କଥା ହୋଇଥିଲେହେଁ ଓ ପ୍ରତି ବାରବର୍ଷରେ ଥରେ ଏପରି ସମୟ ଆସିବା ଲୋକବିଶ୍ୱାସ ଥିଲେହେଁ ଐତିହାସିକ ବିବରଣୀ ମତେ ଏଥିରେ ବ୍ୟତିକ୍ରମ ହୋଇଥିବା ପ୍ରତୀତ । ଐତିହାସିକ ସୂତ୍ରରୁ ଜ୍ଞାତ ହୁଏ, ମହାପ୍ରଭୁମାନଙ୍କର ନବକଳେବର ୧୫୦୯, ୧୫୭୫, ୧୬୦୯, ୧୬୧୦, ୧୬୧୫, ୧୬୧୭, ୧୬୨୨, ୧୬୨୫, ୧୬୯୮, ୧୭୧୪, ୧୭୩୧, ୧୭୩୩, ୧୭୪୪, ୧୭୫୨, ୧୭୭୧, ୧୭୯୦, ୧୮୦୯, ୧୮୨୮, ୧୮୩୬, ୧୮୫୫, ୧୮୭୪, ୧୮୯୩, ୧୯୧୨, ୧୯୩୧, ୧୯୫୦, ୧୯୬୯, ୧୯୭୭ ଓ ୧୯୯୬ରେ ଅନୁଷ୍ଠିତ ହୋଇଅଛି । ଏଥିରୁ ବୋଧ ହେଉଛି, ବିଭିନ୍ନ ସମୟରେ ମୋଗଲ ଆକ୍ରମଣ ଯୋଗୁଁ ରାଜାମାନେ ଢକାଇଛାଡ଼ି ଓଡ଼ିଶାର ବିଭିନ୍ନ ସ୍ଥାନରେ ରଖି ପୁନରାବର୍ତ୍ତନ ପରେ ନବକଳେବର ଗ୍ରହଣ ପୂର୍ବକ ଅବସ୍ଥାନ କରନ୍ତି । ଏହି କାରଣରୁ ଏକ ବର୍ଷ, ପାଞ୍ଚବର୍ଷ, ୨ବର୍ଷ, ୩ବର୍ଷ ବ୍ୟବଧାନରେ ମଧ୍ୟ ଏହି ପ୍ରକ୍ରିୟା ସମ୍ପାଦିତ ହେବା ଅନୁମାନ ।

ବିଦ୍ୟମାନ ଶ୍ରୀମନ୍ଦିର ନିର୍ମାଣ ସମ୍ପର୍କରେ ରାଜରାଜ ଦେବଙ୍କ ପ୍ରଦତ୍ତ ତାମ୍ରଶାସନରେ ଉଲ୍ଲେଖ ଅଛି ଯେ ପୂର୍ବ ନରପତିମାନଙ୍କ ଦ୍ୱାରା ଉପେକ୍ଷିତ ହୋଇଥିବା ଶ୍ରୀଜଗନ୍ନାଥ ମନ୍ଦିର ଗଙ୍ଗେଶ୍ୱର ବା ଚୋଡ଼ଗଙ୍ଗଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ଐତିହାସିକମାନେ ଏହି ମନ୍ଦିରର ନିର୍ମାଣ କାଳ ୧୧୩୫ ଖ୍ରୀଷ୍ଟାବ୍ଦ ପରବର୍ତ୍ତୀ ବୋଲି ସିଦ୍ଧାନ୍ତ କରିଥାନ୍ତି । ତେବେ ଏହି ମନ୍ଦିର ନିର୍ମାଣ କାଳଠାରୁ ୧୫୦୯ ଅର୍ଥାତ୍ ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱ ମଧ୍ୟରେ ନବକଳେବରର କୌଣସି ପ୍ରକାର ଧାରାବାହିକ ସୂଚନା ମିଳୁନାହିଁ ।

୧୫୬୮ ଖ୍ରୀଷ୍ଟାବ୍ଦରେ କଳାପାହାଡ଼ର ଶ୍ରୀମନ୍ଦିର ଆକ୍ରମଣ, ଶ୍ରୀଜଗନ୍ନାଥଙ୍କୁ ହାତୀ ପଛରେ ବାନ୍ଧି ନେଇ ଗଙ୍ଗାକୂଳରେ ପୋଡ଼ିବା ଓ ଅର୍ଦ୍ଧଦଗ୍ଧ ବିଗ୍ରହ ମଧ୍ୟରୁ ବହୁ କଷ୍ଟରେ ବିଶର ମହାନ୍ତି ଉଦ୍ଧାର କରି ଓ ମୃଦଙ୍ଗ ଖୋଳ ମଧ୍ୟରେ ପୁରାଇ ଆଣି ଗଡ଼କୁଜଙ୍ଗରେ ରଖିବା ଓ ପୋଡ଼ ବ୍ରହ୍ମଙ୍କୁ ନେଇ ମହାରାଜା ରାମଚନ୍ଦ୍ର ଦେବ ଦାରୁ ମଧ୍ୟରେ ମୂର୍ତ୍ତି ତିଆରି କରି ବଡ଼ ଦେଉଳରେ ସ୍ଥାପନ କରିବା ଯୋଗୁଁ ବ୍ରହ୍ମଙ୍କ ବିଷୟ ଚର୍ଚ୍ଚା ମଧ୍ୟକୁ ଆସିଲା । ତା' ପୂର୍ବରୁ ଲୋକେ ଠାକୁରଙ୍କ ଭିତରେ ଥିବା ପଞ୍ଜୁରା ବା ଦାରୁ ମଧ୍ୟରେ ଥିବା ବ୍ରହ୍ମଙ୍କ ବିଷୟରେ ଅବହିତ ନ ଥିଲେ ।

ଦର୍ଦ୍ଦାଙ୍କ ସୁନ୍ଦରୀ କାବ୍ୟରେ କବି ଲୋକନାଥ ବିଦ୍ୟାଧର ବର୍ଣ୍ଣନା କରିଛନ୍ତି, ପାଦପାଣି ନ ଥିବା ଜଗତର ନାଥଙ୍କ ମଧ୍ୟରେ ଥିବା ସେହି ବସ୍ତୁକୁ ବାଣପୁରବାସୀ ଦେଖିବା ସୁଯୋଗ ପାଇ ଧନ୍ୟ ହୋଇଛନ୍ତି । ଏହି ବ୍ରହ୍ମଙ୍କ ସମ୍ବନ୍ଧେ କୌଣସି ସୂଚନା ମିଳେନାହିଁ ।

ବିଜୟ ଅମାବାସ୍ୟାର ଅନ୍ଧକାର ମଧ୍ୟରେ ନବକଳେବର କାଳରେ ଘଟରୁ ଘଟକୁ ବ୍ରହ୍ମ ପରିବର୍ତ୍ତନ କରୁଥିବା ସେବକମାନେ ଆଖିରେ ଅନ୍ଧପୁଟୁଳି ଓ ହାତରେ ପାଟକନା ଗୁଡ଼ାଇଥିବାରୁ ସେମାନେ ବ୍ରହ୍ମ ସେ କି ଜାତି ପଦାର୍ଥ, ତାହା ଅନୁଭବ କରି ପାରନ୍ତି ନାହିଁ । ଏହି ଗୋପନ ତଥ୍ୟ ପ୍ରକାଶ କରିବା ନିଷିଦ୍ଧ ।

ନବକଳେବର ପରେ ସେବାୟତମାନେ ବ୍ରହ୍ମଙ୍କ ଉପରେ ଦେଉଥିବା ତୁଳସୀ ଜଳ ଅନ୍ୟାଅଭରୁ ସେହିପରି ସବୁଜ ଓ ସତେଜ ରହିଥିବା ଓ ଏହି ଜଳ ତୁଳସୀ ଲାଭର ପ୍ରତ୍ୟକ୍ଷ ଅନୁଭୂତି ଏ ଲେଖକ ସମେତ ଅନେକଙ୍କ ସୌଭାଗ୍ୟରେ ଘଟିଛି । ଚତୁର୍ଦ୍ଧାମୂର୍ତ୍ତିଙ୍କ ସମ୍ପର୍କରେ ଏପରି ଅଲୌକିକ ଘଟଣା ଅବିଶ୍ୱାସ୍ୟ ବୋଧ ହେଲେବି ସତ୍ୟ ପ୍ରତୀତ ହୁଏ ।

ଏହି ବ୍ରହ୍ମଙ୍କୁ କେହି ଉତ୍କୃଷ୍ଟ ଜାତିର ହୀରା, କେହି ବୁଦ୍ଧଦେବଙ୍କ ଦନ୍ତଧାତୁ ଓ କେହି କେହି ଶାଳଗ୍ରାମ ଶିଳା ବୋଲି କଳ୍ପନା କରିଥାନ୍ତି । ଏ ସମ୍ପର୍କରେ କୌଣସି ଐତିହାସିକ ବା ବୈଜ୍ଞାନିକ ଗବେଷଣା ହୋଇ ପାରି ନାହାନ୍ତି । କେବଳ "ବିଶ୍ୱାସେ ମିଳଇ କୃଷ୍ଣ ତର୍କେ ବହୁଦୂର" ନ୍ୟାୟରେ ଶ୍ରୀକୃଷ୍ଣଙ୍କ ଅପୋଡ଼ା ପିଣ୍ଡ ବା ନାଭିକମଳର ଅଂଶ ବିଶେଷ ଥାଇପାରେ ବୋଲି ସାରଳାଦାସଙ୍କ ମହାଭାରତ ବର୍ଣ୍ଣନାରୁ ଜଣାଯାଏ ।

ଶ୍ରୀମନ୍ଦିରର ବହୁ ଘଟଣା ମାଦଳା ପାଞ୍ଜିରେ ବର୍ଣ୍ଣିତ ହୋଇଛି । ମାଦଳା ପାଞ୍ଜିକୁ ଇତିହାସର ସ୍ୱୀକୃତି ଦିଆ ନ ଗଲେ ବି ଏଥି ବର୍ଣ୍ଣିତ ବହୁଘଟଣା ଇତିହାସର ବିଭିନ୍ନ ବିବରଣୀ ଯଥା :- ତାମ୍ର ଶାସନ, ଅଭିଲେଖ ଆଦି ସହିତ ମେଳ ଖାଉଥିବାରୁ ଏହାକୁ ଐତିହାସିକ ଉପାଦାନର ସୂତ୍ରଭାବରେ ଗ୍ରହଣ କରାଯାଇପାରେ ।

ଐତିହାସିକ କାଳର ପ୍ରତିଲୋମରେ ଗତି କରି ଏ ସମ୍ପର୍କରେ ଅନୁସନ୍ଧାନ ବା ଅନୁଧ୍ୟାନ କରିବା ଉଚିତ ?

ନବକଳେବର ସହିତ ବନଯାଗ ଯାତ୍ରା ଓ କାକଟପୁରର ଦେଉଳି ମଠରେ ରହି ସେବାୟତମାନେ ମଙ୍ଗଳା ଠାକୁରାଣୀଙ୍କ ଆରାଧନା କରନ୍ତି । ସ୍ୱପ୍ନେଶ୍ୱରୀ ମନ୍ତ୍ର ଜପକରି ଶୟନ କରି ଶୟନ କାଳରେ ଠାକୁରାଣୀଙ୍କଠାରୁ ଦାରୁମାନଙ୍କ ସନ୍ଧାନ ପାଇଁ ସ୍ୱପ୍ନାଦେଶ ପାଆନ୍ତି । ଏତଦ୍ବ୍ୟତୀତ ପ୍ରାଚୀ ଉପତ୍ୟକାସ୍ଥିତ ଆଦିଶକ୍ତି ମହାମଙ୍ଗଳାଙ୍କ ପ୍ରତି

ଅଧିକନ୍ତୁ ଶ୍ରୀଜଗନ୍ନାଥଙ୍କ ନବକଳେବରର ପ୍ରକ୍ରିୟା ଘନିଷ୍ଠଭାବେ ଜଡ଼ିତ । ଘଟମଙ୍ଗଳା, ମହାମଙ୍ଗଳା, ସର୍ବମଙ୍ଗଳା, ବଟମଙ୍ଗଳା, ବାଟମଙ୍ଗଳା, ହରିମଙ୍ଗଳା ଓ ଝାଞ୍ଜିରୀ ମଙ୍ଗଳା ନାମରେ ବିଭିନ୍ନ ସ୍ଥାନରେ ଆରାଧିତା । ଜଗନ୍ନାଥଙ୍କ ସହିତ ମା' ମଙ୍ଗଳାଙ୍କ ଆରାଧନା ଓଡ଼ିଶାରେ ବିଶେଷ ଲୋକପ୍ରିୟ । ବ୍ରହ୍ମଦାରୁ ଅନ୍ବେଷଣ ପାଇଁ ନିର୍ଦ୍ଦେଶ ଦେଉଥିବାରୁ ନବକଳେବର ସହିତ ମଙ୍ଗଳାଙ୍କ ଆରାଧନା ମଧ୍ୟ ଅତି ପ୍ରାଚୀନ । ପ୍ରାଚୀ ଉପତ୍ୟକାରେ ଅବସ୍ଥିତ ନିଆଳିର ଶୋଭନେଶ୍ୱର ମନ୍ଦିର, ଭୁବନେଶ୍ୱରର ମେଘେଶ୍ୱର ମନ୍ଦିର ଚୋଡ଼ଗଙ୍ଗଙ୍କ କନିଷ୍ଠ ପୁତ୍ର ଅନିୟଙ୍କଭୀମଦେବଙ୍କ ଦ୍ୱାରା ନିର୍ମିତ ହୋଇଥିବା ଶିଳାଲିପିରୁ ଜଣାଯାଏ । ଏଗୁଡ଼ିକ ଦ୍ୱାଦଶ ଶତାବ୍ଦୀରେ ନିର୍ମାଣ କରାଯାଇଥିବାରୁ ପ୍ରାଚୀ ଉପତ୍ୟକା ଦ୍ୱାଦଶ ଶତାବ୍ଦୀରେ ସମୃଦ୍ଧ ଥିବା ଏବଂ ପବିତ୍ର ପ୍ରାଚୀ ନଦୀ ବାଣିଜ୍ୟାଦି କାର୍ଯ୍ୟ ପାଇଁ ସୁନାବ୍ୟ ଥିବା ଜଣାଯାଏ । ଏହି ନଦୀର ଉତ୍ପତ୍ତିସ୍ଥଳ କାଠଯୋଡ଼ୀ ନଦୀର ଉତ୍ପତ୍ତିସ୍ଥଳ ପୂର୍ବରୁ ବାରଙ୍ଗ ବାଟେ ଫୁଲନଖରା, ଅଡ଼ସପୁର, ନିଆଳି ଓ କାକଟପୁର ଦେଇ ସମୁଦ୍ରରେ ପଡ଼ିଥିଲା । ପରବର୍ତ୍ତୀ କାଳରେ କାଠଯୋଡ଼ିର ଏକ ଶାଖା କୁଆଖାଇ ରୂପେ ପ୍ରବାହିତ ହେବାରୁ ପ୍ରାଚୀ ନଦୀ ଏହା ସହିତ ମିଶିଯାଇ ବାଲିଅନ୍ତାଠାରେ ଦୟା ଓ ଭାର୍ଗବୀ ରୂପେ ବିଭକ୍ତ ହେଲା । ଏଥିରୁ ବୋଧ ହୁଏ ମହାନଦୀରୁ ପ୍ରାଚୀ ନଦୀବାଟେ ନିଆଳି ଓ କାକଟପୁର ଦେଇ ନୌଚଳାଚଳ ହେଉଥିଲା ଏବଂ ଏହି ସମୟରେ ପ୍ରାଚୀ ଅବବାହିକାରେ ଦ୍ୱାଦଶ ମାଧବ, ଶକ୍ତି ଓ ଶିବଙ୍କ ମନ୍ଦିରମାନ ନିର୍ମାଣ କରାଯାଇଥିଲା । ଧଉଳି ପାହାଡ଼ ଦେଇ ପ୍ରବାହିତ ଦୟା ନଦୀର ଦକ୍ଷିଣ ଦିଗରେ କାକୁଡ଼ିଆ ଓ ବୁଢ଼ାପଡ଼ା ଗ୍ରାମରେ ଦୁଇଟି ମନ୍ଦିର ରହିଛି । କାକୁଡ଼ିଆ ମନ୍ଦିରଟି ରାଜରାଣୀ ମନ୍ଦିର ସଦୃଶ । ଭାର୍ଗବୀ ନଦୀରୁ କୁଶଭଦ୍ରା ନଦୀ ବାହାରି ଯାଇଅଛି । ତେବେ ପ୍ରାଚୀନ ଜଗନ୍ନାଥ ଅଞ୍ଚଳ ଭାର୍ଗବୀ ନଦୀ ବନ୍ଦରେ ଯାଇ ପିପିଲି ଓ ସାକ୍ଷୀଗୋପାଳ ଦେଇ ପୁରୀରେ ପହଞ୍ଚି ପାରୁଥିଲା ।''

ଦଶମ ଶତାବ୍ଦୀରେ ସୋମବଂଶୀ ମହାରାଜା ମହାଶିବଗୁପ୍ତ ଯଯାତି (୧ମ) ୯୩୧ ଖ୍ରୀଷ୍ଟାବ୍ଦ ବେଳକୁ ଓଡ଼ିଶାର ଉପକୂଳ ଅଞ୍ଚଳରେ ରାଜତ୍ୱ ବିସ୍ତାର କରିଥିଲେ । ମାଦଳାପାଞ୍ଜିର ବିବରଣୀ ଅନୁସାରେ ସେ ୧୪୬ ବର୍ଷ ତଳୁ ସୋନପୁର ଗୋପାଳି (ବିନିକାର କୋଟ ସମଲାଇ) ଠାରେ ପାତାଳି ହୋଇଥିବା ଶ୍ରୀଜଗନ୍ନାଥଙ୍କୁ ଆଣାଇ ପୁରୀଠାରେ ୩୮ ହାତ (୫୭ଫୁଟ) ଉଚ୍ଚତା ବିଶିଷ୍ଟ ଦେଉଳ ତୋଳାଇ ତହିଁରେ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ପ୍ରତିଷ୍ଠିତ କରାଇଥିଲେ । ସେ ମଧ୍ୟ ବୌଦ୍ଧ ଧର୍ମପୋଷକ ଭୌମବଂଶର ରାଜଧାନୀ ବିରଜା କ୍ଷେତ୍ରରେ ଶୁଭସ୍ତମ୍ଭ ନିର୍ମାଣ, କାନ୍ୟକୁବ୍ଜରୁ ୧୦,୦୦୦ ବ୍ରାହ୍ମଣ ଆଣାଇ ଦଶାଶ୍ୱମେଧ ଯଜ୍ଞ କରାଇ ଓ ଘାଟ ପ୍ରତିଷ୍ଠା ଏବଂ ଭୁବନେଶ୍ୱରଠାରେ ଉତ୍ତୁଙ୍ଗ ଲିଙ୍ଗରାଜ ମନ୍ଦିର ନିର୍ମାଣ କରାଇଥିଲେ ।

ଯଯାତିଙ୍କ ମନ୍ଦିର ନିର୍ମାଣର ୧୪୬ ବର୍ଷ ପୂର୍ବରୁ ପ୍ରାୟ ୭୮୫ ଖ୍ରୀଷ୍ଟାବ୍ଦରେ ଭୌମବଂଶୀ ମହାରାଜା ଶୁଭାକର ଦେବ ୧ମ (ମାଦଳାପାଞ୍ଜି ବର୍ଣ୍ଣିତ ଶୋଭନ ଦେବ) ଙ୍କ ସମୟରେ ରାଷ୍ଟ୍ରକୂଟ ରାଜା ୩ୟ ଗୋବିନ୍ଦଙ୍କ ଆକ୍ରମଣ କାଳରେ ଶ୍ରୀଜଗନ୍ନାଥ ସୋନପୁର ଯାଇ ପାତାଳି ହୋଇଥିଲେ । ମାଦଳାପାଞ୍ଜିରେ ବର୍ଣ୍ଣିତ ରକ୍ତବାହୁ ଆକ୍ରମଣକୁ ଐତିହାସିକ ଡକ୍ଟର ସତ୍ୟନାରାୟଣ ରାଜଗୁରୁ ପାଣିଗ୍ରାହୀ ରାଷ୍ଟ୍ରକୂଟ ଆକ୍ରମଣ ବୋଲି ଅଭିହିତ କରିଥିଲେ ଏବଂ ଏହା ଅନ୍ୟାନ୍ୟ ଐତିହାସିକମାନଙ୍କ ଦ୍ୱାରା ସମର୍ଥିତ । ଅଧ୍ୟାପିକା ଶ୍ରୀମତୀ ଉଷା ରାୟ ଉଲ୍ଲେଖ କରିଛନ୍ତି, ୧ମ ଶୁଭାକର ଦେବ ଏହି ଆକ୍ରମଣ ବେଳେ ଦେବତାଙ୍କୁ ରକ୍ଷା କରିବାକୁ ପୁରୀଠାରୁ ମୂର୍ତ୍ତିକୁ ସୋନପୁର ନେଇ ଯାଇଥିଲେ ।

ଶୁଭାକର ୧ମ ନିଜେ ବୌଦ୍ଧ ଥିଲେ ଓ ପରମ ସୌଗତ ଉପାଧି ଧାରଣ କରିଥିଲେ । କିନ୍ତୁ ସେ ଅନ୍ୟାନ୍ୟ ଧର୍ମ ପ୍ରତି ଉଦାର ଥିଲେ । ତାଙ୍କ ପତ୍ନୀ ମାଧବୀ ଦେବୀ ଥିଲେ ଶୈବ ଏବଂ ୭୯୦ ଖ୍ରୀଷ୍ଟାବ୍ଦରେ ମାଧବେଶ୍ୱର ମନ୍ଦିର ନିର୍ମାଣ କରିଥିଲେ ।

ଉତ୍କଳ ବିଶ୍ୱବିଦ୍ୟାଳୟରେ ସୁରକ୍ଷିତ ପୁରୀର ପଟ୍ଟଯୋଷୀ ମହାପାତ୍ରଙ୍କ ଗୃହରୁ ପ୍ରାପ୍ତ ମାଦଳାପାଞ୍ଜିର ଆଂଶିକ ନକଲ ହୋଇଥିବା ଏକ ପତ୍ରରେ ଉଲ୍ଲେଖ ଅଛି, ''ରକ୍ତବାହୁ ଆସନ୍ତେ ଲେପ ମୂର୍ତ୍ତି ଜଗନ୍ନାଥଙ୍କୁ ଖୋଳରେ ପୁରାଇ ସୁନାବତୀ ବିନତା ନିବନ୍ଧୀ ଦଣ୍ଡକୁ ଘେନି ପାତାଳି କରିଲେ ଯେମନ୍ତ କି କେହି ନ ଦେଖିବେ ନ ଜାଣିବେ । ସ୍ୱର୍ଣ୍ଣବତୀ ପୁର କୂଟ ସମଲାଇ କୂଟ ଗୁମ୍ଫାରେ ଦୟିତା ତୀର୍ଥକରି କାଳିଆ ଦିଅଁଙ୍କୁ ଆକୁଳେ ପାତାଳି କଲେ ସେଠାରେ ଥୋଇ ରହିଲେ ।'' ସଙ୍ଗେ ଯାଇଥିବା ସେବକମାନେ ସୋନପୁରରେ ବସିନ୍ଦା ହୋଇ ରହିବା ପ୍ରକାଶିତ ମାଦଳାପାଞ୍ଜିରୁ ଜଣାଯାଏ । ଠାକୁରଙ୍କୁ ନିଆଯାଇଥିବା ଡଙ୍ଗାକୁ କୋଶଳି ଡଙ୍ଗା କୁହାଯାଏ । ଶ୍ରୀଜଗନ୍ନାଥଙ୍କ ଜନ୍ମ ଦିବସ ଭାବରେ ପାଳିତ ଦେବସ୍ନାନ ପୂର୍ଣ୍ଣିମା ଦିନ 'କୋଶଳି' ଡଙ୍ଗାରେ ମହାପ୍ରସାଦ ଜଳ ରଖି ତାହାକୁ 'ବୈକୁଣ୍ଠ ତୋରାଣି' ଭାବରେ ଭକ୍ତମାନେ ପାନକରି ଗାଆନ୍ତି-

''କୋଶଳି ଡଙ୍ଗାରେ ବିଜେ ବଡ଼ିଲା
କୂଟସମଲାଇ ତୀରସ୍ଥ ହେଲା ।
ଡଙ୍ଗା ତୋରାଣିରେ ମହତ ଫଳ
ବଇକୁଣ୍ଠ ଗତି ମୁକତି ଫଳ ।''

୧ମ ଯଯାତିଙ୍କ ଦ୍ୱାରା ମନ୍ଦିର ନିର୍ମାଣ ହେବାପରେ କନ୍ଦର୍ପ ଭଞ୍ଜ-ପାଦ ଶାରଦୀୟ ଦୁର୍ଗାପୂଜା ଅବସରରେ ଦେବୀ ବିରଜାଙ୍କୁ ପ୍ରଣାମ କରି ପୁରୁଷୋତ୍ତମ କ୍ଷେତ୍ରରେ କାର୍ତ୍ତିକ ଶୁକ୍ଳ ନବମୀ ବୃହସ୍ପତି ବାସରେ ନୀଳେନ୍ଦ୍ରମଣି ବିଗ୍ରହଙ୍କୁ ଘେନି ଜଗନ୍ନାଥ ସଡ଼କରେ ଆସି ନୀଳକଣ୍ଠଙ୍କୁ ଦର୍ଶନ କଲେ । ଇନ୍ଦ୍ରଦ୍ୟୁମ୍ନରେ ସ୍ନାନକରି ଶୈବନାଥ ଗୁରୁପୀଠରେ ଛତା ପକାଇ ରହିଲେ । ସେଠାରେ ତ୍ରିମୁଖୀ ବିଶିଷ୍ଟ ଅବଲୋକପାଦ ଭୈରବ ମୂର୍ତ୍ତି ଗୋପେଶ୍ୱର-ମହୋଦ୍ଧ ପବୀ ପାଠ କରିଥିଲେ । ସେଠାରେ ଶ୍ରୀଜଗନ୍ନାଥଙ୍କୁ ରଖାଯାଇଥିବାରୁ ଏହା ଅନ୍ତର୍ବେଦୀ ମଠ ନାମରେ ଖ୍ୟାତ ଥିଲା । ଏହିଠାରୁ ପ୍ରଭୁ ଅନ୍ତର୍ବେଦୀକୁ ଗଲେ ।

ଆଚାର୍ଯ୍ୟ ଶଙ୍କର (୭୮୮-୮୨୦) ନବମ ଶତାବ୍ଦୀର ପ୍ରଥମ ପାଦରେ ପୁରୀ ଆସି ଗୋବର୍ଦ୍ଧନ ମଠ ପ୍ରତିଷ୍ଠା କରି ତଦୀୟ ଶିଷ୍ୟ ପଦ୍ମପାଦତୀର୍ଥଙ୍କୁ ପ୍ରଥମ ମଠାଧୀଶ କରାଇଲେ । ଆଚାର୍ଯ୍ୟ ଶଙ୍କରଙ୍କ ନିର୍ଦ୍ଦେଶରେ ପଦ୍ମପାଦ ଚତୁର୍ଦ୍ଧାମୂର୍ତ୍ତି ସ୍ଥାପନ କରିଥିଲେ । ମାଦଳା ପାଞ୍ଜିରେ ଏହା ଉଲ୍ଲିଖିତ ।

ଶ୍ରୀଜଗନ୍ନାଥଙ୍କ ଦାରୁ ମଧ୍ୟରେ ଇନ୍ଦ୍ରନୀଳମଣି ମୂର୍ତ୍ତି, ବଳଭଦ୍ରଙ୍କ ଦାରୁ ମଧ୍ୟରେ ଚତୁଃଚକ୍ରଧାରୀ ବାସୁଦେବ ମୂର୍ତ୍ତି, ସୁଭଦ୍ରାଙ୍କ ଦାରୁରେ ପ୍ରତ୍ୟକ୍ଷ ବାମାବର୍ତ୍ତୀ କୁଣ୍ଡଳିନୀ, ଚକ୍ରରାଜ ସୁଦର୍ଶନଙ୍କ ମଧ୍ୟରେ ଚକ୍ରଯନ୍ତ୍ର ଥାଇପାରେ ବୋଲି ପଦ୍ମଶ୍ରୀ ପଣ୍ଡିତ ସଦାଶିବ ରଥଶର୍ମା ''ପୁରୁଷୋତ୍ତମ

ଚେତନା" ସ୍ତବରେ ସମାବନା କରିଛନ୍ତି ।

ଆଦିଶଙ୍କରଙ୍କ ଇଷ୍ଟଦେବ ଲକ୍ଷ୍ମୀ ନୃସିଂହ ହୋଇଥିବାରୁ ଆଚାର୍ଯ୍ୟ ପଦ୍ମପାଦ ଲକ୍ଷ୍ମୀନୃସିଂହ ମୂର୍ତ୍ତି ଆସ୍ଥାନରେ ସ୍ଥାପନ କରି ପୁରୁଷୋତ୍ତମ ଜଗନ୍ନାଥଙ୍କୁ ପୁରୁଷୋତ୍ତମ ନୃସିଂହ ମାନ୍ୟତା ପ୍ରଦାନ କଲେ । ଶଙ୍କରଙ୍କ ସ୍ଥାପିତ ଅନ୍ୟତମ ପୀଠ ଶଙ୍କରାନନ୍ଦ ମଠରେ ଇଷ୍ଟଦେବତା ରୂପେ ଶ୍ରୀ ନୃସିଂହ ପୂଜିତ ।

ମହାଶିବ ଗୁପ୍ତ ଯଯାତିଙ୍କ ସମୟରୁ ମହୋଦଧି ମଧ୍ୟରେ ଇନ୍ଦ୍ରନୀଳ ମଣି ମୂର୍ତ୍ତି ସ୍ଫୁରିତ ହୋଇ ନବକଳେବର ପ୍ରାପ୍ତ ହୋଇଥିବାରୁ ସେହି କାଳରୁ ନବକଳେବର ବିଧାନ ଆରମ୍ଭ ହୋଇଅଛି । ବନଯାଗ କରି ବିଗ୍ରହଦାରୁମାନଙ୍କର ଅନ୍ୱେଷଣ କରାଯାଏ । କାକଟପୁର ମା' ମଙ୍ଗଳାଙ୍କ ଅନୁସରଣରେ ରହିଲେ ସ୍ୱପ୍ନରେ ମାଆଙ୍କ ନିର୍ଦ୍ଦେଶ ମିଳେ । ଦାରୁ ସନ୍ଧାନ କାର୍ଯ୍ୟ ସେହି ସମୟରୁ ପ୍ରଚଳିତ । ଏଣୁ ଦଶମ ଶତାବ୍ଦୀରେ ନବକଳେବର ଆରମ୍ଭ ହୋଇଥିବା ସମ୍ଭବ ।

ମାତ୍ର ବତୀଶବର୍ଷର ସ୍ୱଳ୍ପ ଜୀବନକାଳ ମଧ୍ୟରେ ଆଚାର୍ଯ୍ୟ ଶଙ୍କର ଦକ୍ଷିଣରେ ଶୃଙ୍ଗେରୀ (ମହୀଶୂର) ଶାରଦାପୀଠ, ପୂର୍ବରେ ପୁରୁଷୋତ୍ତମ ପୁରୀ (ଭୋଗବର୍ଦ୍ଧନ ପୀଠ), ପଶ୍ଚିମରେ ଗୁଜରାଟର ଦ୍ୱାରକା (କାଳିକା ପୀଠ) ଓ ଉତ୍ତରରେ ହିମାଳୟ ବଦ୍ରିନାଥଠାରେ (ଜ୍ୟୋତିପୀଠ) ମଠ ସ୍ଥାପନ କରି କେଦାରନାଥଠାରେ ଶରୀର ରକ୍ଷା କଲେ । ଏହି ପୀଠମାନଙ୍କରେ ଭୈରବ ଆଦିବରାହ, କାମାକ୍ଷୀ, ଜଗନ୍ନାଥ ଓ ନାରାୟଣ ବିଗ୍ରହମାନ ପୂଜା ପାଆନ୍ତି । ଶଙ୍କରଙ୍କୁ ଲୋକେ ସ୍ୱୟଂ ଶିବଙ୍କ ଅବତାର ଭାବରେ ଗ୍ରହଣ କରନ୍ତି । ବେଦ ବିରୋଧୀ ବୌଦ୍ଧ ଧର୍ମର ପ୍ରଭାବକୁ ହ୍ରାସ କରିବା ପାଇଁ ଶଙ୍କର ଦିଗ୍‌ବିଜୟ କରି ବହୁ ବୌଦ୍ଧ ପଣ୍ଡିତ ଓ ଧର୍ମାଚାର୍ଯ୍ୟଙ୍କୁ ତର୍କ ଯୁଦ୍ଧରେ ପରାସ୍ତ କରିଥିଲେ । ବୌଦ୍ଧ ଜଗନ୍ନାଥ ଓ ଶାବର ପୁରୁଷୋତ୍ତମ ଉଭୟଙ୍କୁ ଏକ ଓ ଅଭିନ୍ନ ପ୍ରତିପାଦନ କରିବା ଆଚାର୍ଯ୍ୟଙ୍କ ବୈଶିଷ୍ଟ୍ୟ । ସେ ଜଗନ୍ନାଥ, ସୁଭଦ୍ରା, ବଳଭଦ୍ର ଓ ସୁଦର୍ଶନଙ୍କ ରତ୍ନାରୂଢ଼ ଅବସ୍ଥାର ବର୍ଣ୍ଣନା 'ଜଗନ୍ନାଥାଷ୍ଟକ'ରେ ଉଲ୍ଲେଖ କରିଛନ୍ତି । ଜଗନ୍ନାଥ ଶିରରେ ଶିଖିପୁଚ୍ଛ, କଟି ତଟେ ଦୁକୂଳ, ନେତ୍ରରେ ମନମୋହନ ଚାହାଣି ଆଦି ବର୍ଣ୍ଣନା ଜଗନ୍ନାଥ ଓ ଶ୍ରୀକୃଷ୍ଣଙ୍କ ଅଭିନ୍ନତାର ନିଦର୍ଶନ ।

ଜୟଦେବ ୧୨ଶ ଶତାବ୍ଦୀରେ 'ଗୀତଗୋବିନ୍ଦ'ରେ କମଳା କୁଚ ମଣ୍ଡଳ ଧୃତ" ଜଗଦୀଶ ଜଗନ୍ନାଥଙ୍କୁ କାଳୀୟ ବିଷଧର ଗଞ୍ଜନ" "ଦିନମଣି ମଣ୍ଡଳ ମଣ୍ଡନ", "ମୁନିଜନ ମାନସ ହଂସ" "ବୁଦ୍ଧ ଓ ଏକ ବୋଲି ବର୍ଣ୍ଣନା କରିଛନ୍ତି । ପୁଣି ଦଶାବତାର ଧାରଣାରେ ଅବତାର ଭାବରେ ଶ୍ରୀକୃଷ୍ଣଙ୍କୁ ଗ୍ରହଣ କରିଛନ୍ତି । ଯଜ୍ଞରେ ପଶୁମାରଣ ବନ୍ଦ କରିଥିବା (ସଦୟ ହୃଦୟ ଦର୍ଶିତ ପଶୁଘାତଂ) କରୁଣାବତାରର ପରିଚୟ ଦେଇଛନ୍ତି ବୁଦ୍ଧ । ଦ୍ୱାଦଶ ଶତାବ୍ଦୀରେ ନିର୍ମିତ ଶ୍ରୀମନ୍ଦିରରେ ଗରୁଡ଼ ସ୍ତମ୍ଭ ପଛପଟେ ତଥା ଭୋଗମଣ୍ଡପ କାନ୍ଥରେ ନବମ ଅବତାରରେ ବୁଦ୍ଧଙ୍କ ସ୍ଥାନରେ ଶ୍ରୀଜଗନ୍ନାଥ ମୂର୍ତ୍ତି ନିର୍ମିତ ହୋଇ, ଏଥିରୁ ଜଗନ୍ନାଥ ଯେ ବୁଦ୍ଧ, ତାହିଁ ସୂଚିତ ହେଉଛି । ସ୍ୱୟଂ ଶଙ୍କରାଚାର୍ଯ୍ୟ ମଧ୍ୟ ତାହାଙ୍କ କୃତ ଦଶାବତାର ସ୍ତୋତ୍ରରେ ବୁଦ୍ଧଙ୍କୁ ଯୋଗୀ ଶ୍ରେଷ୍ଠ ବା "ଯୋଗିନାଂ ଚକ୍ରବର୍ତ୍ତୀ" କହିଛନ୍ତି -

ଧରାବଦ୍ଧ ପଦ୍ମାସନସ୍ଥାଙ୍ଘ୍ରି ଯଷ୍ଟି
ର୍ନିୟମାନିଳଂ ନ୍ୟସ୍ତନାସାଗ୍ରଦୃଷ୍ଟିଃ
ଯ ଆସ୍ତେ କଲୌ ଯୋଗିନାଂ ଚକ୍ରବର୍ତ୍ତୀ
ସ ବୁଦ୍ଧ ପ୍ରବୁଦ୍ଧୋଽସ୍ତୁ ନିଶ୍ଚିନ୍ତବର୍ତ୍ତୀ ।"

ମନରେ ପ୍ରଶ୍ନ ଉଠେ ସୁଦୂର କେରଳରୁ ଆଚାର୍ଯ୍ୟ ପୁରୁଷୋତ୍ତମ ପୁରୀର ପ୍ରସିଦ୍ଧି ଶୁଣି ପୀଠରେ ମଠ ସ୍ଥାପନ ପାଇଁ ପଦବ୍ରଜରେ ଯେ ଆସିଲେ, ଏହାର କାରଣ କଣ ହୋଇ ପାରେ ? ଶ୍ରୀକ୍ଷେତ୍ରର ବୁଦ୍ଧତ୍ୱ, ବିଷ୍ଣୁତ୍ୱ ନା ଲୁକ୍କାୟିତ (ପାତାଳି ହୋଇଥିବା) ବିଗ୍ରହଙ୍କ ପୁନରୁଦ୍ଧାର ! ମାଦଳା ପାଞ୍ଜି ଅନୁସାରେ ଠାକୁର ମୂର୍ତ୍ତିମାନଙ୍କୁ ସିଂହାସନରେ ବିଜେ କରାଇବା ଓ ସେମାନଙ୍କୁ ବିଧି ଅନୁସାରେ ପୂଜାର ବିଧାନ କରିବା ଓ ଦୈନନ୍ଦିନ ଦେବ ନୀତି ଓ ଉତ୍ସବ ଆଦି ପାଳନ ପାଇଁ ବ୍ୟବସ୍ଥା ଦେବା ଏବଂ ପରବର୍ତ୍ତୀ କାଳରେ ସ୍ଥାପିତ ମୁକ୍ତିମଣ୍ଡପ ପଣ୍ଡିତସଭାର ସ୍ଥାୟୀ ସଭାପତି ଓ ବ୍ୟବସ୍ଥାପକ ଆଦି କାର୍ଯ୍ୟ ପୁରୀ ଶଙ୍କରାଚାର୍ଯ୍ୟଙ୍କ କାର୍ଯ୍ୟକ୍ରମର ଅଙ୍ଗୀଭୂତ ହୋଇଛି । ଆଦି ଶଙ୍କରାଚାର୍ଯ୍ୟ ଚତୁର୍ଦ୍ଧାମୂର୍ତ୍ତିରେ ବ୍ରହ୍ମ ସଂସ୍ଥାପନ କରାଇଥିବାରୁ ଅଦ୍ୟାବଧି ତାଙ୍କର ସ୍ମୃତି ଶ୍ରୀମନ୍ଦିରରେ ପରିଦୃଷ୍ଟ ହୁଏ ଏବଂ ଶିଷ୍ୟ ପରମ୍ପରାକ୍ରମେ ଶଙ୍କରାଚାର୍ଯ୍ୟମାନେ ପ୍ରଧାନ ଲାଭ କରନ୍ତି ।

ନିର୍ମଳ କୁଟୀର, ଚଢ଼େଇସାହି, କଟକ-୧

• • •



# ସ୍ନାନ ଓ ଗୁଣ୍ଡିଚା ଯାତ୍ରାର ରହସ୍ୟ

● ଶ୍ରୀ ପୂର୍ଣ୍ଣେନ୍ଦୁ କୁମାର ନନ୍ଦ

ଦାରୁବ୍ରହ୍ମ ଶ୍ରୀଜଗନ୍ନାଥଙ୍କର ଜ୍ୟେଷ୍ଠ ପୂର୍ଣ୍ଣିମା ଦିନ ଆବିର୍ଭାବ ଉତ୍ସବ ପାଳନ କରାଯାଏ । ଏହାକୁ ସ୍ନାନଯାତ୍ରା କୁହାଯାଏ । ଏହି ଆବିର୍ଭାବ ଉତ୍ସବର ପରେପରେ ଦାରୁବ୍ରହ୍ମଙ୍କର ପତିତପାବନ ଯାତ୍ରା ବା ଗୁଣ୍ଡିଚା ଯାତ୍ରା ଅନୁଷ୍ଠିତ ହୁଏ । ଶ୍ରୀଜଗନ୍ନାଥଙ୍କର ଦ୍ୱାଦଶ ଯାତ୍ରା ମଧ୍ୟରେ କେବଳ ଏହି ଦୁଇ ଯାତ୍ରାରେ ସ୍ୱୟଂ ଦାରୁବ୍ରହ୍ମ ରତ୍ନବେଦୀରୁ ବାହାରକୁ ଯାତ୍ରା କରିଥାନ୍ତି । ଅନ୍ୟାନ୍ୟ ଯାତ୍ରା ଉତ୍ସବରେ ଦେବତାଙ୍କ ଚଳନ୍ତି ବିଗ୍ରହ ଅର୍ଥାତ୍ ମଦନମୋହନ ଉତ୍ସବରେ ଯୋଗଦେଲା ବେଳେ ସ୍ନାନ ପୂର୍ଣ୍ଣିମା ଓ ଗୁଣ୍ଡିଚା ଯାତ୍ରାରେ ସ୍ୱୟଂ ଦାରୁବ୍ରହ୍ମ ମର୍ତ୍ତ୍ୟ ବୈକୁଣ୍ଠ ବାହାରେ ଜନସାଧାରଣଙ୍କୁ ଦର୍ଶନ ଦେଇଥାନ୍ତି ।

## ସ୍ନାନଯାତ୍ରାର ପରମ୍ପରା

ଜ୍ୟେଷ୍ଠ ପୂର୍ଣ୍ଣିମା ଦିନ ଶ୍ରୀ ବିଗ୍ରହମାନଙ୍କୁ ଯେଉଁ ମହାସ୍ନାନ କରାଯାଏ, ତାହା ଜଗନ୍ନାଥ ସଂସ୍କୃତିର ଏକ ମୌଳିକ ବିଭବ ରୂପେ ସ୍ୱୀକୃତ ହୋଇଛି । ଏହାକୁ ଜ୍ୟେଷ୍ଠ ସ୍ନାନ, ଦେବସ୍ନାନ କିମ୍ବା ମହାସ୍ନାନ କୁହାଯାଏ । ଦ୍ୱାଦଶ ଯାତ୍ରାର ପ୍ରଥମ ଉତ୍ସବ ରୂପେ ଏହା ପାଳନ କରାଯାଏ । 'ନୀଳାଦ୍ରି ମହୋଦୟ' ଗ୍ରନ୍ଥରେ ଯଥାର୍ଥରେ କୁହାଯାଇଛି :

"ମହାସ୍ନାନଂ ରଥବରଗତି ଶାୟନଂ ଚାୟନଂ ଚ
ପାର୍ଶ୍ୱାବୃତିଃ ଶୟନ ନିବୃତ୍ତି ପ୍ରାବୃତି ପୁଷ୍ୟ ପୂଜା
ଦୋଳାକେଳି ଦମନକ ମହଶ୍ଚାକ୍ଷ ପୂର୍ବ ତୃତୀୟା
ଏଷା ଯାତ୍ରା ଭୁବନବିଦିତା ଦ୍ୱାଦଶୈତା ନରେନ୍ଦ୍ରଃ"।

କବି ଲୋକନାଥ ବିଦ୍ୟାଧର ଏହାର ଅନୁକରଣରେ "ନୀଳାଦ୍ରି ମହୋଦୟ" କାବ୍ୟରେ ଲେଖିଛନ୍ତି :-

"ସ୍ନାନ ଶ୍ରୀଗୁଣ୍ଡିଚା ଶୟନ ଯାତ୍ରା ଅନ୍ତେ ଅୟନ
ପାର୍ଶ୍ୱ ପରିବର୍ତ୍ତନ ଉତ୍ଥାପନ ଓଢ଼ଣ
ଅୟନ ଅଭିଷେକ ଦୋଳ ଦମନକ ଚନ୍ଦନ
ଏ ରୂପେ ଦ୍ୱାଦଶ ଉତ୍ସବ ଏକେ ଏକେ ସଘନ ॥"

ଶ୍ରୀହର୍ଷଙ୍କ ନୈଷଧୀୟ ଚରିତରେ ମଧ୍ୟ ପୁରୁଷୋତ୍ତମଙ୍କର ସ୍ନାନଯାତ୍ରା ସମ୍ବନ୍ଧ ସମ୍ପର୍କରେ ସୂଚନା ମିଳେ । "ସ୍କନ୍ଦ ପୁରାଣ"ରେ ସ୍ନାନଯାତ୍ରାର ମହତ୍ତ୍ୱ ବର୍ଣ୍ଣନା କରାଯାଇଛି । ଯଥା : -

"ନାତଃ ପରତରଂ କର୍ମ ହ୍ୟନାୟାସେନ ମୋଚନମ୍
ଜ୍ୟେଷ୍ଠ ଜନ୍ମ ଦିନେ ସ୍ନାନଂ ହରେର୍ଯତ୍ ଅବଲୋକିତମ୍"॥

ଅର୍ଥାତ୍-ଏହି ଜ୍ୟେଷ୍ଠ ଜନ୍ମଦିନରେ ହରିଙ୍କର ସ୍ନାନଯାତ୍ରା ଦର୍ଶନ ଅପେକ୍ଷା ମୋକ୍ଷପ୍ରଦ ଶ୍ରେଷ୍ଠକର୍ମ ଆଉ କିଛି ନାହିଁ । ବାସ୍ତବରେ ଦାରୁବ୍ରହ୍ମଙ୍କ ମୂର୍ତ୍ତିକୁ ମନ୍ଦିରରେ ପ୍ରତିଷ୍ଠା କଲାବେଳେ ଏହି ସ୍ନାନ ଉତ୍ସବକୁ ଆବିର୍ଭାବର ସ୍ମାରକୀ ରୂପେ ପାଳନ କରାଯାଇଥିଲା । କିନ୍ତୁ ସ୍ୱତଃ ପ୍ରଶ୍ନ ହୁଏ ଯେ ଦାରୁବ୍ରହ୍ମଙ୍କ ଆବିର୍ଭାବ ସହିତ ଏହି ସ୍ନାନ ପରମ୍ପରା କାହିଁକି ସନ୍ନିବିଷ୍ଟ କରାଯାଇଛି। ଏହା ଏକ ରହସ୍ୟର ବିଷୟ । ଏ ସମ୍ପର୍କରେ ଦୁଇଟି ମତ ଉପସ୍ଥାପନ କରାଯାଉଛି । ପ୍ରଥମ ମତଟି ବୈଦିକ ପୁରୁଷୋତ୍ତମଙ୍କର ସିନ୍ଧୁ ତଟରେ ଭାସମାନ ଅବସ୍ଥା ଉପରେ ପର୍ଯ୍ୟବସିତ । ବେଦରେ ପୁରୁଷୋତ୍ତମ କ୍ଷେତ୍ର, ଜଗନ୍ନାଥ କିମ୍ବା ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କର ନାମ ନଥିଲେ ମଧ୍ୟ ସାୟଣାଚାର୍ଯ୍ୟ ଚତୁର୍ଦ୍ଦଶ ଶତାବ୍ଦୀରେ ଜଗନ୍ନାଥ ବୈଦିକ ଯୁଗରେ ଦାରୁବିଗ୍ରହ ରୂପେ ସିନ୍ଧୁ ତଟରେ ଭାସୁଥିବା ବିଷୟରେ ବର୍ଣ୍ଣନା କରିଛନ୍ତି ।

ଅଦୋ ଯଦ୍ ଦାରୁପ୍ଳବତେ ସିନ୍ଧୋଃପାରେ ଅପୁରୁଷମ୍
ତଦାରଭସ୍ୱ ଦୁର୍ହଣୋ ତେନ ଗଚ୍ଛ ପରସ୍ତରମ୍ । (ଋକ୍‌ବେଦ)

ତୈତ୍ତରୀୟ ଶ୍ରୁତିରେ ମଧ୍ୟ କୁହାଯାଇଛି :

"ଅଦୋ ଯଦ୍ ଦାରୁ ପ୍ଳବତେ ସିନ୍ଧୋଃପାରେ ଅପୁରୁଷମ୍
ତଦା ଲଭସ୍ୱ ଦୁର୍ହାନୋ ତେନ ଯାହି ପରଂ ସ୍ଥଳମ୍"

ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାଶ ଏହାର ଭାବାର୍ଥ କରି କହିଛନ୍ତି- ବର୍ତ୍ତମାନ ସମୁଦ୍ରରେ ପୁରୁଷୋତ୍ତମ ନାମକ ଦେବତାଙ୍କ ଶରୀର ଦାରୁ ରୂପରେ ଜଳରେ ଭାସୁଛନ୍ତି । କେହି ତାଙ୍କୁ ନିର୍ମାଣ କରିନଥିବାରୁ ସେ ଅପୌରୁଷ । ଯେଉଁ ବ୍ୟକ୍ତି ଏହି ଦାରୁ ଦେବତାଙ୍କୁ ଉପାସନା କରନ୍ତି, ସେ ବିଷ୍ଣୁଲୋକକୁ ଗମନ କରନ୍ତି । ଏଣୁ ଉପର ଲିଖିତ ଶ୍ଳୋକଗୁଡ଼ିକୁ ଯେତେ ପ୍ରକାର ଅର୍ଥ କଲେ ମଧ୍ୟ ସମୁଦ୍ର ତୀରରେ ଭାସମାନ ଏକ ଦିବ୍ୟ ଦାରୁମୂର୍ତ୍ତିଙ୍କ ଅସ୍ତିତ୍ୱକୁ ଅସ୍ୱୀକାର କରାଯାଇ ପାରିବ ନାହିଁ । ଏହି ସମୁଦ୍ର ଜଳରେ ଭାସମାନ ଅବସ୍ଥାରେ ଆବିର୍ଭାବ ହୋଇଥିବା ଦାରୁବ୍ରହ୍ମଙ୍କ ଜନ୍ମଦିନ ରୂପେ ଜ୍ୟେଷ୍ଠ ପୂର୍ଣ୍ଣିମା ଦିନ ସ୍ନାନଯାତ୍ରା ଅନୁଷ୍ଠିତ ହେଉଛି । ଜଳରେ ଭାସମାନ ଅବସ୍ଥାର ଅନୁରୂପ ସ୍ନାନ ମଣ୍ଡପରେ ବିଭିନ୍ନ ତୀର୍ଥଜଳ ସମନ୍ୱିତ ସୁନା କୂଅର ୧୦୮ ଗରାଜଳରେ ଦାରୁବ୍ରହ୍ମଙ୍କୁ ମହାସ୍ନାନ କରାଯାଇ ତାଙ୍କ ଆବିର୍ଭାବକୁ ସ୍ମରଣ କରାଯାଏ ।

ଦ୍ୱିତୀୟ ମତଟି ଅଣଆର୍ଯ୍ୟ ପରମ୍ପରାରେ ଅନୁସୃତ ଶବରମାନଙ୍କର ଦେବତାଙ୍କୁ ଜଳରେ ସ୍ନାନ କରିବାର ସ୍ମାରକୀ ରୂପେ ଗ୍ରହଣ କରାଯାଏ । ଶବରମାନେ ଜ୍ୟେଷ୍ଠ ପୂର୍ଣ୍ଣିମାରେ ନିଜ ନିଜର ଦେବତାଙ୍କୁ ଜଙ୍ଗଲର ବିଭିନ୍ନ ସ୍ଥାନରୁ ଜଳ ସଂଗ୍ରହ କରି ସ୍ନାନ କରାଉଥାଆନ୍ତି । ପୂର୍ବେ ନୀଳମାଧବ ମଧ୍ୟ ଶବରମାନଙ୍କର ରାଜା ବିଶ୍ୱାବସୁଙ୍କ ଦ୍ୱାରା ଉପାସିତ

ହେଉଥିଲେ । ଏବେ ମଧ୍ୟ ଜ୍ୟେଷ୍ଠ ପୂର୍ଣ୍ଣିମା ଦିନ ଶବରମାନେ ନିଜର ଦେବତାଙ୍କୁ ସ୍ନାନ କରାଇବାପାଇଁ ଜଳ ସଂଗ୍ରହ କରନ୍ତି । ବିଶେଷତଃ ସଉରା ସଂପ୍ରଦାୟରେ ଏହା ପ୍ରଚଳିତ ରହିଛି । ଏଣୁ ଏଥିରୁ ଅନୁମେୟ ଯେ ନୀଳମାଧବଙ୍କ ପରେ ଦାରୁଦେବତା ''ଜଗନ୍ନାଥ''ଙ୍କୁ ଏହି ଶବରମାନେ ଜ୍ୟେଷ୍ଠ ପୂର୍ଣ୍ଣିମା ଦିନ ଏହିପରି ମହାସ୍ନାନ କରାଉଥିଲେ । କାଳକ୍ରମେ ଶବର ମନ୍ତ୍ର ଓ ନୀତିରେ ଉପାସିତ ଦାରୁଦେବତା ବ୍ରାହ୍ମଣ ଧର୍ମର ପ୍ରଭାବରେ 'ପୁରୁଷୋତ୍ତମ' ରୂପେ ଉପାସିତ ହେଲେ । କିନ୍ତୁ ବ୍ରାହ୍ମଣ୍ୟଉପାସନା ଧାରା ଓ ମନ୍ତ୍ର ଉପଚାରର ପ୍ରଚଳନ ସତ୍ତ୍ୱେ ଦାରୁବ୍ରହ୍ମଙ୍କର ମୌଳିକ ଆବିର୍ଭାବ ସଂକ୍ରାନ୍ତୀୟ ଶବରମାନଙ୍କର ସ୍ନାନ ପରମ୍ପରାଟିକୁ ପରିମାର୍ଜିତ କରି ନୂତନ ଉପାସନା ଧାରା ଓ ଯାତ୍ରା ଉତ୍ସବଗୁଡ଼ିକ ମଧ୍ୟରେ ଅନ୍ତର୍ଭୁକ୍ତ କରାଯାଇଥିଲା । ଏହାର ପୃଷ୍ଠଭୂମିରେ ଅଧୁନା ବିଶ୍ୱାବସୁ ଶବର ରାଜାଙ୍କର ବଂଶଧର ରୂପେ କଥିତ ଦଇତାପତିମାନେ ଏହି ସ୍ନାନ ଉତ୍ସବଟିକୁ ପରିଚାଳନା କରିଆସୁଛନ୍ତି ।

## ସ୍ନାନ ଉତ୍ସବର ବିଧି ବର୍ଣ୍ଣନା

'ନୀଳାଦ୍ରି ମହୋଦୟ'ରେ କବି ଲୋକନାଥ ବିଦ୍ୟାଧର ଏହି ସ୍ନାନ ଯାତ୍ରାର ବିଶଦ ବର୍ଣ୍ଣନା କରିଛନ୍ତି । ପୂର୍ଣ୍ଣିମାର ପୂର୍ବଦିନ ଅର୍ଥାତ୍ ଚତୁର୍ଦ୍ଦଶୀ ଦିନ ଶୀତଳାଙ୍କ ମନ୍ଦିର ସମ୍ମୁଖରେ ଥିବା ''ସୁନାକୂଅ''ରୁ ପାଣି ଉଠାଯାଏ । ପୂର୍ଣ୍ଣିମା ଦିନ ସକାଳେ ସେହି କୂଅରୁ ୧୦୮ ଗରା ଜଳ ଅଣାଯାଇ ଭୋଗମଣ୍ଡପ ଘରେ ରଖାଯାଏ । ସେବକ ଓ ପୁରୋହିତମାନେ ସେହି ଜଳରେ ହରିଦ୍ରା, ଜବା,ଚେଣାଚେର, ଚନ୍ଦନ, ଅଗୁରୁ, ସୁବାସିତ ତେଲ ଓ ଔଷଧୀୟ ଗୁଳ୍ମ ମିଶାଇଥାନ୍ତି । ସ୍ନାନ ମଣ୍ଡପକୁ ବିଭିନ୍ନ ଅଙ୍କିତ ଚିତ୍ରରେ ମଣ୍ଡିତ କରାଯାଏ ।

ପୂର୍ଣ୍ଣିମା ଦିନ ସକାଳେ ''ପହଣ୍ଡି'' ମାଧ୍ୟମରେ ଶ୍ରୀ ବିଗ୍ରହମାନଙ୍କୁ ସ୍ନାନମଞ୍ଚ ବା ବେଦୀ ଉପରକୁ ନିଆଯାଏ । ଏହି ''ପହଣ୍ଡି''ର ଦୃଶ୍ୟ ଅତୀବ ମନୋରମ । ଏହାକୁ ଧାଡ଼ି ପହଣ୍ଡି କୁହାଯାଏ । ଏହି ପହଣ୍ଡି ସମୟରେ ବିଗ୍ରହମାନଙ୍କୁ ଫୁଲ ଓ ଟାହିଆ ଲାଗି କରାଯାଏ। କବିଙ୍କ ଭାଷାରେ -

''ତହୁଁ ଉତାରୁ ପହଣ୍ଡି ବିଜେ ଆଗେ ସୁଦରଶନ
ତହି ପଛରେ କାମପାଳ କଲେ ଲୀଳା ଗମନ
ଝୁଲି ଝୁଲି ବେନି ପାଖକୁ ବିଜେ କରି ରହନ୍ତି
ଆଶା ବରଷ କି ବାସବ ମନ୍ଦ ମନ୍ଦ ଚଳନ୍ତି ॥
ତହି ପଛେ ଭଦ୍ର ଦାୟିନୀ ଭଦ୍ରା ବାହାର ହେଲେ
ତହୁ ଉତାରୁ ମହାପ୍ରଭୁ ଧୀରେ ବିଜୟ କଲେ ''
(ନୀଳାଦ୍ରି ମହୋଦୟ -ଲୋକନାଥ ବିଦ୍ୟାଧର)

ଏହି ପହଣ୍ଡି ସମୟରେ ଘୋର ମର୍ଦ୍ଦଳ ଶବ୍ଦ ହୁଏ ଓ ଭକ୍ତମାନେ ଆନନ୍ଦରେ ସ୍ତୁତି କରନ୍ତି । ଠାକୁରମାନେ ପହଣ୍ଡି ହୋଇ ସ୍ନାନମଞ୍ଚ ଉପରକୁ ଆସିବାର ଦୃଶ୍ୟକୁ ପଞ୍ଚଦଶ ଶତାବ୍ଦୀର କବି ଦ୍ୱିଜ ଲୋଚନ ଦାସ ହାତୀମାନେ ଧୀରେ ଧୀରେ ବଳଦର୍ପ ଜଳପାନ କରିବା ପାଇଁ ଜଳାଶୟ ଆଡ଼କୁ ଆସିବାର ଦୃଶ୍ୟ ସହିତ ତୁଳନା କରିଥିଲେ । ସ୍ୱରଚିତ ''ସ୍ନାନ ନୀଳ ଶିଖର ରୂପକ ଗହନ ବନସ୍ତ ମଧ୍ୟରୁ ନିର୍ଗମନ କରିବା ପରେ ମାଣିକ୍ୟତୁଲ୍ୟ ସୁବର୍ଣ୍ଣ ଦେହଧାରୀ ହାତୁଣୀଟି ମଧ୍ୟ ବାହାରି ଥିଛି । ଏଠାରେ ସୁଭଦ୍ରାଙ୍କୁ ହାତୁଣୀ ସହିତ ତୁଳନା କରାଯାଇଛି। ଏହାପରେ ଅଗ୍ନିଶିଖା ଭଳି ଜ୍ୟୋତିର୍ମୟ ଜବା ମୁଖଧାରୀ ମହାମତ୍ତ ଗଜରୂପୀ ଜଗନ୍ନାଥ ବାହାରି ଆସିଥାନ୍ତି । ସ୍ନାନ ମଣ୍ଡପକୁ ଏ ଅପୂର୍ବ ହସ୍ତୀମାନଙ୍କର ଶୋଭାଯାତ୍ରା ଓ ମଣ୍ଡପରେ ମହାସ୍ନାନ ଦେଖିବା ପାଇଁ ଦେବତା, ଋଷି ମୁନି ପ୍ରଭୃତି ଏକାଠି ହୋଇଥାନ୍ତି । ''ପଦ୍ମ ପୁରାଣ''ରେ ମଧ୍ୟ ଉଲ୍ଲେଖ ରହିଛି ଯେ ସ୍ନାନ ପୂର୍ଣ୍ଣିମାରେ ଦାରୁବ୍ରହ୍ମଙ୍କର ମହାସ୍ନାନ ଦର୍ଶନ କରିବା ପାଇଁ ଆକାଶରେ ଦେବଗଣ ଉପସ୍ଥିତ ରହି ପୁଷ୍ପବୃଷ୍ଟିର ସ୍ମାରକୀ ରୂପେ ଜଳବିନ୍ଦୁବର୍ଷଣ କରିଥାନ୍ତି । ବିଗ୍ରହମାନଙ୍କୁ ସମୁଦ୍ର ଜ୍ୟେଷ୍ଠା ମନ୍ତ୍ରରେ ମହାସ୍ନାନ କରାଯାଏ ।

ସ୍ନାନ ପରେ ଗଜପତି ମହାରାଜ ସ୍ନାନ ମଣ୍ଡପରେ ଛେରାପହଁରା କରିଥାନ୍ତି । ତାପରେ ଗୋପାଳତୀର୍ଥ ମଠ ଓ ରାଘବ ଦାସ ମଠ ପକ୍ଷରୁ ଯୋଗାଇ ଦିଆଯାଇଥିବା 'ହାତୀ ବେଶ'ରେ ଠାକୁରମାନଙ୍କୁ ସଜ୍ଜିତ କରାଯାଏ । ସ୍ନାନ ମଣ୍ଡପ ଉପରେ ବିଭିନ୍ନ କୋଠଭୋଗ ସମର୍ପଣ ହୁଏ ଓ ଗୋଟିଏ ଧୂପ ଅନ୍ନଭୋଗ ହୋଇଥାଏ । ଏହାପରେ ସର୍ବସାଧାରଣ ଦର୍ଶନ ବା 'ସାହାଣ ମେଲା' ହୁଏ ଓ ଭକ୍ତଗଣ ଭକ୍ତିବିଭୋର ହୋଇ ଦାରୁଦେବତାଙ୍କର ଦର୍ଶନ କରି ପାପତାପରୁ ମୁକ୍ତ ହୋଇଥାନ୍ତି । ରାତି ପ୍ରାୟ ୧ ୧ଟା ବେଳକୁ ଠାକୁରମାନଙ୍କୁ ଗୋଟିପହଣ୍ଡି ମାଧ୍ୟମରେ ଅଣସର ଘରକୁ ପ୍ରତ୍ୟାବର୍ତ୍ତନ କରାଯାଏ । ସ୍ନାନ ମଣ୍ଡପରେ ଠାକୁରମାନଙ୍କର 'ଗଜାନନ' ବେଶ ହେବାର ମୂଳରେ ଏକ ପ୍ରଚଳିତ କିମ୍ବଦନ୍ତୀ ରହିଛି। ଏଥିରୁ ଜଣାଯାଏ ଯେ ଥରେ ମହାରାଷ୍ଟ୍ରର ଗଣପତି ଭଟ୍ଟ ଜଗନ୍ନାଥ ଦର୍ଶନ କରିବାପାଇଁ ପୁରୀରେ ପହଞ୍ଚିଲେ । ଦୈବକ୍ରମେ ସେଦିନ ସ୍ନାନ ପୂର୍ଣ୍ଣିମା ହୋଇଥିଲା । ସେ ଗଣପତିଙ୍କ ବ୍ୟତୀତ ଅନ୍ୟ କୌଣସି ଦେବତାଙ୍କୁ ଉପାସନା କରୁନଥିଲେ । ଏଣୁ ସ୍ନାନ ମଣ୍ଡପରେ ଜଗନ୍ନାଥଙ୍କୁ ଗଣେଶ ରୂପରେ ନ ଦେଖିବାରୁ କିମ୍ବା ଜଗନ୍ନାଥଙ୍କ ବିଗ୍ରହ ଗଣପତିଙ୍କ ସହ ତୁଳନୀୟ ନଥିବାରୁ ସେ ଅଭିମାନରେ ଫେରିଗଲେ । କିନ୍ତୁ ଦାରୁବ୍ରହ୍ମ ଏହା ଜାଣିପାରି ତାଙ୍କର ସେବକଙ୍କୁ ସ୍ୱପ୍ନାଦେଶ ଦେଲେ ଓ ସେ ଗଣପତିଙ୍କୁ ଖୋଜି ପୁନର୍ବାର ଜଗନ୍ନାଥ ଦର୍ଶନ କରିବାକୁ ଅନୁରୋଧ କଲେ। ଏହି ଦର୍ଶନ ସମୟରେ ଜଗନ୍ନାଥ ଗଣପତି ରୂପରେ ଦର୍ଶନ ଦେଲେ । ଏହାର ସ୍ମାରକୀ ରୂପେ ସ୍ନାନ ପୂର୍ଣ୍ଣିମା ଦିନ ଶ୍ରୀଜଗନ୍ନାଥଙ୍କର 'ଗଜାନନ' ବେଶ କରାଯାଉଛି ।

## ଦକ୍ଷିଣାମୂର୍ତ୍ତି ଦର୍ଶନ

ସ୍ନାନବେଦୀରେ ପୂର୍ବମୁଖ ହୋଇ ବିରାଜିତ ବିଗ୍ରହଗଣ ଯେତେବେଳେ ଦକ୍ଷିଣାଭିମୁଖ ହୋଇ ଅବତରଣ କରନ୍ତି,ତାହା ଅତ୍ୟନ୍ତ ପୁଣ୍ୟପ୍ରଦ ଦର୍ଶନ ରୂପେ ଗୃହୀତ । ଯେଉଁ ଭାଗ୍ୟବାନ ଭକ୍ତଗଣ ତାଙ୍କର ଏହି ଦକ୍ଷିଣାମୂର୍ତ୍ତି ଦର୍ଶନ କରନ୍ତି,ସେମାନେ ସମଗ୍ର ସ୍ନାନ ପୂର୍ଣ୍ଣିମାର ଦର୍ଶନ ଫଳ ଏକତ୍ର ଲାଭ କରନ୍ତି । ଯଥାର୍ଥରେ ''ସ୍କନ୍ଦ ପୁରାଣ'' ରେ କୁହାଯାଇଛି :-

ତସ୍ମିନ୍ କାଳେ ହରିଂ ପଶ୍ୟେତ୍ ବ୍ରଜନ୍ତଂ ଦକ୍ଷିଣାମୁଖମ୍
ରାମ ଭଦ୍ରାଞ୍ଚ ଯୋ ମର୍ତ୍ତ୍ୟୋ ନ ସ ପ୍ରାକୃତ ମାନୁଷଃ ॥

X X X X X

ସ୍ନାନ ଦର୍ଶନଂ ପୁଣ୍ୟଂ ସମଗ୍ରଂ ଲଭତେ ତୁ ସଃ
ସ୍ନାନଂ ମୁରାରି ଯଃ ପଶ୍ୟେଦ୍ ବ୍ରଜନ୍ତଂ ଦକ୍ଷିଣାମୁଖମ୍ ॥

ବାସ୍ତବରେ ସ୍ନାନଯାତ୍ରା ଆଧ୍ୟାତ୍ମିକ ଦୃଷ୍ଟିକୋଣରୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଦାରୁବ୍ରହ୍ମଙ୍କର ଆବିର୍ଭାବ ଦିବସ ହୋଇଥିବାରୁ ଭକ୍ତଗଣ ନିଜ ହୃଦୟର ଆରାଧ୍ୟଙ୍କ ସାନ୍ନିଧ୍ୟ ଲାଭ କରି ଜନ୍ମଦିନର ଶୁଭେଚ୍ଛା ଓ ଭକ୍ତି ନିବେଦନ କରିବାକୁ ସୌଭାଗ୍ୟ ମନେ କରନ୍ତି ।

ଏକ ଏବ ଜଗନ୍ନାଥସ୍ତିଧା ତତ୍ର ସ୍ଥିତୋ ଦ୍ୱିଜାଃ
ଏକୈକସ୍ୟାପି ସ୍ନପନ ଦର୍ଶନଂ ଭକ୍ତିମୁକ୍ତିଦମ୍ । (ସ୍କନ୍ଦ)

ଏହି ଆବିର୍ଭାବ ଉତ୍ସବର ପରେ ପରେ ଗୁଣ୍ଡିଚା ଯାତ୍ରା ବା ରଥଯାତ୍ରା ଅନୁଷ୍ଠିତ ହୁଏ । ଏହା ମଧ୍ୟ ଏକ ପତିତପାବନ ଯାତ୍ରା ।

## ରଥଯାତ୍ରାର ପରମ୍ପରା

ଦାରୁବ୍ରହ୍ମ ଶ୍ରୀଜଗନ୍ନାଥଙ୍କର ଆଷାଢ଼ ଶୁକ୍ଳ ଦ୍ୱିତୀୟା ଦିନ ଯେଉଁ ପୃଥିବୀ ପ୍ରସିଦ୍ଧ "ରଥଯାତ୍ରା" ଅନୁଷ୍ଠିତ ହେଉଛି, ସେ ସମ୍ପର୍କରେ ବହୁ ଗବେଷଣାଲବ୍ଧ ତଥ୍ୟ ପ୍ରକାଶିତ ହୋଇଛି । ବାସ୍ତବରେ ପରଂବ୍ରହ୍ମଙ୍କର ପୁରୁଷୋତ୍ତମ ସ୍ୱରୂପ ତାଙ୍କୁ ସମଗ୍ର ମାନବ ସମାଜରେ ଉପାସ୍ୟ ଦେବତା ରୂପେ ଗ୍ରହଣ କରାଇ ପାରିଛି । ସେହି ପୁରୁଷୋତ୍ତମଙ୍କର ଏହି ରଥଯାତ୍ରା ସମ୍ପର୍କରେ ଗବେଷକମାନେ ଶାସ୍ତ୍ର, ପୁରାଣ ଓ ଇତିହାସର ଆଶ୍ରୟ ନେଇ ବହୁ ତଥ୍ୟ ପ୍ରକାଶ କରି ଆସୁଛନ୍ତି । କିନ୍ତୁ ଅନେକ ସମୟରେ ମନରେ ଏକ ପ୍ରଶ୍ନ ଉଠେ, "କାହିଁକି ଏ ରଥଯାତ୍ରା ? ବାସ୍ତବରେ ପ୍ରାଚୀନ ବୈଦିକ ଯୁଗରେ ରଥର ପ୍ରଚଳନ ଥିଲା । ଋକ୍ ବେଦରେ ଗୃହସ୍ଥମାନେ ସ୍ନେହ, ଐଶ୍ୱର୍ଯ୍ୟ ଓ ପ୍ରେମକୁ ଭିତ୍ତିକରି ଦ୍ୱେଷରହିତ ରଥ ଚାଳନା କରିବାପାଇଁ ନିର୍ଦ୍ଦେଶ ଦିଆଯାଇଥିଲା । ଉପନିଷଦରେ ତତ୍କାଳୀନ ସମାଜରେ ପ୍ରଚଳିତ ରଥକୁ ରୂପକ ରୂପେ ଗ୍ରହଣ କରି 'ଆତ୍ମା'କୁ ରଥୀ ଓ ଶରୀରକୁ ରଥରୂପେ ବିବେଚନା କରିବା ପାଇଁ ସୂଚନା ଦିଆଯାଇଥିଲା ।

ଭଗବାନ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କ ରଥରେ ସାରଥୀ ହୋଇ ମହାଭାରତ ଯୁଦ୍ଧରେ ଅବତୀର୍ଣ୍ଣ ହୋଇଥିଲେ । ଅର୍ଜ୍ଜୁନ ମାନବ ଶରୀରର ପ୍ରତୀକ ଓ ସାରଥୀ ପୁରୁଷୋତ୍ତମ ଆତ୍ମାର ପ୍ରତୀକ ବୋଲି ଅନେକ ଏହାର ଦାର୍ଶନିକ ବ୍ୟାଖ୍ୟା କରିଥାନ୍ତି ।

## ରଥଯାତ୍ରାର ମୂଳତତ୍ତ୍ୱ

କିନ୍ତୁ ଦାରୁବ୍ରହ୍ମ ପୁରୁଷୋତ୍ତମ ଜଗନ୍ନାଥ ଶ୍ରୀ କ୍ଷେତ୍ରରେ ସ୍ୱୟଂ ରଥାରୂଢ଼ ଓ ସକଳ ମାନବ ସମାଜ ରଥୀ ବା ସାରଥିର ଭୂମିକାରେ ଅବତୀର୍ଣ୍ଣ । ଏପରି ଏକ ତତ୍ତ୍ୱ ବାସ୍ତବରେ ପ୍ରଣିଧାନଯୋଗ୍ୟ । କେହି କେହି କହନ୍ତି ଯେ ବୁଦ୍ଧଦେବଙ୍କ ମୂର୍ତ୍ତିକୁ ତାଙ୍କ ଜନ୍ମ ଦିନରେ ପାଟଳିପୁତ୍ରରେ ଏକ ରଥରେ ନେଉଥିଲେ । ତାହା ଏକ ରଥଯାତ୍ରା ରୂପେ ପରିଚିତ ଥିଲା । ଜୈନ ତୀର୍ଥଙ୍କରମାନଙ୍କୁ ରଥରେ ନେବା ବିଷୟରେ ବର୍ଣ୍ଣନା କରାଯାଇଛି । କିନ୍ତୁ ଭକ୍ତ ପ୍ରହ୍ଲାଦ ପ୍ରଥମେ ଭଗବାନ ଶ୍ରୀ ବିଷ୍ଣୁଙ୍କୁ ଏକ ରଥରେ ବସାଇ ନେବା ବିଷୟରେ ଯେଉଁ ପୌରାଣିକ ବର୍ଣ୍ଣନା ରହିଛି, ତାହାକୁ ଭିତ୍ତିକରି ପୁରୁଷୋତ୍ତମ ଶ୍ରୀ ଜଗନ୍ନାଥଙ୍କୁ ଭକ୍ତମାନେ ରଥରେ ବସାଇ ଯାତ୍ରା ପାଳନ କରୁଛନ୍ତି ବୋଲି କୁହାଯାଇଥାଏ । ବାସ୍ତବରେ ଗୁଣ୍ଡିଚା ମଣ୍ଡପଠାରୁ ପୁଣ୍ୟତମ ସ୍ଥାନ ଏ ଜଗତରେ ନାହିଁ ବୋଲି ଶାସ୍ତ୍ରରେ ବର୍ଣ୍ଣନା କରାଯାଇଛି । ଏଠାରେ ଥିବା ଯଜ୍ଞବେଦୀକୁ ମହାବେଦୀ କୁହାଯାଏ । ଇନ୍ଦ୍ରଦ୍ୟୁମ୍ନ ନାମକ ପୁରାଣ ପ୍ରସିଦ୍ଧ ଭକ୍ତ ରାଜାଙ୍କ ଦ୍ୱାରା ଏହି ଯଜ୍ଞବେଦୀ ପ୍ରତିଷ୍ଠିତ ହୋଇଥିଲା । ଏତେ ବଡ଼ କୀର୍ତ୍ତିର ସ୍ଥାପକ ଶ୍ରୀମନ୍ଦିରର ସ୍ଥାପୟିତା ହୋଇ ମଧ୍ୟ ସେ ଏହାକୁ ଜନ ସମାଜକୁ ଅର୍ପଣ କରିଥିଲେ ଓ ଆତ୍ମ-ବିସ୍ମୃତ ହୋଇ ନିଷ୍କାମ ନିସ୍ପୃହ ଭକ୍ତ ରୂପେ ଜୀବନ ଯାପନ କରିଥିଲେ । ଏଣୁ ପ୍ରତିବର୍ଷ ପୁରୁଷୋତ୍ତମ ତାଙ୍କର ପ୍ରାଚୀନ ଭକ୍ତ, ପରମ ବୈଷ୍ଣବ ଇନ୍ଦ୍ରଦ୍ୟୁମ୍ନଙ୍କ ସାନ୍ନିଧ୍ୟ ଲାଭପାଇଁ ଗୁଣ୍ଡିଚା ମନ୍ଦିରକୁ ଯାତ୍ରା କରିଥାନ୍ତି । ଏହି ଅବସରରେ ନନ୍ଦିଘୋଷର ଘର୍ଘର ନାଦରେ ସେ ଜନସମାଜକୁ ଆହ୍ୱାନ ଦେଇଥାନ୍ତି :

"ହେ ଜନ ସମାଜ, ତୁମେ ଅବିଶ୍ୱାସ, ଅଭିମାନ, ଅହଙ୍କାର, ପ୍ରତିଷ୍ଠା ତଥା ଅସତ୍ୟ ଓ ଅଜ୍ଞାନ ଚେତନାକୁ ସମ୍ପୂର୍ଣ୍ଣ ପରିହାର କରି ଇନ୍ଦ୍ରଦ୍ୟୁମ୍ନ ଭଳି ଆତ୍ମ-ବିସ୍ମୃତ ହୋଇଯାଅ । ତୁମର ସକଳ ଅଭିମାନ ଓ ଅଜ୍ଞାନ ଚେତନାକୁ ପରିହାର କରି ଯନ୍ତ୍ର ରୂପେ ସକଳ କର୍ମ ସମ୍ପାଦନ କର ଓ ମୋ'ଠାରେ ସମ୍ପୂର୍ଣ୍ଣ ଆତ୍ମ ସମର୍ପଣ କର । ମୁଁ ତୁମମାନଙ୍କୁ ନିଶ୍ଚୟ ଉଦ୍ଧାର କରିବି" ଭଗବାନ ଶ୍ରୀକୃଷ୍ଣ ଭଗବତ୍ ଗୀତାରେ ଅର୍ଜ୍ଜୁନଙ୍କୁ ରଥ ଉପରେ ଏହି ମର୍ମରେ ଆହ୍ୱାନ ଦେଇଥିଲେ । ଦ୍ୱାପର ଯୁଗରେ ସାରଥୀ ଭୂମିକାରେ ଅବତୀର୍ଣ୍ଣ ହୋଇ ବିଷାଦ ଓ ମୋହଗ୍ରସ୍ତ ଅର୍ଜ୍ଜୁନଙ୍କୁ ଯେଉଁ ଆହ୍ୱାନ ଦିଆଯାଇଥିଲା, ତାହା ସେତେବେଳେ ତାଙ୍କୁ ସ୍ୱଧର୍ମ ଆଚରଣ ପାଇଁ ଉଦ୍‌ବୁଦ୍ଧ କରିଥିଲା । ଏ ଯୁଗରେ ସ୍ୱଧର୍ମ ଆଚରଣରେ ଆଧୁନିକ ମାନବ ପଥଭ୍ରଷ୍ଟ ହୋଇ ମିଥ୍ୟା, ଅଭିମାନ, ଅହଙ୍କାର ଓ ଅସତ୍ୟର ଆଶ୍ରୟ ନେଉଥିବାରୁ ମର୍ତ୍ତ୍ୟବୈକୁଣ୍ଠରୁ ବର୍ଷରେ ଥରେ ମାନବସମାଜକୁ ସତ୍ୟ, ଧର୍ମ, ଶାନ୍ତି, ଏକତା ଓ ମୈତ୍ରୀ ତଥା ବିନମ୍ରତାର ବାଣୀକୁ ଉଦ୍‌ଘୋଷଣା କରିବା ପାଇଁ ପରମେଶ୍ୱର ଏହି ଘୋଷଯାତ୍ରା କରୁଛନ୍ତି ।

ବୈଦାନ୍ତିକ ଦୃଷ୍ଟିରେ ରଥ, ପଥ ଓ ଜଗନ୍ନାଥଙ୍କ ମଧ୍ୟରେ ଏକତ୍ୱ ଅନୁଭବ କରାଯାଏ । ରଥସ୍ଥ ବାମନ ପଦ୍ମମିଳିତ ଭୂଦେବ ପଟଳେ ଏ ସମ୍ପ୍ରଦାୟ ମଧ୍ୟରେ ଏକ ଅଭେଦ ଓ ଅଚିନ୍ତ୍ୟ ଆତ୍ମୀୟତାର ଉଦ୍ରେକ କରି ବର୍ଷରେ ଥରେ ଭକ୍ତ ଓ ଭଗବାନଙ୍କ ମଧ୍ୟରେ ଏକ ଭାବଗତ ଐକ୍ୟ ପ୍ରତିଷ୍ଠିତ ହୁଏ । ବାସ୍ତବରେ ବୈଦାନ୍ତିକ ଆତ୍ମଦର୍ଶନର ଉପଲବ୍ଧି କରି ଏହି ସମୟରେ ଭକ୍ତ ନିଜକୁ ଶ୍ରୀଜଗନ୍ନାଥଙ୍କ ନିକଟରେ ସମ୍ପୂର୍ଣ୍ଣ ରୂପେ ଏକୀଭୂତ କରି ଏକ ଗଭୀର ଆତ୍ମବୋଧ ଓ ଅଭିନ୍ନ ଚେତନାର ଝଲକ ଅନୁଭବ କରେ । ଏଥିପାଇଁ ବିଶ୍ୱକବି ରବୀନ୍ଦ୍ରନାଥ ଯଥାର୍ଥରେ ଗାଇଥିଲେ-

ରଥଯାତ୍ରା ଲୋକାରଣ୍ୟ ମହାଧୂମଧାମ୍
ଭକ୍ତେରା ଲୁଟାଏ ପଥେ କରିଛେ ପ୍ରଣାମ
ରଥ ବୋଲେ ଆମି ଦେବ ପଥ ବୋଲେ ଆମି
ମୂର୍ତ୍ତି ବୋଲେ ଆମି ଦେବ ହାଁ ସେ ଅନ୍ତର୍ଯ୍ୟାମୀ"

ଉତ୍କଳମଣି ଗୋପବନ୍ଧୁ ଏହି ଅଭେଦ ଆତ୍ମଦର୍ଶନର ଆହ୍ୱାନ ଦେଇ "ବନ୍ଦୀର ଆତ୍ମକଥା"ରେ ଲେଖିଛନ୍ତି -

ମୋ ନେତ୍ରେ ଭାରତ ଶିଳା ଶାଳଗ୍ରାମ
ପ୍ରତିକ୍ଷେତ୍ର ମୋର ପୁଣ୍ୟ ପୁରୀଧାମ

ଯହିଁ ଥିଲେ ତହିଁ ଏ ମର୍ତ୍ତ୍ୟ ମଣ୍ଡଳେ

ଭାବିବି ମୁଁ ନିଶ୍ଚେ ଅଛି ନୀଳାଚଳେ"

ବାସ୍ତବରେ ଶ୍ରୀକ୍ଷେତ୍ର ଓ ଶ୍ରୀଜଗନ୍ନାଥଙ୍କର ସାର୍ବଜନୀନ ସ୍ୱୀକୃତି ଉତ୍କଳମଣିଙ୍କୁ ଏପରି ଉଦ୍‌ବୁଦ୍ଧ କରିଥିଲା ଯେ ଯେଉଁଠାରେ ଥିଲେ ମଧ ସେ ସେଠାରେ ନୀଳାଚଳନାଥ ଶ୍ରୀଜଗନ୍ନାଥଙ୍କର ଦିବ୍ୟ ଅବସ୍ଥିତିକୁ ଉପଲବ୍ଧି କରିପାରୁ ଥିଲେ । ଘୋଷଯାତ୍ରାରେ ଶ୍ରୀଜଗନ୍ନାଥ ବହୁ ଦୂର ଦୂରାନ୍ତରୁ ଆସିଥିବା ଭକ୍ତ ସମାଜକୁ ଏହି ମର୍ମରେ ଆହ୍ୱାନ ଦେଇଥାନ୍ତି ଓ ନିଜର ସମସ୍ତ କର୍ମ ଯଜ୍ଞ ରୂପେ ସମ୍ପାଦନ କରି ସେହି ଦିବ୍ୟଯନ୍ତ୍ରୀଙ୍କ ନିକଟରେ ସମର୍ପଣ କରିବା ପାଇଁ ଉଦ୍‌ବୁଦ୍ଧ କରିଥାନ୍ତି ।

## ରାଜାଧିରାଜ ଶ୍ରୀଜଗନ୍ନାଥଙ୍କର ସ୍ୱୟଂ ଲୀଳାହିଁ ରଥଯାତ୍ରା

ରଥଯାତ୍ରାରେ ଗଜପତି ମହାରାଜ ଛେରାପହଁରା କରନ୍ତି ଓ ଜାତିଧର୍ମ ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ରଥାରୂଢ଼ ପରମେଶ୍ୱରଙ୍କର ଦର୍ଶନ ପାଇଥାନ୍ତି । ଏ ରାଜ୍ୟରେ ବହୁକାଳରୁ ଅର୍ଥାତ୍ କପିଳେନ୍ଦ୍ର ଦେବଙ୍କ ସମୟରୁ ଉତ୍କଳର ଗଜପତିମାନେ ଘୋଷଣା କରିଆସିଛନ୍ତି ଯେ ଏ ରାଜ୍ୟର ରାଜା କେହି ବ୍ୟକ୍ତିବିଶେଷ ନୁହଁନ୍ତି । ରାଜାଧିରାଜ ସ୍ୱୟଂ ଜଗନ୍ନାଥଙ୍କର ଏ ରାଜ୍ୟ ଓ ସେ ନିଜେ ଏହାକୁ ଚଳାଉଛନ୍ତି । ଏପରି ଅନ୍ତୁସମର୍ପଣର ଦୃଷ୍ଟାନ୍ତ କ୍ୱଚିତ୍ ଦେଖିବାକୁ ମିଳେ । ଏଣୁ ଉତ୍କଳର ଗଜପତି ପୁରୁଷୋତ୍ତମ ଦେବଙ୍କ କାଞ୍ଚି ଅଭିଯାନ ବେଳେ ସ୍ୱୟଂ ଶ୍ରୀଜଗନ୍ନାଥ ଓ ଶ୍ରୀବଳଭଦ୍ର କଳା ଓ ଧଳା ଘୋଡ଼ାରେ ଚଢ଼ି ତାଙ୍କୁ ଯୁଦ୍ଧରେ ସାହାଯ୍ୟ କରିବା ପାଇଁ ଆଗରେ ଯାତ୍ରା କରିଥିଲେ ବୋଲି ପ୍ରବାଦ ରହିଛି । ଯଥାର୍ଥରେ ଉତ୍କଳମଣି କହିଥିଲେ-

ବିଶେଷେ ଉତ୍କଳେ ନାହିଁ ପ୍ରୟୋଜନ

ଉତ୍କଳର ନେତା ନିଜେ ନାରାୟଣ"

ଏହି ସତ୍ୟକୁ ପ୍ରତିବର୍ଷ ହୃଦୟଙ୍ଗମ କରିବା ପାଇଁ ଗଜପତିଙ୍କଠାରୁ ଆରମ୍ଭ କରି ନେତୃବୃନ୍ଦ, ପ୍ରଶାସକ, ଶିଳ୍ପପତି, ସମାଜର ପ୍ରତିଷ୍ଠିତ ବ୍ୟକ୍ତିବିଶେଷ, ସାଧାରଣ ନଗରବାସୀ, ଧନୀ ଦରିଦ୍ର ଆଦି ସକଳ ଶ୍ରେଣୀର ମାନବ ବଡ଼ଦାଣ୍ଡରେ ଏକତ୍ରିତ ହୋଇ ଏ ଜାଗତିକ ନାଟକର ମହାନାୟକ ଶ୍ରୀଜଗନ୍ନାଥଙ୍କର ଶରଣାପନ୍ନ ହୋଇଥାନ୍ତି । ବାସ୍ତବରେ ଏହି ବିଶ୍ୱବ୍ରହ୍ମାଣ୍ଡ ପାଦେ ମାତ୍ର ଚଳାଇବା ଜଗନ୍ନାଥଙ୍କ ବ୍ୟତୀତ ଆଉ କାହା ପକ୍ଷରେ ସମ୍ଭବ ନୁହେଁ । ଏଣୁ ଶ୍ରୀ ଚୈତନ୍ୟ ମହାପ୍ରଭୁ ଉତ୍କଳ ଶ୍ରୀଜଗନ୍ନାଥ ଓ ତାଙ୍କର ସ୍ୱଇଚ୍ଛାରେ ରଥଯାତ୍ରା କରିବାର ରହସ୍ୟ ସମ୍ପର୍କରେ ସୂଚନା ଦେଇ କହିଥିଲେ ।"

ବିଶ୍ୱମ୍ଭର ଜଗନ୍ନାଥେ କେ

ଚଲାଇତେ ପାରେ

ଆପନ୍ ଇଚ୍ଛାୟ୍ ଚଲେ

କରିତେ ବିହାରେ" ।

"ଇନ୍ଦ୍ରନୀଳମଣି" ଗ୍ରନ୍ଥରେ ଉଲ୍ଲେଖ ଅଛି,

ଆଷାଢ଼ସ୍ୟା ମଳେ ପକ୍ଷେ ଦ୍ୱିତୀୟା ପୁଷ୍ୟସଂଯୁତେ

ଚରାଚର ହିତାର୍ଥାୟ୍ ଘୋଷ ଯାତ୍ରା ବିଧୀୟତେ"

ଏଣୁ ବହୁ ପ୍ରାଚୀନ କାଳରୁ ସକଳ ଜଗତବାସୀଙ୍କ ଶୁଭ ଓ ମଙ୍ଗଳ ପାଇଁ ଶ୍ରୀ ଜଗନ୍ନାଥଙ୍କର ଏହି ଘୋଷଯାତ୍ରା ବା ସର୍ବ କଲ୍ୟାଣକାରୀ ଉତ୍ସବ ପ୍ରତିବର୍ଷ ପାଳନ କରାଯାଉଛି ।

## ପତିତପାବନ ଯାତ୍ରା

ସାମାଜିକ ତତ୍ତ୍ୱ ଦୃଷ୍ଟିରୁ ନୀତିଭ୍ରଷ୍ଟ ପତିତ ଜନସମାଜକୁ ଉଦ୍ଧାର କରିବାପାଇଁ ପତିତପାବନ ଶ୍ରୀଜଗନ୍ନାଥ ପ୍ରତିବର୍ଷ ଏହି ରଥଯାତ୍ରାରେ ମନ୍ଦିର ବାହାରକୁ ଆସି ବଡ଼ଦାଣ୍ଡରେ ବିରାଜମାନ କରନ୍ତି ବୋଲି କୁହାଯାଏ । ଶ୍ରେଣୀ,ବର୍ଣ୍ଣ ଓ ଜାତି ନିର୍ବିଶେଷରେ ଯେ କେହି ମନୁଷ୍ୟ ପତିତ କୁହାଯାଇପାରେ । ସନାତନ ପରମ୍ପରା ଓ ଧର୍ମ ଶାସ୍ତ୍ରରେ ଥିବା ନୈତିକ ପନ୍ଥାରୁ ବିଚ୍ୟୁତ ହୋଇ ଅନୀତି, ଅସତ୍ୟ, ଅଜ୍ଞାନ, ଅହିଂସା ଇତ୍ୟାଦି ଅନୈତିକ ପନ୍ଥା ଯେ କେହି ଅବଲମ୍ବନ କରୁଥିଲେ, ସେ ପତିତ ରୂପେ ପରିଗଣିତ ହେବେ । ଏହିପରି ପତିତମାନଙ୍କୁ ଉଦ୍ଧାର କରିବା ପାଇଁ ବର୍ଷରେ ଥରେ ଶ୍ରୀମନ୍ଦିରରୁ ବାହାରକୁ ଆସିଥାନ୍ତି ସ୍ୱୟଂ ଜଗନ୍ନାଥ । ଏହାକୁ ଲକ୍ଷ୍ୟକରି ଉପେନ୍ଦ୍ର ଭଞ୍ଜ କହିଥିଲେ -

"ସ୍ନାନ ଗୁଣ୍ଡିଚା ଏ ବେନି ସ୍ୱଯଲୀଳା ଯାର

ପତିତପାବନ ଅର୍ଥେ ପାସାଦୁଁ ବାହାର" ।

*ଅତିରିକ୍ତ ମାହାଲ ନିର୍ଦ୍ଦେଶକ,ସାଧାରଣ ପ୍ରଶାସନ ବିଭାଗ*
*ସଚିବାଳୟ, ଭୁବନେଶ୍ୱର*

● ● ●

# ସମୟ ସ୍ରୋତରେ ଶ୍ରୀକ୍ଷେତ୍ର

● ଡକ୍ଟର ନୀଳକଣ୍ଠ ମିଶ୍ର

ଶ୍ରୀକ୍ଷେତ୍ର ହିନ୍ଦୁଧର୍ମର ଏକ ପ୍ରଧାନ ପୀଠ । ଏହା ବୌଦ୍ଧ, ଜୈନ ତଥା ଅନ୍ୟାନ୍ୟ ଧର୍ମାବଲମ୍ବୀମାନଙ୍କୁ ଯୁଗେ ଯୁଗେ ଆକର୍ଷିତ କରି ଆସିଛି ।

ହାତୀଗୁମ୍ଫା ଶିଳାଲେଖ ଅନୁସାରେ ନନ୍ଦବଂଶର ରାଜା ମହାପଦ୍ମନନ୍ଦ ମତାନ୍ତରେ ଧର୍ମାନନ୍ଦ କଳିଙ୍ଗର ଉପାସ୍ୟ ଜୀନାସନକୁ ମଗଧ ନେଇଯାଇଥିଲେ । ମୌର୍ଯ୍ୟ ସମ୍ରାଟ ବିନ୍ଦୁସାରଙ୍କ ପୁତ୍ର ଅଶୋକ (ଖ୍ରୀ.ପୂ. : ୨୭୩-ଖ୍ରୀ.ପୂ. : ୨୩୨)ଙ୍କ ମୃତ୍ୟୁର ୨୫ ବର୍ଷ ପରେ ମହାମେଘବାହାନ ଐର ଖାରବେଳ ଅପହୃତ ଏହି ଜୀନାସନ ଉଦ୍ଧାରକରି ପୁନଃ ପ୍ରତିଷ୍ଠା କରିଥିଲେ । କେତେକଙ୍କ ମତରେ ଏହି ଜୀନାସନ ପୁରୀରେ ବର୍ତ୍ତମାନ ଉପାସିତ ଶ୍ରୀ ଜଗନ୍ନାଥଙ୍କ ସହିତ ଘନିଷ୍ଠ ଭାବେ ଜଡ଼ିତ । ପଣ୍ଡିତ ନୀଳକଣ୍ଠ ଦାସଙ୍କ ମତରେ, ଶ୍ରୀକ୍ଷେତ୍ର ଓ ଶ୍ରୀଜଗନ୍ନାଥ ସଂସ୍କୃତି ଜୈନ ଜଗତରେ ଏକ ପ୍ରଧାନ ପୀଠ ଥିଲା । ନାଥାନ୍ତ ଶବ୍ଦରୁ (ଋଷଭ ନାଥ ଆଦି), କଳ୍ପବଟ ଉପାସନାରୁ, ଝୁଲଣ ଦ୍ୱାର (ମୁକ୍ତି ମଣ୍ଡପ ଆଗ ଦ୍ୱାର)ରେ ସ୍ଥାପିତ ଓ ଅର୍ଚ୍ଚିତ ଜୈନ ପ୍ରତିମା ଦୃଷ୍ଟିରୁ ଶ୍ରୀକ୍ଷେତ୍ର ଜୈନ ଉପାସନାର ଏକ ମୁଖ୍ୟସ୍ଥଳୀ ଥିବା ଅନୁମିତ ହୁଏ । ଜୈନମାନେ ଶ୍ରୀଜଗନ୍ନାଥଙ୍କୁ ପୁରିସର୍ଗ ବା ପୁରୁଷୋତ୍ତମ ଭାବେ ପୂଜା କରିଥାନ୍ତି । ଓଡ଼ିଆ ଭାଗବତର ୬ଷ୍ଠ ସ୍କନ୍ଧରେ ବର୍ଣ୍ଣିତ ଋଷଭନାଥଙ୍କ ବିଷୟ ସାମାଜିକ ଜୀବନରେ ଜୈନ ଧର୍ମର ପ୍ରଭାବ ବିଷୟରେ ସମ୍ୟକ ସୂଚନା ଦିଏ ।

ଶ୍ରୀକ୍ଷେତ୍ର ବୌଦ୍ଧ ଧର୍ମର ଏକ ସ୍ନାୟୁ କେନ୍ଦ୍ରଥିବାର ବିଭିନ୍ନ ସୂତ୍ରରୁ ପ୍ରମାଣ ମିଳେ । ଜାତକ ଗଳ୍ପ ଅନୁସାରେ ବୁଦ୍ଧଙ୍କ ଜ୍ଞାନ ଲାଭପରେ ତପୁସ ଓ ଭଲ୍ଲୁକ ନାମକ ଦୁଇଜଣ ଉତ୍କଳୀୟ ବଣିକ ମୁମୂର୍ଷୁ ବୁଦ୍ଧଙ୍କୁ ତରଳ ପଦାର୍ଥ ଦେଇ ତାଙ୍କ ପ୍ରାଣ ରକ୍ଷା କରିଥିଲେ । କାଳକ୍ରମେ କଳିଙ୍ଗର ରାଜଧାନୀ ଦନ୍ତପୁରୀ ପୁରୀରେ ପରିଣତ ହୋଇଛି ବୋଲି କେତେକେ ମତ ଦିଅନ୍ତି । ବୌଦ୍ଧ ଧର୍ମର ଧର୍ମ, ବୁଦ୍ଧ ଓ ସଂଘର ପ୍ରତୀକାତ୍ମକ ଅଭିବ୍ୟକ୍ତି ଶ୍ରୀ ମନ୍ଦିରର ତ୍ରିମୂର୍ତ୍ତି ବୋଲି କେତେକଙ୍କ ମତ । ଶ୍ରୀମନ୍ଦିର କୂର୍ମବେଢ଼ା ମଧ୍ୟରେ ଥିବା ବର୍ତ୍ତମାନର ସୂର୍ଯ୍ୟମନ୍ଦିର, ଯାହାର ପ୍ରାଚୀନ ନାମ 'ନୀଳାଦ୍ରିବିଜେ' ମନ୍ଦିର( ଯେଉଁଠାରେ କୋଣାର୍କ ମନ୍ଦିର ଭଗ୍ନ ହେଲା ପରେ ଅର୍ଚ୍ଚିତ ବିଗ୍ରହ ସୂର୍ଯ୍ୟନାରାୟଣ (ଉତ୍ତରାୟଣ ଓ ଦକ୍ଷିଣାୟନ ସୂର୍ଯ୍ୟ, ପୂଜା ପାଉଛନ୍ତି), ସେ ମନ୍ଦିରରେ ଅର୍ଚ୍ଚିତ ପାଷାଣ ବିଗ୍ରହର ପୃଷ୍ଠଭାଗରେ ଅନ୍ୟ ଏକ କୃଷ୍ଣ ପାଷାଣ ପ୍ରତିମା ଅଛନ୍ତି । ଏହି ବିଗ୍ରହକୁ କେହି କେହି ଜନ୍ମମୂର୍ତ୍ତି କହୁଛନ୍ତି । ଏହି ସୂତ୍ରରୁ ଆଧାର କରି ଏହା ବୌଦ୍ଧ ସାଧକ ଲକ୍ଷ୍ମୀଦ୍ଧି ବା ଧାନୀବୁଦ୍ଧଙ୍କ ବିଗ୍ରହ ବୋଲି ମତ ପ୍ରକାଶ ପାଇଥାଏ । ଶ୍ରୀକ୍ଷେତ୍ରସ୍ଥ ଶ୍ରୀ ଲୋକନାଥ ବୌଦ୍ଧଧର୍ମର ଅବଲୋକିତେଶ୍ୱରଙ୍କ ରୂପାନ୍ତରିତ ରୂପ ବୋଲି କେତେକ ଗ୍ରହଣ କରିଥାନ୍ତି । ପୁରୀର ଏକ ମନ୍ଦିରସ୍ଥଳରେ ବୁଦ୍ଧଙ୍କ ଦନ୍ତ ପୂଜା ହେଉଥିବାର ବର୍ଣ୍ଣନା ବିଭିନ୍ନ ବୌଦ୍ଧ ଉପାଖ୍ୟାନରେ ରହିଛି । ଶୈଳୋଦ୍ଭବ ରାଜବଂଶ ପରେ ଭୌମକର ରାଜବଂଶ ଶାସନ କାଳରେ ବୌଦ୍ଧଧର୍ମ ଓଡ଼ିଶାର ରାଜଧର୍ମ ହୋଇ ସାରିଥିଲା । ସେତେବେଳେ ଶ୍ରୀକ୍ଷେତ୍ର ଏକ ପ୍ରସିଦ୍ଧ ପୀଠ ଥିଲା ।

ବର୍ତ୍ତମାନର ସୂର୍ଯ୍ୟମନ୍ଦିର (ପ୍ରାଚୀନ ନାମ ନୀଳାଦ୍ରି ବିଜେ ମନ୍ଦିର) ଆକାରଗତ ସାମ୍ୟ ନହେଲେ ମଧ ଗଠନ ରୀତି ଦୃଷ୍ଟିରୁ ଶ୍ରୀମନ୍ଦିର ସହ (ମନ୍ଦିରର ଗର୍ଭ ଗୃହ, ଜଗମୋହନ) ତୁଳନୀୟ । ଏହି ମନ୍ଦିରର ନାମ ନୀଳାଦ୍ରି ବିଜେ ମନ୍ଦିର କେଉଁ ପରିପ୍ରେକ୍ଷୀରେ ହେଲା, ତା ଅନୁସନ୍ଧାନ କଲେ କିଛି ନୂତନ ତଥ୍ୟ ଆବିଷ୍କୃତ ହୋଇପାରେ ।

ମାଦଳାପାଞ୍ଜି ବର୍ଣ୍ଣିତ ତଥା ଇତିହାସ ସମର୍ଥିତ ତଥ୍ୟ ଅନୁସାରେ ସମ୍ରାଟ ଶୋଭନଦେବଙ୍କ ରାଜତ୍ୱରେ ଯବନ ସମ୍ରାଟ ରକ୍ତବାହୁ ଶ୍ରୀକ୍ଷେତ୍ର ଆକ୍ରମଣ କରିଥିଲା । ଶ୍ରୀ ଜଗନ୍ନାଥଙ୍କ ଚଳନ୍ତି ପ୍ରତିମାକୁ ଆଘାତ ପହଞ୍ଚାଇବାର ଆଶଙ୍କା ଥିବାରୁ ବୈଷ୍ଣବଧର୍ମୀ ଭଞ୍ଜ ବଂଶୀୟ ରାଜାମାନେ, ଯେଉଁମାନେ ପୂର୍ବରୁ ଗନ୍ଧବରାଡ଼ୀ(ଗାନ୍ଧାର ବାଡ଼ୀ ?) ଠାରେ ଶ୍ରୀ ନୀଳମାଧବଙ୍କ ଉପାସକ ଥିଲେ, ସେମାନେ ଶ୍ରୀଜଗନ୍ନାଥଙ୍କ ବିଗ୍ରହକୁ ଭଞ୍ଜ ଶାସିତ ଉଡ୍ରମଣ୍ଡଳ (ଆଧୁନିକ ବୌଦ)ରେ ଥିବା ଧୃତିପୁରକୁ ନେଇ ଯାଇଥିଲେ, କାରଣ ଶ୍ରୀଜଗନ୍ନାଥ (ପୁରୁଷୋତ୍ତମ)ଙ୍କୁ ସେମାନେ ପରମ ବିଷ୍ଣୁ ଜ୍ଞାନ କରୁଥିଲେ ଅର୍ଥାତ ଏହି ସମୟକୁ ଶ୍ରୀକ୍ଷେତ୍ର ପରମବିଷ୍ଣୁଙ୍କ ଆବାସସ୍ଥଳୀ ବୋଲି ଉତ୍କଳ ମଣ୍ଡଳରେ ପ୍ରସିଦ୍ଧି ଲାଭ କରିସାରିଥିଲା । ଭଞ୍ଜ ବଂଶୀୟ ରାଜାଙ୍କ ରାଜଧାନୀ ସୁବର୍ଣ୍ଣପୁର(ସୋନପୁର) ନିକଟସ୍ଥ ବୌଦ ସୀମାନ୍ତରୁ ମାତ୍ର ବାରମାଇଲ ଦୂର ଗୋପାଳିଗ୍ରାମଠାରେ ମହାପ୍ରଭୁଙ୍କୁ ପାତାଳୀ କରାଇ ସେହି ସ୍ଥାନରେ ବରଗଛଟିଏ ରୋପଣ କରାଯାଇଥିଲା , ଯାହାକୁ ଲୋକେ ଶ୍ରଦ୍ଧାରେ ଦିଅଁବର ବୋଲି କହୁଥିଲେ ।

ଐତିହାସିକ ହଣ୍ଟର ମାଦଳାପାଞ୍ଜିକୁ ବିଶ୍ଳେଷଣ କରି ଖ୍ରୀ :୩୧୮ ବେଳକୁ ଶ୍ରୀ ପୁରୁଷୋତ୍ତମ ଜଗନ୍ନାଥଙ୍କ ପ୍ରତିଷ୍ଠା ଓ ଖ୍ୟାତି ସାରା ଭାରତରେ ପରିବ୍ୟାପ୍ତ ହୋଇଥିଲା ବୋଲି ମତ ଦିଅନ୍ତି । ଶ୍ରୀ କ୍ଷେତ୍ରର ଏହିଗୌରବାବହ ସ୍ମୃତି ବହୁ ଯବନ ଆକ୍ରମଣକାରୀଙ୍କୁ ପ୍ରଲୁବ୍ଧ କରିଥିବା କଥା ବିଭିନ୍ନ ଉପାଖ୍ୟାନରୁ ଜଣାଯାଏ ।

ଖ୍ରୀ : ୩୩୧ରେ ଚୀନର ସାନସୀ ପ୍ରଦେଶରେ ଜନ୍ମଗ୍ରହଣ କରିଥିବା କୁଙ୍ଗ, ଯାହାଙ୍କୁ ବୌଦ୍ଧଧର୍ମ ଗ୍ରହଣ ସମୟରେ ନଅପତାର ପତିମୂର୍ତ୍ତି ବା ଫାହିୟାନ ନାମରେ ନାମିତ କରାଯାଇଥିଲା, ସେ ଖ୍ରୀ ୩୯୯ ବା ୬୮ ବର୍ଷରେ ତୀର୍ଥାଟନ ପାଇଁ ଭାରତ ଆସି ସ୍ୱଭ୍ରମଣ ବୃତ୍ତାନ୍ତ ଫୋ-କିଉକି (ବୁଦ୍ଧ ଜନ୍ମସ୍ଥାନର ବିବରଣୀ) ପୁସ୍ତକ ରଚନା କରିଥିଲେ । ଫାହିୟାନଙ୍କ ଭ୍ରମଣ ବୃତ୍ତାନ୍ତରେ ଶ୍ରୀକ୍ଷେତ୍ରର ଏକ ବିରାଟ ଉତ୍ସବ

(ରଥଯାତ୍ରା ?) ଦେଖି ସେ ଅତ୍ୟନ୍ତ ମୁଗ୍ଧ ହୋଇଥିବା କଥା ଉଲ୍ଲେଖ କରିଛନ୍ତି । ଗବେଷକ ଡ଼ଃ ସତ୍ୟନାରାୟଣ ରାଜଗୁରୁ ଖ୍ରୀଷ୍ଟୀୟ ଚତୁର୍ଥ ଶତକ ବେଳକୁ ଉକ୍ତ ଦେଶରେ ସମୁଦ୍ର ତୀରବର୍ତ୍ତୀ ଏକ ସ୍ଥାନରେ ପୁରୁଷମଣ୍ଡପ ନାମରେ ଏକ ପ୍ରସିଦ୍ଧ ମଣ୍ଡପ ଥିଲା ଏବଂ ସେଠାରେ ପୁରୁଷୋତ୍ତମଙ୍କ ପ୍ରସ୍ତର ବିଗ୍ରହ ବ୍ରାହ୍ମଣମାନଙ୍କ ଦ୍ୱାରା ଅର୍ଚ୍ଚିତ ହେଉଥିଲା ବୋଲି କହନ୍ତି । ଏହାଛଡ଼ା ବ୍ରାହ୍ମଣମାନେ ଏଠାରେ ପ୍ରତ୍ୟହ ସନ୍ଧ୍ୟା ବନ୍ଦାପନା, ପୁରୁଷ ସୁକ୍ତ ଆଦି ପାଠ କରୁଥିଲେ । ପୁରୁଷ ମଣ୍ଡପ ନିକଟରେ ଉଭୟ ବ୍ରାହ୍ମଣ ଓ ବୌଦ୍ଧ ବସତି ଥିଲା । ସେଠାରେ ବ୍ରାହ୍ମଣ ଓ ବୌଦ୍ଧମାନେ ବସି ଶାସ୍ତ୍ର ଆଲୋଚନା କରୁଥିଲେ ବୋଲି ସେ ଉଲ୍ଲେଖ କରିଛନ୍ତି । ଉତ୍କଳର ଚେଦି ବଂଶୀ ସମ୍ରାଟ ଖାରବେଳ ଓ ତାଙ୍କ ପୁତ୍ର କଦମ୍ପ ଶ୍ରୀଙ୍କ ଶାସନ ପରେ ଶୈଳୋଦ୍ଭବ ବଂଶର ରାଜତ୍ୱ ସମୟରେ କଳିଙ୍ଗରୁ କଙ୍ଗୋଦ ଓ ତୋଷାଳୀ ଅଲଗା ହୋଇଯାଇଥିଲା ।

ସପ୍ତମ ଶତାବ୍ଦୀବେଳକୁ ଭାରତ ଭୂଖଣ୍ଡରେ କୌଣସି ଏକ ସ୍ଥାନ ପୁରୁଷୋତ୍ତମ ଉପାସନା ପାଇଁ ଅତ୍ୟନ୍ତ ପବିତ୍ର ସ୍ଥାନ ବୋଲି ବିବେଚିତ ହେଉଥିଲା । ଏହି ସମୟକୁ ଶବରୀ ନାରାୟଣ ବା ନୀଳମାଧବ କ୍ରମଶଃ ପୁରୁଷୋତ୍ତମ ରୂପେ ପ୍ରସିଦ୍ଧି ଲାଭ କରିସାରିଲେଣି । ତେଣୁ ଏହି ପବିତ୍ର ସ୍ଥାନ ଓ ଏକମାତ୍ର ଓଡ଼ିଶାରେ ପ୍ରଚଳିତ ପୁରୁଷୋତ୍ତମ ଉପାସନା ପ୍ରଭୃତି ତତ୍ତ୍ୱକୁ ବିଚାରକୁ ନେଇ ଐତିହାସିକ ଦୀନେଶଚନ୍ଦ୍ର ସରକାର ଏ ସ୍ଥାନ ଶ୍ରୀକ୍ଷେତ୍ର ବୋଲି ମତ ଦିଅନ୍ତି ।

ଏହି ସପ୍ତମ ଶତାବ୍ଦୀରେ ଶୈଳୋଦ୍ଭବ ବଂଶଙ୍କ ଦ୍ୱାରା କଙ୍ଗୋଦ (ଚିଲିକାର ଆଖପାଖ ଅଞ୍ଚଳ) ଶାସିତ ହେଉଥିଲା । ଚକ୍ରଧର ମାଧବ କଙ୍ଗୋଦ ରାଷ୍ଟ୍ରର ରାଷ୍ଟ୍ରଦେବ ରୂପେ ପ୍ରତିଷ୍ଠା ଲାଭ କରିଥିଲେ । ସମସାମୟିକ ଦକ୍ଷିଣ କୋଶଳ (ବର୍ତ୍ତମାନର ପଶ୍ଚିମ ଓଡ଼ିଶାରେ) ଶବରୀ ନାରାୟଣ ଓ ଉପକୂଳବର୍ତ୍ତୀ ଉତ୍କଳ ମଣ୍ଡଳରେ ପୁରୁଷୋତ୍ତମ ରାଷ୍ଟ୍ରଦେବତା ରୂପେ ଖ୍ୟାତି ଲାଭ କରିଥିଲେ । ହୁଏନ୍‌ସାଂ ଖ୍ରୀ : ୬୩୯ରେ ସମୁଦ୍ରତଟର ପ୍ରସିଦ୍ଧ ଚେଲିତୋଲ ସହରର ଯେଉଁ ବିବରଣୀ ଦେଇଛନ୍ତି, ତାର ବହୁ ସାମ୍ୟ ଶ୍ରୀକ୍ଷେତ୍ର ସହିତ ରହିଛି ।

ଅଷ୍ଟମ ଶତାବ୍ଦୀ ବେଳକୁ ଶବରୀ ନାରାୟଣ, ନୀଳମାଧବ, ଚକ୍ରଧର ମାଧବ, ପୁରୁଷୋତ୍ତମ କମଳାକ୍ଷ ଦେବ, ବୁଦ୍ଧ, ଜୀନ -ଏ ସମସ୍ତେ ଶ୍ରୀ ଜଗନ୍ନାଥଙ୍କ ବିଶାଳତ୍ୱରେ ବିଲୀନ ହୋଇଗଲେ । ଏ ସମୟରେ ପ୍ରାଚୀନ ଉତ୍କଳ ଯଦିଓ ଚାରି ଭାଗରେ ଯଥା-କଳିଙ୍ଗ(ଗଞ୍ଜାମ), ତୋଷାଳୀ(ଉତ୍ତର ଓଡ଼ିଶା ମୟୁରଭଞ୍ଜ ଆଦି), କଙ୍ଗୋଦ(ଚିଲିକା/ ଖଲ୍ଲୀକୋଟ) ଦକ୍ଷିଣ କୋଶଳ (ପଶ୍ଚିମ ଓଡ଼ିଶା) ନାମରେ ବିଭକ୍ତ ହୋଇଥିଲା ତଥାପି ଶ୍ରୀକ୍ଷେତ୍ରସ୍ଥ ପୁରୁଷୋତ୍ତମ ଶ୍ରୀ ଜଗନ୍ନାଥ ସର୍ବଜନ ପୂଜ୍ୟ ହୋଇ ସାରିଥିଲେ ।

ଭୌମକର ବଂଶର ପତନପରେ ନିଜ କନ୍ୟା ଦଣ୍ଡୀ ମହାଦେବୀଙ୍କ ଅନୁରୋଧରେ କୋଶଳ ସମ୍ରାଟ ସୋମବଂଶୀ ଯଯାତିକେଶରୀ କୋଶଳ ଓ ତୋଷାଳୀକୁ ଏକତ୍ର କରି ଦଶମ ଶତାବ୍ଦୀରେ ଯଯନଗର (ଆଧୁନିକ ଯାଜପୁର) କୁ ରାଜଧାନୀ ସ୍ଥାନାନ୍ତରିତ କରିଥିଲେ। ଯଯାତିକେଶରୀ ଓ ତାଙ୍କ ପୁତ୍ର ଉଦ୍ୟୋତ କେଶରୀ ଉଭୟ ଶୈବଧର୍ମାବଲମ୍ବୀ ଥିବାରୁ ଭୁବନେଶ୍ୱରସ୍ଥ କୃତିବାସ (ଆଧୁନିକ ଲିଙ୍ଗରାଜ) ମନ୍ଦିର ନିର୍ମାଣ କଲେ, ଯଦିଓ ପୂର୍ବରୁ ଶ୍ରୀକ୍ଷେତ୍ରରେ ଭୌମକର ବଂଶୀୟା ମହାରାଣୀ ପରମବୈଷ୍ଣବୀ ତ୍ରିଭୁବନ ମହାଦେବୀଙ୍କ ଦ୍ୱାରା ଆରମ୍ଭ କରାଯାଇଥିବା ପୁରୁଷୋତ୍ତମ ମନ୍ଦିର ଅସମ୍ପୂର୍ଣ୍ଣ ହୋଇ ରହିଥିଲା ।

ଅଷ୍ଟମ ଶତାବ୍ଦୀରେ ଗଙ୍ଗ ସମ୍ରାଟ ଦେବେନ୍ଦ୍ର ବର୍ମାଙ୍କ ପ୍ରଦତ୍ତ ତମ୍ବ ଶାସନରୁ ଶ୍ରୀକ୍ଷେତ୍ର ପୁରୁଷବନ ନାମରେ ନାମିତ ହୋଇଥିବାର ଜଣାପଡ଼େ । ଶ୍ରୀକ୍ଷେତ୍ରର ସମୁଦ୍ରତୀରବର୍ତ୍ତୀ ତମାଳଅରଣ୍ୟ ରାଜି ମଧ୍ୟରେ ପୁରୁଷୋତ୍ତମଙ୍କ ସୁଦୃଶ୍ୟ ପ୍ରାସାଦ ଥିବା କଥା ସଂସ୍କୃତ ନାଟ୍ୟକାର ମୁରାରୀ ମିଶ୍ରଙ୍କ ଅନର୍ଘ ରାଘବ ନାଟକରୁ ଜଣାପଡ଼େ । ଏ ନାଟକ ମଧ୍ୟ ଉକ୍ତ ରଥଯାତ୍ରା ଅବସରରେ ଅଭିନୀତ ହୋଇଥିଲା ବୋଲି ଜଣାପଡ଼େ । ନାଟକରେ ଏହି ଯାତ୍ରାରେ ଭାଗ ନେବା ଲାଗି ଅନୁରୋଧ କରି ସୂତ୍ରଧର କହୁଛନ୍ତି -ଭୋ ଭୋ ଲବଣାମ୍ବୁବେଳା ବନାନୀ

ତମାଲତରୁ କନ୍ଦଳ ତ୍ରିଭୁବନ ମୌଳିମଣ୍ଡନସ୍ୟ

ମହାନୀଳମଣେ କମଳା କୁଚ କଳସକେଳି ପତ୍ରାଙ୍କୁରସ୍ୟ

ଭଗବତଃ ପୁରୁଷୋତ୍ତମସ୍ୟ ଯାତ୍ରାୟାମୁପସ୍ଥାନୀୟା ସଭାସଦଃ

ଏ ଶ୍ଳୋକରୁ ଲବଣାବ୍ଧବେଳା ବନାନୀ, ତମାଳ ତରୁ ମଧ୍ୟରେ ମହାନୀଳମଣି ପୁରୁଷୋତ୍ତମଙ୍କ ସ୍ଥିତି ବୋଲି ଜଣାପଡ଼େ । ତେଣୁ ମହାନୀଳମଣି ବା ଶ୍ରୀନୀଳମାଧବ ଧାରଣାରୁ ପୁରୁଷୋତ୍ତମ ଧାରଣାକୁ ଜନସ୍ୱୀକୃତି ୯ମ ଶତାବ୍ଦୀ ବେଳକୁ ମିଳିସାରିଲାଣି , ଏହା ଅନୁମାନ କରାଯାଇ ପାରେ ।

ପ୍ରବୋଧ ଚନ୍ଦ୍ରୋଦୟ ନାଟକରେ ନାଟ୍ୟକାର କୃଷ୍ଣ ମିଶ୍ର ମଧ୍ୟ ସତ୍ୟକୁ ପୁନଃ ପ୍ରତିଷ୍ଠା କରିଛନ୍ତି ।

ଅସ୍ତ୍ୟୁତ୍କଳ ଦେଶାଦାଗତୋଽସ୍ମି

ଅସ୍ତି ତତ୍ର ସାଗରତୀରେ ପୁରୁଷୋତ୍ତମ ନାମଧେୟ ଦେବାୟତନମ୍,

ଏସବୁ ତତ୍ତ୍ୱକୁ ବିଶ୍ଳେଷଣ କରି ଗବେଷକ ରାଜଗୁରୁ କହନ୍ତି, ଶ୍ରୀପୁରୁଷୋତ୍ତମଙ୍କ ମନ୍ଦିର ସମୁଦ୍ର କୂଳରେ ଥିଲା । ଏଠାରେ ପ୍ରଶ୍ନ ଉଠେ, ୯ମ ଶତାବ୍ଦୀ ବେଳକୁ ବର୍ତ୍ତମାନ ଯେଉଁଠାରେ ମନ୍ଦିର ଅଛି (ସିଂହଦ୍ୱାର ସନ୍ନିକଟ) ସେଠାରେ ଥିଲା ଓ ଏହାର ଉପକଣ୍ଠରେ ସମୁଦ୍ରଥିଲା ନା ବର୍ତ୍ତମାନ ଯେଉଁଠାରେ ସମୁଦ୍ର ଅଛି (ଜଗେଶ୍ୱରୀ ସେପଟେ ଟିକରାଗଣ୍ଡି ଖୁଣ୍ଟି ପାଖେ) ସେଠାରେ ସମୁଦ୍ର ଥିଲା ଓ ତାହାର କୂଳରେ ପୁରୁଷୋତ୍ତମଙ୍କ ମନ୍ଦିର ଥିଲା ? ଗବେଷକମାନଙ୍କ ଆଲୋଚନା ପାଇଁ କେତେକ ସମ୍ଭାବନା ଏଠାରେ ଉପସ୍ଥାପିତ କରାଗଲା ।

(୧) ଅନର୍ଘରାଘବ ନାଟ୍ୟକାର ଓ କବି କୃଷ୍ଣମିଶ୍ର ଉଭୟ ପୁରୁଷୋତ୍ତମଙ୍କ ମନ୍ଦିର ସମୁଦ୍ରକୂଳ ତମାଳ ଅରଣ୍ୟ ଭିତରେ ଥିବାର ଉଲ୍ଲେଖ କରିଛନ୍ତି ।

(୨) ଦାମୋଦର ନାମକ ବାଳକ ପୁରୁଷୋତ୍ତମଙ୍କୁ ଦର୍ଶନ କରି ପ୍ରାଣତ୍ୟାଗ କରିଥିବା କଥା ମଧ୍ୟପ୍ରଦେଶର ସାତନା ଜିଲ୍ଲାର ଚୌରାଠାରେ ଥିବା ସରସ୍ୱତୀ ମନ୍ଦିର ଅଭିଲେଖର ୩୫ ଶ୍ଳୋକରୁ ଜଣାପଡ଼େ ।

ଏହାକୁ ରାଜଗୁରୁ ବିଶ୍ଳେଷଣ କରି କହନ୍ତି :-

The name of Puri derived from Purusottama khetra which is the seat of lord purusottama. His temple was located on the seashore. Before he was removed to a newly built temple to a higher ground level in or about the tenth Century A.D. (Inscriptions of the temple of Puri and Origin of the Purusottame Jagannath-p-45)

ପୂର୍ବୋକ୍ତ ସଂସ୍କୃତ ଓ ବଙ୍ଗଳା ଉଦ୍ଧୃତିର ପୂର୍ବାପର ପ୍ରସଙ୍ଗ ବିଚାର କରି ଜଣାଯାଇପାରେ, ସରସ୍ୱତୀ ମନ୍ଦିର ତାମ୍ର ଅଭିଲେଖ ଅନୁସାରେ ଦାମୋଦର ନାମକ ଶିଶୁ ଶ୍ରୀକ୍ଷେତ୍ର ସାଗରରେ ସ୍ନାନ କଲାବେଳେ ସମୁଦ୍ର ପାଣିରେ ବୁଡ଼ି ମରିଗଲା ଓ ମଲାବେଳେ ସେ ପୁରୁଷୋତ୍ତମଙ୍କ ଦର୍ଶନ ଲାଭ କରିଥିଲା । ଏଥିରୁ ଅନୁମାନ କରାଯାଇ ପାରେ, ପୁରୁଷୋତ୍ତମଙ୍କ ମନ୍ଦିର ବର୍ତ୍ତମାନ ଥିବା ସମୁଦ୍ର କୂଳରେ ଥିଲା, ଯାହା ଫଳରେ ମରିବା ଅବସ୍ଥାରେ ଦାମୋଦର ପୁରୁଷୋତ୍ତମଙ୍କ ଦର୍ଶନ ପାଇ ପାରିଥିଲା । ଏହାର ଅନ୍ୟ ଏକ ଅର୍ଥ କରାଯାଇପାରେ ବର୍ତ୍ତମାନର ମନ୍ଦିରକୁ ଦେଖିବା । ସମୁଦ୍ରର ଭିତରକୁ ବହୁଦୂର ଚାଲିଗଲେ ଜ୍ୟାମିତିକ ନ୍ୟାୟରେ ନୀଳଚକ୍ର ବା ଚକ୍ରନାରାୟଣ ଦୃଷ୍ଟ ହୁଅନ୍ତି । ପୁରୀ ଲୋକେ ଚକ୍ର ନାରାୟଣଙ୍କୁ ପୁରୁଷୋତ୍ତମ ଜ୍ଞାନ କରନ୍ତି । ତେଣୁ ଚକ୍ର ମଣୋହି/ଚକ୍ର ଦର୍ଶନ ଦ୍ୱାରା ସାଧାରଣ ଭୋଗକୁ ମାହାର୍ଦ୍ଦର ସ୍ୱୀକୃତି ମିଳିଥାଏ । ଏ ଦୃଷ୍ଟିରୁ ଦାମୋଦର ସମୁଦ୍ରରେ ଅତିଦୂରକୁ ଚାଲିଯିବା ଫଳରେ ବର୍ତ୍ତମାନ ମନ୍ଦିର ଶୀର୍ଷସ୍ଥ ନୀଳଚକ୍ର ବା ଚକ୍ରନାରାୟଣଙ୍କୁ ହୁଏତ ଦର୍ଶନ କରିଥିଲା ଏହା ଗ୍ରହଣ କରାଯାଇପାରେ । ମାତ୍ର ଏ ଘଟଣା ୧୦ମ ଶତାବ୍ଦୀ ପୂର୍ବର । ୧୦ମ ଶତାବ୍ଦୀ ବେଳକୁ ଗଙ୍ଗରାଜତ୍ୱ ଆରମ୍ଭ ହୋଇନାହିଁ । ସୋମବଂଶୀ ସମ୍ରାଟ ଯଯାତି ମହାଶିବଗୁପ୍ତଙ୍କୁ ରାଜଧାନୀ ଯାଜନଗରରେ ସାକ୍ଷାତ କରି ଆଦି ଶଙ୍କର (ଖ୍ରୀ : ୭୮୮-୮୨୦) ବରତମ ମନ୍ଦିରର ଜୀର୍ଣ୍ଣ ସଂସ୍କାର ତଥା ଠାକୁରଙ୍କ ମୂର୍ତ୍ତି ଉଦ୍ଧାର କରି ଦୀର୍ଘ ୧୪୪ ବର୍ଷ ପରେ (ଶୋଭନ ଦେବଙ୍କ ସମୟରେ ଯବନ ରକ୍ତବାହୁ ଶ୍ରୀକ୍ଷେତ୍ର ଆକ୍ରମଣ କରିବାରୁ ଦେବ ପ୍ରତିମା ସ୍ଥାନାନ୍ତରିତ ହୋଇଥିଲେ ବୋଲି ମାଦଳା ପାଞ୍ଜିରେ ଉଲ୍ଲେଖ ଅଛି) ମନ୍ଦିରରେ ତ୍ରୈଲୋକ୍ୟନାଥ ବା କମଳାକ୍ଷ ଦେବ ବା ପୁରୁଷୋତ୍ତମଙ୍କର ପ୍ରତିଷ୍ଠା କଲେ। ଐତିହାସିକମାନଙ୍କ ମତ ଅନୁସାରେ ଏ ମନ୍ଦିର ବର୍ତ୍ତମାନର ମୁକ୍ତିମଣ୍ଡପ ନିକଟସ୍ଥ ନୃସିଂହ ମନ୍ଦିର । ସମୁଦ୍ରର ଭିତରେ ଭିତରକୁ ଗଲେ ମଧ୍ୟ ନୃସିଂହ ମନ୍ଦିରର ଉଚ୍ଚତା କମ ଥିବାରୁ ଏହା ଶୀର୍ଷସ୍ଥ ଚକ୍ର ନାରାୟଣ ଦର୍ଶନ ବୋଧହୁଏ ସମ୍ଭବ ହେବ ନାହିଁ । ତେଣୁ ବର୍ତ୍ତମାନ ସ୍ଥିତ ମନ୍ଦିର ଗଙ୍ଗରାଜତ୍ୱ ବେଳେ ନିର୍ମିତ ହୋଇଥିଲା । ଗଙ୍ଗବଂଶର ପ୍ରଥମ ଉତ୍କଳ ବିଜେତା ଅନନ୍ତ ବର୍ମନ ଚୋଡ଼ଗଙ୍ଗ ଦେବ ସୋମବଂଶ ସମ୍ରାଟ କର୍ଣ୍ଣକେଶରୀଙ୍କୁ ଖ୍ରୀ: ୧୧୧୨ରେ (ଡ଼.ନବୀନ ସାହୁଙ୍କ ମତରେ ଖ୍ରୀ: ୧୧୧୦ରେ) ପରାଜିତ କରି ଉତ୍କଳ ଅଧିକାର କରିଥିଲେ ମଧ୍ୟ ଉତ୍କଳର ଆଭ୍ୟନ୍ତରୀଣ ଗଣ୍ଡଗୋଳ ଯୋଗୁଁ ନିଜେ ଶାସନ କରି ନ ପାରି ନିଜର ଅଧୀନସ୍ଥ କର୍ଣ୍ଣକେଶରୀଙ୍କୁ ଉତ୍କଳଶାସନ କରିବାକୁ ଦେଇଥିଲେ ଓ ଅନ୍ୟାନ୍ୟ ସୋମବଂଶୀ ଶାସିତ ଭୂଖଣ୍ଡ ଦୀର୍ଘ ୧୩/୧୪ ବର୍ଷ ପରେ (ଖ୍ରୀ: ୧୧୨୬)ରେ କରଗତ କରି ସ୍ୱଶାସନ ପ୍ରତିଷ୍ଠା କରିଥିଲେ । ତେଣୁ ୧୦ମ ଶତାବ୍ଦୀ ପୂର୍ବରୁ ବର୍ତ୍ତମାନର ଉଚ୍ଚତାର ମନ୍ଦିର ନିର୍ମାଣ ହୋଇ ନଥିବାରୁ ଦାମୋଦରର ସମୁଦ୍ର ଭିତରୁ ବର୍ତ୍ତମାନ ମନ୍ଦିର ଶୀର୍ଷସ୍ଥ ନୀଳଚକ୍ରକୁ ଦେଖିବା ସମ୍ଭାବନା କମ୍ ବୋଲି କୁହାଯାଇପାରେ ।

ଅନନ୍ତ ବର୍ମନ ଚୋଡ଼ଗଙ୍ଗ ନିଜକୁ ପରମ ମାହେଶ୍ୱର ପରମ ଶିବ ଉପାସକ(ତାନ୍ତ୍ରିକ ମତ୍ତ) ବିଦ୍ୟା ପ୍ରବୀଣ ଘୋଷଣା କଲେ ମଧ୍ୟ ଏହାଙ୍କ ତାମ୍ର ଫଳକ ବିଶ୍ଳେଷଣରୁ ଏ ବୈଷ୍ଣବ ଧର୍ମାନୁରାଗୀ ଥିବାର ପ୍ରମାଣ ମିଳେ । ଏହାଙ୍କ ଶ୍ୱଶୁର ରାଜଚୋଡ଼ (କୁଲୋତ୍ତୁଙ୍ଗ ଦେବଙ୍କର ୩ୟ ପୁତ୍ର) ବର୍ତ୍ତମାନର ଗୋଦାବରୀ ଜିଲ୍ଲାର ସର୍ପାବରମ ଠାରେ ପୁରୁଷୋତ୍ତମଙ୍କର ବିରାଟ ମନ୍ଦିର ନିର୍ମାଣ କରିଥିଲେ । ରାଜଚୋଡ଼ଙ୍କ କନ୍ୟା ଚୋଡ଼ଗଙ୍ଗ ଦେବଙ୍କ ପାଟମହିଷୀ ଉଣ୍ଡଚୋଡ଼ ବା ଜୟଚୋଡ଼ଙ୍କ ଆଗ୍ରହରୁ ଗୁଣ୍ଡିଚାଯାତ୍ରାର ସୃଷ୍ଟି ଓ ଅଭିବୃଦ୍ଧି ବୋଲି ବିଶ୍ୱାସ କରାଯାଏ । ଚୋଡ଼ଗଙ୍ଗଙ୍କ କନିଷ୍ଠ ଭ୍ରାତା ପରମାର୍ଦ୍ଦ ଦେବ ଓ ତାଙ୍କ ପତ୍ନୀମାନେ ଶ୍ରୀପୁରୁଷୋତ୍ତମଙ୍କର ପରମ ଭକ୍ତ ଥିବାର ପ୍ରମାଣ ମିଳେ । ଚୋଡ଼ଗଙ୍ଗଙ୍କ ଶାସନ କାଳରେ ଶ୍ରୀ ସଂପ୍ରଦାୟର ପ୍ରବର୍ତ୍ତକ ପ୍ରଚାରକ ଶ୍ରୀ ରାମାନୁଜାଚାର୍ଯ୍ୟ ମେଲୁକୋଟରୁ ଦିଲ୍ଲୀ ପର୍ଯ୍ୟନ୍ତ ଯାତ୍ରା ଅବସରରେ ଦୀର୍ଘ ଚାରିବର୍ଷ (୧୧୧୩-୧୧୧୭) ଶ୍ରୀ କ୍ଷେତ୍ରରେ ରହି ପରମମାହେଶ୍ୱର ଚୋଡ଼ଗଙ୍ଗ ଦେବଙ୍କୁ ପରମ ବୈଷ୍ଣବରେ ରୂପାନ୍ତର କରିଥିଲେ ।

ଐତିହାସିକ ମନମୋହନ ଚକ୍ରବର୍ତ୍ତୀ ମଧ୍ୟ ବର୍ତ୍ତମାନର ପୁରୁଷୋତ୍ତମଙ୍କ ମନ୍ଦିର ଖ୍ରୀ: ୧୦୮୫-୧୦୯୦ ମଧ୍ୟରେ ହୋଇଥିଲା ବୋଲି କହନ୍ତି ।

ପ୍ରତ୍ନତତ୍ତ୍ୱବିତ୍ ତଥା ଐତିହାସିକ ପୂର୍ଣ୍ଣଚନ୍ଦ୍ରାଜନ୍ ମଧ୍ୟ ବର୍ତ୍ତମାନର ମନ୍ଦିର ପୂର୍ବରୁ ବହୁ ବାର ଭାଙ୍ଗିଥିଲା ଓ ଏହାର ଉକ୍ତ ମୂଳଦୁଆ ଉପରେ ନୂତନ ମନ୍ଦିର ନିର୍ମିତ ହୋଇଥିଲା ବୋଲି ମତ ଦେଇଛନ୍ତି । ତେଣୁ ପରୋକ୍ଷରେ ୧୦ମ ଶତାବ୍ଦୀ ବେଳକୁ ଉକ୍ତ ଭୂମିରେ ମନ୍ଦିର ନିର୍ମାଣ ଓ ପ୍ରତିମା ସ୍ଥାନାନ୍ତର କଥାକୁ ଅସ୍ୱୀକାର କରାଯାଇ ନପାରେ । ଭୌଗୋଳିକ ଦୃଷ୍ଟିକୋଣରୁ ମଧ୍ୟ ବର୍ତ୍ତମାନ ମନ୍ଦିରର ସ୍ଥିତି ତଥା ସମୁଦ୍ରର ପତନ ବିଚାରକୁ ନେଲେ ସମୁଦ୍ର ଅପେକ୍ଷାକୃତ ନିମ୍ନ ଭୂମିରେ ରହିଛି - ଏହା ଜଣାପଡ଼େ । ବର୍ତ୍ତମାନ ମନ୍ଦିର ଚାରିପାଖେ ଥିବା ହରଚଣ୍ଡି ସାହି, ବାଲିସାହି, ବାସେଲୀ ସାହି, କାଳିକା ଦେବୀ ସାହି ଆଦି ସମୁଦ୍ର ପତନଠାରୁ ଉଚ୍ଚରେ ଥିବାରୁ ଆଜି ମଧ୍ୟ ଏ ଅଞ୍ଚଳକୁ ଜଳଯୋଗାଣ ଉଚ୍ଚକର ବ୍ୟାପାର ହୋଇପଡୁଛି । ଏହାଛଡ଼ା କଚେରୀ ବା ମୋଚି ସାହି ଛକରୁ ନାରୀ ସେବା ସଦନ, କୋଳିଆ ସାହି ଦେଇ ସମୁଦ୍ର କୂଳକୁ ଯାଉଥିବା ରାସ୍ତାକୁ ଦେଖିଲେ ଶ୍ରୀକ୍ଷେତ୍ର ଯେ ପଶ୍ଚିମରୁ ପୂର୍ବାଭିମୁଖୀ ହୋଇ ନିମ୍ନ ହୋଇଛି, ଏହା ଜଣାପଡ଼େ ।

ଗବେଷକ ରାଜଗୁରୁ ପୁରୀ ସମୁଦ୍ର କୂଳରେ ୪ର୍ଥ ଶତାବ୍ଦୀ ବେଳକୁ ଏକ ମଣ୍ଡପ ବା ଧର୍ମ ଅର୍ଚ୍ଚନା ସ୍ଥଳୀ ଥିବାର ଉଲ୍ଲେଖ କରିଛନ୍ତି । ଏହି ମଣ୍ଡପରେ ପୁରୁଷ ସୂକ୍ତ ପାଠ ହେଉଥିବାରୁ ପରବର୍ତ୍ତୀ ଅବସ୍ଥାରେ ଏହା ପୁରୁଷୋତ୍ତମ ମନ୍ଦିରରେ ହୁଏତ ପରିଣତ ହୋଇପାରେ ।

ମାଦଳାପାଞ୍ଜି ବର୍ଣ୍ଣନା ଅନୁସାରେ ସମୁଦ୍ରର ବାଟବାର ଲୁଥାର ଭଙ୍ଗା ଓ ପ୍ଲାବନ ଭୟ ଯୋଗୁ ଠାକୁରଙ୍କୁ ପୁରୁଷୋତ୍ତମ କ୍ଷେତ୍ରରୁ ବୌଦ୍ଧ ସୋମବଂଶୀ ରାଜାଙ୍କ ରାଜ୍ୟ ଦକ୍ଷିଣ କୋଶଳର ପ୍ରଥମ ରାଜଧାନୀ ସୁବର୍ଣ୍ଣପୁର(ସୋନପୁର) ସମୀପବର୍ତ୍ତୀ ବିନିକା ଗ୍ରାମକୁ ନିଆଯାଇଥିଲା, ଯାହା ମହାଭବଗୁପ୍ତ ଯଯାତିଙ୍କ ଦ୍ୱାରା ଉଦ୍ଧାର ଓ ମନ୍ଦିରରେ ପ୍ରତିଷ୍ଠା ହୋଇ ସେହି ଦିବସର ସ୍ମରଣରେ ଠାକୁରଙ୍କ ପାଖେ ସୁବର୍ଣ୍ଣମୁଦ୍ରା ଭେଟି ଦେଇ ସେହି ଦିନଠାରୁ ଗୁଣିଆ ଓ ନୂତନ ଅଙ୍କ ଗଣନା କରାଯାଉଥିବାର ସମର୍ଥିତ ତଥ୍ୟ ମିଳୁଛି ।

ରକ୍ତବାହୁ ବା ଯବନ ଆକ୍ରମଣ ଯୋଗୁ ଠାକୁରମାନେ ସ୍ଥାନାନ୍ତରିତ ହେବାରୁ ମନ୍ଦିର ଅଯତ୍ନରେ ଅଲୋଡ଼ା ହୋଇ ପଡ଼ିଥିବ । ଏହି ଯୋଗୁଁ ପରବର୍ତ୍ତୀ ଅବସ୍ଥାରେ ଭଗ୍ନ ହେବା ଯୋଗୁ ଭାଙ୍ଗି ଯାଇଥିବ ବା

ସମ୍ଭାରର ଆବଶ୍ୟକତା ପଡ଼ିଥିବ । ଦ୍ୱାଦଶ ଶତାବ୍ଦୀରେ ସାଗର ତୀରସ୍ଥ ମଣ୍ଡପ ବା ମନ୍ଦିର ଭୌଗୋଳିକ (ଲୁଣି ପବନ ଆଦି) ଓ ସାମାଜିକ କାରଣ ଯୋଗୁଁ ବିପର୍ଯ୍ୟସ୍ତ ହୋଇ ଯାଇଥିବା କଥା ବର୍ଣ୍ଣନା କରାଯାଇଛି । ତେଣୁ ୧୨ଶ ଶତାବ୍ଦୀ ପର୍ଯ୍ୟନ୍ତ ସମୁଦ୍ର ତୀରରେ ଆଧ୍ୟାତ୍ମିକ ସାଧନାସ୍ଥଳୀ ଥିବାର ସ୍ୱୀକାର କରାଯାଇପାରେ ।

ବର୍ତ୍ତମାନର ସ୍ୱର୍ଗଦ୍ୱାର ତଥା ଚକ୍ରତୀର୍ଥ ହିନ୍ଦୁଜଗତର ଦୁଇଟି ପ୍ରଧାନସ୍ଥାନ । ମୃତଦେହ ଦାହ ହେବାର ସ୍ଥାନକୁ ଶ୍ମଶାନ କୁହାଯିବା ବେଳେ ଶ୍ରୀକ୍ଷେତ୍ରରେ ଏହା ସ୍ୱର୍ଗର ପଥ । ଅମାବାସ୍ୟା ଦିନ ଏଠାକୁ ଅମାବାସ୍ୟା ନାରାୟଣ ସାଗର ସ୍ନାନ ପାଇଁ ଆସି ଦେବନୀତି କରିଥାନ୍ତି । ଏ ସ୍ୱର୍ଗଦ୍ୱାର ଦେବତା, ଗନ୍ଧର୍ବ ଆଦିଙ୍କ ଶ୍ରୀକ୍ଷେତ୍ର ପ୍ରବେଶ ପଥ । ଏଠାରେ ବିଭୀଷଣ ମନ୍ଦିରର ମୁଖ୍ୟ ସେବାନାୟକ ପଟ୍ଟଯୋଶୀ ମହାପାତ୍ରଙ୍କୁ ରତ୍ନକଙ୍କଣ ଦେଇଥିବାର କିମ୍ବଦନ୍ତୀ ରହିଛି ।

ଶ୍ରୀକ୍ଷେତ୍ରର ସାମାବଳୟ ଭିତରେ ଏକ ପ୍ରାନ୍ତରେ ସ୍ୱର୍ଗଦ୍ୱାର ଥିବାବେଳେ ଅନ୍ୟପ୍ରାନ୍ତର ଚକ୍ରତୀର୍ଥ ବିସ୍ତୀର୍ଣ୍ଣ ବାଲୁକା ପ୍ରାନ୍ତର ଭିତରେ ଦୁଇଟି ପ୍ରସ୍ଥ ତୋରଣ । ଚକ୍ରତୀର୍ଥରେ ସୁଦର୍ଶନ ଚକ୍ର ପଡ଼ିଥିଲେ । ଏଠାରେ ମାଳିନୀ ନଦୀ ବାଙ୍କି ମୁହାଣରେ ମିଶିଥିଲା ଓ ବାଙ୍କି ମୁହାଣରେ ଶଙ୍ଖ ଚକ୍ର ଚିହ୍ନିତ ଦାରୁ ଲାଗିଥିଲା । ଏଠାରେ ମନ୍ଦିର ପୋତି ହୋଇଥିଲା ।

ଗାଲମାଧବ ଉପାଖ୍ୟାନରୁ ଜଣାପଡ଼େ, ସମୁଦ୍ରକୂଳରେ ଘୋଡ଼ା ଛୁଟାଇ ଯିବାବେଳେ ପୋତି ହୋଇଥିବା ମନ୍ଦିରର ଚକ୍ର ଘୋଡ଼ା ଟାପୁରେ ବାଜିଥିଲା । ଏଥିରୁ ସମୁଦ୍ର କୂଳରେ ମନ୍ଦିରଥିବା ଅନୁମିତ ହୁଏ ।

ଦ୍ୱିତୀୟ ଯୁକ୍ତିଟି ବର୍ତ୍ତମାନ ମନ୍ଦିର ଯେଉଁଠାରେ ଅଛି, ସେଠାରେ ମନ୍ଦିର ଥିଲା । ସମୁଦ୍ର ଏ ମନ୍ଦିର ପାଖରେ ହିଁ ଥିଲା । ସମୟ କ୍ରମେ ସମୁଦ୍ର ଘୁଞ୍ଚି ଯାଇଛି ।

(୧) ଏ ଯୁକ୍ତିକୁ ପର୍ଯ୍ୟାଲୋଚନା କଲେ ଜଣାଯାଏ, ଶିଶୁ ଦାମୋଦରର ପ୍ରାଣ ସମୁଦ୍ରରେ ସ୍ନାନ କରୁଥିବାବେଳେ ଶ୍ରୀ ପୁରୁଷୋତ୍ତମଙ୍କ ଦର୍ଶନ କରୁ କରୁ ଚାଲିଯାଇ ଥିଲା । ତେଣୁ ମନ୍ଦିର ନିକଟରେ ହିଁ ସମୁଦ୍ର ଥିଲା । ଏତେ ନିକଟରେ ଥିଲା ଯେ ପାଣିରେ ବୁଡ଼ୁ ବୁଡ଼ୁ ମଧ ଦାମୋଦର ପୁରୁଷୋତ୍ତମଙ୍କ ଦର୍ଶନ ପାଇ ପାରିଥିଲା । ଏଠାରେ ଚକ୍ର ନାରାୟଣଙ୍କ ଦର୍ଶନ କଥା ଯଦି ଚିନ୍ତା କରାଯାଏ, ତେବେ ବର୍ତ୍ତମାନର ମନ୍ଦିର, ଯାହା ଗଙ୍ଗରାଜତ୍ୱରେ ନିର୍ମିତ ହୋଇଥିଲ । ତା ୧୦ମ ଶତାବ୍ଦୀ ପୂର୍ବରୁ ନିର୍ମିତ ହୋଇନଥିଲା । ୯ମ ଶତାବ୍ଦୀରେ ଯେଉଁ ନୃସିଂହ ମନ୍ଦିର ନିର୍ମିତ ହୋଇଥିଲା, ତାହା ଏତେ ଉଚ୍ଚ ନଥିଲା, ଯାହାକି ଦୁଇ ତିନି କିଲୋମିଟର ଦୂରକୁ ଦେଖାଯିବ ।

(୨) ସମୁଦ୍ର ଯେ କ୍ରମଶଃ ଘୁଞ୍ଚି ଯାଉଛି, ଏହା ସତ୍ୟ । ଜନବସତି ପାଇଁ ଭୂଭାଗର ଆବଶ୍ୟକତା, ନଦୀ ଉପକୂଳ ବା ମୁହାଣ କ୍ରମଶଃ ପୋତି ହେବା ଓ ଅନ୍ୟ ପ୍ରାକୃତିକ କାରଣ ଯୋଗୁ ସମୁଦ୍ର ଓ ଅନ୍ୟାନ୍ୟଭାଗ କ୍ରମଶଃ ପୋତି ହୋଇ ଯାଉଛି ବା ଦୂରକୁ ଘୁଞ୍ଚି ଯାଉଛି । କୋଣାର୍କର ସମୟ (୧୨୧୫-୧୨୪୨) ମତାନ୍ତରେ ଖ୍ରୀ : ୧୨୧୧-୧୨୫୮) ଲାଙ୍ଗୁଳିଆ ନରସିଂହ ଦେବ ଗୌଡ଼ (ବର୍ତ୍ତମାନର ବଙ୍ଗ) ଦେଶ ଜୟ କରିବାର ସ୍ମାରକୀ ରୂପେ ବିଜୟ ଲାଭ ସମ୍ପଦରେ ଚନ୍ଦ୍ରଭାଗା ନଦୀ ଓ ସାଗର ସମୀପସ୍ଥ ପଦ୍ମଡୋଲା ଗଣ୍ଡ ପୋତାଇ (ମନ୍ଦିର ତଥା ସ୍ଥପତି ଶିବେଇ ସାନ୍ତରାଙ୍କ ଜାତହୁଆ ଉପାଖ୍ୟାନ ସ୍ମରଣୀୟ) କୋଣାର୍କ ମନ୍ଦିର ନିର୍ମାଣ କରିଥିଲେ ।

୧୨ ବର୍ଷ ପରେ ମନ୍ଦିର ନିର୍ମାଣ ସମ୍ପୂର୍ଣ୍ଣ ହେବା ମୁହୂର୍ତ୍ତରେ ମହାନ ଜାତିର ସ୍ୱାଭିମାନ ଓ ପ୍ରତିଭାର ପ୍ରତୀକ ଧର୍ମପଦ କୋଣାର୍କ ମନ୍ଦିର ଚୂଡ଼ାରୁ ପଦ୍ମତୋଲା ଗଣ୍ଡକୁ ଲମ୍ଫ ଦେଇ ଆତ୍ମାହୁତି ଦେଇଥିଲା । ବର୍ତ୍ତମାନ ମନ୍ଦିରଠାରୁ ସମୁଦ୍ର ଘୁଞ୍ଚିଯାଇ ପ୍ରାୟ ୩ କିଲୋମିଟର ଦୂରରେ ଅଛି । ଏତେଦୂର ଧର୍ମପଦ କେବେ ଲମ୍ଫ ମାରି ସମୁଦ୍ର ଭିତରେ ଆତ୍ମାହୁତି କରିବା ଅସମ୍ଭବ । ତେଣୁ ମନ୍ଦିର ନିକଟରେ ସମୁଦ୍ରଥିଲା, ଯାହା କ୍ରମଶଃ ଘୁଞ୍ଚି ଯାଇଛି ।

(୩) ସାଧାରଣତଃ ଦେବାଳୟ ସାଗର, ନଦୀ, ଜଳାଶୟ ତୀରରେ ସ୍ଥାପନ କରିବା ଶାସ୍ତ୍ରବିଧି । ତେଣୁ ସାଗର ଶ୍ରୀମନ୍ଦିର ନିକଟରେ ହିଁ ଥିବ ।

(୪) ଆଜି ସମୁଦ୍ର ଶ୍ରୀମନ୍ଦିରଠାରୁ ଯେତିକି ବାଟ, କୋଣାର୍କଠାରୁ ଅବଲୁପ୍ତ ଚନ୍ଦ୍ରଭାଗା ନଦୀ ଓ ସାଗର ସାମାନ୍ୟ କମ ବା ସେତିକି ବାଟ । ତେଣୁ ସମୟକ୍ରମେ ସମୁଦ୍ର ସ୍ୱସ୍ଥିତିରୁ ଅପସରି ଯାଇଛି ଏହା ସତ୍ୟ ।

(୫) ସମୁଦ୍ରର ଅପସରି ଯିବା କିମ୍ବଦନ୍ତୀ ସ୍ୱୀକୃତ । ଶରିଙ୍କ ଜଗନ୍ନାଥ ଦାସଙ୍କର ପ୍ରାର୍ଥନାରେ ତୁଷ୍ଟ ସମୁଦ୍ର ସାତ ଲହଡ଼ୀ ପଛକୁ ଫେରିଯାଇ ତାଙ୍କ ଭଜନ ସାଧନ ଲାଗି ଭୂଭାଗ ଦେଇଥିଲା।

(୬) ସମୁଦ୍ର ଘୁଞ୍ଚିଯିବା କଥା ଶ୍ରୀକ୍ଷେତ୍ରର ଭୌଗୋଳିକ ଐତିହ୍ୟ ତଥା ସ୍ଥପତି ବିଜ୍ଞାନ ଦ୍ୱାରା ସ୍ୱୀକୃତ ।

(କ) ବର୍ତ୍ତମାନର ସହରର ମଧ୍ୟଭାଗରେ ମନ୍ଦିର ପାଖରେ ସମୁଦ୍ର ଥିଲା ଓ ସମୁଦ୍ରର ବାଲି ଉପରେ ବିଭିନ୍ନ ବସତି ଗଢ଼ି ଉଠିଥିଲା । ତେଣୁ ଏବେ ମଧ ବିଭିନ୍ନ ସାହିରେ ପ୍ରଭୁତ ବାଲିବନ୍ତ ଦୃଷ୍ଟିଗୋଚର ହୁଏ ।

(ଖ) ସମୁଦ୍ର ବାଲିର ପ୍ରାବଲ୍ୟ ଓ ସାଗରର ସନ୍ନିକଟ ଯୋଗୁଁ କେତେକ ସାହିର ନାମ (ଯଥା ବାଲିସାହି) ଅନୁରୂପ ହୋଇଥିବା ଏହା ଅନୁମାନ କରାଯାଇପାରେ ।

(ଗ) ପୁରୀ ସହରର ବସତି ସ୍ଥାପନ ବିଶ୍ଳେଷଣ କଲେ ଜଣାଯାଏ, ପୂର୍ବପୁରୀ ଯେଉଁଠାରେ ମୁଖ୍ୟତଃ ମନ୍ଦିର ସେବକ ସମ୍ପ୍ରଦାୟଙ୍କ ଅଧ୍ୟ ବସତି ଥିଲା, ତାର ଗୃହଗୁଡ଼ିକ ଉଚ୍ଚ ଭୂମିରେ ପ୍ରତିଷ୍ଠିତ ଓ ଏହାର ପିଣ୍ଡା ସବୁ ବହୁ ଉଚ୍ଚା ଅନୁମିତ ହୁଏ । ଅପସୃୟମାନ ସମୁଦ୍ର ଛାଡ଼ି ଯାଇଥିବା ବାଲିସ୍ତୂପ ଉପରେ ଏମାନେ ବସତି ସ୍ଥାପନ କରିଥିବେ । ତାଙ୍କୁ ଶ୍ରୀମନ୍ଦିରରେ ପ୍ରତ୍ୟହ ପୂଜା ଅର୍ଚ୍ଚନା କରିବାକୁ ଥିବାରୁ ଏମାନେ ମନ୍ଦିର ଠାରୁ ଦୂରରେ ବସତି ସ୍ଥାପନକୁ ପସନ୍ଦ କରିନଥିବେ । ତେଣୁ ଉଚ୍ଚଭୂମି ହେଲେ ମଧ ଏଠାରେ ବାସ କରିବା ତାଙ୍କ ପାଇଁ ସୁହଣୀୟ ହୋଇଥିବା ।

(ଘ) ସମୁଦ୍ର ଘୁଞ୍ଚି ଯିବା ପରେ ପୁଣି ଜୁଆର ଭଟ୍ଟା ବା ଝଡ଼ ତୋଫାନ ସମୁଦ୍ର ମାଡ଼ି ଆସିବ, ଏ ଆଶଙ୍କାରେ ଗୃହକୁ ତଥା ଗୃହର ପ୍ରବେଶ ପଥ ବାଲିପିଣ୍ଡା ସବୁକୁ ଉଚ୍ଚା କରିଥିବେ । ଏହି ଉଚ୍ଚା କରିବା ପଛରେ ପଛପଟେ ଥିବା ନୀଚ ସ୍ଥଳଭାଗ ମଧ୍ୟରେ ଏକ ଭାରସାମ୍ୟ ରକ୍ଷା ହୋଇ ପାରିଥିବ । ଏ ପ୍ରକାର ଗୋଷ୍ଠୀଙ୍କ ବସତି ଓ ଜୀବନଚର୍ଯ୍ୟା ସ୍ଥାନୀୟ ଜନ ଜୀବନକୁ ପ୍ରଭାବିତ କରିଥିବ । ଜନଚେତନାରେ ଉଦ୍‌ବେଗ ହୋଇଥିବା

ଝୁ ଖ୍ରିରେ ବହିବ, କୋକିଳପରି ଭାଷିବ, ଯାହା ପରବର୍ତ୍ତୀ ଅବସ୍ଥାରେ 'ମୋ ମଧୁର ବଚନ, ଜହି ତୋଷିବ ଜନମନ' ଭଳି ଆପ୍ତ ବାକ୍ୟରେ ପରିଣତ ହୋଇଛି ।

(ଡ) ସମୁଦ୍ର ଘୁଞ୍ଚି ଯିବାର ଅନ୍ୟ ଏକ ପ୍ରମାଣ ମଶାଣି ମହାବୀରଙ୍କ ସ୍ଥିତି । ମଶାଣି ପାଖେ ମଶାଣି ମହାବୀର ଏକଦା ପ୍ରତିଷ୍ଠିତ ହୋଇଥିବେ । ମାତ୍ର ବର୍ତ୍ତମାନ ମଶାଣି ଓ ମଶାଣି ମହାବୀରଙ୍କ ଦୂରତ୍ୱ ଅନ୍ୟୁନ ଦେଢ଼ କିଲୋମିଟର । କାରଣ ପୂର୍ବ ସ୍ଥାନରୁ ସମୁଦ୍ର ଘୁଞ୍ଚି ଘୁଞ୍ଚି ଯାଇ ବର୍ତ୍ତମାନ ସ୍ଥିତିରେ ପହଞ୍ଚିଛି । ତେଣୁ ସମୁଦ୍ର ଘୁଞ୍ଚିବା ପ୍ରମାଣସିଦ୍ଧ ।

(ଢ) ପୁରୀ ସହରର ଭୂଖନନ (ଦୋଳ ମଣ୍ଡପ ସାହି, କାଳିକା ଦେବୀ ସାହି) ରୁ ଜଣାପଡ଼େ ସହରର ଅନ୍ୟୁନ ସତୁରୀ/ଅଶୀ ଫୁଟ ତଳେ ପଟୁମାଟି ଅଛି । ତେଣୁ ଏହା ନଦୀ-ସାଗର ସଙ୍ଗମ ସ୍ଥଳ ଥିଲା ବୋଲି ଅନୁମାନ । ଏ ସବୁକୁ ବିଚାର କଲେ ଅନୁମାନ ହୁଏ ସମୁଦ୍ର ମନ୍ଦିର ସନ୍ନିକଟରେ ଥିଲା ଓ ଏହା ତମାଳ ଆଦି ଅରଣ୍ୟାନୀ ଦ୍ୱାରା ପରିବେଷ୍ଟିତ ହୋଇଥିଲା ।

ଏ ଉଚ୍ଚଭୂମି କଣ ବର୍ତ୍ତମାନର ରତ୍ନସିଂହାସନ, ଯାହା ମୁକ୍ତି ମଣ୍ଡପ ସନ୍ନିବେଶ୍ଟ ନୃସିଂହ ମନ୍ଦିର ସିଂହାସନ ଅପେକ୍ଷା ଅଧିକ ଉଚ୍ଚରେ ଅବସ୍ଥିତ ? ମାତ୍ର ୧୦ମ ଶତାବ୍ଦୀ ବେଳକୁ ବର୍ତ୍ତମାନର ମନ୍ଦିର ନିର୍ମିତ ହୋଇ ନଥିଲା । ଏ ମନ୍ଦିରର ଭିତ୍ତି ପତନ ଅନନ୍ତ ବର୍ମନ ଚୋଡ଼ଗଙ୍ଗଙ୍କ ସମୟରେ ହୋଇଥିଲେ ମଧ କମଳାକ୍ଷ ଦେବ ବା ତ୍ରୈଲୋକ୍ୟ ନାଥଙ୍କ ମନ୍ଦିର ନିର୍ମାଣ ପ୍ରତିଷ୍ଠା ଅନଙ୍ଗଭୀମ ଦେବଙ୍କ ସମୟରେ ହୋଇଥିଲା । ମତାନ୍ତରରେ ପ୍ରତ୍ନତତ୍ତ୍ୱବିତ୍ ପର୍ସିବ୍ରାଉନ୍ ଏ ମନ୍ଦିର ବହୁ ବିଧ୍ୱସ୍ତ ମନ୍ଦିରର କ୍ରମ ଉଚ୍ଚତର ଭିତ୍ତିଭୂମି ଉପରେ ଗଢ଼ି ଉଠିଥିବା ସିଦ୍ଧାନ୍ତ ଦେଇଛନ୍ତି ।

ଚୋଡ଼ଗଙ୍ଗ ଦକ୍ଷିଣ କୋଶଳ (ଅଧୁନା ପଶ୍ଚିମ ଓଡ଼ିଶା), ତୋଷାଳୀ (ଉତ୍ତର ଓଡ଼ିଶା) କଳିଙ୍ଗ (ଦକ୍ଷିଣ ଓଡ଼ିଶା-ଗଞ୍ଜାମ) କଙ୍ଗୋଦ (ଚିଲିକା ପାର୍ଶ୍ୱବର୍ତ୍ତୀ), ମହାକାନ୍ତାର (ବୌଦ୍ଧ ପ୍ରଭୃତି ଅଞ୍ଚଳ)କୁ ଉତ୍କଳଭୂଖଣ୍ଡ (ଉପକୂଳବର୍ତ୍ତୀ ଅଞ୍ଚଳ)ରେ ମିଶାଇ ପ୍ରଜା ବିଦ୍ରୋହ ଉପଶମ କରି ପ୍ରଜାଙ୍କ ଚିତ୍ତ ଜୟ କରିବାକୁ ବିଜିତ ରାଜ୍ୟର ଉପାସ୍ୟ ଶ୍ରୀ ପୁରୁଷୋତ୍ତମଙ୍କ ଉପାସନା ଉପରେ ଅଧିକ ଗୁରୁତ୍ୱ ଦେଇଥିଲେ, ଯଦିଓ ସେତେବେଳକୁ ରାଜ୍ୟବାସୀମାନଙ୍କରେ ହରିହର ଉପାସନାର ପ୍ରାବଲ୍ୟ ଥିଲା । ଏଥିପାଇଁ ସେ ସୋମବଂଶୀ ସମ୍ରାଟ ଯଯାତିଙ୍କ ଉପାସିତ ଶ୍ରୀ ନୃସିଂହ ମନ୍ଦିରର ଉତ୍ତର ଦିଗରେ ଆଧୁନିକ ଶ୍ରୀମନ୍ଦିରର ଭିତ୍ତିପ୍ରସ୍ତର ସ୍ଥାପନର ବ୍ୟବସ୍ଥା କରିଥିଲେ। ଶ୍ରୀକ୍ଷେତ୍ରରେ ପୁରୁଷୋତ୍ତମ ଉପାସନାର ପ୍ରାଧାନ୍ୟ ଥିବା ବେଳେ ଚୋଡ଼ଗଙ୍ଗ ଦେବ କଳିଙ୍ଗରେ ଚୋଡ଼ଗଙ୍ଗେଶ୍ୱର ଶିବ ମନ୍ଦିର ପ୍ରତିଷ୍ଠା କରି ହରିହର ଉପାସନାର ଭାରସାମ୍ୟ ରକ୍ଷାକରିଥିଲେ । ତତ୍‌କାଳୀନ ଶ୍ରୀ କ୍ଷେତ୍ରରେ ମନ୍ଦିର ଚତୁଃପାର୍ଶ୍ୱରେ ବ୍ରାହ୍ମଣ ମୁଖ୍ୟତଃ ସେବାୟତ ସଂପ୍ରଦାୟ ରହୁଥିଲେ ମଧ ଶ୍ରୀକ୍ଷେତ୍ରର ଅନ୍ୟ ଅଞ୍ଚଳରେ ଜନବସତି ଏତେ ସାନ୍ଦ୍ର ନଥିଲା । ଏଥିପାଇଁ ଚୋଡ଼ଗଙ୍ଗ ତନ୍ତ୍ର ବିଦ୍ୟାର ପ୍ରୟୋଗଶାଳା ରୂପେ ଚୋଡ଼ଗଙ୍ଗ (ଚୁଡ଼ଙ୍ଗ) ସାହି ପ୍ରତିଷ୍ଠା କରି ଯୋଗିନୀ (ନାରୀ) ସାଧିକାମାନଙ୍କୁ ରଖିଥିଲେ । ଏବେ ମଧ ବଡ଼ୁ ମହାପାତ୍ର ନାଗରେ ଚୋଡ଼ଗଙ୍ଗଙ୍କର ଏକ ପ୍ରତିମା ଥିବାର ଗବେଷକମାନେ ମତ ଦିଅନ୍ତି ।

ଏଙ୍ଗରାଜତ୍ୱର ବିଭିନ୍ନ ସମୟରେ ଶ୍ରୀକ୍ଷେତ୍ରକୁ ରାମାନୁଜାଚାର୍ଯ୍ୟ, ମାଧବାଚାର୍ଯ୍ୟ, ତାଙ୍କ ଅନୁଗାମୀ ନରହରି ମୁନି, ତାଙ୍କ ଶିଷ୍ୟ କଳିଙ୍ଗ ସମ୍ରାଟଙ୍କ ମନ୍ତ୍ରୀ ପରମ ବୈଷ୍ଣବ, ପରମ ଯୋଦ୍ଧା ନରହରି ତୀର୍ଥ, ବିଷ୍ଣୁ ସ୍ୱାମୀ ରାମାନନ୍ଦ ତଥା ଅନ୍ୟ ସମ୍ପ୍ରଦାୟର ବହୁସାଧୁ ଶ୍ରୀ ଜଗନ୍ନାଥଙ୍କ ଦର୍ଶନ ପାଇଁ ଆସି ମନ୍ଦିର ନିକଟରେ ଛତା ପୋତି (ସାନ ଛତା, ବଡ଼ ଛତା) ଜଗନ୍ନାଥ ଓ ସ୍ୱରସ୍ଥ ଦେବଙ୍କ ନାମରେ (ନାରାୟଣ ଛତା) ମଠ ସ୍ଥାପନ କରିଥିଲେ।

ଶ୍ରୀକ୍ଷେତ୍ରର ତତ୍‌କାଳୀନ ସୀମା ମର୍ଚ୍ଚିକୋଟର ସାମାନ୍ୟ ଆଗକୁ ଉତ୍ତର ପଶ୍ଚିମ ପଟରେ (ବର୍ତ୍ତମାନର ନରେନ୍ଦ୍ରପୁଷ୍କରିଣୀ ସ୍ଥାନରେ) ଆନୁମାନିକ ତ୍ରୟୋଦଶ ଶତାବ୍ଦୀ ପରଠାରୁ ମୁସଲମାନ ଆକ୍ରମଣ ଯୋଗୁଁ ବା ସୁଫି ସନ୍ଥଙ୍କ ଆଗମନ ଯୋଗୁଁ ମୁସଲମାନ ବସତିମାନ ଗଢ଼ି ଉଠିଥିଲା । ପାରମ୍ପରିକ ବିଶ୍ୱାସ ଯୋଗୁ ସେବାୟତ ସମ୍ପ୍ରଦାୟ ତାଙ୍କର ନିଜସ୍ୱ ସଂସ୍କୃତି ତଥା ଚଳଣିକୁ ସୁରକ୍ଷିତ ରଖିବା ଉଦ୍ଦେଶ୍ୟରେ ମନ୍ଦିର ପାଖାପାଖି ବସତି କରି ଅନ୍ୟ ଜାତି ସମ୍ପ୍ରଦାୟ ଲୋକଙ୍କ ଠାରୁ ଦୂରରେ ରହୁଥିଲେ । ସେହିପରି ସ୍ୱକୀୟ ସଂସ୍କୃତି ସମୃଦ୍ଧ ଆରଣ୍ୟକ ଜାତି (ଦଇତା ଗୋଷ୍ଠୀ) ନଗର (ମର୍ଚ୍ଚିକୋଟ) ସୀମା ବାହାରେ ବଳଗଣ୍ଡି ମଧ୍ୟରେ ସ୍ୱ ବସତି କରିଥିଲେ । ଆରଣ୍ୟକ ସଂସ୍କୃତି ଅନୁସାରେ ସେମାନଙ୍କ ଇଷ୍ଟଦେବୀ ବସତି ନିକଟସ୍ଥ ଜଳଉତ୍ସ ନିକଟରେ ପ୍ରତିଷ୍ଠିତ ହୋଇଥାନ୍ତି । ପଣ୍ଡିତ ସଦାଶିବ ରଥଶର୍ମାଙ୍କ ମତରେ ବର୍ତ୍ତମାନର ମାଉସୀ ମା (ଅର୍ଦ୍ଧାଶନୀ ଅପଭ୍ରଂଶରେ ଅର୍ଦ୍ଧ ଶୋଷଣୀ) ଦଇତାମାନଙ୍କ ଇଷ୍ଟଦେବୀ । ଏ ଇଷ୍ଟଦେବୀ ଶ୍ରୀକ୍ଷେତ୍ରକୁ ଦୁଇଭାଗ କରୁଥିବା ମାଳିନୀ ନଦୀ କୂଳରେ ଅରଣ୍ୟ ମଧ୍ୟରେ ବିରାଜିତ ହୋଇଥିଲେ ।

ପୁରାଣ ଆଖ୍ୟାନରେ ଇନ୍ଦ୍ରଦ୍ୟୁମ୍ନଙ୍କ ପାଟମହିଷୀ ଗୁଣ୍ଡିଚା ଲୋକମୁଖରେ ଗୁଣ୍ଡିଚାଙ୍କ ପ୍ରୋତ୍ସାହନ ଓ ସ୍ତୁତିରେ ରଥଯାତ୍ରା ସୃଷ୍ଟି ହେବାରୁ ଏହାର ଅନ୍ୟନାମ ଗୁଣ୍ଡିଚା ଯାତ୍ରା । ଅନ୍ୟମତରେ ଅନନ୍ତ ବର୍ମନ ଚୋଡ଼ଗଙ୍ଗଙ୍କ ପାଟମହିଷୀ ଗଣ୍ଡଚୋଡ଼ (କସ୍ତୁରୀ କମୋଦିନୀ- ମାମୁଁ ବୀର ଚୋଡ଼ଙ୍କ କନ୍ୟା)ଙ୍କ ନାମ ଅନୁସାରେ ଗୁଣ୍ଡିଚା ଯାତ୍ରା ନାମିତ ।

ପଣ୍ଡିତ ନୀଳକଣ୍ଠ ଦାସ, ଡ଼ଃ ମହତାବ ଗୁଣ୍ଡିଚା ଶବ୍ଦର ଅର୍ଥ ଉଦ୍ୟାନଗୃହ ଓ ଏହାଏକ ଦ୍ରାବିଡ଼ ଶବ୍ଦ ବୋଲି ମତ ଦେବାବେଳେ ଡ଼ଃ. ବେଣୀମାଧବ ପାଢ଼ୀ ଗୁଣ୍ଡିଚା ଶବ୍ଦ ସୌରାଷ୍ଟ୍ର କୁନ୍ ଡ଼ିଡ଼ା(ସେହି ଗଣ୍ଡି) ଶବ୍ଦରୁ ସୃଷ୍ଟ ବୋଲି ମତ ଦିଅନ୍ତି । ଗବେଷକ ସିଦ୍ଧେଶ୍ୱର ମହାପାତ୍ର ଏ କୁନ-ଡ଼ିଡ଼ାର ପରିବର୍ତ୍ତିତ ଅର୍ଥ ଶ୍ରୀଜଗନ୍ନାଥଙ୍କ ଜନ୍ମସ୍ଥାନ ବୋଲି ମତ ଦିଅନ୍ତି । ପଶ୍ଚିମା ଛତିଶଗଡ଼ ଯାତ୍ରୀମାନେ ମଧ ଗୁଣ୍ଡିଚା ଘରକୁ ଜନକପୁରୀ, ପ୍ରଭୁଙ୍କ ଜନ୍ମସ୍ଥାନ ଆଦି ଭାବରେ ଗ୍ରହଣ କରିଥାନ୍ତି ।

ଶ୍ରୀକ୍ଷେତ୍ରର ପ୍ରାଚୁର୍ଯ୍ୟ ପ୍ରଲୁବ୍ଧ କରିଛି ଯବନ ଆକ୍ରମଣକାରୀମାନଙ୍କୁ । ତେଣୁ ଏ ବାହ୍ୟ ଆକ୍ରମଣର ପ୍ରତିରୋଧ ପାଇଁ ବିଭିନ୍ନ ସମୟରେ ସମ୍ରାଟମାନେ ସ୍ଥାନୀୟ ଶକ୍ତିର ଆହ୍ୱାନ ଓ ବିନିଯୋଗ କରିଛନ୍ତି । ଧର୍ମ ଭିତ୍ତିକ ଆକ୍ରମଣ ମନ୍ଦିର ଉପରେ ବାରମ୍ବାର ହେବାରୁ ସମୟକ୍ରମେ ମନ୍ଦିରକୁ କେନ୍ଦ୍ରକରି ଛାଉଣୀ ମଠ, ନିର୍ମୋହୀ ଆଖଡ଼ା, ବାଘ ଆଖଡ଼ା, ବଡ଼ ଆଖଡ଼ା ପ୍ରଭୃତି ମଠ ପ୍ରତିଷ୍ଠା ହୋଇ ଆଧ୍ୟାତ୍ମିକ ସାଧନା ସହିତ ଶରୀର ଚର୍ଚ୍ଚା ଉପରେ ଗୁରୁତ୍ୱ ଦିଆଗଲା । ଶ୍ରୀମନ୍ଦିରକୁ କେନ୍ଦ୍ରକରି ଶ୍ରୀକ୍ଷେତ୍ରରେ ସାତସାହି, ବୟାଳିଶ କନ୍ଦି, ପଞ୍ଚପଡ଼ା ଓ ବିଭିନ୍ନ ପାଟଣା ଗଢ଼ି ଉଠିଥିଲା । ଏ ସାହିମାନଙ୍କରେ ଯାଗା, କୋଟ ପ୍ରଭୃତି ସ୍ଥାପିତ ହୋଇ ସାହିକୁ ସଂଘବଦ୍ଧ କରିବା ସହିତ ଶ୍ରୀ ମନ୍ଦିର ନୀତିରେ ଭାଗ ନେବାର

ବ୍ୟବସ୍ଥା ହେଲା । ମାର୍କଣ୍ଡେଶ୍ୱର ସାହି, ହରଚଣ୍ଡି ସାହି, ବାସେଳି ସାହି, ବାଲି ସାହି, ଦୋଳମଣ୍ଡପ ସାହି, କୁମ୍ଭାର ବେଣ୍ଟ ସାହି, ମାଟି ମଣ୍ଡପ ସାହି, ଗୌଡ଼ ବାଡ଼ ସାହି, ଶ୍ରୀକ୍ଷେତ୍ରର ସାତ ସାହି, ବୟାଳିଶ ଲନ୍ଧି ମଧ୍ୟରେ ବଣିଆ ଗଳି, ଶାମକୁଲ ଗଳି, ମର୍ଚ୍ଚିକୋଟ ଗଳି, ପାତ୍ରଗଳି, ବଙ୍କଟ ଜାଗା ଗଳି, ଶୀତଳ ପିଣ୍ଡା ଗଳି, ମହାସୁଆର ସାହି ଗଳି, କର୍ଣ୍ଣଗଳି, ଚିତ୍ରକାର ସାହି ଗଳି, (୨୯ଟି - ଗୋଟିଏ କୁମ୍ଭାର ବେଣ୍ଟ ସାହିରେ ଅନ୍ୟଟି, ହରଚଣ୍ଡି ସାହିରେ), ଯମେଶ୍ୱର ଗଳି, ଭଣ୍ଡାରୀ ଗଳି (ବାଲିସାହି), ଧାନକୁଟି ସାହି ଗଳି, ଚନ୍ଦନ ଗଳି, ବନଦୁର୍ଗା ଗଳି, ତିଆଡ଼ି ସାହି ଗଳି, ଖଟୁଆ ସାହି ଗଳି, କେଉଳ ଦାସ ମଠ ଗଳି, ନହର ଗଳି, ପଥୁରିଆ ସାହି ଗଳି ପ୍ରଭୃତି ଏ ଲନ୍ଧି/ଗଳି ମଧ୍ୟରେ ଅନ୍ତର୍ଭୁକ୍ତ । ମାଟିଆପଡ଼ା, ଚିକରପଡ଼ା, କୁମ୍ଭାର ପଡ଼ା, ବଉଳପଡ଼ା (ମ୍ୟୁନିସିପାଲଟି ମାର୍କେଟ ନିକଟରେ), ଖଣ୍ଡୁଆ ପଡ଼ା (ବିମାନ ବଡୁ ସାହି, ଆଦି ପଟ୍ଟପଡ଼ା ସହିତ କୁମୁଟି ପାଟଣା, ସିଦ୍ଧ ମହାବୀର ପାଟଣା, ନୂଆ ପାଟଣା (ବର୍ତ୍ତମାନର ଇନ୍ଦ୍ରଦ୍ୟୁମ୍ନ ଉପର ମହାନ୍ତି ସାହିସ୍ଥ), ମେଲବଗର ପାଟଣା (ବାସେଳି ସାହିସ୍ଥିତ) ଆଦି ପାଟଣାମାନ ଶ୍ରୀକ୍ଷେତ୍ରରେ ଅବସ୍ଥିତ ।

ସମୟକ୍ରମେ ଶ୍ରୀକ୍ଷେତ୍ରରେ ବିକଶିତ ହୋଇଥିଲା, ସାତଶହ ବାବନ ମଠ । ଏ ମଠମାନ ବିଭିନ୍ନ ସାହିରେ ବିଦ୍ୟମାନ ଥିଲା । ସାହିମାନଙ୍କର ସାଙ୍ଗଠନିକତାକୁ ବିଶ୍ଳେଷଣ କରି ଗବେଷକମାନେ କହନ୍ତି ଖ୍ରୀ ୧୦ମ ଶରେ ଯବନ ଆକ୍ରମଣକୁ ପ୍ରତିହତ କରିବାକୁ ଚୋଡ଼ଗଙ୍ଗଦେବ ବୋଡ଼ଙ୍ଗ କୋଟ ସ୍ଥାପନ କରିଥିଲେ । ପରେ ୧୦୯୦ ଖ୍ରୀ.ରେ ଅଯୋଧ୍ୟାର ସାଧକ ସୀତାରାମ ବାବାଙ୍କ ପ୍ରଚେଷ୍ଟାରେ କୋଟର ଏକ ମାର୍ଜିତ ରୂପ ପ୍ରକାଶ ପାଇଲା 'ଆଖଡ଼ା' ନାମରେ । ଖ୍ରୀ ୧୨୭୦ରେ ରାଜଗୁରୁ ନୀଳକଣ୍ଠ ବାଜପେୟୀ ମହାପାତ୍ର ସୃଷ୍ଟିକଲେ 'ଯାଗ' ଅନୁଷ୍ଠାନ । ତେବେ ଏ ଯାଗ ପଦ୍ଧତିର ସ୍ୱର୍ଣ୍ଣ ଯୁଗ ହେଉଛି ଦ୍ୱିତୀୟ ଦିବ୍ୟସିଂହ ଦେବଙ୍କ (୧୭୪୧) ରାଜତ୍ୱ କାଳ । ଖ୍ରୀ: ୧୭୪୧ରେ ଦେଉଳକରଣ ଘନଶ୍ୟାମ ସାମନ୍ତରାୟ ଓ ଭ୍ରମର ବର ବକସିରାୟଙ୍କୁ ଆଦେଶନାମା ଦେଇଥିଲେ ଯେ

"ଶ୍ରୀ ପୁରୁଷୋତ୍ତମ କ୍ଷେତ୍ର ଭୋଗ ବିଶୋଇ, ଯାଗ ବାହକ ଓ ଝିଙ୍କି ପରିଛାଙ୍କୁ ହୁକୁମ ହେଲା କି ଛାମୁରେ ବରଷକୁ ଯେତି ତୁମେ ଦେଉଳ କରଣ ସ୍ୱର୍ଗଦ୍ୱାରଠାରୁ ବଙ୍କ ପର୍ଯ୍ୟନ୍ତକେ ତାହାପରେ ବଙ୍କଠାରୁ ଲୋକନାଥ ଦେଉଳ ହୁଳହୁଳିଆ କୁଦ ପର୍ଯ୍ୟନ୍ତେ ହୁଳହୁଳିଆ କୁଦରୁ ପଡ଼ା ପର୍ଯ୍ୟନ୍ତେ ଏ ଯେଉଁ କଟକ ଏହା ମଧ୍ୟେ ଭମି, କାର୍ଯ୍ୟଙ୍କୁ ଗମାର ଦେଉଳ, ପୋଖରୀ, ସାଗର, ତୋଟା, ଯୋଗ, କୁଆର, ଖାଇ, ପଡ଼ା, ଦଣ୍ଡ ଆଦି କରି ସ୍ଥଳମାନଙ୍କ ତକ ଅଧିକାରୀ କେ ଅଧୀନ କରୁଛନ୍ତି ତା ମଣାଇ ବନ୍ୟା ଦଶମୀ ଦିନ ସୁଲଣା ନହର କେହରଣରେ ଦାଖଲ କରିବ । ଏଥିକୁ ହୁକୁମ୍ ବରଖିଲାଫ ମାଡ଼ ଯଥାଏ କରି ମିଳିବ । ଏ ହୁକୁମ ତାମିଲକୁ ବନ୍ଦୋବସ୍ତ ଖାଲିଚ କରିଣ ବିରାମସି ପାଣିଆ ମିନି ଯୋଗ ଚଲଡ଼ା କରେ ।"

ଏ ଯାଗ ଆଖଡ଼ାର ସ୍ୱରୂପ ନିରୂପଣ କରି କୁହାଯାଉଛି - ଶହେ ଲେଖିଆରେ ବାଡ଼ ବୋଲାଇ, ପଚାଶେ ଲେଖିଆ କୋଟରେ ଥାଇ ଯାହାରେ ଅଣିକା ବାଡ଼ ନଥାଇ, ତାହା ଉକ୍ଷକୁ ଯାଗ ବୋଲାଇ ।

ଏ ଯାଗ ଆଖଡ଼ାରେ ମଲ୍ଲବିଦ୍ୟା ସାଧନ, ଅବସର ବିନୋଦନ ପାଇଁ ପଶା, ଗଞ୍ଜପା ଖେଳ, ନୃତ୍ୟ ସଙ୍ଗୀତ (ରାବଣ, ଲଙ୍କା, ଭଦ୍ର, ଚନ୍ଦନ ଯାତ୍ରାରେ ବାପରେ ଓ ଜଗମୋହନରେ ଗୋଟି ପିଲା ନୃତ୍ୟ) ନ୍ୟାୟ ନିଶାପ ସହିତ ଶ୍ରୀମନ୍ଦିରର ବିଭିନ୍ନ ନୀତି ସମ୍ପାଦନ କରୁଥିଲେ । ଉଦାହରଣ ସ୍ୱରୂପ ଶ୍ରୀରାମ ଜନ୍ମଠାରୁ ରାବଣ ବଧ ପର୍ଯ୍ୟନ୍ତ ବିଭିନ୍ନ ସୁଆଙ୍ଗ ବିଭିନ୍ନ ସାହି ଆୟୋଜନ କରି ଜନ ମନୋରଞ୍ଜନ ଓ ଆଧ୍ୟାତ୍ମିକ ଜାଗୃତି ଆଣୁଥିଲା । କାଳିକା ଦେବୀ ସାହି ଶ୍ରୀରାମ ନବମୀ ଦିନ ଶ୍ରୀରାମ ଜନ୍ମର ତିଥି ନକ୍ଷତ୍ର ଅନୁସାରେ ଜନ୍ମ ଉତ୍ସବ ପାଳନ, ଦଶମୀ ଦିନ ହରଚଣ୍ଡୀ ସାହିର ନାକ କାନ (ପୂର୍ବେ ନାକ କାନ ଲୀଳା ମାଟି ମଣ୍ଡପ ସାହିର ଥିଲା), ଏକାଦଶୀ ଦିନ ହରଚଣ୍ଡୀ ସାହିର ପର୍ଶୁରାମ, ଦ୍ୱାଦଶୀ ଦିନ ମାର୍କଣ୍ଡେଶ୍ୱର ସାହିର ବନବାସ ଲୀଳା, ତ୍ରୟୋଦଶୀରେ କୁମ୍ଭାର ବେଣ୍ଟ ସାହିର ମାୟା ରାବଣ (ଏକ ଯୋଗୀ), ଚତୁର୍ଦ୍ଦଶୀ ଦିନ ଲଙ୍କାପୋଡ଼ି ହନୁମାନ ଦୋଳ ମଣ୍ଡପ ସାହି ପକ୍ଷରୁ ବାହାରେ । ଏହାପରେ କେଉଁଠି ଦ୍ୱାରା ସେତୁବନ୍ଧନ ଓ ରାବଣ ବଧ ଲୀଳା ଅନୁଷ୍ଠିତ ହୁଏ । ଅବଶେଷରେ ଗୌଡ଼ବାଡ଼ ସାହିର ଅଭିଷେକ ତିଥି ଆସିଲେ ହନୁମାନଙ୍କ ଦ୍ୱାରା ଅଭିଷେକ ଲୀଳା ସମ୍ପାଦିତ ହୁଏ । ତେବେ କୌଣସି ତିଥି ଲୁପ୍ତ ହୋଇ ପଡ଼ିଲେ ତାପରଦିନ ପ୍ରୋକ୍ତ ସାହି ସେ ଲୀଳା ସମ୍ପାଦନ କରିଥାଏ ।

ସାହିମାନଙ୍କର ଏ ଉନ୍ନତ ସାଂସ୍କୃତିକ ପରମ୍ପରା ଶ୍ରୀକ୍ଷେତ୍ରର ପ୍ରକୃତ ଆଧ୍ୟାତ୍ମିକ ଜୀବନ । ସୁସଂଯତ ଜୀବନ ଶୈଳୀ ନାଗରିକ ଜୀବନକୁ ପ୍ରକୃତ ପ୍ରାଚୁର୍ଯ୍ୟରେ ଭରି ଦେଇଥିଲା । ଏହାରି ପ୍ରଲୋଭନରେ ବହୁଯାତ୍ରୀ ତଥା ସମୟେ ସମୟେ ଅନୁପ୍ରବେଶକାରୀ ଶ୍ରୀକ୍ଷେତ୍ର ଭିତରକୁ ପ୍ରବେଶ କରିବାର ଉଦ୍ୟମ କରିଥିଲେ । ଏଯାତ୍ରୀମାନଙ୍କ ସଂଖ୍ୟା ଉନବିଂଶ ଶତାବ୍ଦୀରେ ରାସ୍ତାଘାଟର ଉନ୍ନତି ହେବାପରେ ବିଶେଷ ବଢ଼ିବାକୁ ଲାଗିଲା । ଏହା ଏକ ଆୟର ପନ୍ଥା ମନେ କରି ବିଭିନ୍ନ ସମୟରେ ଶାସନପକ୍ଷରୁ ଯାତ୍ରୀକର ଆଗନ୍ତୁକମାନଙ୍କ ଉପରେ ଧାର୍ଯ୍ୟ କରାଯାଉଥିଲା । ଲାଲଯାତ୍ରୀ (ସବୁଠାରୁ ଧନୀ ଯାତ୍ରୀ) ଉପରୁ କର ଦେଇ ଅଠରନଳା ଦେଇ ଶ୍ରୀକ୍ଷେତ୍ର ପ୍ରବେଶ କରୁଥିଲେ । ଏହାଛଡ଼ା ଶ୍ରୀକ୍ଷେତ୍ରର ବିଭିନ୍ନ ଦିଗରେ ତଦାରଖ ଫାଟକମାନ କରି ଯାତ୍ରୀମାନଙ୍କ ଠାରୁ କର ଆଦାୟ କରୁଥିଲା । ଅଠର ନଳାଠାରେ ବଡ଼ ଚେକ୍‌ପୋଷ୍ଟ ଥିଲା । ଆଗନ୍ତୁକ ଯାତ୍ରୀମାନଙ୍କ ବିଶ୍ରାମ ପାଇଁ ଏଠାରେ ଏକ ଧର୍ମଶାଳା ଓ କୂଅ ମଧ୍ୟ ଥିଲା ।

ଷୋଡ଼ଶ ଶତାବ୍ଦୀ ବେଳକୁ ଶ୍ରୀକ୍ଷେତ୍ର ଏକ ସର୍ବଧର୍ମ ସମନ୍ୱୟର ପୀଠ ହୋଇଥିଲା । ଶ୍ରୀକ୍ଷେତ୍ରରେ ହିନ୍ଦୁ-ମୁସଲମାନ ଏକତ୍ର ଏକାଠି ବସି ଓ ମହାପ୍ରସାଦ ଗ୍ରହଣ କରୁଥିବା କଥା ପରିବ୍ରାଜକ ମହମ୍ମଦ ... ୧୬୨୬ ମସିହା ମେ ମାସ କୋଡ଼ିଏ ତାରିଖରେ ଶ୍ରୀକ୍ଷେତ୍ର ପରିଦର୍ଶନ କରିଥିବାବେଳେ ଲକ୍ଷ୍ୟ କରିଥିଲେ । ଶ୍ରୀ ମନ୍ଦିରଠାରୁ ଗୁଣ୍ଡିଚା ମନ୍ଦିର ପର୍ଯ୍ୟନ୍ତ ରାଜରାସ୍ତାର ଉଭୟ ପାର୍ଶ୍ୱରେ ବନ ଉପବନ, ମଠ, ମନ୍ଦିର ରାଜପ୍ରାସାଦ ଆଦି ଥିଲା । ଶ୍ରୀଚୈତନ୍ୟଙ୍କ ସମୟରେ ଗଜପତି ପ୍ରତାପରୁଦ୍ର ଦେବଙ୍କ ପ୍ରଥମ ଜଗନ୍ନାଥ ବଲ୍ଲଭ ମଠ ବଗିଚାରେ ପୂର୍ବରେ ରାଜମହେନ୍ଦ୍ରୀସ୍ଥ ରାଜ ପ୍ରତିନିଧି ରାୟ ରାମାନନ୍ଦ (କୁରୁଣ୍ଡି ... ବେଣ୍ଟପୁର ଯାହାଙ୍କ ଜନ୍ମସ୍ଥାନ) ବାସ କରି ଦେବଦାସୀମାନଙ୍କୁ ରାଧାମାଧବ ଲୀଳାତତ୍ତ୍ୱ ଶିକ୍ଷା ଦେଉଥିଲେ । ସେତେବେଳେ

ପୁଷ୍କରିଣୀ ସମେତ ଜଗନ୍ନାଥ ବଲ୍ଲଭ ମଠକୁ ବସନ୍ତ ବଗିଚା ଦେଟା ଯାଇଥିଲା । ଆଜିପରି (ଶ୍ରୀରାମ ଲୀଳାରେ ଏହା ନନ୍ଦିଗ୍ରାମ, ବେଣ୍ଟ ସମୟରେ ଏହା ଆଖେଟ ସ୍ଥଳୀ, ଦଶହରା ସମୟରେ ଦୁର୍ଗାମାଧବ ଯୋଗଯାତ୍ରା ଅବକାଶରେ ଏହା ବିଜୟ ପଡ଼ିଆ) ସେତେବେଳେ ମଧ ଜଗନ୍ନାଥ ବଲ୍ଲଭ ମଠ ଶ୍ରୀ ମନ୍ଦିର ନୀତି ସହିତ ଘନିଷ୍ଠ ଭାବେ ଜଡ଼ିତ ଥିଲା । ଏ ଜଗନ୍ନାଥ ବଲ୍ଲଭ ସମ୍ମୁଖରେ ବଳଭଦ୍ର ବଲ୍ଲଭ ନାମକ ବଗିଚା ଥିଲା, ଯାହା ବର୍ତ୍ତମାନ ବଳଭଦ୍ର ଗଳିରେ ରୂପାନ୍ତରିତ ହୋଇଛି । ବଳଭଦ୍ର ବଲ୍ଲଭର ଏକ ଅଂଶ ମ୍ୟୁନିସିପାଲିଟି ବିପଣୀ ଓ ଅନ୍ୟ ଅଂଶ ଘେରାପଡ଼ା(ଯେଉଁଠାରେ ଗଭୀର ପୁଷ୍କରିଣୀ ଥିଲା) ଅଞ୍ଚଳରେ ଜନବସତି ବଢ଼ି ଉଠିଲାଣି ।

୧୮୦୩ ମସିହା ସେପ୍ଟେମ୍ବର ଅଠର ତାରିଖରେ ଇଷ୍ଟଇଣ୍ଡିଆ କମ୍ପାନୀ ଶ୍ରୀକ୍ଷେତ୍ର ଅଧିକାର ଓ ମନ୍ଦିର ପରିଚାଳନା ଦାୟିତ୍ୱ ନେବାପରେ ଶ୍ରୀକ୍ଷେତ୍ର ତଥା ତାର ଆଖପାଖ ଅଞ୍ଚଳ ଟଙ୍କି ମାହାଲ ନାମରେ ନାମିତ ହେଲା । ତତ୍କାଳୀନ ଭାଇସ୍‌ରାୟ ଲର୍ଡ଼୍‌ୱେଲସଲି ମଠ ମନ୍ଦିର ପରିଚାଳନାରେ କୌଣସି ହସ୍ତକ୍ଷେପ ନକରିବାକୁ ତଥା ବ୍ରାହ୍ମଣମାନଙ୍କୁ ପୂର୍ବ ନିଷ୍କର ଭୂମିବାଡ଼ି ଭୋଗ ଦଖଲ କରିବାକୁ ପ୍ରଶାସନିକ ନିର୍ଦ୍ଦେଶ ଦିଅନ୍ତେ ବ୍ରାହ୍ମଣମାନେ ବିନା କର / ଖଜଣାରେ ଭୂମିବାଡ଼ି ଭୋଗ କରିବାକୁ ଅନିଚ୍ଛା ପ୍ରକାଶ କଲେ । ତେଣୁ ବହୁ ବିଚାର ବିମର୍ଶପରେ ମଣ ବା ମାହାଲପ୍ରତି ଏକ ଟଙ୍କା ଖଜଣା ଧାର୍ଯ୍ୟ ହେବାରୁ ଶ୍ରୀକ୍ଷେତ୍ର ଓ ଏହାର ଆଖପାଖ ଅଞ୍ଚଳ ଟଙ୍କି ମାହାଲ ନାମରେ ନାମିତ ହେଲା ।

ହିନ୍ଦୁ ଜଗତରେ ଶ୍ରୀକ୍ଷେତ୍ରର ସର୍ବମାନ୍ୟତା ଲକ୍ଷ୍ୟ କରି ଆଗତ ଯାତ୍ରୀମାନଙ୍କର ସୁବିଧା କରି ହିନ୍ଦୁମାନଙ୍କର ପ୍ରିୟ ହେବା ଲାଗି ଇଂରେଜମାନେ ଖ୍ରୀ ୧୮୧୨ରେ ଅଠରନଳା ପାଖରେ ୧ଟି କୂପ ଓ ଦୁଇଟି ଅସ୍ଥାୟୀ ଆଶ୍ରୟସ୍ଥଳୀ ନିର୍ମାଣ କରିଥିଲେ । ଏହି ସମୟରେ ଉଦେଶ୍ବର (ବର୍ତ୍ତମାନର ବାଲେଶ୍ୱର ଜିଲ୍ଲାରେ )ଠାରୁ ପୁରୀଯାଏ ଜଗନ୍ନାଥ ସଡ଼କ ୧୮୧୨-୧୮୨୫ ମତାନ୍ତରେ ୧୮୨୨-୧୮୨୬ ମଧ୍ୟରେ ନିର୍ମିତ ହୋଇଥିଲା । କ୍ରମଶଃ ଶ୍ରୀକ୍ଷେତ୍ରର ପ୍ରସିଦ୍ଧି ଭାରତର ବିଭିନ୍ନ ପ୍ରାନ୍ତରୁ ବହୁ ଲୋକଙ୍କୁ ଆକୃଷ୍ଟ କଲା । ଏ ସତ୍ୟ ମୁକ୍ତିପଦ ଧାମକୁ ୧୮୩୯ ମସିହାରେ ରଥଯାତ୍ରାରେ ୫୩ ହଜାର ଯାତ୍ରୀ ଆସିଥିଲେ । ଇଂରେଜମାନେ ୧୮୪୦ ମସିହାରେ ଯାତ୍ରୀକର ଉଠାଇ ଦେଇଥିଲେ। ଏ ସମୟରେ ଶ୍ରୀକ୍ଷେତ୍ରର ଜନସଂଖ୍ୟା ୨୩୮୩୭ , ଆୟତନ ୪୮୭୪ ଏକର, ଆବାସ ସଂଖ୍ୟା ୬୬୨୦ ଥିବାର ଜଣାପଡ଼େ । ଶ୍ରୀକ୍ଷେତ୍ରରେ ବୃତ୍ତିଗତ ଉନ୍ନତି ତଥା ଜାତିପ୍ରଥାର ପ୍ରାଧାନ୍ୟ ଥିବାରୁ ଗୋଟିଏ ଗୋଟିଏ ବୃତ୍ତିର ଲୋକ ଏକତ୍ର ଅବସ୍ଥାନ କରୁଥିଲେ । କୁମ୍ଭାରସାହି, ବଣିଆ ଗଳି, ପାନରା ସାହି, ଚିତ୍ରକାର ସାହି, ତନ୍ତୁଛ ସାହି , ଧୋବା ସାହି, କୁମ୍ଭାର ପଡ଼ା, ଖଣ୍ଡୁଆ ସାହି, ହାଡ଼ି ସାହି ପ୍ରଭୃତି ଏହାର କେତେକ ଉଦାହରଣ ।

୧୮୪୦ ମସିହାରେ ଯାତ୍ରୀକର ଉଚ୍ଛେଦ ପରେ ଶ୍ରୀକ୍ଷେତ୍ରକୁ ସମାଗତ ଯାତ୍ରୀଙ୍କ ସଂଖ୍ୟା ବୃଦ୍ଧି ପାଇଲା । ଏ ଯାତ୍ରୀମାନେ ଲୋକନାଥ ଘାଟ, ବାଲିଘାଟ (କୋଣାର୍କ ଯିବା ରାସ୍ତାରେ) ହରିଣୀ ଘାଟ (କୁମ୍ଭାରପଡ଼ା ଥାନା ନିକଟରେ) ହୁଳୁହୁଳିଆ ଘାଟ (ଶ୍ରୀକ୍ଷେତ୍ରର ପଶ୍ଚିମ ଉତ୍ତର ଦିଗରେ ପ୍ରତିଷ୍ଠିତ ମଧୁପୁର ନଈ/ମାଟିଆ ନଈ/ନଟିଆଣି ବା ମୁଣ୍ଡାନଈ ନିକଟସ୍ଥ ଚିକରପଡ଼ା ସାହିରେ), ବାଙ୍କି ମୁହାଣ ଘାଟ ଦେଇ କ୍ଷେତ୍ରରେ ପ୍ରବେଶ କରୁଥିଲେ । ଏ ଘାଟମାନଙ୍କରେ ମଙ୍ଗଳା, ଆଲାମଚଣ୍ଡୀ, ରାମଚଣ୍ଡୀ, ଘାଟ ମଙ୍ଗଳା ପ୍ରଭୃତି ଘାଟ ରକ୍ଷା ପାଇଁ ସ୍ଥାପିତ ହୋଇଥିଲେ । ଏହାଛଡ଼ା ଏ ଘାଟଗୁଡ଼ିକରେ ଘାଟ ପଡ଼ିଆରୀ (ଘାଟ ସୁଆଁସି ନାମରେ ନାମିତ) ଓ ତାଙ୍କୁ ସାହାଯ୍ୟ କରିବାକୁ ପାଇକମାନେ ରହି ଯାତ୍ରୀ ଓ ଘାଟର ସୁରକ୍ଷା କରୁଥିଲେ ।

ମଙ୍ଗଳଘାଟ ପାଖର ପାଇକସାହି , ହରେକୃଷ୍ଣପୁର ସନ୍ନିକଟ ଖଣ୍ଡାୟତ ଓ ପ୍ରଧାନ ବସ୍ତି ଏହାର କେତେକ ଉଦାହରଣ । ଏ ଘାଟରେ ଘାଟ ପଡ଼ିଆରୀ ଯାତ୍ରୀ ଜଉଡ଼ି ଓ ପଣ୍ଡା ନିଜ ଯାତ୍ରୀ ସଂଗ୍ରହ କରୁଥିଲେ । ଘାଟ ସୁଆଁସିମାନଙ୍କର ଅସମୟ ରହଣି ପାଇଁ ଘାଟ ଘର ଥିଲା । ପ୍ରବେଶ ଦ୍ୱାରମାନ ନଦୀପଥ ଥିବାରୁ ଘାଟଚାପ ଭଳେଇମାନେ ରହି ନାଉରୀ ସେବା କରୁଥିଲେ ।

ଯାତ୍ରୀ କର ଉଚ୍ଛେଦ ପରେ ୧୮୪୧ରେ ୧ ଲକ୍ଷ ୧୨ ହଜାର, ୧୮୬୧ରେ ୨ ଲକ୍ଷ ୧୦ ହଜାର ଯାତ୍ରୀ ରଥଯାତ୍ରା ସମୟରେ ଶ୍ରୀକ୍ଷେତ୍ରକୁ ଆସିଥିଲେ ।

ଏହି ଯାତ୍ରୀମାନଙ୍କ ପ୍ରଗାଢ଼ ନିଷ୍ଠା ସମ୍ମୁଖରେ ମୃତ୍ୟୁ ପରାସ୍ତ ହେଉଥିଲା । ପଥରେ ବହୁ ଯାତ୍ରୀ ତସ୍କର ଆକ୍ରମଣ, ହିଂସ୍ରଜନ୍ତୁ ତଥା ସର୍ପାଘାତ, ବଢ଼ି ମରୁଡ଼ି, ମହାମାରୀ ଆଦି ରୋଗରେ ପଡ଼ି ପ୍ରାଣତ୍ୟାଗ କରୁଥିବାର ଏକ ଦୃଶ୍ୟ ଏବେ ମଧ ଗୁଣ୍ଡିଚା ଘର ଜଗମୋହନର ବହିଃ କାନ୍ଥର ପ୍ରସ୍ତର ଫଳକରେ ଅଙ୍କିତ । ଯାତ୍ରୀମାନଙ୍କର ପ୍ରବଳ ନିଷ୍ଠା ଇଂରେଜ ପ୍ରଶାସନକୁ ଚକିତ କରି ଦେଇଥିଲା । ଏମାନଙ୍କର ସୁରକ୍ଷାଲାଗି ଖ୍ରୀ ୧୮୬୮ରେ ପୁରୀ ମ୍ୟୁନିସିପାଲିଟି ଓ ଲଜିଂ ହାଉସ ଫଣ୍ଡ ସୃଷ୍ଟି ହୋଇ ଶ୍ରୀକ୍ଷେତ୍ରର ପରିବେଶ, ପରିମଳ ତଥା ପାନୀୟ ଜଳର ସୁବ୍ୟବସ୍ଥା ପାଇଁ ତତ୍କାଳୀନ ପରିମଳ କମିଶନର ମି.ସ୍ମିଥ ଧ୍ୟାନ ଦେଇଥିଲେ । ଏହାର ବହୁବର୍ଷ ପର୍ଯ୍ୟନ୍ତ ଶ୍ରୀକ୍ଷେତ୍ର ବଡ଼ଦାଣ୍ଡ ଏକ ବିସ୍ତୀର୍ଣ୍ଣ ଧାନକ୍ଷେତ୍ର ଥିଲା । ଆଜି ଶ୍ରୀକ୍ଷେତ୍ରର ବିସ୍ତୃତି ଘଟିଥିଲେ ମଧ କ୍ରମଶଃ ଶ୍ରୀହୀନ ହୋଇ ଉଠୁଛି । ବିଭିନ୍ନ ମଠ, ମନ୍ଦିରର ଉପବନ, ବଗିଚା, ତୋଟା ଆଦି ଜନବସତି ଉଦ୍ଦେଶ୍ୟରେ ବିକ୍ରୟ ହୋଇ ଏହି ପୀଠର ସ୍ଥିତି ସଂକୁଚିତ ହୋଇପଡୁଛି ।

*ଶ୍ରୀ ଶିବ ତପୋବନ,ଚିକରପଡ଼ା ସାହି,ପୁରୀ ଟାଉନ-୨*

● ● ●



# ଶ୍ରୀକୃଷ୍ଣ ଜଗନ୍ନାଥ

● ଡକ୍ଟର ଭଗବାନ ପଣ୍ଡା

ଭାରତୀୟ ଧର୍ମଧାରାର ଶ୍ରେଷ୍ଠ ଉପାସ୍ୟ ଦେବତା ଶ୍ରୀଜଗନ୍ନାଥ ଦେଶର ସାମାଜିକ, ଧାର୍ମିକ ଓ ସାଂସ୍କୃତିକ ଭାବନାର ଅପୂର୍ବ ପ୍ରତୀକ ରୂପେ ପରିକଳ୍ପିତ । ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ବହୁ କିମ୍ବଦନ୍ତୀ, ପରମ୍ପରା, ଇତିହାସ ତଥା ବିଭିନ୍ନ କଳା ଓ ସାହିତ୍ୟ ସୃଷ୍ଟି ହୋଇ ଆସିଛି । ସମ୍ପ୍ରତି ଜଗନ୍ନାଥ ସଂସ୍କୃତିର ମୂଳ ଉତ୍ସ, ସ୍ୱରୂପ, ତତ୍ତ୍ୱ, ପ୍ରଭାବ ଓ ପ୍ରତିଷ୍ଠା ବିଷୟରେ ବିଭିନ୍ନ ଦୃଷ୍ଟିରୁ ଯେଉଁ ଆଲୋଚନା ଓ ପ୍ରତ୍ୟାଲୋଚନା ଚାଲିଛି , ତାହାର ପୂର୍ଣ୍ଣତା ବା ଶେଷ ସିଦ୍ଧାନ୍ତ ତଥାପି ସୁଦୂର ପରାହତ ବୋଲି ମନେହୁଏ । ସେଥିପାଇଁ ଶାସ୍ତ୍ରରେ କୁହାଯାଇଛି ।

ତର୍କୋଽ ପ୍ରତିଷ୍ଠଃ, ଶ୍ରୁତୟୋ ବିଭିନ୍ନାଃ
ନୈକୋ ମୁନିର୍ଯସ୍ୟ ମତଂ ନ ଭିନ୍ନମ୍ ।
ଧର୍ମସ୍ୟ ତତ୍ତ୍ୱଂ ନିହିତଂ ଗୁହାୟାଂ ॥
ମହାଜନ ଯେନ ଗତଃ ସ ପନ୍ଥାଃ ।।

ଧର୍ମର ତତ୍ତ୍ୱ ବିଷୟରେ ବେଦ, ବେଦାନ୍ତ ଓ ମୁନିଗଣ ଭିନ୍ନ ଭିନ୍ନ ମତ ପୋଷଣ କରନ୍ତି । ତେଣୁ ମହାଜନମାନଙ୍କ ସିଦ୍ଧାନ୍ତ ଓ ଆଚରିତ ପନ୍ଥା ଅନୁସାରେ ଧର୍ମାଚରଣ କରିବା ବାଞ୍ଛନୀୟ । ଏହି ସିଦ୍ଧାନ୍ତ କେବଳ ଶ୍ରୀଜଗନ୍ନାଥଙ୍କ ଧର୍ମ ଓ ସଂସ୍କୃତି ସମ୍ବନ୍ଧରେ ନୁହେଁ, ପୃଥିବୀର ସମସ୍ତ ଧର୍ମ ଓ ସଂସ୍କୃତି କ୍ଷେତ୍ରରେ ଗୃହୀତ ।

ଶ୍ରୀଜଗନ୍ନାଥ ବୈଦିକ ଓ ଲୌକିକ ବିଶ୍ୱାସର ଅଦ୍ୱୈତରୂପ ତଥା ସନାତନ ଧର୍ମ ଓ ଉପାସନାର ଅପୂର୍ବ ପ୍ରତୀକ ରୂପେ ଉପାସିତ । ସେ ପୁରୁଷୋତ୍ତମ । ଶ୍ରୀମଦ୍‌ଭଗବଦ୍ ଗୀତାର ନିମ୍ନୋକ୍ତିରୁ ଏହାର ସ୍ପଷ୍ଟ ସୂଚନା ମିଳେ ।

ଯସ୍ମାତ୍ କ୍ଷରମତୀ ତୋଽହମକ୍ଷରାଦପି ଚୋତ୍ତମଃ ।
ଅତୋଽସ୍ମି ଲୋକେ ବେଦେ ଚ ପ୍ରଥିତଃ ପୁରୁଷୋତ୍ତମଃ ॥୧୫-୧୮॥

ଭଗବାନ୍ ଶ୍ରୀକୃଷ୍ଣ କହିଛନ୍ତି-ମୁଁ ଜୀବଜଗତର ଅଗମ୍ୟ ଓ ସ୍ଥିର ଏବଂ ସ୍ଥାବର ପରି ଧୈର୍ଯ୍ୟଶୀଳ ।ତେଣୁ ବେଦାଦି ଶାସ୍ତ୍ର ଓ ଲୋକବିଚାରରେ ମୁଁ ପୁରୁଷୋତ୍ତମ ନାମରେ ଅଭିହିତ । ପୁରୁଷୋତ୍ତମ ଶ୍ରୀକୃଷ୍ଣ-ଜଗନ୍ନାଥ ସର୍ବଶ୍ରେଷ୍ଠ ଦେବତା ଏବଂ ତାଙ୍କର ଧାମ ସର୍ବଶ୍ରେଷ୍ଠ କ୍ଷେତ୍ର ରୂପେ ବିବେଚିତ । ତାହାହିଁ କପିଳ ସଂହିତାରେ ଉଲ୍ଲିଖିତ ହୋଇଛି :

ସର୍ବେଷାଂ ଚୈବ ଦେବାନାଂ ରାଜା ଶ୍ରୀ ପୁରୁଷୋତ୍ତମଃ ।
ସର୍ବେଷାଂ ଚୈବ କ୍ଷେତ୍ରାଣାଂ ରାଜା ଶ୍ରୀ ପୁରୁଷୋତ୍ତମଃ

ପୁରୁଷୋତ୍ତମ ଶ୍ରୀଜଗନ୍ନାଥ କ୍ରମେ ସନାତନ ଧର୍ମର ଶାଖା ପ୍ରଶାଖା ରୂପେ ବିକଶିତ ଜୈନ, ବୌଦ୍ଧ, ଶୈବ, ବୈଷ୍ଣବ,ଶାକ୍ତ, ସୌର, ଗାଣପତ୍ୟାଦି ମତବାଦର ସମନ୍ୱୟାତ୍ମକ ସର୍ବୋତ୍ତମ ଉପାସ୍ୟ ରୂପେ ଆରାଧିତ । ସେଥିପାଇଁ ଶ୍ରୀଜଗନ୍ନାଥଙ୍କୁ ଏକରେ ଅନେକ ଓ ଅନେକର ଏକ ପ୍ରତୀକ ରୂପେ ଗ୍ରହଣ କରାଯାଇଛି ।

ଶ୍ରୀ ଜଗନ୍ନାଥ କେବଳ ଓଡ଼ିଶାର ନୁହନ୍ତି, ସମଗ୍ର ଭାରତର ଜାତୀୟ ଦେବତା । ତାଙ୍କ ଉପାସନାରେ ରାଜା, ପ୍ରଜା, ଧନୀ , ସାନ, ବଡ଼, ଧନ, ନିର୍ଦ୍ଧନ ସମସ୍ତଙ୍କର ସମ ଅବଦାନ ଓ ଅଧିକାର ରହିଛି । ତେଣୁ ତାଙ୍କୁ ଭାରତର ଗଣ ଦେବତା କହିଲେ ଅତ୍ୟୁକ୍ତି ହେବ ନାହିଁ । ଶାନ୍ତି, ମୈତ୍ରୀ, ପ୍ରଗତି ଓ ସହାବସ୍ଥାନ ଭାରତୀୟ ଧର୍ମ ଓ ସଂସ୍କୃତିର ମୂଳମନ୍ତ୍ର । ତାହାହିଁ ଜଗନ୍ନାଥ ଚେତନାର ସାରମର୍ମ । କୈବଲ୍ୟ ଲାଭ ଏହାର ଚରମ ଓ ପରମ ଲକ୍ଷ୍ୟ ।

ଶ୍ରୀ ଜଗନ୍ନାଥ ଜୈନମାନଙ୍କ ଜିନ, ବୌଦ୍ଧମାନଙ୍କ ବୁଦ୍ଧ, ବୈଷ୍ଣବମାନଙ୍କ ବିଷ୍ଣୁ, ବାମନ, ନୃସିଂହ, ରାମ ଓ କୃଷ୍ଣ, ଶୈବମାନଙ୍କ ଶିବ, ଶାକ୍ତମାନଙ୍କର ଶକ୍ତି, ସୌରମାନଙ୍କର ସୂର୍ଯ୍ୟନାରାୟଣ ଓ ଗାଣପତ୍ୟଙ୍କ ଗଣପତି ରୂପେ ଭାରତୀୟ କବି, ପଣ୍ଡିତ, ଶାସକ, ସନ୍ଥ ପ୍ରଭୃତିଙ୍କ ଦ୍ୱାରା କୀର୍ତ୍ତିତ ହୋଇ ଆସୁଛନ୍ତି । ଓଡ଼ିଶାର ରାଜା ଓ ବୌଦ୍ଧ ବଜ୍ରଯାନର ପ୍ରବର୍ତ୍ତକ ଇନ୍ଦ୍ରଭୂତିଙ୍କ (୭୨୦ ଖ୍ରୀ.ଅ.) ଜ୍ଞାନସିଦ୍ଧିରେ ଶ୍ରୀଜଗନ୍ନାଥଙ୍କୁ ସର୍ବବୁଦ୍ଧମୟ ଶୂନ୍ୟ ପୁରୁଷ ରୂପେ, ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କ (୮୨୦-ଖ୍ରୀ.ଅ.) : ବିଷ୍ଣୁ ସହସ୍ର ନାମ ଭାଷ୍ୟରେ ଶ୍ରୀକୃଷ୍ଣଙ୍କୁ ଜଗନ୍ନାଥ ନାମରେ ଅଭିହିତ କରାଯାଇଛି । ନାଟ୍ୟକାର ମୁରାରିଙ୍କ (୮୫୦ ଖ୍ରୀ.ଅ.) ଅନର୍ଘରାଘବ ନାଟକରେ ଶ୍ରୀଜଗନ୍ନାଥ, କରୁଣାବ୍ଧି ଓ ଜଳାନୟନ, ପଣ୍ଡିତ ପୁରୁଷୋତ୍ତମ ଦେବଙ୍କ (୮୫୦-ଖ୍ରୀ.ଅ) ତ୍ରିକାଣ୍ଡଶେଷ ଗ୍ରନ୍ଥରେ ବିଷ୍ଣୁ ଓ ଜଗନ୍ନାଥ, ନାଟ୍ୟକାର କୃଷ୍ଣ ମିଶ୍ରଙ୍କ (୧୦୫୦-ଖ୍ରୀ.ଅ) ପ୍ରବୋଧ ଚନ୍ଦ୍ରୋଦୟ ନାଟକରେ ପୁରୁଷୋତ୍ତମ ଓ ଜୈନକବି ହେମଚନ୍ଦ୍ରଙ୍କ (୧୦୮୮-ଖ୍ରୀ.ଅ.) ଅଭିଧାନ ଚିନ୍ତାମଣିରେ ବିଷ୍ଣୁ, ଜଗନ୍ନାଥ ପ୍ରଭୃତି ନାମରେ ବର୍ଣ୍ଣିତ ହୋଇଛନ୍ତି । ମହାକବି ଶ୍ରୀହର୍ଷଙ୍କ (୧୧୦୦-ଖ୍ରୀ.ଅ) ନୈଷଧୀୟ ଚରିତରେ (୧୫-୮୮) ଶ୍ରୀଜଗନ୍ନାଥଙ୍କୁ ପୁରୁଷୋତ୍ତମ, କବିରାଜ ଜୟଦେବଙ୍କ (୧୧୪୬-ଖ୍ରୀ.ଅ) ଗୀତଗୋବିନ୍ଦରେ ଦଶାକୃତିକୃତ ଜଗଦୀଶ, କୃଷ୍ଣ, ଗୋବିନ୍ଦ, କେଶବ, ହରି ଓ ବାସୁଦେବ ଏବଂ ଅନନ୍ତବାସୁଦେବ ମନ୍ଦିର ଶିଳାଲେଖରେ (୧୨୭୮-ଖ୍ରୀ.ଅ) ଶ୍ରୀକୃଷ୍ଣ ରୂପେ ସ୍ତୁତି କରାଯାଇଛି । ପଣ୍ଡିତ ଭୂଷିତ ବିଦ୍ୟାକର ବାଜପେୟୀଙ୍କ (୧୩୫୦ ଖ୍ରୀ.ଅ) ନିତ୍ୟାଚାର ପଦ୍ଧତି ଗ୍ରନ୍ଥରେ ଶ୍ରୀଜଗନ୍ନାଥ ଚରାଚରଗୁରୁ ଜଗନ୍ନାଥ, ଗଜପତି ପୁରୁଷୋତ୍ତମ ଦେବଙ୍କ ଅଭିନବ ଗୀତଗୋବିନ୍ଦରେ ଚକ୍ରଧର (୧୪୬୬-୧୪୯୭ ଖ୍ରୀ.ଅ) ଅଭିନବ ଗୀତଗୋବିନ୍ଦରେ ଚକ୍ରଧର ରୂପଧାରୀ ନୀଳଗିରି ପତି ଅଚ୍ୟୁତ, ରାୟରାମାନନ୍ଦଙ୍କ (୧୪୯୬-ଖ୍ରୀ.ଅ) ଜଗନ୍ନାଥ ବଲ୍ଲଭ ନାଟକରେ ଗୋପୀନାଥ କୃଷ୍ଣ ନାମରେ ଅଭିବନ୍ଦିତ ହୋଇଛନ୍ତି ।

ଖ୍ରୀଷ୍ଟୀୟ ନବମ ଶତାବ୍ଦୀଠାରୁ ଶ୍ରୀଜଗନ୍ନାଥ, ବିଷ୍ଣୁ ଓ କୃଷ୍ଣ ନାମରେ ବର୍ଣ୍ଣିତ ହୋଇ ଆସୁଥିବା ଉପର୍ଯ୍ୟୁକ୍ତ ଉଲ୍ଲେଖରୁ ସୂଚିତ ହୁଏ । ଓଡ଼ିଶାର କବିମାନଙ୍କ ସଂସ୍କୃତ ଓ ଓଡ଼ିଆ ରଚନାବଳୀରେ ଦଶାବତାର

ଅବଶିଷ୍ଟ ପୃଷ୍ଠାରେ

ଶ୍ରୀଜଗନ୍ନାଥଙ୍କୁ ଦାରୁବ୍ରହ୍ମ, କାମଦ, ଶାଶ୍ୱତଧାମ, ଲକ୍ଷ୍ମୀପତି, ପୁରୁଷୋତ୍ତମ, ପତିତପାବନ, ଦୀନବନ୍ଧୁ, ମଧୁସୂଦନ ପ୍ରଭୃତି ବିଭିନ୍ନ ନାମରେ ସ୍ତୁତି କରାଯାଇଥିଲେ ମଧ ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀଠାରୁ ସେ ମୁଖ୍ୟତଃ କୃଷ୍ଣ ଓ କୃଷ୍ଣ ପର୍ଯ୍ୟାୟ ଅନ୍ତର୍ଗତ ଗୋପନାୟକ, ମାଧବ, ବାସୁଦେବ, ରାଧାମାଧବ, ଗୋବିନ୍ଦ, ପୀତାମ୍ବର ପ୍ରଭୃତି ନାମରେ ବର୍ଣ୍ଣିତ ହୋଇଛନ୍ତି । ମହାକବି ସାରଳା ଦାସ ( ୧୪୩୫-ଖ୍ରୀଅ) ଶ୍ରୀଜଗନ୍ନାଥଙ୍କୁ କୃଷ୍ଣ ପର୍ଯ୍ୟାୟର ବିଭିନ୍ନ ନାମରେ ସ୍ତୁତି କରିଛନ୍ତି । ନୀଳକନ୍ଦରବାସୀ ଜଗନ୍ନାଥ ହିଁ ପୁରୁଷୋତ୍ତମ ଜଗନ୍ନାଥ-କୃଷ୍ଣ ବୋଲି ସାରଳା ମହାଭାରତର ନିମ୍ନୋକ୍ତିରୁ ଜଣାଯାଏ ।

ତୁମେ ହରି ଅର୍ଜୁନ ଏ ଅଟଇ ଜାରା ଶବର
କୃଷ୍ଣ ପିଣ୍ଡ ଏ ପୂଜା କରିବ ନୀଳକନ୍ଦର ॥

ଶ୍ରୀକୃଷ୍ଣ ହିଁ ଜଗନ୍ନାଥ ଓ ଜଗନ୍ନାଥ ହିଁ ଶ୍ରୀକୃଷ୍ଣ, ଏହି ଭାବନା ପଞ୍ଚସଖା ଯୁଗର ସାହିତ୍ୟରେ ସମଧିକ ବିସ୍ତାର ଲାଭ କରିଥିଲା । କବି ଦିବାକର ଦାସଙ୍କ 'ଜଗନ୍ନାଥ ଚରିତାମୃତ', ଯଶୋବନ୍ତ ଦାସଙ୍କ 'ପ୍ରେମଭକ୍ତି ବ୍ରହ୍ମଗୀତା', ଅଚ୍ୟୁତାନନ୍ଦ ଦାସଙ୍କ 'ଶୂନ୍ୟସଂହିତା', ବଳରାମ ଦାସଙ୍କ 'ବେଦାନ୍ତ ସାରଗୀତା', ଦୀନକୃଷ୍ଣଙ୍କ 'ନାମରତ୍ନ ଗୀତା' ପ୍ରଭୃତିରେ ସେହି ଭାବନା ପ୍ରତିଧ୍ୱନିତ ହୋଇଛି । କବି ଶିଶୁଶଙ୍କରଙ୍କ 'ଉଷାଭିଳାଷ, କାର୍ତ୍ତିକ ଦାସଙ୍କ 'ରୁକ୍ମିଣୀ ବିଭା', ବିଷ୍ଣୁ ଦାସଙ୍କ 'ପ୍ରେମଲୋଚନା', ଦେବଦୁର୍ଲଭଙ୍କ 'ରହସ୍ୟମଞ୍ଜରୀ', ଲୋକନାଥ କବିଙ୍କ 'ନୀଳାଦ୍ରି ମହୋତ୍ସବ' ଆଦି କାବ୍ୟ, ଭକ୍ତ ସାହିତ୍ୟ, ଉଚ୍ଚଯୋଗୀୟ ସାହିତ୍ୟ ସହିତ ଶହଶହ ଭଜନ, ଜଣାଣ, ଚଉତିଶା, କୋଇଲି ପ୍ରଭୃତି ରଚନାରେ ଶ୍ରୀକୃଷ୍ଣ ଜଗନ୍ନାଥଙ୍କ ମହିମା କୀର୍ତ୍ତନ କରାଯାଇଛି । ବିଭିନ୍ନ ପୁରାଣ ସହିତ ଓଡ଼ିଶାର ସଂସ୍କୃତ ଅଭିଲେଖ, ଧର୍ମଶାସ୍ତ୍ର ଓ କାବ୍ୟ ନାଟକାଦି ଗ୍ରନ୍ଥରେ ଶ୍ରୀଜଗନ୍ନାଥ ଓ ଶ୍ରୀକୃଷ୍ଣଙ୍କର ଅଭେଦ କଳ୍ପନା କରାଯାଇଛି । କବି ଦିବାକର ତାଙ୍କର ଜଗନ୍ନାଥ ଚରିତାମୃତରେ ଗାଇଛନ୍ତି–

ଯଦ୍ଧୈର୍ଯକନିଶ୍ୱସିତବାକ୍ ମଧ୍ୟାତିରକ୍ୟ
ଶବ୍ଦଛି ନୈବଦିଶକ୍ତି ଜଗଦଦ୍ଭନାଥାଃ ।
ବିଶ୍ଚର୍ଯ୍ୟବାହସ ବାହ ଯଧ୍ୟ କଳାବିଶେଷେ ।
ଗୋବିନ୍ଦମାଦିପୁରୁଷଂ ତମହଂ ଭଜାମି । ପୃ-୨୨୯

ନିମ୍ନୋକ୍ତ କେତୋଟି ଶ୍ଳୋକରେ ସେହି ଶ୍ରୀକୃଷ୍ଣ ଜଗନ୍ନାଥ ଭାବନାର ମନୋରମ ରୂପାୟନ କରାଯାଇଥିବାର ଦେଖାଯାଏ । କବି ନିତ୍ୟାନନ୍ଦ ତାଙ୍କ ଶ୍ରୀକୃଷ୍ଣଲୀଳାମୃତ କାବ୍ୟରେ ଚତୁର୍ଦ୍ଧାମୂର୍ତ୍ତି ଶ୍ରୀ ଜଗନ୍ନାଥଙ୍କୁ ରାଧାମାଧବ ରୂପେ ବନ୍ଦନା କରିଛନ୍ତି–

ଯଂ ବେଦାନ୍ କବୟୋ ବଦନ୍ତି ଚତୁରାଃ ଶ୍ରୀବାସୁଦେବାଦିକା
ବ୍ୟୂହଃ ସାତ୍ତ୍ୱତପୁଙ୍ଗବାଃ ସ୍ମୃତିନୋ ଧର୍ମାର୍ଥକାମାମୃତମ୍ ।
ଶ୍ରୀ ନୀଳାଚଳ କନ୍ଦରୋଦର ଭୁବି ବ୍ୟକ୍ତଂ ଚତୁର୍ଦ୍ଧା ସ୍ଥିତଂ
ତଂ ବନ୍ଦେମହି ନନ୍ଦନନ୍ଦନତନୁଂ ରାଧାଧବଂ ମାଧବମ୍ ।

କବିମାନେ ଯାହାଙ୍କୁ ଜ୍ଞାନମୟ ବାସୁଦେବାଦି ଚତୁର୍ବ୍ୟୂହ ରୂପେ ବର୍ଣ୍ଣନା କରିଛନ୍ତି, ନୀଳାଦ୍ରି ବିହାରୀ ଚତୁର୍ଦ୍ଧା ମୂର୍ତ୍ତିଧାରୀ ସେହି ରାଧାଧବଙ୍କୁ ମୁଁ ବନ୍ଦନା କରୁଛି । ଅନ୍ୟତମ କବି ଯତୀନ୍ଦ୍ର ରଘୁତ୍ତମ ତୀର୍ଥ ଶ୍ରୀଜଗନ୍ନାଥଙ୍କୁ ରାଧାକୃଷ୍ଣ ତନୁଧାରୀ ବୃନ୍ଦାବନେଶ କୃଷ୍ଣ ଭାବେ ବନ୍ଦନା କରିଛନ୍ତି–

ଯୋ ଦ୍ୱେଧା ପ୍ରକୃତିଃ ପୁମାନିତି ମତଃ ସ୍ତ୍ରୀ ପୁଂସଦେହାଶ୍ରିତୋ
ଯସ୍ତ୍ରେଧା ବିଧି ବିଷ୍ଣୁଶଙ୍କରବପୁର୍ଦ୍ଧାରୀ ଦରୀଦୃଶ୍ୟତେ
ଶ୍ରୀମନ୍ନୀଳଗିରୌତ ଦାରୁତନୁଧୃକ୍ ଯୋଽସୌ ଚତୁର୍ଦ୍ଧା ସ୍ଥିତଃ
ରାଧାକୃଷ୍ଣ ତନୁଧରୋ ବିଜୟତେ ବୃନ୍ଦାବନେଶଃ ପ୍ରଭୁଃ ।

ଯେ ପ୍ରକୃତି ପୁରୁଷ ରୂପେ ଦ୍ୱିବିଧ ରୂପଧାରୀ, ବ୍ରହ୍ମା-ବିଷ୍ଣୁ-ଶିବ ରୂପେ ତ୍ରିବିଧ ରୂପଧାରୀ, ନୀଳଗିରିରେ ଦାରୁ ରୂପଧାରୀ ଚତୁର୍ଦ୍ଧା ମୂର୍ତ୍ତି, ସେହି ରାଧାକୃଷ୍ଣ ତନୁଧାରୀ ବୃନ୍ଦାବନ ବିହାରୀ କୃଷ୍ଣ ବିଜୟ କରିଛନ୍ତି । କବି ବାସୁଦେବ ରଥ ସୋମଯାଜୀଙ୍କ ପ୍ରଣୀତ 'ଗଙ୍ଗାବଂଶାନୁଚରିତ ଚମ୍ପୂ', ସାମନ୍ତ ଚନ୍ଦ୍ରଶେଖରଙ୍କ ସିଦ୍ଧାନ୍ତ ଦର୍ପଣ ସହିତ ବିଭିନ୍ନ କାବ୍ୟ ନାଟକ ଶତକାଦି ରଚନାରେ ଶ୍ରୀକୃଷ୍ଣ ଜଗନ୍ନାଥଙ୍କ ଭୂରି ଭୂରି ବର୍ଣ୍ଣନା କରାଯାଇଛି । ଓଡ଼ିଶାର ପ୍ରସ୍ତମୂର୍ତ୍ତି କଳାରେ ମଧ ବିଷ୍ଣୁ-କୃଷ୍ଣ ବା କୃଷ୍ଣ-ବିଷ୍ଣୁ ରୂପାୟିତ ହୋଇଛନ୍ତି ।

ଶ୍ରୀଜଗନ୍ନାଥଙ୍କ ଅଦ୍ଭୁତ ଦାରୁମୂର୍ତ୍ତି ଦର୍ଶନରେ ଜ୍ଞାନୀମାନଙ୍କ ମନ ସଂଶୟାକୁଳ ହୋଇଉଠେ । ଦାରୁରୂପୀ ଜଗନ୍ନାଥ କ'ଣ ବ୍ରହ୍ମ ? ତାଙ୍କୁ ବାମନ, ନୃସିଂହ, ରାମ, କୃଷ୍ଣ ରୂପେ କିପରି ଓ କାହିଁକି କଳ୍ପନା କରାଯାଇଛି ? ଏସବୁ ପ୍ରଶ୍ନ ପ୍ରଶ୍ନରେ ହିଁ ରହିଯାଏ । କାଳକ୍ରମେ ସେହି ପ୍ରଶ୍ନ ସମ୍ପତ୍ତିସୂଚକ ଉତ୍ତରରେ ପରିଣତ ହୁଏ । 'ବିଶ୍ୱାସେ ମିଳଇ କୃଷ୍ଣ ତର୍କେ ବହୁଦୂର' କଥାଟିର ତର୍ଜମା ଅନାବଶ୍ୟକ । ତର୍କ ସୀମାହୀନ ଓ ଅପ୍ରତିଷ୍ଠ । ବିଶ୍ୱାସ ଭାବ ଆଶ୍ରିତ । ଦେବତା କାଷ୍ଠ, ପାଷାଣ ବା ମୃତ୍ତିକାର ପ୍ରତିମାରେ ନୁହେଁ, ଭାବରେ ହିଁ ବିଦ୍ୟମାନ । ତେଣୁ କୁହାଯାଇଛି–

ନ ଦେବୋ ବିଦ୍ୟତେ କାଷ୍ଠେ ନ ପାଷାଣେ ନ ମୃଣ୍ମୟେ
ଦେବୋହି ବିଦ୍ୟତେ ଭାବେ ତସ୍ମାଦ୍ ଭାବୋହି କାରଣମ୍ ।

ସେଥିପାଇଁ ଶ୍ରୀମଦ୍ ଭଗବଦ୍ ଗୀତାରେ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି " ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂ ସ୍ତଥୈବ ଭଜାମ୍ୟହଂ" ମୋତେ ଯେ ଯେପରି ଭାବେ, ମୁଁ ତା' ଠାରେ ସେହି ଭାବରେ ଉପନୀତ ହୁଏ । ଭାବନା ଓ ଉପାସନା ଅନୁସାରେ ଫଳମିଳେ । ଉପାସନାରୁ ଭାବନା, ଭାବନାରୁ ଜ୍ଞାନ ଓ ଜ୍ଞାନରୁ ମୁକ୍ତି ଲାଭହୁଏ । ପୁରୁଷୋତ୍ତମ ଶ୍ରୀକୃଷ୍ଣ-ଜଗନ୍ନାଥ ଅରୂପ ନିରାକାର ଓ ନିର୍ଗୁଣ ଏବଂ ଦୃଶ୍ୟମାନ ରୂପରେ, ସାକାର ଓ ସଗୁଣ ତଥା ଉଭୟାତ୍ମକ ଓ ଅନୁଭବାତ୍ମକ ରୂପେ ପ୍ରତିପାଦିତ ହୋଇଛନ୍ତି ତେଣୁ ଜଗନ୍ନାଥଙ୍କୁ ନିମ୍ନମତେ ପ୍ରାର୍ଥନା ଜଣାଇ ଏହି ଆଲୋଚନାର ଉପସଂହାର କରାଯାଇପାରେ ।

ରୂପଂ ରୂପବିବର୍ଜିତସ୍ୟ ଭବତଃ ଧ୍ୟାନେନ ଯଦ୍‌ବର୍ଣ୍ଣିତଂ
ସ୍ତୁତ୍ୟା ନିର୍ବଚନୀୟତାଖିଳଗୁରୋ ଦୂରୀକୃତା ଯନ୍ମୟା ।
ବ୍ୟାପିତ୍ୱଞ୍ଚ ନିରାକୃତଂ ଭଗବତୋ ଯତ୍ତୀର୍ଥ ଯାତ୍ରାଦିନା
କ୍ଷନ୍ତବ୍ୟଂ ଜଗଦୀଶ ତଦ୍‌ବିକଳତା ଦୋଷତ୍ରୟଂ ମତ୍କୃତମ୍ ।।

ହେ ଜଗଦୀଶ ଜଗନ୍ନାଥ ! ମୋର ତିନୋଟି ଦୋଷ କ୍ଷମା କରନ୍ତୁ । ତୁମେ ଅରୂପ; କିନ୍ତୁ ରୂପ ବିବର୍ଜିତ ତୁମର ରୂପକୁ ମୁଁ ଧ୍ୟାନରେ କଳ୍ପନା କରିଛି । ହେ ଅଖିଳଗୁରୋ ! କୃଷ୍ଣ ! ତୁମେ ଅନିର୍ବଚନୀୟ, ହେ ଅନ୍ତର୍ଯ୍ୟାମିନ୍ ! ତୁମେ ସର୍ବବ୍ୟାପୀ କିନ୍ତୁ ବିଭିନ୍ନ ତୀର୍ଥରେ ବୁଲି ବୁଲି ମୁଁ ତୁମର ବ୍ୟାପିକୁ ପ୍ରତିହତ କରିଛି । ଧ୍ୟାନ, ସ୍ତୁତି ଓ ତୀର୍ଥ ଯାତ୍ରାଦ୍ୱାରା ମୁଁ ତୁମକୁ ବିକଳ କରିଦେଉଛି । ମୁଁ ଜଣେ ମହାନ ଅପରାଧୀ, ମୁଁ ତୁମର ଆଶ୍ରିତ । ତୁମେ ମୋର ଅପରାଧ କ୍ଷମା ନକଲେ ମୋତେ ଆଉ କିଏ ରକ୍ଷା କରିବ ?

ସେହି ଭାବଗ୍ରାହୀ ଶ୍ରୀକୃଷ୍ଣ ଜଗନ୍ନାଥଙ୍କ ଠାରେ ନିଜର ଅଭିଳାଷ ନିବେଦନ କରିବାକୁ ଯାଇ ଭକ୍ତକବି ଗାଇଛନ୍ତି–

ନୀଳଶୈଳ ନିକଟେ ନିକେତନଂ
ନନ୍ଦନନ୍ଦନ ପଦାବ୍ଜବନ୍ଦନମ୍ ।
ଭୁକ୍ତଶେଷ କବଳେ ହରେ ସ୍ପୃହା
ସମ୍ଭବନ୍ତୁ ମମ ଜନ୍ମ ଜନ୍ମନି ।।

ଶିବାଶ୍ରମ, ପ୍ଲଟ୍.ନଂ-୩୧୮ ୧/୮୨
କୋଟିତୀର୍ଥମାର୍ଗ, ଭୁବନେଶ୍ୱର-୨



# କ୍ଷେତ୍ର ପୁରୁଷୋତ୍ତମ ଦେବତା ପରମବ୍ରହ୍ମ

• ଶ୍ରୀ ରଜତ କୁମାର କର

ପୁରୀ ଗୋବର୍ଦ୍ଧନ ମଠର ମଠାମ୍ନାୟରେ ଆଦିଶଙ୍କରାଚାର୍ଯ୍ୟ ଲେଖିଥିଲେ–

ପୁରୁଷୋତ୍ତମସ୍ତୁ କ୍ଷେତ୍ରଂ
ବିମଳାଖ୍ୟାହି ଦେବୀ ଜଗନ୍ନାଥୋଽସ୍ୟ ଦେବତା ।

ପୁଣି ଲେଖିଥିଲେ–

"ମହାବାକ୍ୟଞ୍ଚ ତତ୍ରସ୍ୟାଦ୍ ପ୍ରଜ୍ଞାନଂ ବ୍ରହ୍ମଚୋଚ୍ୟତେ

ଏ କ୍ଷେତ୍ରର ନାମ ପୁରୁଷୋତ୍ତମ ଓ ଦେବତାର ନାମ ଜଗନ୍ନାଥ । ମହାବାକ୍ୟ ନାମ "ପ୍ରଜ୍ଞାନଂ ବ୍ରହ୍ମ ।

ଉପରୋକ୍ତ ରଚନାରୁ ଜଣାପଡୁଛି, ଶଙ୍କରାଚାର୍ଯ୍ୟଙ୍କ ସମୟରେ କ୍ଷେତ୍ରର ନାମ ପୁରୁଷୋତ୍ତମ ଥାଉ ଦେବତାଙ୍କ ନାମ ଜଗନ୍ନାଥ ଥିଲା । ପରବର୍ତ୍ତୀ କାଳରେ ଦେବତା ମଧ୍ୟ ପୁରୁଷୋତ୍ତମ ରୂପେ ଖ୍ୟାତି ଲାଭ କଲେ । ଆଶ୍ଚର୍ଯ୍ୟର ବିଷୟ, ପୁରୁଷୋତ୍ତମ ଓ ଜଗନ୍ନାଥ ମଧ୍ୟରୁ କେଉଁଟି ପ୍ରାଚୀନ ଓ କେଉଁଟି ଅର୍ବାଚୀନ, ସେଥିଲାଗି ମତ କଟାକଟି ଚାଲିଛି ।

ଶିଳାଲିପିକୁ ଭିତ୍ତି କରି ମତ ପ୍ରକାଶ ପାଉଛି ଯେ, ପ୍ରତ୍ୟେକ ଶିଳାଲିପିରେ ଦେବତାଙ୍କ ନାମ ପୁରୁଷୋତ୍ତମ ବୋଲି ଉଲ୍ଲେଖ କରାଯାଇଛି । ଚତୁର୍ଦ୍ଦଶ ଶତାବ୍ଦୀ ବେଳକୁ ଶିଳାଲିପିରେ ଜଗନ୍ନାଥ ସ୍ଥାନ ପାଇଲା । ତେଣୁ କୁହାଯାଉଛି ଜଗନ୍ନାଥ ନାମ ବହୁତ ପରବର୍ତ୍ତୀ କାଳର ।

ଏବେ ପୁରୁଷୋତ୍ତମ ନାମ ପରିବର୍ତ୍ତେ କ୍ଷେତ୍ର ଦେବତା ଜଗନ୍ନାଥ ରୂପେ ଅଧିକ ପରିଚିତ । ଦେବତାଙ୍କ ନାମ ପୁରୁଷୋତ୍ତମ ହେତୁ କ୍ଷେତ୍ରନାମ ପୁରୁଷୋତ୍ତମ ହେବା କଥା କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ସୂଚନା ଦେଇଛନ୍ତି–

"ଯେଣୁ ନାରାୟଣ ଦେହି
ତେଣୁ ସେହି ନାମ"

ଏହି କ୍ଷେତ୍ର ନାରାୟଣଙ୍କ ଦେହ ସ୍ୱରୂପ, ତେଣୁ ଏହି ନାମ । ସଂସ୍କୃତ ପୁରାଣମାନଙ୍କରେ କୁହାଯାଇଛି "ବିଷ୍ଣୋଃକଳେବରେଽସ୍ମିନ୍" । ଏହା ବିଷ୍ଣୁଙ୍କ କଳେବର ସ୍ୱରୂପ । କ୍ଷେତ୍ରର ଦେବତା ପୁରୁଷୋତ୍ତମଙ୍କ ନାମାନୁସାରେ କ୍ଷେତ୍ରମଧ୍ୟ ପୁରୁଷୋତ୍ତମ ଭାବେ ଖ୍ୟାତି ଲାଭ କରିଛି । ଏକଥା କହିବାବେଳେ ନିଜ କାବ୍ୟ, "କୋଟିବ୍ରହ୍ମାଣ୍ଡସୁନ୍ଦରୀ'ରେ ଭଞ୍ଜ କହୁଛନ୍ତି, ସେ କନ୍ଦୁକଟକ ରାଜା ନାମ ଜଗନ୍ନାଥ" ।

ଉପେନ୍ଦ୍ରଭଞ୍ଜଙ୍କ ସମସାମୟିକ ଦିବ୍ୟସିଂହ ଦେବ ତଥା ତାଙ୍କ ପୂର୍ବଜ ରାମଚନ୍ଦ୍ରଦେବ ପ୍ରଥମଙ୍କ ବେଳକୁ ଦେବତାଙ୍କ ନାମ ଥିଲା ଜଗନ୍ନାଥ । ଏଠି ଜଗନ୍ନାଥ, ପୁରୁଷୋତ୍ତମ, ନାରାୟଣ, ବିଷ୍ଣୁ ଏକ ଅର୍ଥରେ ବ୍ୟବହୃତ ହୋଇଛନ୍ତି । ସାରଳାଦାସ ନିଜ ରଚନାରେ ଅଧିକାଂଶ ସମୟରେ କୃଷ୍ଣଙ୍କୁ ଜଗନ୍ନାଥ ବୋଲି କହିଛନ୍ତି । ହରିବଂଶ, ଗର୍ଗ ସଂହିତା, ଅଗ୍ନିପୁରାଣ ପ୍ରଭୃତିରେ କୃଷ୍ଣ, ଜଗନ୍ନାଥ, ବିଷ୍ଣୁ, ପୁରୁଷୋତ୍ତମ ଏକ ଅର୍ଥରେ ବ୍ୟବହୃତ ହୋଇଛନ୍ତି । ଚଣ୍ଡୀରେ ନିଦ୍ରାଭଙ୍ଗ ପରେ ବିଷ୍ଣୁଙ୍କୁ ଜଗନ୍ନାଥ ଭାବେ ବର୍ଣ୍ଣନା କରାଯାଇଛି । ଉତ୍ତସ୍ଥୌ ଜଗନ୍ନାଥ" ବୋଲି କୁହାଯାଇଛି ।

କ୍ଷେତ୍ର ନାମାନୁସାରେ ଦେବତା ବା ଦେବତାନୁଯାୟୀ କ୍ଷେତ୍ର; ଏ କଥା ଉପରେ ବେଶୀ ତର୍କ କରି ଲାଭ ନାହିଁ ।

ପୁରାଣରେ ପ୍ରାଚୀନ ଋଷି କଣ୍ଡୁଙ୍କ ବର୍ଣ୍ଣନା ରହିଛି । ସେ ଜଣେ ସିଦ୍ଧ ସାଧକ ଥିଲେ । ତାଙ୍କ ସିଦ୍ଧି ନଷ୍ଟ କରିବା ପାଇଁ ପ୍ରମ୍ଳୋଚା ନାମ୍ନୀ ଅପ୍ସରାକୁ ପଠେଇଲେ ଇନ୍ଦ୍ର । ବହୁଶତ ବର୍ଷ ତା ସଙ୍ଗେ ବିହାର କଲାପରେ, ସେ ଘୋର ଅନୁତାପ କରି ପୁରୁଷୋତ୍ତମ କ୍ଷେତ୍ରକୁ ଯାତ୍ରା କଲେ । "ପୁରୁଷୋତ୍ତମାଖ୍ୟଂ ବିଷ୍ଣୋରାୟତନଂ ଯଯୌ" ଏହି ବିଷ୍ଣୁ ଆୟତନ ପୁରୁଷୋତ୍ତମ ମନ୍ଦିର ବା କ୍ଷେତ୍ରକୁ ବୁଝାଉଛି । ସେଠାରେ ସେ ବ୍ରହ୍ମଙ୍କ ସ୍ୱରୂପ ଉପଲବ୍ଧି କରିବା ନିମନ୍ତେ ବ୍ରହ୍ମ-ପାର ମନ୍ତ୍ର ଜପ କଲେ । ସେ ମନ୍ତ୍ରର କିଛି ଅଂଶ ହେଲା:–

'ପାରଂ ପରଂ ବିଷ୍ଣୁରପାରପାରଃ
ପରଃ ପରେଭ୍ୟଃ ପରମାତ୍ମରୂପଃ
ସ ବ୍ରହ୍ମପାରଃ ପରପାରଭୂତଃ
ପରଃ ପରାଣାମପି ପାରପାରଃ

ଏହି କ୍ଷେତ୍ରରେ ସମସ୍ତ ବ୍ରହ୍ମ ଚିନ୍ତନର ଊର୍ଦ୍ଧ୍ୱରେ ଥିବା ପରବ୍ରହ୍ମଙ୍କ ଉପାସନା ହେଉଥିଲା । ଦେବତା ଏଠି ସର୍ବବ୍ୟାପୀ ବିଷ୍ଣୁ (ବିଷ୍ ଧାତୁ ବ୍ୟାପ୍ତି ଅର୍ଥରେ ପ୍ରୟୋଗ) ନୁହଁନ୍ତି; ଏ ବିଷ୍ଣୁ ଚିନ୍ତନର ଊର୍ଦ୍ଧ୍ୱ ବା ପର ପାରିର ସତ୍ତା; ଏ ମହାବିଷ୍ଣୁ, ଯାହାଙ୍କୁ ଶାକ୍ତ ଚିନ୍ତାରେ କୁହାଯାଉଛି ଦେବୀ ଓ ଶୈବ ମତରେ ଯିଏ ପରମ ଶିବ । ତାଙ୍କୁ ମହାଶୂନ୍ୟ, ବୋଧି କୁହାଯାଇପାରିବ । ଏହାଙ୍କୁହିଁ ମହାଯାନ ବୌଦ୍ଧ ଶାସ୍ତ୍ରରେ କୁହାଯାଏ ଆଦିବୁଦ୍ଧ ଜଗନ୍ନାଥ । ଏହାଙ୍କ ଉଦ୍ଦେଶ୍ୟରେ ଓଡ଼ିଶାର ସମ୍ବଳ ଖଣ୍ଡ ବା ସମ୍ବଲପୁରର ରାଜା ମହାଯାନ ବୌଦ୍ଧ ଚିନ୍ତାର ପ୍ରବକ୍ତା ଇନ୍ଦ୍ରଭୂତି କହିଲେ–

"ପ୍ରଣିପତ୍ୟ ଜଗନ୍ନାଥଂ ସର୍ବଜିନବରାର୍ଚ୍ଚିତ"
ସବୁ ଜିନଙ୍କ ଠାରୁ ସେ ଶ୍ରେଷ୍ଠ ।

ଏହି ବ୍ରହ୍ମ ସର୍ବୋତ୍ତମ । ପଦ୍ମପୁରାଣର "ପୁରୁଷୋତ୍ତମୋତ୍ତମ" ବା ଉତ୍ତମ ପୁରୁଷୋତ୍ତମ ଏ ।

ପରବର୍ତ୍ତୀ କାଳରେ ଶ୍ରୀକୃଷ୍ଣ ଚିନ୍ତନର ପ୍ରବଳ ପ୍ରଭାବରେ ବିଷ୍ଣୁ ଚିନ୍ତନ କ୍ଷୀଣପ୍ରଭ ହୋଇଗଲା । ବିଷ୍ଣୁ ଚତୁର୍ଭୁଜ ହୋଇ ବୈକୁଣ୍ଠଧାମରେ ରହିଲେ । ତାଙ୍କ ଊର୍ଦ୍ଧ୍ୱରେ ରହିଲେ ଗୋଲକ ଧାମର ନିତ୍ୟରାସ ବିହାରୀ ସଦା ଯୁଗଳ ମୂର୍ତ୍ତି, କିଶୋର ବୟସ୍କ ରାଧାକୃଷ୍ଣ । ଏଇ ରାଧାକୃଷ୍ଣଙ୍କୁ ପଞ୍ଚସଖା ଦେଖିଲେ ଜଗନ୍ନାଥଙ୍କ ଚକାଡୋଳା ମିଶ୍ରିତ ବିପୁଳ ଦାରୁ ଗାତ୍ରି ବିଗ୍ରହରେ ।

ମହାଭାରତ ଅନୁସାରେ ସେ ଶ୍ୱେତଦ୍ୱୀପବାସୀ ମହାବିଷ୍ଣୁଙ୍କ ଚତୁର୍ଦ୍ଦିଗ ନାରାୟଣଙ୍କ ଉପାସ୍ୟ । ତାଙ୍କୁ ଋଷି ଦୁର୍ବାସା ଦେଖି ନପାରି ହୋଇଥିଲେ

ଓଲଟ ପୃଷ୍ଠା

ଥାଏ । ସେହି ସୂକ୍ଷ୍ମାତିସୂକ୍ଷ୍ମ ସତ୍ତାକୁ ଅନୁଭବ କରି ପାରିଲେ କେବଳ ମହର୍ଷି ନାରଦ ।

ଉପରୋକ୍ତ ଆଲୋଚନାର ଉଦ୍ଦେଶ୍ୟ ହେଲା, ବିଷ୍ଣୁ ଉପାସନା ସର୍ବୋତ୍ତମ ନୁହେଁ । ବୈଦିକ ଯୁଗର ଯାଗଯଜ୍ଞରେ ଯେଉଁ ସୂକ୍ଷ୍ମ ମହାସତ୍ତାକୁ ଆବାହନ କରାଯାଉଥିଲା ତାଙ୍କୁ ଅଗ୍ନି, ମିତ୍ର ବରୁଣ, ଇନ୍ଦ୍ର ପ୍ରଭୃତି ବିଭିନ୍ନ ନାମ ଦେଲେ ମଧ୍ୟ ଆର୍ଯ୍ୟ ସେହି ଏକମେବା ଦ୍ୱିତୀୟଙ୍କୁ ଚାର ଦେବତାରେ ଅଧିରୂଢ଼ କରାଇଥିଲା । ପରବର୍ତ୍ତୀ କାଳରେ ଶିବଲିଙ୍ଗ, ଶାଳଗ୍ରାମ ଶିଳା ଓ ସ୍ତମ୍ଭରୂପୀ ପ୍ରତୀକଙ୍କ ପୂଜା ହେଲା । ବୌଦ୍ଧ ଯୁଗରୁ ପ୍ରତିମା ନିର୍ମାଣ ଆରମ୍ଭ ହୋଇ ବହୁ ଦେବଦେବୀ ପୂଜା ପାଇଲେ । କ୍ରମେ ବୈଦିକ ଯୁଗର ଶ୍ରେଷ୍ଠ ଦେବତା ରୁଦ୍ର ବିଷ୍ଣୁଙ୍କଠାରୁ ଗୌଣ ହୋଇଗଲେ । ସର୍ବମାନ୍ୟ ସର୍ବପ୍ରଧାନ ହୋଇ ବିଷ୍ଣୁହିଁ ପୂଜିତ ହେଲେ ଓ ତାଙ୍କ କୃଷ୍ଣ ରୂପ ଲୋକପ୍ରିୟ ହୋଇପାରିଲା ।

ପୁରୁଷୋତ୍ତମ କ୍ଷେତ୍ରରେ ପୁରୁଷୋତ୍ତମ ଦେବତା ସ୍ୱାଭାବିକ ବିଷ୍ଣୁ ହେଲେ ହେଁ ସମ୍ପୂର୍ଣ୍ଣ ବିଷ୍ଣୁ ନୁହଁନ୍ତି ।

କଣ୍ୱଙ୍କ ଭଳି ପ୍ରାଚୀନ ଋଷି ଅଙ୍ଗିରା, ଅଗସ୍ତିଙ୍କ ଭଳି ସିଦ୍ଧ ସାଧକ ଏଠି ବ୍ରହ୍ମଜ୍ଞାନ ସାଧୁଥିଲେ । ଏଠି ସର୍ବୋଚ୍ଚ ବ୍ରହ୍ମଜ୍ଞାନ ପାଇଁ ପ୍ରଶସ୍ତ କ୍ଷେତ୍ର ଥିଲା । ଏଠି ଦେବତା ପ୍ରତୀକ ବିଗ୍ରହଭାବେ ପୂଜା ପାଇଲେ । ଏ ପ୍ରତୀକ ଆକାର ମଧ୍ୟରେ ନିରାକାରର ସନ୍ଧାନ ହେଲା ।

ପ୍ରଥମେ ଇନ୍ଦ୍ର ନୀଳମଣି ଭଳି ମୂଲ୍ୟବାନ ପଥରରେ ପ୍ରାକୃତିକ ଶୈଳୀ ଚିହ୍ନ ରହିଥିଲା । ଏହା ପ୍ରଭୁଙ୍କ ଇଚ୍ଛାରେ ହେଲା । ଇନ୍ଦ୍ରନୀଳରେ ଧବଳ ଚିହ୍ନର ସଙ୍କେତ ବହନ କରି ସେ ଜୀବନ୍ତ ପ୍ରତୀକ ବିଗ୍ରହ ରୂପେ ବହିଙ୍କର ଶବର ଓ ବ୍ରାତ୍ୟ ସମୁଦାୟଙ୍କ ଦ୍ୱାରା ପୂଜିତ ହେଉଥିଲେ । ଆର୍ଯ୍ୟ ଆଗମନ ପରେ ଦାରୁରେ ସାଙ୍କେତିକ ବ୍ରହ୍ମମୂର୍ତ୍ତି ଗଢ଼ା ହେଲା । ହୁଏତ ସେହି ଶବର ଓ ବ୍ରାତ୍ୟଙ୍କ ପୂଜିତ ପ୍ରାକୃତିକ ବିଗ୍ରହ ଦାରୁବିଗ୍ରହ ଅଭ୍ୟନ୍ତରରେ ସ୍ଥାନ ପାଇଲେ । ଦୁଇ ଗୋଷ୍ଠୀର ସମାଧାନ ପରେ ଦାରୁ ଉପାସନାରେ ଉଭୟ ଭାଗୀଦାର ହେଲେ ।

ଅପରୂପ କଳ୍ପନା ବିଳାସ, ପ୍ରଜ୍ଞା ଓ ଉଚ୍ଚ ଦାର୍ଶନିକ ଚେତନା ଦେଇ ଏ ମୂର୍ତ୍ତିକୁ ରୂପ ଦିଆଗଲା । ଏ ବିଗ୍ରହ କୌଣସି ଏକ ଅପିରପକ୍ୱ ପୂଜାର ପରିଣତି ହୋଇନପାରେ ।

ସଂସ୍କୃତ ପୁରାଣମାନଙ୍କ ମଧ୍ୟରେ ସ୍କନ୍ଦପୁରାଣର ଉତ୍କଳ ଖଣ୍ଡ ବହୁ ପରବର୍ତ୍ତୀ କାଳର ହୋଇଥିବାରୁ ଏଥିରେ ଜଗନ୍ନାଥ ଚେତନା ଓ ମୂର୍ତ୍ତି ତତ୍ତ୍ୱର ବିକାଶ ବିସ୍ତାରିତ ଭାବରେ ସ୍ଥାନ ପାଇଛି । ପୂର୍ବରୁ କୁହାଯାଇଥିବା ମହାବାକ୍ୟ "ପ୍ରଜ୍ଞାନଂ ବ୍ରହ୍ମ" ଜଗନ୍ନାଥଙ୍କ ଠାରେ ରୂପାୟିତ ହୋଇଛି । "ପ୍ରଜ୍ଞାନଂ ବ୍ରହ୍ମ" ବାକ୍ୟ "ସର୍ବଂ ଖଲ୍ୱିଦଂ ବ୍ରହ୍ମ" ଭଳି ବ୍ରହ୍ମଙ୍କ ସ୍ୱରୂପ ପ୍ରକାଶକ ବାକ୍ୟ । "ତତ୍ତ୍ୱମସି" କହି ତାପରେ "ଅୟମାତ୍ମା ବ୍ରହ୍ମ"ର ସାଧନା ପରେ ସାଧକ ଭାବେ "ଅହଂ ବ୍ରହ୍ମାସ୍ମି" । ପ୍ରଥମେ ଚିନ୍ତା କଲା ତୁମେ ସେହି, ଦ୍ୱିତୀୟରେ ଏହି ଆତ୍ମା ହିଁ ବ୍ରହ୍ମ, ତୃତୀୟରେ ମୁଁ ବ୍ରହ୍ମ ସ୍ୱରୂପ । ଏହି ତିନି ମହାବାକ୍ୟ ଶଙ୍କର ପ୍ରତିଷ୍ଠିତ ତିନି ମଠରେ ତିନି ଧାମରେ ରୂପାୟିତ ହୋଇଛି । ପୁରୁଷୋତ୍ତମ କ୍ଷେତ୍ରର ଗୋବର୍ଦ୍ଧନ ମଠରେ "ପ୍ରଜ୍ଞାନଂ ବ୍ରହ୍ମ" ମହାବାକ୍ୟ ହୋଇଛି । ବ୍ରହ୍ମ ଓ ଜୀବ; ଉପାସକ, ଉପାସ୍ୟଙ୍କର ଭେଦ ନାହିଁ । ଏହା ବ୍ରାହ୍ମୀ ସ୍ଥିତି । ପରବ୍ରହ୍ମ ଜଗନ୍ନାଥଙ୍କୁ ଧ୍ୟାନକରି ସାଧକ ଏହି ସ୍ଥିତିରେ ରହେ । ଶରଚ୍ଚନ୍ଦ୍ରମା ଦିଶେ ସେହି ବିରାଟ ଚକାନୟନ । ଏହାକୁ ମୁରାରି ମିଶ୍ର ଅନର୍ଘରାଘବ ନାଟକରେ ବ୍ୟୋମଦ୍ୱିସ୍ଥଳ ଲୋଚନ ବୋଲି କହିଛନ୍ତି । ସୂର୍ଯ୍ୟ ଚନ୍ଦ୍ର ଲୋଚନ, ଆକାଶ ଶିର; ପୃଥିବୀ ତାଙ୍କ ପଦ, ଅଦ୍ଭୁତ ପୁରୁଷ ଏ ଦେବତା । ଏ ଧ୍ୟାନର ବସ୍ତୁ; ପୁଣି ପୂଜାର ପାତ୍ର । ଏଇଠି ରହିଛି ପୁରୁଷୋତ୍ତମ କ୍ଷେତ୍ରର ବିଗ୍ରହ ଜଗନ୍ନାଥ ପୁରୁଷୋତ୍ତମଙ୍କ ବୈଶିଷ୍ଟ୍ୟ । ପୁରୁଷୋତ୍ତମ ମହାତ୍ମ୍ୟ ଗ୍ରନ୍ଥରେ ବ୍ରହ୍ମପାର ସ୍ତୋତ୍ରର ପ୍ରତିଫଳନ ରହି ପ୍ରଭୁଙ୍କୁ ପ୍ରାର୍ଥନା କରାଯାଉଛି–

ପରାୟ ପରରୂପାୟ ପାପୌଘାରାତୟେ ନମଃ
ଅପାର ପାର ଭୂତାୟ ବ୍ରହ୍ମଭୂତାୟ ତେ ନମଃ
ପରାତ୍ମ ସ୍ୱରୂପାୟ ନମସ୍ତେ ପରହେତବେ
ପରସ୍ପରା-ପରିବ୍ୟାପ୍ତ ପରତତ୍ତ୍ୱ ପରାୟ ତେ

ପ୍ରଜ୍ଞାନଂ ବ୍ରହ୍ମ ବାକ୍ୟକୁ ରୂପାୟିତ କରି ଏ ପୁରାଣରେ ବ୍ରହ୍ମା ପ୍ରଭୁଙ୍କୁ ସମ୍ବୋଧନ କରି କହୁଛନ୍ତି–

"ନମସ୍ତୁଭ୍ୟଂ ନମୋ ମହ୍ୟଂ ତୁଭ୍ୟଂ ମହ୍ୟଂ ନମୋନମଃ
ଅହଂ ତ୍ୱଂ ତ୍ୱମହଂ ସର୍ବଂ ଜଗଦେତ ଚରାଚରମ"

ବ୍ରହ୍ମା କହିଲେ, ମୁଁ ଓ ଆପଣ ଏକ । ଅଭିନ୍ନାତ୍ମା । ଆପଣଙ୍କୁ ଓ ମତେ ମୁଁ ପ୍ରଣାମ କରୁଛି । ପ୍ରଜ୍ଞାନ ବା ପ୍ରକୃଷ୍ଟଜ୍ଞାନ ଆସିବା ମାତ୍ରେ ଉପାସକ, ଉପାସ୍ୟ ଓ ପାରିପାର୍ଶ୍ୱିକ ଭେଦ ଉଭେଇଯିବ । ସେଇ ଭାବରେ ଭାବିତ ବ୍ରହ୍ମା କହିଲେ–

"ମଦାଦିକମିଦଂ ସର୍ବଂ ମାୟା ବିଳସିତଂ ତବ"

ଅର୍ଥାତ ମୁଁ ଏବଂ ଏ ସମସ୍ତ ଜଗତ ତୁମର ମାୟା ମାତ୍ର । ବ୍ରହ୍ମା ତାଙ୍କୁ "ବିଶ୍ୱାତ୍ମନ" ବୋଲି ସମ୍ବୋଧନ କରି କହୁଛନ୍ତି, "ଜ୍ଞାତେ ତ୍ୱୟି ବିଲୀୟତେ ରଜ୍ଜୁ ସର୍ପାଦି ବୋଧବତ" । ଆପଣଙ୍କୁ ପ୍ରକୃତ ଭାବରେ ସେ ଜାଣିପାରିଲେ, ରଜ୍ଜୁକୁ ସର୍ପ ମନେ କରିବା ଭଳି, ଜଗତ ଓ ଆପଣଙ୍କ ଭିନ୍ନତ୍ୱ ଧାରଣା ଦୂର ହୋଇଯିବ ।

ବ୍ରହ୍ମାଙ୍କ ସମ୍ବୋଧନ ଅତ୍ୟନ୍ତ ଭାବ ବ୍ୟଞ୍ଜକ । ପ୍ରଭୁଙ୍କୁ ସେ କହୁଛନ୍ତି ଅନିର୍ବକ୍ତବ୍ୟମେବେଦଂ ସତ୍ତ୍ୱାସତ୍ତ୍ୱ ବିବେକତଃ" । ବକ୍ତବ୍ୟ ଜ୍ଞାତବ୍ୟ ପ୍ରକୃତିର ଊର୍ଦ୍ଧ୍ୱରେ ପ୍ରଭୁ । ପ୍ରଭୁଙ୍କୁ କହିଲେ– "ସ୍ୱପ୍ରକାଶ ନମୋଽସ୍ତୁତେ" ନିଜେ ସେ ପ୍ରକାଶିତ । କେହି ତାଙ୍କୁ ପ୍ରକଟ କରିନାହିଁ ।

ଭାରତର ଅନ୍ୟ ତୀର୍ଥମାନଙ୍କର ମନୋରମ ଅବୟବ ବିଶିଷ୍ଟ ବିଷ୍ଣୁ ଓ କୃଷ୍ଣ ପ୍ରତିମା ସମ୍ମୁଖରେ ଏ ଭାବୋଦ୍ଦୀପକ ପ୍ରାର୍ଥନା କରିବାରେ ବାଧା ନାହିଁ । ପୁରୁଷୋତ୍ତମ କ୍ଷେତ୍ରରେ କିନ୍ତୁ ଏ ପ୍ରାର୍ଥନା ବିଗ୍ରହବନ୍ତ ହୋଇ ରୂପାୟିତ ହୋଇଛି । ପୁରୁଷୋତ୍ତମ କ୍ଷେତ୍ରର ବିଗ୍ରହ ଜଗନ୍ନାଥ ପୁରୁଷୋତ୍ତମଙ୍କ ଏହାହିଁ ବୈଶିଷ୍ଟ୍ୟ ।

"ପ୍ରସୀଦ ଜଗତାଂ ନାଥ ମଗ୍ନାନାଂ ଦୁଃଖ ସାଗରେ"
କହି ପ୍ରାର୍ଥନା କରାଯାଇଛି ନିମ୍ନମତେ–
"ନଭଃ ଶିରସ୍ତେ ଦେବେଶ ଆପସ୍ତେ ବିଗ୍ରହ ପ୍ରଭୋ
ପାଦୌ କ୍ଷିତିର୍ମୁଖଂ ବହ୍ନିଃ ଶ୍ୱସିତାନି ସମୀରଣଃ"

ଆକାଶ ଶିର, ଜଳରାଶି ଶରୀର; ପୃଥିବୀ ପାଦ, ମୁଖ ବହ୍ନି ଓ ପବନ ଆପଣଙ୍କର ନିଃଶ୍ୱାସ ।

ପୁରୁଷୋତ୍ତମ ମାହାତ୍ମ୍ୟରେ ପ୍ରକଟିତ ହୋଇଛି, ପ୍ରକୃତି ସ୍ୱରୂପ ପ୍ରଭୁଙ୍କର

"ବପୁସ୍ତ୍ୱଂ ଜଗନ୍ନାଥ ପ୍ରତ୍ୟକ୍ଷଂ ବ୍ରହ୍ମରୂପିଣମ୍"

ସ୍କନ୍ଦପୁରାଣର ଉତ୍କଳଖଣ୍ଡର ବର୍ଣ୍ଣିତ ପୁରୁଷୋତ୍ତମ ମାହାତ୍ମ୍ୟ ଜଣେ ଉତ୍କଳୀୟଙ୍କ ଦ୍ୱାରା ଗଙ୍ଗରାଜତ୍ୱର ପ୍ରଥମ ଭାଗ ବା ତାର ଅଳ୍ପ ସମୟ ପୂର୍ବରୁ ରଚିତ । ଗଙ୍ଗକାଳରେ ପୁରାଣ ସବୁ ପୁନଃଲିଖିତ ହେବା କୁହାଯାଏ ।

ଇନ୍ଦ୍ରଦ୍ୟୁମ୍ନ ମାଳବରୁ ପୁରୁଷୋତ୍ତମ ଆସିବାବେଳେ ବିନ୍ଦୁସରୋବରରେ ସ୍ନାନ କରି ତୀରସ୍ଥ ପୁରୁଷୋତ୍ତମଙ୍କୁ ଦର୍ଶନ କଲେ । ଅନନ୍ତ ବାସୁଦେବ ହିଁ ଏହି ପୁରୁଷୋତ୍ତମ । ଚନ୍ଦ୍ରିକା ଦେବୀଙ୍କ ଶିଳାଲିପିରେ ପୁରୀ ମନ୍ଦିର ଭଳି ଏହାଙ୍କ ମନ୍ଦିରକୁ "ପ୍ରାସାଦ ପୁରୁଷୋତ୍ତମ" ବୋଲି କୁହାଯାଇଛି ।

ଅନଙ୍ଗଭୀମ କନ୍ୟାଙ୍କ ଦ୍ୱାରା ନିର୍ମାଣ ଆରମ୍ଭ କରାଯାଇ ଏହା ତାଙ୍କ ଭ୍ରାତୃପୁତ୍ର ଭାନୁଦେବଙ୍କ ଅମଳରେ ଶେଷ ହେଲା । ସ୍ୱର୍ଗତ ଜ୍ଞାନସ୍ୱରୂପ ରାଜଗୁରୁ ମହାଶୟ ଏହି ମନ୍ଦିରର ବିଗ୍ରହ ଦେଖି ମତ ପ୍ରକାଶ କଲେ ଯେ, ଏହା ପୁରୀ ଢାଞ୍ଚାରେ ହୋଇଥିବାରୁ ଅନଙ୍ଗଭୀମଙ୍କ ଅମଳରେ ମଧ ପୂର୍ଣ୍ଣ ଅବୟବ ପାଷାଣ ପ୍ରତିମା ପୁରୀରେ ଥିଲେ ଓ ପରେ ଶବର ସୈନ୍ୟଙ୍କୁ ସନ୍ତୁଷ୍ଟ କରିବା ପାଇଁ ତାଙ୍କ ଦ୍ୱାରା ପୂଜିତ ଦେବତାଙ୍କୁ ମନ୍ଦିରକୁ ଅଣାଗଲା ଓ ପୂର୍ବ ପାଷାଣ ପ୍ରତିମାକୁ ବିସର୍ଜନ କରାଗଲା । ଏ ମୂର୍ତ୍ତି କଳ୍ପନା ଜାତିର ତପସ୍ୟା ପ୍ରସୂତ । ଯାହାକୁ ସନ୍ତୁଷ୍ଟ କରିବା ପାଇଁ ଏହା ହୋଇନପାରେ । ଅନନ୍ତ ବାସୁଦେବ ମନ୍ଦିର ନୂତନ ଭାବେ ନିର୍ମିତ ହେଲେ ହେଁ ମୂର୍ତ୍ତି ପୁରାତନ । ବର୍ତ୍ତମାନ ସୁଦ୍ଧା ଭୁବନେଶ୍ୱରରେ ତିନି ପ୍ରକାର ବାସୁଦେବ ସଙ୍କର୍ଷଣ ମୂର୍ତ୍ତି ମନ୍ଦିର ବାହାରେ ରହିଛନ୍ତି । ମନ୍ଦିର ନିର୍ମାଣର ଯଥେଷ୍ଟ ପୂର୍ବରୁ ଏଠାରେ ଭାରତର ଅନ୍ୟାନ୍ୟ ପ୍ରାନ୍ତ ଭଳି ପ୍ରସ୍ତର ନିର୍ମିତ ବାସୁଦେବ ସଙ୍କର୍ଷଣ ପୂଜା ଥିଲା । ୫ମ ଶତାବ୍ଦୀରେ ପ୍ରଭଞ୍ଜନ ବର୍ମା ଏଥିପାଇଁ ମନ୍ଦିର ନିର୍ମାଣ କରିଥିଲେ ।

ଚନ୍ଦ୍ରିକା ଦେବୀଙ୍କ ମନ୍ଦିର ନିର୍ମାଣ ପୂର୍ବରୁ ଉତ୍କଳଖଣ୍ଡ ରଚିତ ହୋଇଥିଲେ ହେଁ ସେଥିରେ ରହିଛି–

"ବିନ୍ଦୁତୀର୍ଥେ ନୃପସ୍ନାତ୍ୱା ତୀରସ୍ଥ<br>ପୁରୁଷୋତ୍ତମଂ ସମ୍ପୂଜ୍ୟ ବିଧିବତ୍"

ଇନ୍ଦ୍ରଦ୍ୟୁମ୍ନ ଏହାପରେ କୋଟୀଶ୍ୱର ମନ୍ଦିର ଗଲେ । ଏଥିରୁ ଜଣାଯାଏ ଏ ଗ୍ରନ୍ଥ ରଚନା ବେଳକୁ ପାଷାଣ ପୁରୁଷୋତ୍ତମ ବାସୁଦେବ ମନ୍ଦିର ଥିଲା ଓ କେଶରୀବଂଶ ନିର୍ମିତ ଥିଲା । କେଶରୀବଂଶ ନିର୍ମିତ ମୁକ୍ତେଶ୍ୱର ମନ୍ଦିର ସମସାମୟିକ କୋଟି ତୀର୍ଥେଶ୍ୱର ମନ୍ଦିର ସେତେବେଳକୁ ହୋଇସାରିଥିଲା ।

ଦାରୁ ମୂର୍ତ୍ତିଙ୍କୁ ବିଷ୍ଣୁଭାବରେ ପୂଜା କରି ତାଙ୍କୁ ପୁରୁଷୋତ୍ତମ କହିବାରୁ ଭୁବନେଶ୍ୱର ପାଷାଣ ମୂର୍ତ୍ତି ମଧ ପୁରୁଷୋତ୍ତମ ବୋଲାଇଲେ । ପରେ ପୁରୁଷୋତ୍ତମ ନାମ ପରିବର୍ତ୍ତେ ଜଗନ୍ନାଥ ନାମ ବିଶେଷ ପ୍ରଚାରିତ ହେବାରୁ ଏ ମୂର୍ତ୍ତି ଅନନ୍ତ ବାସୁଦେବ ବୋଲି ପରିଚିତ ହେଲେ । ଏ ଗ୍ରନ୍ଥର ସମସାମୟିକ କପିଳ ସଂହିତା ରେ ଲେଖା ହେଲା ପୁରୁଷୋତ୍ତମ କ୍ଷେତ୍ରସ୍ଥ ଦେବତା ଦାରୁବ୍ରହ୍ମ ଓ ଏ ଶିଳାବ୍ରହ୍ମ ବିଷ୍ଣୁରୂପୀ ଅନନ୍ତ ବାସୁଦେବଙ୍କୁ ବ୍ରହ୍ମ କହିବାରେ ବାଧା ନାହିଁ; କିନ୍ତୁ ବ୍ରହ୍ମଭାବ ଆଣିବା ପାଇଁ ନୀଳାଚଳର ଦାରୁବ୍ରହ୍ମ ସ୍ୱତନ୍ତ୍ରଭାବେ ପରିକଳ୍ପିତ ହୋଇଛନ୍ତି ।

ବାସୁଦେବ ସଙ୍କର୍ଷଣ ପୂଜା ଓଡ଼ିଶାରେ ପ୍ରବେଶ କରି କେଶରୀ ରାଜତ୍ୱ ପୂର୍ବରୁ ମଧ ଭୁବନେଶ୍ୱରରେ ପ୍ରାଧାନ୍ୟ ଲାଭ କରିଛି ।

ଭୁବନେଶ୍ୱରର ଆଖପାଖ ଦୁଇସ୍ଥାନ ଓ ଅନ୍ୟ ଏକ ସ୍ଥାନରେ ବାସୁଦେବ ସଙ୍କର୍ଷଣ ମନ୍ଦିର ରହିଛି । ବାସୁଦେବ ସଙ୍କର୍ଷଣବାଦରେ ପୁରୁଷୋତ୍ତମ କ୍ଷେତ୍ର ମଧ ପ୍ରଭାବିତ ହେଲା । ସେଠି ବ୍ରହ୍ମମୂର୍ତ୍ତିଙ୍କ ପ୍ରଚ୍ଛନ୍ନ ବିଗ୍ରହ ଢାଞ୍ଚାରେ ଅନ୍ୟ ଦୁଇମୂର୍ତ୍ତି ବଳଭଦ୍ର ଓ ସୁଭଦ୍ରା ରୂପାୟିତ ହେଲେ ।

ସ୍ତମ୍ଭରୂପୀ ସୁଦର୍ଶନ ଆସିଲେ ବହୁତ ପଛରେ । ପୂର୍ବ ଅବସ୍ଥାରେ ବଳ, କୃଷ୍ଣ ଓ ସୁଭଦ୍ରାଙ୍କ ପାଖରେ ସ୍ତମ୍ଭରୂପୀ ସୁଦର୍ଶନଙ୍କ ଆବଶ୍ୟକତା ନଥିଲା ବେଳେ ଅନନ୍ତ ବାସୁଦେବ ମନ୍ଦିରରେ ତାଙ୍କୁ ବିଗ୍ରହଙ୍କ ସାମନାରେ ରଖାଗଲା । ବର୍ତ୍ତମାନର ଅନନ୍ତ ବାସୁଦେବ ବିଗ୍ରହ ମାର୍ବଲ ପଥରର ବିଗ୍ରହ ଓ ପ୍ରାୟ ପଚାଶ ବର୍ଷ ତଳେ ପୂର୍ବ ବିଗ୍ରହଙ୍କୁ ସ୍ଥାନାନ୍ତର କରାଯାଇ ଏକ ଛୋଟ ମନ୍ଦିରରେ ରଖାଯାଇଛି । ସେଠାରେ ବର୍ତ୍ତମାନ ପଚିଶ କଟାଯାଉଛି । ଆଉ ତିନୋଟି ମୂର୍ତ୍ତି ଅଛନ୍ତି ପୁଷ୍କରିଣୀ କୂଳରେ । ରାସ୍ତା ତିଆରି ବେଳେ ଜଣେ ଇଞ୍ଜିନିୟର ତାଙ୍କୁ ସଂଗ୍ରହ କରି ସେଠି ରଖିଥିବା କଥା ପୂଜକମାନଙ୍କ ଠାରୁ ଶୁଣିଛି । ଛୋଟ ମନ୍ଦିରରେ ଚତୁର୍ଭୁଜ ବାସୁଦେବ ଓ ଦ୍ୱିଭୁଜ ସଙ୍କର୍ଷଣଙ୍କ ପ୍ରାଚୀନମୂର୍ତ୍ତି ସହ ନୂତନ ମୂର୍ତ୍ତି ସୁଭଦ୍ରା ରହିଛନ୍ତି । ଏ ପରେ ସଂଯୋଜିତ ହୋଇଛନ୍ତି ବୋଲି ଜାଣି ହୋଇ ପଡୁଛି । ଜଗନ୍ନାଥଙ୍କ ସହ ସମାନ୍ତରାଳ କରିବା ପାଇଁ ପରେ ସ୍ତମ୍ଭରୂପୀ ସୁଦର୍ଶନ ରଖାଯାଇଛନ୍ତି ।

ନୂତନ ମନ୍ଦିର ନିର୍ମାଣ ବେଳେ ଚନ୍ଦ୍ରିକା ଦେବୀ ପ୍ରାଚୀନ ମୂର୍ତ୍ତି ସହ ସୁଭଦ୍ରା ଓ ସୁଦର୍ଶନଙ୍କୁ ସଂଯୋଗ କରିଥାଇ ପାରନ୍ତି ।

ଏକ ମୂର୍ତ୍ତି ପରେ ଚତୁର୍ଦ୍ଧା ହେଲେ, ଏଥିରେ ସନ୍ଦେହ ନାହିଁ । ଦାରୁ ଶବ୍ଦର ତାନ୍ତ୍ରିକ ଅର୍ଥ କରି କୁହାଯାଇଛି ବିଦାରଣରୁ ଦାରୁ ଆସିଛି ।

ଖଣ୍ଡନାତ୍ ସର୍ବ ଦୁଃଖାନାମଖଣ୍ଡାନନ୍ଦ ଦାନତଃ ।

ସ୍ୱଭାବାଦ୍ଦାରୁ ରୂପଂ ହି ପରଂବ୍ରହ୍ମାଭିଧୀୟତେ । ସ୍ୱଭାବରେ ସେ ଦାରୁ, କାରଣ ଦୁଃଖ ଖଣ୍ଡନ କରନ୍ତି । ସେ ପରମବ୍ରହ୍ମ । ସେ ଶବ୍ଦବ୍ରହ୍ମ ପ୍ରଣବ ଓଁକାର ଓ ପରବ୍ରହ୍ମ ସ୍ୱରୂପ । ଶବ୍ଦବ୍ରହ୍ମ ପରଂବ୍ରହ୍ମ ଭିତରେ ପ୍ରଭେଦ ନାହିଁ ବୋଲି କହୁଛନ୍ତି ବ୍ରହ୍ମା ।

ବ୍ରହ୍ମପ୍ରତୀକ ଭାବେ ରୂପାୟିତ ହୋଇଛନ୍ତି ବିଗ୍ରହ । ଉପନିଷଦର ଚିନ୍ତାଧାରା ଏଠାରେ ମୂର୍ତ୍ତିମନ୍ତ ।

ଏହି ପ୍ରତୀକଙ୍କୁ ପ୍ରାଣବନ୍ତ କରିବା ପାଇଁ ଜଗନ୍ନାଥଙ୍କ ଗର୍ଭରେ ପୂର୍ବର ସେହି ପ୍ରାକୃତ ସାଙ୍କେତିକ ଇନ୍ଦ୍ରନୀଳମଣି ଓ ବଳଭଦ୍ର ତଥା ସୁଭଦ୍ରାଙ୍କ ଗର୍ଭରେ ନେପାଳରୁ ଆନୀତ ଶାଳଗ୍ରାମ ଶିଳା ରଖାଯାଇଛି । ଏଥିପାଇଁ ନେପାଳ ରାଜାଙ୍କୁ ସ୍ୱତନ୍ତ୍ର ସୁବିଧା ଦିଆଯାଇଛି ।

ପୁରୁଷୋତ୍ତମ କ୍ଷେତ୍ରର ଦେବତାଙ୍କ ତୁଳନା ନାହିଁ । ସେ ଅନନ୍ୟ ।

ଏନ୍-୧/୧୮୩, ନୂଆପଲ୍ଲୀ, ଭୁବନେଶ୍ୱର

• • •



# ଜଗନ୍ନାଥ ସଂସ୍କୃତିରେ ଜାଗତିକ ଲୀଳା

● ଡକ୍ଟର ବଳରାମ ଦାସ

ପୁଣ୍ୟଭୂମି ଓଡ଼ିଶା ହେଉଛି ଦେବୀ ଓ ଦେବତାଙ୍କର ଦେଶ । କେଉଁ ସ୍ମରଣାତୀତ କାଳରୁ, ଏ ଦେଶରେ ବୈଦିକ ତଥା ପୌରାଣିକ ଦେବ-ଦେବୀଙ୍କ ସହିତ ବହୁ ଲୋକ ଦେବ-ଦେବୀ ମଧ ଉପାସିତ ହୋଇ ଆସୁଛନ୍ତି । କିନ୍ତୁ ଓଡ଼ିଶାରେ 'ବଡ଼ଠାକୁର' ହେଉଛନ୍ତି ଶ୍ରୀଜଗନ୍ନାଥ । ଓଡ଼ିଆ ଜାତିର ମାନସିକତାରେ ଶ୍ରୀଜଗନ୍ନାଥ ବଡ଼ ଠାକୁର ଭାବରେ କେବଳ ନୁହଁନ୍ତି, ପରମ ଆତ୍ମୀୟ ଭାବରେ ମଧ ପ୍ରତିଷ୍ଠିତ ହୋଇଛନ୍ତି । ସେଥିପାଇଁ ଜଗନ୍ନାଥ ସଂସ୍କୃତିରେ ନିତ୍ୟ ମୂର୍ଚ୍ଛିତ ହୋଇଥାଏ ଜାଗତିକ ଲୀଳାର ମଧୁର ମୂର୍ଚ୍ଛନା ।

ଜଗନ୍ନାଥ ସଂସ୍କୃତି ଏକ ବିଶାଳ ସଂସ୍କୃତି । ଏଥିରେ ଓଡ଼ିଶାର ଧର୍ମ, ଦର୍ଶନ, ସାମାଜିକ ଚଳଣି, ଲୋକାଚାର ଓ ପରମ୍ପରା, ସବୁକିଛି ସନ୍ନିବିଷ୍ଟ ହୋଇଯାଇଅଛି । ମହୋଦଧି ପରି ଏହି ସଂସ୍କୃତିର ବିସ୍ତୃତି ଓ ଗଭୀରତା ଏତେ ବ୍ୟାପକ ଯେ ସେଥିରେ ଅବଗାହନ କରିବାକୁ ଗଲେ ଅନୁସନ୍ଧିତ୍ସୁକୁ ଅଣ ନିଃଶ୍ୱାସୀ ହୋଇଯିବାକୁ ପଡ଼େ । କାରଣ, ଶତାବ୍ଦୀ-ଶତାବ୍ଦୀ ଧରି ଏ ସଂସ୍କୃତି ତାର ଜୈତ୍ର-ଯାତ୍ରା ପଥରେ ଯାହା କିଛି ପରମ, ଯାହା କିଛି ଶୁଭଙ୍କର ଓ ଯାହା କିଛି ସାର୍ଥକ, ତାକୁ ପରମ ଆଦର ଓ ଶ୍ରଦ୍ଧାର ସହିତ ଗ୍ରହଣ କରିନେଇଛି । ସେଥିପାଇଁ ଏହି ସଂସ୍କୃତି ସଂକୀର୍ଣ୍ଣତାର ଊର୍ଦ୍ଧ୍ୱରେ ଏକ ଉଦାର ଓ ମହାନ ସମନ୍ୱୟ ଧର୍ମୀ ସଂସ୍କୃତିରେ ପରିଣତ ହୋଇଛି । ଏହି ମହାନତା ଓ ଉଦାରତା ଯୋଗୁଁ ହିଁ ସେଥିରେ ଫୁଟିପାରିଛି ମାନବୀୟ ଆଚାର ଆଚରଣର ଅଫୁରନ୍ତ ଉତ୍ସ । ଶ୍ରୀଜଗନ୍ନାଥଙ୍କର ସେବା-ପୂଜା ବିଧାନ ଓ ବିଭିନ୍ନ ଜାନି-ଯାତ୍ରା ହେଉଛି ଏହି ଉତ୍ସର ଅନନ୍ୟ ଉଦ୍ଭବ ।

ବଡ଼ ଠାକୁର ଶ୍ରୀ ଜଗନ୍ନାଥ ଓଡ଼ିଶାର ଉପାସ୍ୟ ଦେବତା କେବଳ ନୁହଁନ୍ତି, ସେ ମଧ ଓଡ଼ିଶାର ରାଜା । ବୈଦେଶିକ ଆକ୍ରମଣର ସହସ୍ର ଲାଞ୍ଛନା ଓ ନିର୍ଯ୍ୟାତନା ମଧ୍ୟରେ ଅସହାୟ ଓଡ଼ିଆ ଜାତିର ଅନ୍ତଃସ୍ଥଳ ଯେତେବେଳେ ହାହାକାର କରି ଉଠିଥିଲା, ସେତେବେଳେ ଶ୍ରୀ ଜଗନ୍ନାଥ ହିଁ ଏ ଜାତି ମନରେ ଭରି ଦେଇଥିଲେ ବଂଚି ରହିବାର ଅଖଣ୍ଡ ବିଶ୍ୱାସ । ଜଗନ୍ନାଥଙ୍କୁ କେନ୍ଦ୍ରକରି ଖଣ୍ଡ ବିଖଣ୍ଡିତ ଓଡ଼ିଶା ତାର ରାଜନୈତିକ ତଥା ସାଂସ୍କୃତିକ ଐକ୍ୟ ପ୍ରତିଷ୍ଠାରେ ସମର୍ଥ ହୋଇଥିଲା । ପରସ୍ପର ମଧ୍ୟରେ ଥିବା ସଂକୀର୍ଣ୍ଣ ସ୍ୱାର୍ଥଗତ ସଂଘର୍ଷ ଓ ବିଭେଦ ଭୁଲି, ସାମନ୍ତ ରାଜାମାନେ ପୁଣି ଏକତ୍ର ସଂଗଠିତ ହୋଇଥିଲେ ଓ ତାହା ଫଳରେ ଓଡ଼ିଶାର ଗଜପତି ରାଜା ବୈଦେଶିକ ଶତ୍ରୁ ବିରୁଦ୍ଧରେ ଲଢ଼ିବା ପାଇଁ ଶକ୍ତି ଓ ସାମର୍ଥ୍ୟ ଲାଭ କରିଥିଲେ । ଓଡ଼ିଶାର ସାଧାରଣ ଜନତାଙ୍କ ଠାରୁ ଆରମ୍ଭ କରି ସମସ୍ତ ସାଧକଙ୍କ ପର୍ଯ୍ୟନ୍ତ, ସମସ୍ତଙ୍କ ଦୃଷ୍ଟିରେ ଜଗନ୍ନାଥ ଓଡ଼ିଶାର ନାଥ ବା ରାଜାଭାବରେ ପରିଗୃହୀତ । ସେ ମହିମା । ସେଥିପାଇଁ ତାଙ୍କର ଶଯ୍ୟାତ୍ୟାଗ ଠାରୁ ପୁଣି ଶଯ୍ୟା ଗ୍ରହଣ ପର୍ଯ୍ୟନ୍ତ ସକଳ ବିଧି ବିଧାନରେ ଦେବତ୍ୱ ଅପେକ୍ଷା ମାନବତ୍ୱର ପ୍ରକାଶ ଅଧିକ । ଡକ୍ଟର ମାୟାଧର ମାନସିଂହ ଯଥାର୍ଥରେ କହିଛନ୍ତି, " ହିନ୍ଦୁ ଧର୍ମର ସକଳ ଦେବଦେବୀଙ୍କ ମଧ୍ୟରେ ଜଗନ୍ନାଥ ହେଉଛନ୍ତି ପ୍ରକୃତ ଗଣଦେବତା । ଏହି ବିରାଟ ଉପମହାଦେଶର ସକଳ ଦେବଦେବୀଙ୍କ ଭିତରେ ଜଗନ୍ନାଥ ହେଉଛନ୍ତି ଏକମାତ୍ର ଦେବତା, ଯେକି ସାଧାରଣ ଲୋକଙ୍କ ଆଧାତ୍ମିକ ଅଭିଳାଷରୁ ହିଁ ଉଦ୍ଭୁତ+++ ଓଡ଼ିଶାର ଜନସାଧାରଣ ଯଦି ସମୂହଭାବେ ସେମାନଙ୍କର ଦେଶପ୍ରେମୀ ରାଜା ମହାରାଜାଙ୍କ ଦ୍ୱାରା ବିଶେଷ ଭାବେ ଉପକୃତ ହୋଇଥାଆନ୍ତି, ତେବେ ତାହା ମୂଳରେ ଥିଲା ଜଗନ୍ନାଥଙ୍କ ଆଦର୍ଶ । ସେହି ବିରାଟ ଗଜପତି ସାମ୍ରାଜ୍ୟର ପ୍ରକୃତ ମାଲିକ ଥିଲେ । ଅର୍ଥାତ ରାଜା-ମହାରାଜାମାନେ ସେମାନଙ୍କର ରାଜ୍ୟକୁ ନିଜ ମର୍ଜି ଉପରେ ଖର୍ଚ୍ଚ କରାଯିବା ବ୍ୟକ୍ତିଗତ ସଂପତ୍ତି ନଭାବି ଜଗନ୍ନାଥ ମହାପ୍ରଭୁଙ୍କ ନିକଟରୁ ମିଳିଥିବା ନ୍ୟାସ (ଟ୍ରଷ୍ଟ) ବୋଲି ବିଚାରୁଥିଲେ । ଜଗନ୍ନାଥ ମହାପ୍ରଭୁ ଏହିପରି ଭାବରେ ନିଜକୁ ସଂପୂର୍ଣ୍ଣ ରୂପେ ଓଡ଼ିଶାର ଅଧିବାସୀ ବା ଓଡ଼ିଆମାନଙ୍କ ସହିତ ସାମିଲ କରିଦେଇଥିବା ଯୋଗୁଁ ଓଡ଼ିଆମାନେ ମଧ ନିଜ ସଂସ୍କୃତିର ସବୁ କିଛି ଉତ୍କୃଷ୍ଟ ଜିନିଷ, ଯଥା- ନୃତ୍ୟ ଓ କାବ୍ୟ କବିତା, ରନ୍ଧନ ପ୍ରଣାଳୀ ଓ ବିଳାସ ବ୍ୟସନ ବୋଲି ମନେ କରାଯାଉଥିବା ଅନ୍ୟାନ୍ୟ ଦ୍ରବ୍ୟ ଜଗନ୍ନାଥଙ୍କ ସେବାରେ ନିଯୋଗ କରି ଦେଇଛନ୍ତି ।

ରାଜାମାନଙ୍କର ଯେପରି ଥାଏ ନିତ୍ୟ ନୈମିତ୍ତିକ ଦରବାର ଓ ସେତେବେଳେ ଯେ କୌଣସି ସାଧାରଣ ପ୍ରଜା ଇଚ୍ଛାକଲେ ରାଜାଙ୍କୁ ସାକ୍ଷାତ-ଦର୍ଶନ କରି ନିଜର ହାରି-ଗୁହାରି ଜଣାଇବାକୁ ସକ୍ଷମ ହୋଇଥାଏ, ଜଗନ୍ନାଥଙ୍କ ନିତ୍ୟ ସେବାପୂଜା ବିଧାନରେ ମଧ ସେଇ ବ୍ୟବସ୍ଥାର ସଂଯୋଜନା କରାଯାଇଛି । ଏକ ନିର୍ଦ୍ଦିଷ୍ଟ ସମୟରେ ଶ୍ରୀ ଜଗନ୍ନାଥ ପ୍ରତିଦିନ ସର୍ବ ସାଧାରଣଙ୍କୁ ଅତି ପାଖରୁ ଦର୍ଶନ ଦିଅନ୍ତି । ଶ୍ରୀ ମନ୍ଦିରରେ ଏହି ଦର୍ଶନକୁ କୁହାଯାଏ 'ସାହାଣମେଳା' । ଏହି ସମୟ ମଧ୍ୟରେ ଯେକୌଣସି ବ୍ୟକ୍ତି ରତ୍ନ ସିଂହାସନରେ ବିରାଜିତ ପ୍ରଭୁଙ୍କ ଛାମୁରେ ବିନା ବିଘ୍ନରେ ଉପସ୍ଥିତ ହୋଇ ସିଂହାସନ ସ୍ପର୍ଶ କରିବା ସହିତ ଅତି ନିକଟରୁ ଆପଣାର ଦୁଃଖ ଜଣାଇବାର ଦୁର୍ଲ୍ଲଭ ସୁଯୋଗ ପାଇଥାଏ ।

ରତ୍ନ ସିଂହାସନରେ ଶ୍ରୀଜଗନ୍ନାଥ, ବଡ଼ଭାଇ ବଳଭଦ୍ର ଓ ଭଉଣୀ ସୁଭଦ୍ରାଙ୍କ ସହିତ ବିଜେ କରିଅଛନ୍ତି । ଅର୍ଥାତ ତାଙ୍କ ପାଖରେ ସବୁବେଳେ ରହିଛନ୍ତି ନିଜର ପ୍ରିୟ ଭାଇ ଓ ଭଉଣୀ । ମହାଲକ୍ଷ୍ମୀ ଜଗନ୍ନାଥଙ୍କର ପତ୍ନୀ ହେଲେ ମଧ ଏକ ସ୍ୱତନ୍ତ୍ର ମନ୍ଦିରରେ ପୂଜା ପାଆନ୍ତି, କାରଣ, ଦେବ୍‌ଶ୍ୱର-ଭାଉଜୋହୂଙ୍କର ଏକତ୍ର ଅବସ୍ଥାନ ଓଡ଼ିଆ ସଂସ୍କୃତିର ପରିପନ୍ଥୀ । ତା ଛଡ଼ା ସାଧାରଣ ମଣିଷର ଜୀବନରେ ଭାଇ-ଭଉଣୀଙ୍କ ମଧ୍ୟରେ ଯେଉଁ ମଧୁର ସଂପର୍କ ବିଦ୍ୟମାନ, ଜଗନ୍ନାଥ ସଂସ୍କୃତିରେ ତାହା ଯଥାର୍ଥ ଭାବରେ ପ୍ରତିଫଳିତ ହୋଇଛି ।

ଶ୍ରୀ ଜଗନ୍ନାଥଙ୍କର ଦ୍ୱାଦଶ ଯାତ୍ରା ମଧ୍ୟରୁ ଚନ୍ଦନଯାତ୍ରା, ସ୍ନାନଯାତ୍ରା ଓ ରଥଯାତ୍ରା ହେଉଛି ପ୍ରଧାନ ଯାତ୍ରା । ଏହି ତିନୋଟି ଯାକ ଯାତ୍ରାରେ ଜଗନ୍ନାଥ ସଂସ୍କୃତିର ମାନବୀୟ ଦିଗଟି ବିଶେଷ ଭାବରେ ପ୍ରତିଫଳିତ ହୋଇଥାଏ । ବୈଶାଖ ମାସରେ ଭୀଷଣ ଗରମ ଅନୁଭୂତ ହୁଏ । ଅତ୍ୟଧିକ ଉତ୍ତାପ ହେତୁ ବଡ଼ଦେଉଳ ଗମ୍ଭୀରା ମଧ୍ୟରେ ରହି, ଜଗନ୍ନାଥ ସାଧାରଣ ମଣିଷଙ୍କ ଭଳି ଭାରି କଷ୍ଟ ପାଆନ୍ତି । ଭୀଷଣ ଉତ୍ତାପ ଜନିତ ସେଇ କଷ୍ଟରୁ ମୁକ୍ତି ପାଇଁ ଆରମ୍ଭ ହୁଏ ପ୍ରଭୁଙ୍କର ଚନ୍ଦନଯାତ୍ରା । ଅକ୍ଷୟ ତୃତୀୟା ଠାରୁ ଏହି ଯାତ୍ରା ଆରମ୍ଭ ହୋଇ ଏକୋଇଶି ଦିନ ପର୍ଯ୍ୟନ୍ତ ଚାଲେ । ଏହି ଏକୋଇଶି ଦିନକାଳ ଚନ୍ଦନ, କର୍ପୂର ପ୍ରଭୃତି ଶୀତଳ ଉପଚାରରେ ସିଏମାନେ ରହନ୍ତି । ଶୀତଳ ଜଳ ଓ ଶୀତଳ ପବନରେ, ବେଶ୍ ଥଣ୍ଡା ମନରେ ଜଗତର ନାଥ ଜଗନ୍ନାଥ, ଭାଇ-ଭଉଣୀଙ୍କ ସହ ନରେନ୍ଦ୍ର ସରୋବରରେ ଜଳକ୍ରୀଡ଼ା କରନ୍ତି ଓ ଜଳଶାୟୀ ମଧ୍ୟ ହୁଅନ୍ତି । ଫଳରେ ନିଦାଘର ଅସହ୍ୟ ରୌଦ୍ରକଷ୍ଟ ସହନୀୟ ହୋଇଥାଏ ।

ସ୍ନାନ-ଯାତ୍ରା ଉତ୍ସବ ଅବକାଶରେ ବିଗ୍ରହମାନେ ସ୍ନାନମଣ୍ଡପକୁ ବିଜେ କରନ୍ତି । ଶୀତଳା ଠାକୁରାଣୀଙ୍କ ହିମ-ଶୀତଳ କୂପ ଜଳରେ ସ୍ନାନଯୋଗୁଁ ଦେବତାମାନଙ୍କୁ ହୁଏ ସର୍ଦ୍ଦିଜ୍ୱର । ଦୀର୍ଘ ପନ୍ଦର ଦିନକାଳ ଅସୁସ୍ଥ ହୋଇ ଦେବତାମାନେ 'ଅଣସର'ରେ ରହନ୍ତି । ଏହି ସମୟରେ ତାଙ୍କର ନୈମିତ୍ତିକ ସେବା-ପୂଜା ବନ୍ଦ ରହେ । ପଥ୍ୟ ଓ ପରିମିତ ଆହାର ଗ୍ରହଣ କରି ସିଏମାନେ 'ଅଣସର'ର ନିର୍ଜନ ପ୍ରକୋଷ୍ଠରେ ବିଶ୍ରାମ କରନ୍ତି । ତାଙ୍କର ସବୁ ଦୈନନ୍ଦିନ କାର୍ଯ୍ୟକ୍ରମ ବାତିଲ ହୋଇଯାଇଥିବା ଯୋଗୁଁ ଶ୍ରୀ ଜଗନ୍ନାଥ କାହାରିକୁ ସାକ୍ଷାତ କରନ୍ତି ନାହିଁ କିମ୍ବା କାହାରି ହାରି-ଗୁହାରି ମଧ୍ୟ ଶୁଣନ୍ତି ନାହିଁ । ବୋଧହୁଏ ଅନ୍ୟ କୌଣସି ଦେବତାଙ୍କ ଉପାସନା ରୀତିରେ, ଜାଗତିକ ଲୀଳାର ଏପରି ପ୍ରକାଶ ଦେଖିବାକୁ ମିଳେନାହିଁ ।

ଶ୍ରୀ ଜଗନ୍ନାଥଙ୍କର ବିଭିନ୍ନ ଯାତ୍ରା-ଉତ୍ସବ ମଧ୍ୟରେ ରଥଯାତ୍ରା ଶ୍ରେଷ୍ଠ ଯାତ୍ରା-ଉତ୍ସବ ଭାବରେ ପାଳିତ ହୋଇଥାଏ । ଆଷାଢ଼ ଶୁକ୍ଳ ଦ୍ୱିତୀୟା ଠାରୁ ଏହି ପବିତ୍ର ଯାତ୍ରାର ଆରମ୍ଭ । ଏହି ଯାତ୍ରା ଅବକାଶରେ ଜଗନ୍ନାଥ ନିଜର ପ୍ରିୟ ଭାଇ-ଭଉଣୀଙ୍କ ସହ ତିନି ରଥରେ ଗୁଣ୍ଡିଚା ମନ୍ଦିରକୁ ବିଜେ କରନ୍ତି । ଶ୍ରୀ ମନ୍ଦିର ବାହାରେ ଲକ୍ଷ ଲକ୍ଷ ମଣିଷଙ୍କର ସୁଖ-ଦୁଃଖ, ହାନି-ଲାଭ ବୁଝିବା ପାଇଁ ଯେପରି ପ୍ରଭୁଙ୍କର ଏ ଘୋଷଯାତ୍ରା ଅନୁଷ୍ଠିତ ହୋଇଥାଏ । ଓଡ଼ିଶାର ଲୋକମାନଙ୍କ ଦୃଷ୍ଟିରେ ଜଗନ୍ନାଥ ନିକଟ ଆତ୍ମୀୟ ହୋଇଥିବାରୁ, ଜଗନ୍ନାଥ ସମସ୍ତଙ୍କୁ ସଂଖୋଳିବା ପାଇଁ, ରତ୍ନ ସିଂହାସନର ବଢ଼ପଣ ଛାଡ଼ି ବଡ଼ ଦାଣ୍ଡକୁ ଓହ୍ଲାଇ ଆସନ୍ତି । ରଥରେ ଯାତ୍ରା କଲାବେଳେ ବଳଗଣ୍ଡି ପୂର୍ବରୁ ବଡ଼ଦାଣ୍ଡରେ ପଡ଼େ ଛୋଟିଆ ଦେଉଳଟିଏ – ଜଗନ୍ନାଥଙ୍କ ମାଉସୀଘର । ବଡ଼ ଦେଉଳ ତୁଳନାରେ ମାଉସୀମା ମନ୍ଦିର ଏକ କୁଟୀର ପରି ମନେ ହେଲେବି, ଜଗନ୍ନାଥ ସେଠାରେ ଦଣ୍ଡେ ଅଟକି ଯାଇ ନିଜ ମାଉସୀଙ୍କୁ ସଂଖୋଳି ଥାଆନ୍ତି । ତାଙ୍କ ସହିତ ଭାବ-ବିନିମୟ ନକରି ଏକା ନହସରେ ରଥରେ ଚାଲିଯିବା ଅସୌଜନ୍ୟ ହେବ ବୋଲି ଜଗନ୍ନାଥ ମାଉସୀଘର ପାଖରେ ଅଡ଼ିଏ ରହିଯାଆନ୍ତି । ମାଉସୀଙ୍କ ସହ ଦୁଃଖ-ସୁଖ ହୋଇ ପୁଣି ଯାତ୍ରା କରନ୍ତି ଆପଣାର ଗନ୍ତବ୍ୟ ମାର୍ଗରେ ।

ରଥଯାତ୍ରାବେଳେ ସାଙ୍ଗରେ ଆଣିନଥିବାରୁ, ପୁଣି ପତ୍ନୀକୁ ଛାଡ଼ି ଭଉଣୀକୁ ସାଙ୍ଗରେ ଆଣିଥିବା ଯୋଗୁଁ ଲକ୍ଷ୍ମୀ କୋପିତା ହୋଇ ଗୁଣ୍ଡିଚା ମନ୍ଦିର ନିକଟରେ ଥିବା ରଥର କିଛି ଅଂଶ ଭାଙ୍ଗି ପକାନ୍ତି । ଏହି ବିଧି ହେରା ପଞ୍ଚମୀ ଦିନ ଅନୁଷ୍ଠିତ ହୋଇଥାଏ । ସାଧାରଣ ମଣିଷର ଜୀବନ ପରି ଜଗନ୍ନାଥ ସଂସ୍କୃତିରେ ଦେବତାମାନଙ୍କର ଏହି ରାଗ-ରୁଷା, ମାନ-ଅଭିମାନ ପ୍ରକୃତରେ ଜଗନ୍ନାଥଙ୍କ ଜାଗତିକ ଲୀଳାର ଅନବଦ୍ୟ ପ୍ରକାଶ ବ୍ୟତୀତ ଅନ୍ୟ କିଛି ନୁହେଁ ।

ଶ୍ରୀମନ୍ଦିର ଆମ ପାରିବାରିକ ସଂସ୍କୃତିର ଏକ ମନୋହର ପ୍ରତୀକ । ଦେବତା ହୋଇ ମଧ୍ୟ ଶ୍ରୀ ଜଗନ୍ନାଥ ମାନବୀୟ ଆଚାର- ସଂହିତା ପ୍ରତି ଅଧିକ ଆକୃଷ୍ଟ । ସେଥିପାଇଁ ଶୀତଳ-ଜଳରେ ସ୍ନାନ କଲେ ତାଙ୍କୁ ଜ୍ୱର ହୁଏ । ବୈଶାଖ ମାସର ଗରମରେ ତାଙ୍କ ଦେହ ଜଳାପୋଡ଼ା କରେ । ଶୀତ ଜୋର୍ ହେଲେ ଉର୍ଣ୍ଣବାସ ପରିଧାନ ଆବଶ୍ୟକ ପଡ଼େ । ଶ୍ରୀମନ୍ଦିରରେ ପୁଣି ଦାମ୍ପତ୍ୟ କଳହ ହୁଏ । ଶ୍ରୀଯା ଚଣ୍ଡାଳୁଣୀର ପୂଜା ଗ୍ରହଣ କରିଥିବା ଯୋଗୁଁ ମହାଲକ୍ଷ୍ମୀଙ୍କୁ ସ୍ୱାମୀ ଜଗନ୍ନାଥଙ୍କ ଠାରୁ ବହୁ ଛିଙ୍ଗାସ ଓ ଗଞ୍ଜଣା ସହିବାକୁ ପଡ଼େ । ଏପରିକି ସେ ରାଗରେ ବାପଘରକୁ ଚାଲିଯାଆନ୍ତି ଓ ଜଗନ୍ନାଥ ହୁଅନ୍ତି 'ଲକ୍ଷ୍ମୀଛଡ଼ା' । ଖାଇବା ପାଇଁ ସେ ସ୍ଥାନରେ ଜଗନ୍ନାଥଙ୍କୁ ଖାଉଁଏଟି ଅନ୍ନମୁଦା ମିଳେ ନାହିଁ । ସାଙ୍ଗରେ ନେଇ ନଥିବା ଯୋଗୁ, ରଥଯାତ୍ରାରୁ ବାହୁଡ଼ିବାପରେ, ଲକ୍ଷ୍ମୀ ରାଗରେ ସିଂହଦ୍ୱାର କବାଟ ବନ୍ଦ କରି ଦିଅନ୍ତି । ଫଳରେ ଜଗନ୍ନାଥଙ୍କୁ ରୀତିମତ ହଇରାଣ ପଡ଼ିବାକୁ ହୁଏ । ଏସବୁକୁ ଅନୁଧ୍ୟାନ କଲେ ସ୍ପଷ୍ଟ ଉପଲବ୍ଧି ହୁଏ ଯେ, ଶ୍ରୀମନ୍ଦିରରେ ଜଗନ୍ନାଥ ପ୍ରକୃତରେ ଏକ ଗୃହସ୍ଥର ଜୀବନ ହିଁ ଜୀଉଁଥାନ୍ତି । ସେଥିପାଇଁ ତାଙ୍କ ପୂଜା- ଆରାଧନାରେ ଦିବ୍ୟଲୀଳା ଅପେକ୍ଷା, ମାନବୀୟ ଲୀଳା ପ୍ରବଣତା ଅଧିକ ପ୍ରକାଶିତ ହୋଇଥାଏ ।

ନବକଳେବର ଶ୍ରୀଜଗନ୍ନାଥ ଧର୍ମ ଓ ସଂସ୍କୃତିର ଏକ ମହାନ ଦିଗ । ଏହା ମଧ୍ୟ ଶ୍ରୀଜଗନ୍ନାଥଙ୍କ ଜାଗତିକ ଲୀଳାର ଚରମ ତଥା ପରମ ଅଭିବ୍ୟକ୍ତି । ନବକଳେବର ଅବକାଶରେ ଚତୁର୍ଦ୍ଧା ମୂର୍ତ୍ତିଙ୍କର ନୂତନ ବିଗ୍ରହ ନିର୍ମିତ ହୁଏ । ନୂତନ ବିଗ୍ରହରେ ବ୍ରହ୍ମ ସଂସ୍ଥାପିତ ହେବାପରେ, ପୁରାତନ ବିଗ୍ରହମାନଙ୍କୁ 'କୋଇଲି ବୈକୁଣ୍ଠ'ରେ ସମାଧିସ୍ଥ କରାଯାଏ । ଶ୍ରୀ ଜଗନ୍ନାଥଙ୍କର ଅଙ୍ଗଲାଗି ସେବକ ଦଇତାପତିମାନେ ଜଗନ୍ନାଥଙ୍କ ପାଇଁ ଅଶୌଚ ପାଳନ କରନ୍ତି । ସାଧାରଣ ମଣିଷର ମୃତ୍ୟୁପରେ ଯେପରି ଶୁଦ୍ଧିକ୍ରିୟା ପାଳନ କରାଯାଏ, ଜଗନ୍ନାଥଙ୍କ ନବକଳେବରରେ ଦଇତାପତିମାନେ ଅନୁରୂପ 'କ୍ରିୟା' ପାଳନ କରନ୍ତି । ଶ୍ରୀ ଜଗନ୍ନାଥ ବ୍ୟତୀତ, ଆଉ କୌଣସି ଦେବ-ଦେବୀ ଏପରି ଘଟ ପରିବର୍ତ୍ତନ କରନ୍ତି ନାହିଁ କିମ୍ବା ସେହି ଉଦ୍ଦେଶ୍ୟରେ ଶୁଦ୍ଧିକ୍ରିୟା ପାଳିତ ହୁଏ ନାହିଁ । ଏହି ସଂପୂର୍ଣ୍ଣ ମାନବୀୟ । ଶ୍ରୀ ଜଗନ୍ନାଥଙ୍କର ନବକଳେବର ସମସ୍ତ ବିଶ୍ୱ ଯେପରି ଏହି ସତ୍ୟ ସଂପର୍କରେ ସଚେତନ କରିଦିଏ ଯେ- 'ମର୍ତ୍ତ୍ୟ'ମଣ୍ଡଳେ ଦେହ ବହି, ଦେବତା ହୋଇଲେ ମରଇ'' । ଏ ସଂସାରରେ ଜନ୍ମ ଅଛି ଦେହ ବହି, ଦେବତା ହୋଇଲେ ମରଇ'' । ଏ ସଂସାରରେ ସମସ୍ତଙ୍କର ମୃତ୍ୟୁ ଅଛି; ମୃତ୍ୟୁ ପରେ ମୃତ୍ୟୁ ମଧ୍ୟ ଅନିବାର୍ଯ୍ୟ । ସଂସାରରେ ସମସ୍ତଙ୍କର ମୃତ୍ୟୁ ଅଛି; ମୃତ୍ୟୁ ନାହିଁ କେବଳ ମୃତ୍ୟୁର । ସେଥିପାଇଁ ନର, ଦେବତା ସମସ୍ତେ ଯେ ମୁକ୍ତ ହୁଅନ୍ତି । କେବଳ ମୃତ୍ୟୁର । ସେଥିପାଇଁ ନର, ଦେବତା ସମସ୍ତଙ୍କୁ ଯେ ମୁକ୍ତ ହୁଅନ୍ତି । ଜୀବନର ଏ ପରିଣତିରୁ ଜଗନ୍ନାଥ ମଧ୍ୟ ମୁକ୍ତ ହୋଇ ନପାରି କରିପାରେ । ଜୀବନର ଏ ପରିଣତିରୁ ଜଗନ୍ନାଥ ମଧ୍ୟ ମୁକ୍ତ ହୁଅନ୍ତି ।

ଜଗନ୍ନାଥ ସଂସ୍କୃତିର ବିପୁଳ ବିସ୍ତୃତିରେ ଦେବତ୍ୱ ଅପେକ୍ଷା ମାନବତ୍ୱର ପ୍ରକାଶ ଯେ ଅଧିକ, ଏଥିରେ ସନ୍ଦେହ ନାହିଁ । ସେଥିପାଇଁ ଏହି ସଂସ୍କୃତି ଆଜି ସମଗ୍ର ବିଶ୍ୱରେ ଏକ ମହାନ ସଂସ୍କୃତି ଭାବରେ କେବଳ ନୁହେଁ, ଉତ୍ତମ ମାନବୀୟ ସଂସ୍କୃତି ଭାବରେ ମଧ୍ୟ ପ୍ରସାରିତ ହେବାକୁ ଲାଗିଛି । ରହସ୍ୟମୟ ଜଗନ୍ନାଥ ଓ ତତ୍ସମ୍ପୃକ୍ତ ରହସ୍ୟମୟ ସଂସ୍କୃତିରେ ଜାଗତିକ ଲୀଳାର ଏ ମୂର୍ଚ୍ଛନା ଆଗାମୀ ଅନେକ ଶତାବ୍ଦୀ ପର୍ଯ୍ୟନ୍ତ, ମଣିଷର ପ୍ରାଣତନ୍ତ୍ରୀରେ ଯେ ସୁନାଦ ଶିହରଣ ସୃଷ୍ଟି କରିବ, ଏହା ନିଃସନ୍ଦେହରେ ସ୍ୱୀକାର କରାଯାଇପାରେ ।

ବିଭାଗ, ଓଡ଼ିଆ ବିଭାଗ
ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟ, ପୁରୀ
ଲହରୀ ପୁରୀ



# ପୁରୁଷୋତ୍ତମ ଓ ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ

● ପଣ୍ଡିତ ନୀଳାମ୍ବର ନନ୍ଦ

ଏହି ଜଗତର ନିୟନ୍ତ୍ରଣକର୍ତ୍ତାଙ୍କୁ ଜଗଦୀଶ୍ୱର ବା ପୁରୁଷୋତ୍ତମ ରୂପେ ଉପନିଷଦ ଓ ଭଗବତ୍ ଗୀତାରେ ବର୍ଣ୍ଣନା କରାଯାଇଛି। ଯୋଗ ସମନ୍ୱୟ ମାଧ୍ୟମରେ ପୁରୁଷୋତ୍ତମ ଚେତନା ଲାଭ କରି ପ୍ରକୃତିର ସମସ୍ତ କ୍ରିୟାକୁ ଯଜ୍ଞରୂପେ ଶ୍ରୀକୃଷ୍ଣଙ୍କୁ ସମର୍ପଣ କରିବାକୁ ଭଗବତ୍ ଗୀତାରେ ଶିକ୍ଷା ଦିଆଯାଇଛି ।

**ପୁରୁଷୋତ୍ତମ ରହସ୍ୟ** : ସେହି ପୁରୁଷୋତ୍ତମ ଶ୍ରୀକୃଷ୍ଣ ହିଁ ଏଠାରେ ଦାରୁବ୍ରହ୍ମ ଶ୍ରୀ ଜଗନ୍ନାଥ ରୂପେ ଆବିର୍ଭୂତ ହୋଇଛନ୍ତି । ପଣ୍ଡିତ ନୀଳକଣ୍ଠ ଦାସ ଏଥିପାଇଁ ଭଗବତ୍ ଗୀତାରେ ବର୍ଣ୍ଣିତ ପୁରୁଷୋତ୍ତମ ହେବା ସମ୍ପର୍କରେ ସୂଚନା ଦେଇ ଦାରୁବ୍ରହ୍ମଙ୍କୁ ଗୀତାରେ କଥିତ ପୁରୁଷୋତ୍ତମ ରୂପେ ପ୍ରତିପାଦିତ କରିଛନ୍ତି । ବହୁ ଅନାଦି କାଳରୁ ଏଥିପାଇଁ ଶ୍ରୀକ୍ଷେତ୍ର ପୁରୁଷୋତ୍ତମ କ୍ଷେତ୍ର ବା ଲୋକାଚାରରେ ''ପୁରୁଷୋତ୍ତମ'' କୁହାଯାଏ। 'ସ୍କନ୍ଦ ପୁରାଣ'ରେ ମଧ୍ୟ ଉତ୍କଳଖଣ୍ଡରେ ପୁରୁଷୋତ୍ତମ ମାହାତ୍ମ୍ୟ ବର୍ଣ୍ଣିତ ହୋଇଛି । ଏପରିକି ଲକ୍ଷ୍ମଣ ଦେଶୀକଙ୍କର ''ଶାରଦା ତିଳକ''ରେ ପୁରୁଷୋତ୍ତମଙ୍କର ଯେଉଁ ଧ୍ୟାନ ରହିଛି, ତାହା ଶ୍ରୀ ଜଗନ୍ନାଥଙ୍କ ପ୍ରତି ଉଦ୍ଦିଷ୍ଟ ହୋଇଆସୁଛି । ଯଥା :

ଦେବଂ ଶ୍ରୀ ପୁରୁଷୋତ୍ତମଂ କମଳୟା ସ୍ୱାଙ୍କସ୍ଥୟା ପଙ୍କଜଂ
ବିଭ୍ରତ୍ୟା ପରିରବ୍ଧ ମମ୍ବୁଜ ରୁଚା ତସ୍ୟାଂ ନିବଦ୍ଧେକ୍ଷଣଂ

ଶ୍ରୁତି ଫଳରେ କୁହାଯାଇଛି -

''ପ୍ରଣମେତ୍ ଅନୟା ସ୍ତୁତ୍ୟା ଜଗନ୍ନାଥଂ ଜଗଦ୍ଗୁରୁଂ
ଧର୍ମାର୍ଥ କାମମୋକ୍ଷାଣାଂ ଆପ୍ତୟେ ପୁରୁଷୋତ୍ତମଂ''

''ଗୋପାଳାର୍ଚ୍ଚନ ପଦ୍ଧତି''ରେ ମଧ୍ୟ ଶ୍ରୀ ଜଗନ୍ନାଥଙ୍କୁ ପୁରୁଷୋତ୍ତମଙ୍କ ରୂପରେ ଧ୍ୟାନ କରାଯାଇଛି । ଏହା ପୁରୁଷୋତ୍ତମଙ୍କର ସର୍ବପ୍ରାଚୀନ ପୂଜା ଗ୍ରନ୍ଥ ରୂପେ ପ୍ରସିଦ୍ଧ । ଏହି ପୂଜାଗ୍ରନ୍ଥ ଅନୁଯାୟୀ ପୁରୁଷୋତ୍ତମ ଶ୍ରୀକୃଷ୍ଣ ଏକ ଦିବ୍ୟସୁନ୍ଦର ଯୁବକ ରୂପେ ଧ୍ୟାନ କରାଯାଏ ଓ ତାଙ୍କ ଦେହରୁ ପୂର୍ଣ୍ଣଚନ୍ଦ୍ରଙ୍କ ଜ୍ୟୋତି ନିର୍ଗତ ହୁଏ ବୋଲି ଉପଲବ୍ଧି କରାଯାଏ । ସେ ଦିବ୍ୟ ଭୂଷଣ ଭୂଷିତ, ବଂଶୀ ବାଦନରତ ଓ ଗୋପୀ ବେଷ୍ଟିତ । ଏହା ଧ୍ୟାନରେ କୁହାଯାଇଛି :

ପୂର୍ଣ୍ଣେନ୍ଦୁଦୟମିତ୍ର କାନ୍ତିବଦନଂ ବର୍ହାବତଂସପ୍ରିୟଂ
ଶ୍ରୀବତ୍ସାଙ୍କମୁଦାରକୌସ୍ତୁଭଧରଂ ପୀତାମ୍ବରଂ ସୁନ୍ଦରଂ
ଗୋପୀନାଂ ନୟନୋତ୍ପଳାର୍ଚ୍ଚିତତନୁଂ ଗୋଗୋପ ସଂଘାବୃତଂ
ଗୋବିନ୍ଦଂ କଳ ବେଣୁବାଦନପରଂ ଦିବ୍ୟାଙ୍ଗଭୂଷଂ ଭଜେ''

**ଆବିର୍ଭାବର ପ୍ରମାଣ :**

ପୁରୁଷୋତ୍ତମ ଶ୍ରୀକୃଷ୍ଣଙ୍କର ଦାରୁବ୍ରହ୍ମ ଶ୍ରୀ ଜଗନ୍ନାଥ ରୂପେ ଆବିର୍ଭାବ ସମ୍ପର୍କରେ ବିଭିନ୍ନ ପୁରାଣ ଓ ଶାସ୍ତ୍ରରେ ବର୍ଣ୍ଣନା ରହିଛି । ''ଇନ୍ଦ୍ରନୀଳମଣି'' ପୁରାଣରେ ''ନୀଳମାଧବ''ଙ୍କୁ ଶ୍ରୀକୃଷ୍ଣଙ୍କର ଶରୀରର ଅଂଶ ରୂପେ ବର୍ଣ୍ଣନା କରାଯାଇଛି । ସେହି ପୁରାଣ ମତରେ ଶ୍ରୀକୃଷ୍ଣଙ୍କ ନାଭିକମଳକୁ ଅଗ୍ନି ସ୍ପର୍ଶ ନ କରିପାରିବାରୁ , ସେହି ତେଜୋମୟ ନୀଳବର୍ଣ୍ଣର ନାଭି କମଳକୁ ପାଣ୍ଡବମାନେ ସମୁଦ୍ରରେ ଭସାଇ ଦେଇଥିଲେ । ଜରାଶବରର ଉତ୍ତରାଧିକାରୀ ଶବରରାଜା ବିଶ୍ୱାବସୁ ସେହି ନାଭିକମଳକୁ ପାଇ ତାହାଙ୍କୁ 'ନୀଳମାଧବ' ମୂର୍ତ୍ତି ରୂପେ ପୂଜା କରୁଥିଲେ । କିନ୍ତୁ ଇନ୍ଦ୍ରଦ୍ୟୁମ୍ନ ବିଦ୍ୟାପତିଙ୍କ ସହାୟତାରେ ନୀଳମାଧବଙ୍କୁ ଦର୍ଶନ କରିବାକୁ ଚାହିଁବାରୁ ମାଧବ ଅନ୍ତର୍ଦ୍ଧାନ ହୋଇଥିଲେ । ଇନ୍ଦ୍ରଦ୍ୟୁମ୍ନ କଠୋର ତପସ୍ୟା କରିବା ପରେ ସ୍ୱୟଂ ପୁରୁଷୋତ୍ତମ ଦାରୁବ୍ରହ୍ମ ରୂପେ ଆବିର୍ଭୂତ ହୋଇଥିଲେ ।

'ସ୍କନ୍ଦ ପୁରାଣ'ରେ ମଧ୍ୟ ନୀଳମାଧବ ଅନ୍ତର୍ଦ୍ଧାନ ହେବା ପୂର୍ବରୁ ବିଷ୍ଣୁ ପୁରୁଷୋତ୍ତମ ରୂପେ ଶବରରାଜା ବିଶ୍ୱାବସୁଙ୍କ ଦ୍ୱାରା ଉପାସିତ ହେଉଥିଲେ ବୋଲି ବର୍ଣ୍ଣନା ରହିଛି । ଯଥା :-

ଯେ ନୀଳମୂର୍ତ୍ତିଂ ବିମଳାମରାଙ୍ଗ
ଧ୍ୟାୟନ୍ତି ବିଷ୍ଣୁଂ ପୁରୁଷୋତ୍ତମସ୍ଥ
ତେ କ୍ଷୀଣବନ୍ଧାଃ ପ୍ରବିଶନ୍ତି ବିଷ୍ଣୋଃ
ପୁରଂ ହି ଯତ୍ ପ୍ରାପ୍ୟ ନ ଶୋଚତୀହ'

ସାରଳାଦାସଙ୍କର ଓଡ଼ିଆ ମହାଭାରତରେ ମଧ୍ୟ ଏ ସମ୍ପର୍କରେ ଏକ ପ୍ରାଞ୍ଜଳ ବର୍ଣ୍ଣନା ରହିଛି । ସେଥିରୁ ଜଣାଯାଏ ଯେ ଜରାଶବର ପାଣ୍ଡବମାନେ ସମୁଦ୍ରରେ ଭସାଇ ଦେଇଥିବା ଶ୍ରୀକୃଷ୍ଣଙ୍କର ଅର୍ଦ୍ଧଦଗ୍ଧ ପିଣ୍ଡଟି ପାଇ ଉପାସନା ଆରମ୍ଭ କରିଥିଲେ । ଏହାପରେ ଗାଳ ମାଧବ ନୀଳପର୍ବତରେ ପୂଜା ପାଉଥିବା ସେହି ନୀଳମାଧବଙ୍କୁ ନେବାକୁ ଆସିଲେ ଓ ଜରାର ବଂଶକୁ ବିନାଶ କଲେ । ତାଙ୍କ ପରେ ଇନ୍ଦ୍ରଦ୍ୟୁମ୍ନ ରାଜା ହୋଇ ନୂତନ ମନ୍ଦିର ନିର୍ମାଣ କଲେ ଓ ସ୍ୱପ୍ନାଦିଷ୍ଟ ହୋଇ ସମୁଦ୍ରରେ ଭାସମାନ ଦାରୁ ଆଣି ଦାରୁବ୍ରହ୍ମ ଶ୍ରୀ ଜଗନ୍ନାଥଙ୍କୁ ପ୍ରତିଷ୍ଠା କଲେ ।

ସନାତନ ଗୋସ୍ୱାମୀଙ୍କର ''ବୃହତ୍ ଭାଗବତାମୃତମ୍''ର ଅନୁକରଣରେ କହ୍ନାଇ ଖୁଣ୍ଟିଆ 'ମହାଭାବ ପ୍ରକାଶ' ନାମରେ ଗୋଟିଏ ବୈଷ୍ଣବ ଗ୍ରନ୍ଥ ରଚନା କରିଥିଲେ । ସେଥିରେ ମଧ୍ୟ ପୁରୁଷୋତ୍ତମ ଶ୍ରୀକୃଷ୍ଣଙ୍କ ରୂପାନ୍ତର ରୂପେ ଦାରୁବ୍ରହ୍ମଙ୍କୁ ପରିଚିତ କରାଯାଇଛି । ଏ ସମ୍ପର୍କରେ ଏକ ଆଖ୍ୟାୟିକାର ଅବତାରଣା କରାଯାଇଛି । ସେଥିରେ ଉଲ୍ଲେଖ ଅଛି ଯେ ଦିନେ ବୃନ୍ଦାବନରେ ଶ୍ରୀକୃଷ୍ଣଙ୍କର ଆଠଜଣ ପାଟରାଣୀ ବୃନ୍ଦାଙ୍କ ଦ୍ୱାରା ଅଭିନୀତ ଶ୍ରୀକୃଷ୍ଣ ଲୀଳା ଶୁଣୁଥିଲେ । ସୁଭଦ୍ରା ଦ୍ୱାର ଜଗିଥିଲେ । ସେହି ସମୟରେ ଶ୍ରୀକୃଷ୍ଣ ଓ ବଳରାମ ସେଠାରେ ପହଞ୍ଚିଲେ । ଶ୍ରୀକୃଷ୍ଣ ଲୀଳା ବର୍ଣ୍ଣନାର ଗଭୀର ରହସ୍ୟ ଶୁଣି ସେମାନଙ୍କର 'ମହାଭାବ' ଜାଗ୍ରତ ହେଲା । ଭଉଣୀ ସୁଭଦ୍ରାଙ୍କର ମଧ୍ୟ ମହାଭାବ ସୃଷ୍ଟି ହେଲା । ଫଳରେ ଏହି

ତ୍ରିମୂର୍ତ୍ତିଙ୍କର ଅଷ୍ଟସାତ୍ତ୍ୱିକ ବିକାର ପ୍ରକାଶ ହୋଇ ଚକ୍ଷୁ ବିସ୍ଫାରିତ ହେଲା । ଏହି ଅଷ୍ଟସାତ୍ତ୍ୱିକ ବିକାର ଦ୍ୱାରା ସେମାନଙ୍କର ଦେହାତ୍ମବୋଧ ରହିଲା ନାହିଁ ଓ ହସ୍ତପଦ ଲୋପ ପାଇଲା । ଠିକ୍ ସେତେବେଳେ ନାରଦ ସେଠାରେ ପହଞ୍ଚିଲେ ଓ ତ୍ରିମୂର୍ତ୍ତିଙ୍କର ଏହି ଭାବାନ୍ତର ଦେଖି ଅନୁରୋଧ କଲେ ଯେ କଳିଯୁଗରେ ସେମାନେ ଏହି ରୂପରେ ଦର୍ଶନ ଦେଇ ଆଶ୍ଚର୍ଯ୍ୟ ପ୍ରକାଶ କରନ୍ତୁ । ନାରଦଙ୍କ ପ୍ରାର୍ଥନା ଫଳରେ କଳିଯୁଗରେ ପୁରୁଷୋତ୍ତମ ଶ୍ରୀକୃଷ୍ଣ ଏହିପରି ଭାବରେ ବଳରାମ ଓ ସୁଭଦ୍ରାଙ୍କ ସହିତ ଆବିର୍ଭୂତ ହୋଇଥିଲେ ।

## କୃଷ୍ଣ ଜଗନ୍ନାଥଙ୍କ ମୂର୍ତ୍ତିତତ୍ତ୍ୱ :

'ଦାରୁବ୍ରହ୍ମ ଗୀତା'ରେ ଅତି ରହସ୍ୟମୟ ଭାବରେ କୃଷ୍ଣ ଜଗନ୍ନାଥଙ୍କ ତତ୍ତ୍ୱ ବର୍ଣ୍ଣନା କରାଯାଇଛି । ସେଥିରେ ତାଙ୍କୁ ଜଗତର ପତି, ବିଶ୍ୱସାକ୍ଷୀ, ସୃଷ୍ଟି ସ୍ଥିତି ସଂହାରର ଆଦି କାରଣ, ବିଶ୍ୱାଧାର ଓ ପ୍ରଳୟରେ ସ୍ଥିର ରୂପରେ ବର୍ଣ୍ଣନା କରାଯାଇଛି । 'ଗୌତମୀୟ ତନ୍ତ୍ର'ରେ ମଧ୍ୟ ଏହି ବିଷୟରେ ସୂଚନା ଦେଇ କୁହାଯାଇଛି ଯେ ପୁରୁଷୋତ୍ତମ କ୍ଷେତ୍ର ନିତ୍ୟ ଓ ପ୍ରଳୟ ସମୟରେ ବିନଷ୍ଟ ହୁଏ ନାହିଁ । ସେତେବେଳେ ଭଗବାନ ଦାରୁବ୍ରହ୍ମ ବଟ ପତ୍ରରେ ବାଳମୁକୁନ୍ଦରୂପେ ଅବସ୍ଥାନ କରନ୍ତି ।

ଯଥା : ଇଦଂ କ୍ଷେତ୍ରଂ ନିତ୍ୟପ୍ରଳୟ ସମୟେ
ବିଶ୍ୱ ବିଲୟେ
ବିନାଶୋ ନୈବାସାତ୍ ବଟ ତରୁପୁଟେ
ତତ୍ର ବସତି ''

ଗବେଷକମାନଙ୍କ ମତରେ ବଳଭଦ୍ର ଶିବ, ସୁଭଦ୍ରା ବ୍ରହ୍ମା, ଜଗନ୍ନାଥ ବିଷ୍ଣୁ ଓ ସୁଦର୍ଶନ ସୂର୍ଯ୍ୟଙ୍କର ପ୍ରତୀକ । ଏଣୁ ଚତୁର୍ଦ୍ଧାମୂର୍ତ୍ତି ଶିବ, ବ୍ରହ୍ମା, ବିଷ୍ଣୁ ଓ ସୂର୍ଯ୍ୟଙ୍କର ସମନ୍ୱିତ ବିଗ୍ରହ । ଯଶୋବନ୍ତ ଦାସଙ୍କର 'ପ୍ରେମଭକ୍ତିଗୀତା'ରେ ବ୍ରହ୍ମା ଦ୍ୱାପର ଯୁଗରେ ସୁଭଦ୍ରା ରୂପେ ଜନ୍ମ ହୋଇଥିଲେ ବୋଲି କୁହାଯାଇଛି । ଶିଶୁ ଦାସଙ୍କର 'ନୀଳସୁନ୍ଦର ଗୀତା'ରେ କୃଷ୍ଣଙ୍କ ଅଭିଶାପରେ ବ୍ରହ୍ମା ନୀଳାଚଳରେ ସୁଭଦ୍ରା ରୂପେ ପୂଜା ପାଉଛନ୍ତି ବୋଲି ଉଲ୍ଲେଖ ଅଛି ।

ଦାର୍ଶନିକମାନେ ସୃଷ୍ଟି, ସ୍ଥିତି, ପ୍ରଳୟ, ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି, ପ୍ରାଜ୍ଞ, ତୈଜସ୍, ବୈଶ୍ୱାନର ପ୍ରଭୃତି ବିବିଧ ପ୍ରକାଶ ରୂପେ ତ୍ରିମୂର୍ତ୍ତିଙ୍କୁ ବର୍ଣ୍ଣନା କରିଛନ୍ତି ।

ସ୍ଥଳବିଶେଷରେ ପ୍ରଣବ ବ୍ରହ୍ମଙ୍କର ଅ,ଉ,ଓ,ମ,ଚ, ସମନ୍ୱୟ ରୂପେ ଓ କେତେକ କ୍ଷେତ୍ରରେ ଗୀତାର ଅର୍ଦ୍ଧମୂଳଃ, ଉର୍ଦ୍ଧ୍ୱଶାଖଃ ଅଶ୍ୱତ୍ଥ ରୂପେ ମୂର୍ତ୍ତି ରହସ୍ୟ ବର୍ଣ୍ଣନା କରାଯାଇଛି । ବହୁ ଗବେଷକ ଜଗନ୍ନାଥଙ୍କୁ 'ରାଧାକୃଷ୍ଣ'ଙ୍କ ସମନ୍ୱିତ ବିଗ୍ରହରୂପେ ମଧ୍ୟ ବର୍ଣ୍ଣନା କରିଛନ୍ତି ।

ତନ୍ତ୍ରରେ ଅନୁଭୂତ ବ୍ରହ୍ମାନନ୍ଦ ତ୍ରିବିଧ ରୂପେ ବର୍ଣ୍ଣିତ । ତନ୍ମଧ୍ୟରେ ବଳଭଦ୍ର 'ଯୋଗାନନ୍ଦ', ସୁଭଦ୍ରା 'ଆତ୍ମାନନ୍ଦ' ଓ ଜଗନ୍ନାଥ 'ଅଦ୍ୱୟାନନ୍ଦ' ରୂପେ ପରିଚିତ । ଏ ତ୍ରିବିଧ ଆନନ୍ଦକୁ 'ବିଦ୍ୟାନନ୍ଦ' ମଧ୍ୟ କୁହାଯାଏ । କେହି କେହି ତନ୍ତ୍ର ମତରେ ବଳଭଦ୍ରଙ୍କୁ ଶୁଭ୍ର ଜ୍ୟୋତିର୍ମୟୀ ତାରା, ସୁଭଦ୍ରାଙ୍କୁ ଅରୁଣବର୍ଣ୍ଣା ଭୁବନେଶ୍ୱରୀ ଓ ଜଗନ୍ନାଥଙ୍କୁ ଦକ୍ଷିଣକାଳୀ ରୂପେ ବର୍ଣ୍ଣନା କରିଛନ୍ତି ।

ମହାଦେବ ଦାସ 'ମାର୍କଣ୍ଡେୟ ପୁରାଣ'ରେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଶିବ, ବ୍ରହ୍ମା, ବିଷ୍ଣୁ ଓ ସୂର୍ଯ୍ୟ ରୂପେ ବର୍ଣ୍ଣନା କରିଛନ୍ତି ଯଥା :-

ବ୍ରହ୍ମା, ବିଷ୍ଣୁ, ଈଶ୍ୱର ଆବର ଦିନମଣି
ଏ ବିଧି ଚାରିରୂପ ଜଗତ ଚିନ୍ତାମଣି''

'ନୀଳାଦ୍ରି ମହୋଦୟ'ରେ ଯଥାର୍ଥରେ ସୁଦର୍ଶନଙ୍କ ସୂର୍ଯ୍ୟତ୍ୱ କୁହାଯାଇଛି :-

ସୁଦର୍ଶନ ମହାତ୍ମାଙ୍କ କୋଟି ସୂର୍ଯ୍ୟ ସମପ୍ରଭଂ । ଏପରିକି ସୂର୍ଯ୍ୟଦେବ ଶାମ୍ବଙ୍କୁ ନିଜର ଯେଉଁ ନାମ କୀର୍ତ୍ତନ କରିବାକୁ ଉପଦେଶ ଦେଇଥିଲେ, ତନ୍ମଧ୍ୟରେ 'ଜଗନ୍ନାଥ' ଶବ୍ଦ ରହିଛି ।

ଯଦି ଜାମ୍ବବତୀ ପୁତ୍ରୋ ଶାପମୁକ୍ତି ମପେକ୍ଷସେ
ଏତାନି ମମ ନାମାନି କୀର୍ତ୍ତୟସ୍ୱ ନିରନ୍ତରଂ

+ + +

ଦିବାକରୋ ଜଗନ୍ନାଥଂ ସପ୍ତାଶ୍ୱଶ୍ଚ ଦିବାକରଃ

ଏଣୁ ଚତୁର୍ଦ୍ଧାମୂର୍ତ୍ତି ତତ୍ତ୍ୱରେ କୃଷ୍ଣ ଜଗନ୍ନାଥ ବାସ୍ତବରେ ବ୍ରହ୍ମା, ବିଷ୍ଣୁ ଶିବ ଓ ସୂର୍ଯ୍ୟଙ୍କର ରୂପାନ୍ତର କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଏହି ପରିପ୍ରେକ୍ଷୀରେ କେହି କେହି ସ୍ନାନ ଓ ଗୁଣ୍ଡିଚା ଯାତ୍ରାକୁ ଜଗନ୍ନାଥରୂପୀ ସୂର୍ଯ୍ୟ ବିଷ୍ଣୁଙ୍କର ଦକ୍ଷିଣାୟନ ଯାତ୍ରା ରୂପେ ପରିଚିତ କରାଇଛନ୍ତି ।

## ଦାରୁବ୍ରହ୍ମଙ୍କ ଶ୍ରୀକୃଷ୍ଣ ସ୍ୱରୂପର ପ୍ରମାଣ :

ଅଷ୍ଟମ ଶତାବ୍ଦୀରେ ଆଦି ଶଙ୍କର 'ଜଗନ୍ନାଥାଷ୍ଟକ'ରେ ଶ୍ରୀ ଜଗନ୍ନାଥଙ୍କୁ ଶ୍ରୀକୃଷ୍ଣଙ୍କର ସକଳ ମହିମା ଗାନରେ ସ୍ତୁତି କରିଥିଲେ । ଶଙ୍କର ବେଦାନ୍ତ ତତ୍ତ୍ୱ ପ୍ରଚାରକ ଥିଲେ ହେଁ ସମୟାଚାରର ପ୍ରବର୍ତ୍ତନ କରିଥିଲେ । ଏହି ସମନ୍ୱୟବାଦର ପ୍ରଚାର ମାଧ୍ୟମରେ ସେ ପଞ୍ଚଉପାସନାକୁ ସ୍ୱୀକାର କରିଥିଲେ । 'ଜଗନ୍ନାଥାଷ୍ଟକ' ଶଙ୍କରକୃତ କି ନୁହେଁ ସେ ବିଷୟରେ ଭିନ୍ନ ଭିନ୍ନ ମତ ରହିଥିଲେ ମଧ୍ୟ ଚତୁର୍ଦ୍ଧାମ ପ୍ରତିଷ୍ଠା କରିଥିବା ଶଙ୍କର ଚତୁର୍ଦ୍ଧାମ ଶ୍ରୀ ଜଗନ୍ନାଥଙ୍କୁ ଦର୍ଶନ କରି ବୌଦ୍ଧମାନଙ୍କୁ ପ୍ରତିହତ କରିବା ଏବଂ ନବକଳେବର ସମୟରେ ନେପାଳରୁ ଦୁଇଟି ଶାଳଗ୍ରାମ ଆଣି ଯଯାତି କେଶରୀଙ୍କ ସମୟରେ ଜଗନ୍ନାଥଙ୍କୁ ପ୍ରତିଷ୍ଠା କରିବା ବିଷୟର ସ୍ଥଳବିଶେଷରେ ବର୍ଣ୍ଣନା ମିଳେ ।

ଓଡ଼ିଆ ଭଜନ, ସ୍ତୁତି, ଜଣାଣ ପ୍ରଭୃତିରେ ପ୍ରାଚୀନ ଯୁଗଠାରୁ ଏ ଯାବତ୍ ଶ୍ରୀକୃଷ୍ଣ ସ୍ୱରୂପରେ ଜଗନ୍ନାଥଙ୍କୁ ଆହ୍ୱାନ କରାଯାଇଛି । ଦ୍ୱାଦଶ ଶତାବ୍ଦୀରେ ଭକ୍ତକବି ଜୟଦେବ ମଧ୍ୟ 'ଗୀତଗୋବିନ୍ଦ' ମାଧ୍ୟମରେ ଜଗନ୍ନାଥଙ୍କୁ ଦଶାବତାର ସ୍ୱରୂପରେ ଆହ୍ୱାନ କରିଥିଲେ ଓ ପରିଶେଷରେ ତାଙ୍କୁ ରାଧା-ମାଧବ କୃଷ୍ଣ ରୂପେ ସମ୍ବୋଧନ କରିଥିଲେ ।

ଯଥା : ବେଦାନୁଦ୍ଧରତେ ଜଗନ୍ତି ବହତେ
ଭୂଗୋଳ ମୁଦ୍ ବିଭ୍ରତେ
ଦୈତ୍ୟାନ୍ ଦାରୟତେ ବଳିଂ ଛଳୟତେ
କ୍ଷତ୍ରକ୍ଷୟଂ କୁର୍ବତେ
ପୌଲସ୍ତ୍ୟଂ ଜୟତେ ହଳଂ କଳୟତେ
କାରୁଣ୍ୟ ମାନ୍ୱ ତତେ
ମ୍ଳେଚ୍ଛାନ୍ ମୂର୍ଚ୍ଛୟତେ ଦଶାକୃତି କୃତେ
କୃଷ୍ଣାୟ ତୁଭ୍ୟଂ ନମଃ''

ଜୟଦେବଙ୍କ ଗୀତଗୋବିନ୍ଦ ପ୍ରତ୍ୟହ ଶ୍ରୀ ଜଗନ୍ନାଥଙ୍କ ନିକଟରେ ଗାନ କରାଯାଏ ।

ପ୍ରେମର ଅବତାର ଶ୍ରୀ ଚୈତନ୍ୟ ମଧ ଷୋଡ଼ଶ ଶତାବ୍ଦୀରେ ଜଗନ୍ନାଥଙ୍କୁ ବୃନ୍ଦାବନଚନ୍ଦ୍ର ଶ୍ରୀକୃଷ୍ଣ ରୂପେ ମାନି ନେଇ ବୈଷ୍ଣବ ହୃଦୟରେ ପ୍ରେମଭକ୍ତିର ଉଦ୍‌ବେଳନ ସୃଷ୍ଟି କରିଥିଲେ । ଏହାକୁ ଲକ୍ଷ୍ୟ କରି ବୈଷ୍ଣବାଚାର୍ଯ୍ୟ କହିଛନ୍ତି :

"ମହାପ୍ରଭୁ ଭଗବାନ ନିତ୍ୟ ଖେଳେ ଧୂଳେ
ବୃନ୍ଦାବନେ ଛିଲେନ୍ କୃଷ୍ଣ ଆଛେ ନୀଳାଚଳେ"

ପଞ୍ଚସଖା ମଧ ଶ୍ରୀ ଜଗନ୍ନାଥଙ୍କୁ ଶ୍ରୀକୃଷ୍ଣ, ଶ୍ରୀରାମ ଓ ରାଧାକୃଷ୍ଣ ବୋଲି ସ୍ଥାନବିଶେଷରେ ପରିଚୟ ଦେଇଛନ୍ତି । ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତରେ ସେ ଜଗନ୍ନାଥଙ୍କୁ ଶ୍ରୀକୃଷ୍ଣ ରୂପେ ପ୍ରତିପାଦିତ କରିଥିଲେ । ଅଚ୍ୟୁତାନନ୍ଦ ମଧ ତାଙ୍କୁ ରାଧା-କୃଷ୍ଣ ରୂପେ ବର୍ଣ୍ଣନା କରିଥିଲେ । ଜଗନ୍ନାଥ ଓ ଚୈତନ୍ୟ ଦର୍ଶନର-ସ୍ୱକୀୟ ରୀତିରେ ଜଗନ୍ନାଥଙ୍କୁ ନିଜର ପ୍ରଭୁରୂପେ ମାନି ନେଇଥିଲେ । ସ୍ଥଳବିଶେଷରେ ଜଗନ୍ନାଥ ଦାସ ଜଗନ୍ନାଥଙ୍କୁ ଷୋଡ଼ଶ କଳାଧାରୀ ବିଷ୍ଣୁ ଓ ଶ୍ରୀକୃଷ୍ଣଙ୍କୁ ତାଙ୍କର ଅଂଶବୋଲି କହିଛନ୍ତି । ମୂଳତଃ ଶ୍ରୀ ଜଗନ୍ନାଥଙ୍କ ଦୈନିକ ନୀତି, ପୂଜାପଦ୍ଧତି, ମନ୍ତ୍ରଉପଚାର, ଯାତ୍ରା ପର୍ବ ଓ ବେଶ ପ୍ରଭୃତି ଅନୁଧାନ କଲେ ଦାରୁବ୍ରହ୍ମଙ୍କର ମୌଳିକ ଶ୍ରୀକୃଷ୍ଣ ସ୍ୱରୂପ ପ୍ରମାଣିତ ହୋଇଥାଏ । ଜଗନ୍ନାଥଙ୍କୁ 'ଗୋପାଳାର୍ଚ୍ଚନ ପଦ୍ଧତି'ରେ ପୂଜା କରାଯାଏ ଓ ଗୋପୀଜନବଲ୍ଲଭ ମନ୍ତ୍ରରେ ନୈବେଦ୍ୟ ସମର୍ପଣ କରାଯାଏ । ଏତଦ୍‌ବ୍ୟତୀତ ଦ୍ୱାଦଶାକ୍ଷର ବାସୁଦେବ ମନ୍ତ୍ର ମଧ ପ୍ରଚଳିତ ଅଛି । ରାଧା ଦାମୋଦର ବେଶ, କାଳୀୟ ଦଳନ ବେଶ, ଗଜଉଦ୍ଧାରଣ ବେଶ, ବଡ଼ ଶୃଙ୍ଗାର ବେଶ ଓ ଦୋଳ, ଝୁଲଣ, ଚନ୍ଦନ ଯାତ୍ରା ତଥା ରଥଯାତ୍ରା ପ୍ରଭୃତି ଦାରୁବ୍ରହ୍ମଙ୍କର କୃଷ୍ଣ ସ୍ୱରୂପକୁ ପ୍ରତିପାଦିତ କରିଥାଏ । ରଥଯାତ୍ରାକୁ କେହି କେହି ଶ୍ରୀକୃଷ୍ଣଙ୍କର ଗୋକୁଳରୂପୀ ଶ୍ରୀମନ୍ଦିରରୁ ମଥୁରାରୂପୀ ଗୁଣ୍ଡିଚା ମନ୍ଦିରକୁ ଯାତ୍ରା ରୂପେ ପରିଚିତ କରାଇଥାନ୍ତି ।

## ପୁରୁଷୋତ୍ତମ ଜଗନ୍ନାଥ ଦର୍ଶନ :

ଜଗନ୍ନାଥଙ୍କ ମଧରେ ସମସ୍ତ ଅବତାରଙ୍କ ଲୀଳାର ସମନ୍ୱୟ ଘଟିଛି । ସାମ୍ୟ, ମୈତ୍ରୀ ଓ ବିଶ୍ୱପ୍ରେମର ଏକ ଅନନ୍ତ ପ୍ରବାହ ଅବ୍ୟାହତ ରହିଛି । ସେ ଏକାଧାରରେ ପିତା, ମାତା, ସଖା, ଭ୍ରାତା, ଭଗିନୀ ରୂପେ ସକଳଚେତନାର ସାର୍ଥକତା ପ୍ରକାଶ କରୁଛନ୍ତି । ଏହି ଜଗତର ରୂପରସରେ ଭଗବାନଙ୍କ ଲୀଳା ବୈଚିତ୍ର୍ୟ ଆସ୍ୱାଦନ କରାଇବାକୁ ଜଗନ୍ନାଥ-ପୁରୁଷୋତ୍ତମଙ୍କର ଆବିର୍ଭାବ ହୋଇଛି । ପୁରୁଷୋତ୍ତମ ଯୋଗରେ ପରମ କୈବଲ୍ୟ ପଦ ଲାଭ କରାଯାଏ । ଏହାଙ୍କ ସାନ୍ନିଧ୍ୟରେ ରୋଗ, ଶୋକ, ଦୁଃଖ ତିରୋହିତ ହୁଏ ।

ଏହା ଅପୌରୁଷେୟ । ଜଳରେ ହିଁ ଦାରୁରୂପୀ ପୁରୁଷୋତ୍ତମଙ୍କର ଆବିର୍ଭାବ । ମଦନମୋହନ ଶ୍ରୀକୃଷ୍ଣ ହେଲେ ତାଙ୍କର ଚଳନ୍ତି ବିଗ୍ରହ । ପୁରୁଷୋତ୍ତମ ଚେତନା ହିଁ ଶ୍ରୀକୃଷ୍ଣଙ୍କର ସର୍ବଶ୍ରେଷ୍ଠ ଚେତନା । ସର୍ବଯୋଗର ସାର ପୁରୁଷୋତ୍ତମ ଜଗନ୍ନାଥ ଦର୍ଶନରେ ପ୍ରତିଫଳିତ । ପୁରୁଷୋତ୍ତମଙ୍କ ରହସ୍ୟ ଦେବତାମାନେ ମଧ ଜାଣିବାକୁ ସମର୍ଥ ନୁହଁନ୍ତି । ଏଣୁ ସାଧାରଣ ମାନବ ପକ୍ଷରେ ତାହା ଜାଣିବା ବାସ୍ତବରେ ସମ୍ଭବ ନୁହେଁ । ପୁରୁଷୋତ୍ତମ ଦର୍ଶନରେ ଭ୍ରାତୃତ୍ୱ ଓ ଭଗିନୀତ୍ୱକୁ ପ୍ରାଧାନ୍ୟ ଦିଆଯାଇଛି । ବାଳକୃଷ୍ଣଙ୍କର ବାଳମୁକୁନ୍ଦ ସ୍ୱରୂପ ସମ୍ପର୍କରେ ସୂଚନା ଦିଆଯାଇଛି । ଭକ୍ତି, ମୁକ୍ତି ଓ ପରମ ଶାନ୍ତିର ମାର୍ଗ ପୁରୁଷୋତ୍ତମ ଦର୍ଶନରେ ନିହିତ ରହିଛି ।

*ମହତାବ୍ ରୋଡ୍, ଭୁବନେଶ୍ୱର -୨*

• • •

# ତାଳଧ୍ୱଜ

ବଳଭଦ୍ରଙ୍କ ରଥ ନାମ ତାଳଧ୍ୱଜ । ଏହାକୁ ଦେବତାମାନେ ତାଳବନରେ ପ୍ରଦାନ କରିଥିଲେ । ଏହାର ଉଚ୍ଚତା ୩୨ ହାତ ୧୦ ଆଙ୍ଗୁଳି । ୭୬୩ଟି କାଠ ଦ୍ୱାରା ନିର୍ମିତ । ଏ ରଥର ୧୪ଟି ଚକ । ରଥ ରକ୍ଷକ ସ୍ୱୟଂ ବାସୁଦେବ । ଆୟୁଧ ହେଲା ହଳ ଓ ମୂଷଳ । ଉର୍ଦ୍ଧ୍ୱପୀଠ ଅଷ୍ଟଦଳ ପଦ୍ମ ନିର୍ମିତ । ରଥର ଆବରଣ ରକ୍ତନୀଳ । ରଥର ଶିରରେ ଅନନ୍ତନାଗ ରହିଛନ୍ତି । ଏ ରଥର ପାର୍ଶ୍ୱ ଦେବତାମାନେ ହେଲେ- ପ୍ରଣୟାରୀ, ଗଦାହସ୍ତକାରୀ, ହରିହର, ତ୍ରୈମୁଖ, ବାସୁଦେବ, ନାଟାମ୍ବର, ଅଘୋର, ତ୍ରିପୁରା ଶିଶିବ । ସାରଥୀଙ୍କ ନାମ ମାତଳୀ । ରଥ ରକ୍ଷକ ହେଲେ ଭାସ୍କର । ଅଶ୍ୱମାନେ ହେଲେ ତୀବ୍ର, ଘୋର, ଦୀର୍ଘ, ଶ୍ରମ ଓ ସ୍ୱର୍ଣ୍ଣନାଭ । ସ୍ୱୟଂ ବାସୁକୀ ଏହାର ରଜ୍ଜୁ ରୂପରେ ବିରାଜିତ । ରଥମୂର୍ଦ୍ଧ୍ୱ -କେତୁବ୍ରହ୍ମା । ଚର ଦେବତା ବ୍ରହ୍ମା ଓ ଶିବ । ରଥର ଭୈରବ ହେଲେ କ୍ଷେତ୍ରପାଳ । ଗନ୍ଧର୍ବଙ୍କ ନାମ ହୁ ହୁ । ଦାରୁଣଦ୍ୱୟ ମହାସିଦ୍ଧ ଓ ଉଲେମୀ । ଗର୍ଭାଧୀଶ୍ୱରୀ ଶକ୍ତି-ତୁଙ୍ଗା, ତୁଙ୍ଗଭଦ୍ରା, ପ୍ରଭା, ସୁପ୍ରଭା, ଧାତ୍ରୀ, ବିଧାତ୍ରୀ ନନ୍ଦା, ସୁନନ୍ଦା । ରଥପଟାରେ ଅଙ୍ଗିରା, ପୌଲସ୍ତ୍ୟ, ପୁଲହ, ଅଗସ୍ତି, କୃଷ୍ଣ, ମୁଦ୍‌ଗଲ, ଆତ୍ରେୟ ଓ କାଶ୍ୟପ ଏହି ଅଷ୍ଟଋଷି ବିରାଜମାନ କରିଛନ୍ତି । ରଥକୁମ୍ଭର ନାମ ଭୁବନ, ଚିତ୍ର, ପୃଥ୍ୱୀ, ଚକ୍ରାୟୁଧ, ହୁଁ ବୀଜ । ଦ୍ୱାରପାଳ ହେଲେ ନନ୍ଦ ଓ ସୁନନ୍ଦା । ନେତର ନାମ ଉନ୍ନାନି ।

ଉତ୍କଳ ପ୍ରସଙ୍ଗ



# କଳାପାହାଡ଼ର ଶ୍ରୀମନ୍ଦିର ଆକ୍ରମଣ ଓ ଦାରୁବିଗ୍ରହ ଦାହ

● ଶ୍ରୀ ରବି ରାୟ

ବଙ୍ଗଳାର ଜନୈକ ବ୍ରାହ୍ମଣ କାଳାଚାନ୍ଦ ରାୟ ବଙ୍ଗଳାର ସୁଲତାନ୍ ସୁଲେମାନ୍ କରାନୀର ଝିଅ ଦୁଲାରୀର ପ୍ରେମରେ ପଡ଼ି ମୁସଲମାନ୍ ଧର୍ମରେ ଧର୍ମାନ୍ତରିତ ହୋଇ ଦୁଲାରୀକୁ ବିବାହ କରିଥିଲା । ପରେ ଅନୁତାପ କରି ପୁନର୍ବାର ହିନ୍ଦୁଧର୍ମକୁ ଫେରି ଆସିବାପାଇଁ ପୁରୀ ଜଗନ୍ନାଥ ମନ୍ଦିରରେ ବହୁ କାକୁତିମିନତି କରିଥିଲା । ହିନ୍ଦୁ ଧର୍ମରେ ପୁନଃ ପ୍ରବେଶ ନିୟମ ନଥିବାରୁ ପଣ୍ଡାମାନଙ୍କ ଦ୍ୱାରା ଅପମାନିତ ହୋଇ କାଳାଚାନ୍ଦ ବଙ୍ଗଳା ଫେରିଯାଇଥିଲା । ଅପମାନର ପ୍ରତିଶୋଧ ନେବା ପାଇଁ ଏହି ଧର୍ମାନ୍ତରିତ କାଳାଚାନ୍ଦ ଓରଫ୍ କଳାପାହାଡ଼ ଏକ ବିଶାଳ ମୁସଲମାନ୍ ସେନାଧରି ଆକ୍ରମଣକରି ମନ୍ଦିର ମାଳିନୀ ଓଡ଼ିଶାକୁ ଧ୍ୱଂସବିଧ୍ୱଂସ କରିବା ସଙ୍ଗେ ସଙ୍ଗେ ପୁରୀର ଜଗନ୍ନାଥ,ବଳଭଦ୍ର ଓ ସୁଭଦ୍ରା ବିଗ୍ରହଗୁଡ଼ିକୁ ନିଆଁରେ ଜାଳିଦେଇଥିଲା । ଏହାଏକ କିମ୍ବଦନ୍ତୀ ମାତ୍ର । କିମ୍ବଦନ୍ତୀର ଐତିହାସିକ ସତ୍ୟତା ସନ୍ଦେହଯୁକ୍ତ ।

କଳାପାହାଡ଼ର ଶ୍ରୀମନ୍ଦିର ଆକ୍ରମଣ ଓ ଜଗନ୍ନାଥ,ବଳଭଦ୍ର, ସୁଭଦ୍ରା ଆଦି ଦାରୁ ବିଗ୍ରହ ଦାହର ବିବରଣୀ ମାଦଳାପାଞ୍ଜିରେ ନିମ୍ନୋକ୍ତଭାବେ ବର୍ଣ୍ଣନା କରାଯାଇଛି ।

"ସେଦିନୁ କଟକେ ରାଜା କେହି ରହି ନ ପାରିଲେ । ମୁଗଲେ ଜାତି କରି ମାଡ଼ି ରହିଲେ । ପରୀକ୍ଷା ଦିବ୍ୟସିଂହ ପଟ୍ଟନାୟକ ଠାକୁରଙ୍କୁ ଘେନିଗଲେ । ଏ ବୋଲରେ ପରମେଶ୍ୱରଙ୍କୁ ଛପଲିହାଆ ପଡ଼ାରେ ପୋତାଳି କରିଥିଲେ । ତହିଁକି ବୋଲି କଳାପାହାଡ଼ ଯାଇ ଠାବ କଲା, ମୁହାଣ ପାରି ହୋଇଗଲା । ଭେଳାଆ କଡ଼ାର ଅଣ୍ଠାକ ପାଣିରେ ନେଲା । ସେଠାରୁ ପରମେଶ୍ୱରଙ୍କୁ ହାତୀରେ ପକାଇ ଆଣିଲା । କାଳକୋଟି ଭଣ୍ଡାର ସେଠାରେ ଦୂର କଲା । ବଡ଼ଦେଉଳ ଅମଳା ସରିଯାଏ ଭଙ୍ଗାଇଲା । ଯେତେ ଦେବତାମାନ ପିତୃମାନ ସବୁଙ୍କୁ ହିଁ ଭ୍ରୁଣ କଲା । କଳପବଟ ଖୋଳାଇ ପକାଇଲା । ଯୋଡ଼ାକଣ୍ଡି ପୂରୋଇ ନିଆଁ ଲଗାଇଲା । ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କୁ ଗଙ୍ଗାକୂଳ ଘେନିଯାଏ ନେଲା । କାଠ ବୁଢ଼ାଇ ଅଗ୍ନିରେ ପୂରୋଇ ଜାଳିଦେଲା । ତେଣେ ପଠାଣର ଦେହ ଖଣ୍ଡ ଖଣ୍ଡ ହୋଇ ଫାଟିଲା । କାହିଁ କହିଲା-ଓଡ଼ିଶାର ଦେବତା ଜଳାଇ ଦେଲୁ , ତେଣୁ କରି ତୋହର ଦେହ ଫାଟିଲା । ଏହା ଶୁଣି ତାହାର ପୁଅ ପରମେଶ୍ୱରଙ୍କୁ ଗଙ୍ଗାରେ ମେଲିଦେଲା । ସେ ଦାରୁ ଭାସି ଆସନ୍ତେ ଅମୁରା ଗୋଟିଏ ବାଣି କାଠ ବୋଲି ଧରି ତାହା ବାଲିରେ ପକାଇଲା । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ନେବାବେଳେ ବିଶର ମହାନ୍ତି ଯାଇଥିଲା । ବୈଷ୍ଣବ ହୋଇ ସାଙ୍ଗେ ଗୋଡ଼ାଇଥିଲା । ଅଠନାଭ ରହି ବାଦ୍ୟପଣ କରି ଦାରୁ ମାଗିଲା । ହୃଦୁ ଖୋଲକରି ମୃଦଙ୍ଗେ ପୂରୋଇ ଘେନି ଆଇଲା । କୁଜଙ୍ଗ ଗଡ଼ରେ ଆଣି ପ୍ରବେଶ କଲା । ଖଣ୍ଡାଇତ ଓଳିଆ ଉପରେ ଦ୍ୱାରଠାକୁରେ ରହିଲେ ।"

ଖୋର୍ଦ୍ଧା ଅଞ୍ଚଳରୁ ଆବିଷ୍କୃତ ଚକଡ଼ା ପୋଥିରେ କଳାପାହାଡ଼ର ଜଗନ୍ନାଥଙ୍କ ଉପରେ ଆକ୍ରମଣର ଅନୁରୂପ ବର୍ଣ୍ଣନା ରହିଛି ।

"ମଖଜାନ୍-ଇ-ଆଫ୍‌ଗାନ୍" ଗ୍ରନ୍ଥରେ ନିୟାମତ୍ ଉଲ୍ଲା ଲେଖିଛନ୍ତି ଯେ, ପୁରୀର ତତ୍‌କାଳୀନ ଲୋକମାନଙ୍କର ମୁସଲମାନମାନଙ୍କ ବିଷୟରେ କିଛି ଧାରଣା ନଥିଲା । "ମୁସଲିମ୍‌ମାନେ କି' ପ୍ରକାରର ବିଚିତ୍ର ପ୍ରାଣୀ ? ଏବଂ ଆମର ଠାକୁରଙ୍କର କ୍ଷତି କରିବାର ଶକ୍ତି ସେମାନଙ୍କର ଅଛି କି ?" ପୁରୀ ଲୋକମାନେ ଜାଣିବାକୁ ଚାହିଁଥିଲେ । ଯାଜପୁର ପାଖରୁ ଅକସ୍ମାତ ଭାବରେ କଳାପାହାଡ଼ ଜଗନ୍ନାଥ ମନ୍ଦିର ଉପରେ ଆକ୍ରମଣ କରିଥିଲା । ସୁଲେମାନ୍‌ର ଆଦେଶରେ ଓଡ଼ିଶାର ଏକ କୃଷ୍ଣ ପ୍ରତିମାକୁ ଭାଙ୍ଗି ଖଣ୍ଡ ଖଣ୍ଡ କରିଦିଆଯାଇଥିଲା । ନାନା ରତ୍ନଖଚିତ ଅଳଙ୍କାରରେ ବିଭୂଷିତ, ସୁବର୍ଣ୍ଣ ନିର୍ମିତ ଏହି କୃଷ୍ଣ ପ୍ରତିମାର ଚକ୍ଷୁଦ୍ୱୟ ହୀରାଖଚିତ ଥିଲା ବୋଲି ମଖଜାନ୍-ଇ-ଆଫ୍‌ଗାନ୍‌ରେ ବର୍ଣ୍ଣନା କରାଯାଇଛି । ଏହିପରି ଏକ ମୂଲ୍ୟବାନ୍ କୃଷ୍ଣ ପ୍ରତିମାକୁ ଭାଙ୍ଗିବା ସଙ୍ଗେ ସଙ୍ଗେ ଆକ୍ରମଣକାରୀ ଆଫ୍‌ଗାନ୍ ଏହିମୂର୍ତ୍ତି ପାଖରେ ଥିବା ଅନ୍ୟ ସାତୋଟି ସ୍ୱର୍ଣ୍ଣ ପ୍ରତିମା(ପ୍ରତ୍ୟେକର ଓଜନ ଆକବରୀ ପାଞ୍ଚମହଣ)କୁ ଅପହରଣ କରିଥିବା କଥା ଯଦୁନାଥ ସରକାରଙ୍କ "ବଙ୍ଗଳା ଇତିହାସ (ଦ୍ୱିତୀୟଭାଗ)"ରେ ଉଲ୍ଲେଖ ଅଛି ।

ଆବୁଲ୍‌ଫାଜଲ୍ ଲିଖିତ ଆଇନ୍-ଇ-ଆକବରୀ ଗ୍ରନ୍ଥ ଅନୁସାରେ ସୁଲେମାନ୍‌ର ସେନାପତି କଳାପାହାଡ଼ ଓଡ଼ିଶା ବିଜୟ କରିବା ସମୟରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ବିଗ୍ରହଗୁଡ଼ିକୁ ଅଗ୍ନିକୁ ନିକ୍ଷେପ କରି ଦଗ୍ଧ କରିଦେଇଥିଲା ଓ ଏହାପରେ ଅଗ୍ନିଦଗ୍ଧ ବିଗ୍ରହଗୁଡ଼ିକର ଅବଶେଷକୁ ସମୁଦ୍ର ମଧ୍ୟରେ ପକାଇଦେଇଥିଲା । ଜଗନ୍ନାଥ ମନ୍ଦିରକୁ ଆକ୍ରମଣ କରିବା ପରେ କଳାପାହାଡ଼ ବହୁବର୍ଷ ବଞ୍ଚି ରହିଥିଲା । ୧୫୮୩ ଖ୍ରୀଷ୍ଟାବ୍ଦରେ ଆକବରଙ୍କ ସେନାପତି ଖାନ୍-ଇ-ଆଜାମ୍ ଓ ମାସୁମ୍ ଖାଁ କାବୁଲି ମଧ୍ୟରେ ଘଟିଥିବା ଯୁଦ୍ଧରେ କଳାପାହାଡ଼ ପ୍ରାଣ ହରାଇଥିଲା । ୧୫୯୨ ଖ୍ରୀଷ୍ଟାବ୍ଦରେ ଆକବରଙ୍କ ପ୍ରଧାନ ସେନାପତି ରାଜା ମାନ୍‌ସିଂହଙ୍କ ନେତୃତ୍ୱରେ ମୋଗଲସେନା ଆଫ୍‌ଗାନ୍‌ମାନଙ୍କୁ ପରାସ୍ତ କରି ଓଡ଼ିଶା ଦଖଲ କରିଥିଲେ । ଏଣୁ ୧୫୯୨ରେ ଓଡ଼ିଶା ଜୟ କରିବାପରେ ଓଡ଼ିଶା ଇତିହାସ ଆବୁଲ୍ ଫାଜଲ୍‌ଙ୍କ ଆଇନ୍-ଇ-ଆକବରୀ ଏବଂ ଆକବରନାମା ଗ୍ରନ୍ଥରେ ସ୍ଥାନ ପାଇଥିବା ସମ୍ଭବ । ୧୫୬୮ରୁ ୧୫୯୨ ଖ୍ରୀଷ୍ଟାବ୍ଦ ମଧ୍ୟରେ ରାଜା ରାମଚନ୍ଦ୍ରଙ୍କ ଦ୍ୱାରା ମାଦଳାପାଞ୍ଜିର ପୂର୍ବେ ସଂସ୍କରଣରେ କଳାପାହାଡ଼ର ଜଗନ୍ନାଥଙ୍କ ଉପରେ ଆକ୍ରମଣ ବିବରଣୀ ଲେଖା ହୋଇ ସାରିଥିବାରୁ ତତ୍‌କାଳୀନ ମାଦଳା ପାଞ୍ଜିକୁ ପ୍ରାମାଣିକ ହୋଇ ଆବୁଲ୍‌ଫାଜଲ୍ ଆଇନ୍-ଇ-ଆକବରୀ ଗ୍ରନ୍ଥରେ କଳାପାହାଡ଼ର

ଉଲଟ ପୃଷ୍ଠା

ଘଟଣାକୁ ଉଲ୍ଲେଖ କରିଥିବା ଯୁକ୍ତିଯୁକ୍ତ ମନେ ହୁଏ । ଆବୁଲ୍ ଫଜଲ୍ ନିଜେ ଜଣେ ମୁସଲମାନ୍ ଥିବାରୁ ଇସଲାମ୍ ଧର୍ମର ମୂର୍ତ୍ତିପୂଜା ବିରୋଧ ତତ୍ତ୍ୱର ମହତ୍ତ୍ୱକୁ ଦର୍ଶାଇବାକୁ ଯାଇ ମୁସଲମାନ କଳାପାହାଡ଼ ବିଗ୍ରହଙ୍କୁ ସଂପୂର୍ଣ୍ଣ ଉଦ୍ଧୃତ କରି ଅବଶେଷକୁ ସମୁଦ୍ରକୁ ନିକ୍ଷେପ କରିଥିବା ଉଲ୍ଲେଖ କରି ମାଦଳାପାଞ୍ଜିରେ ବର୍ଣ୍ଣିତ ଜଗନ୍ନାଥଙ୍କ ଅଲୌକିକ ଶକ୍ତି ଦ୍ୱାରା କଳାପାହାଡ଼ର ଘଟଣାସ୍ଥଳରେ ମୃତ୍ୟୁ, ଅର୍ଦ୍ଧଦଗ୍ଧ ବିଗ୍ରହ ବିଗ୍ରହର ପୁନରୁଦ୍ଧାର କାହାଣୀକୁ ଆଇନ୍-ଇ-ଆକବରୀ ଗ୍ରନ୍ଥରେ ସ୍ଥାନ ଦେଇନାହାନ୍ତି ।

କଳାପାହାଡ଼ର ଜଗନ୍ନାଥ ମନ୍ଦିର ଆକ୍ରମଣ ଏବଂ ଦାରୁବିଗ୍ରହ ଦାହ ସମ୍ପର୍କରେ ଉପରୋକ୍ତ ଗ୍ରନ୍ଥଗୁଡ଼ିକରେ ଭିନ୍ନ, ଅତିରଞ୍ଜିତ, ଅବାସ୍ତବ ଓ କାଳ୍ପନିକ କାହାଣୀମାନ ରଚନା କରାଯାଇଥିବା ବେଳେ କାହାର କାହା ସହ ସଙ୍ଗତି ନାହିଁ ।

୧୫୬୮ ଖ୍ରୀଷ୍ଟାବ୍ଦ ବେଳକୁ ଓଡ଼ିଆ ଲିପି ଓ ସାହିତ୍ୟର ବହୁ ବିକାଶ ସାଧିତ ହୋଇଥିଲା । ସାରଳା ଦାସଙ୍କ ଓଡ଼ିଆ ମହାଭାରତ, ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତ, ବଳରାମ ଦାସଙ୍କ ଓଡ଼ିଆ ରାମାୟଣ, ଅଚ୍ୟୁତାନନ୍ଦ ଦାସଙ୍କ ହରିବଂଶ ଓ ଶୂନ୍ୟ ସଂହିତା, ଯଶୋବନ୍ତ ଦାସଙ୍କ ପ୍ରେମ ଭକ୍ତି ବ୍ରହ୍ମଗୀତା ଓ ଗୋବିନ୍ଦ ଚନ୍ଦ୍ର ଗୀତା ଏବଂ ଅନନ୍ତ ଦାସଙ୍କ ଶିଶୁ ବେଦ ଓ ହେତୁ ଉଦୟ ଭାଗବତ ଆଦି ବହୁ ଗ୍ରନ୍ଥ ଆଫଗାନ୍ ଆକ୍ରମଣ ପୂର୍ବରୁ ରଚିତ ହୋଇସାରିଥିଲା । ୧୫୬୮ ଖ୍ରୀଷ୍ଟାବ୍ଦର ପରବର୍ତ୍ତୀ ସମୟରେ ବହୁ ଓଡ଼ିଆ ବୈଷ୍ଣବ ସାହିତ୍ୟ ରଚନା ହୋଇଥିଲେ ମଧ୍ୟ କୌଣସି ଗ୍ରନ୍ଥରେ କଳାପାହାଡ଼ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଅଗ୍ନିରେ ଦାହ କରିଥିବା ଘଟଣାର ସାମାନ୍ୟତମ ଉଲ୍ଲେଖ ନାହିଁ । ଅଷ୍ଟାଦଶ ଶତାବ୍ଦୀରେ ଜନାର୍ଦ୍ଦନ ଦାସଙ୍କ ରଚିତ ଗୋପୀ ଭାଷାରେ "ବିଷ୍ଣୁ ପ୍ରତିମା ଅନଳ ଦହିଲୁ"ର ଉଲ୍ଲେଖ କଳାପାହାଡ଼ ସମ୍ବନ୍ଧରେ ଏକ ପ୍ରାମାଣିକ ତଥ୍ୟ ନୁହେଁ । ଦୁଇ ଶହ ବର୍ଷ ପରେ ମାଦଳା ପାଞ୍ଜି ଓ କିମ୍ବଦନ୍ତୀର ପ୍ରଭାବରେ ଏହିପରି ରଚନା ସ୍ୱାଭାବିକ୍ ।

ଆଫଗାନ୍ ଆକ୍ରମଣର ବହୁ ପୂର୍ବରୁ ଶ୍ରୀଜଗନ୍ନାଥ ମହାପ୍ରଭୁ ବଙ୍ଗଳାର ଘରେ ଘରେ ପ୍ରସିଦ୍ଧି ଲାଭ କରିଥିଲେ । ଅଧିକନ୍ତୁ ଶ୍ରୀ ଚୈତନ୍ୟ ଦେବ ତାଙ୍କ ଜୀବନର ଶେଷ କେତେବର୍ଷ ପୁରୀରେ କଟାଇ, ଆଫଗାନ୍ ଆକ୍ରମଣର ବହୁ ପୂର୍ବରୁ ପୁରୀରେ ମୃତ୍ୟୁବରଣ କରିଥିଲେ । ଆଶ୍ଚର୍ଯ୍ୟର ବିଷୟ ଏହି ଯେ, ୧୫୬୮ ଖ୍ରୀଷ୍ଟାବ୍ଦର ସମସାମୟିକ ଓ ପରବର୍ତ୍ତୀ ସମୟର ଗୌଡ଼ୀୟ ବୈଷ୍ଣବ ସାହିତ୍ୟରେ କଳାପାହାଡ଼ ଦ୍ୱାରା ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଦାରୁବିଗ୍ରହ ଗଙ୍ଗାକୂଳରେ ଅଗ୍ନିରେ ଦାହ ହୋଇଥିବା ଦୁଃଖଦ ଘଟଣାର ସାମାନ୍ୟତମ ଆଭାସ ନାହିଁ ।

"ବଡ଼ ଦେଉଳ ଅର୍ଗଳା ସରିଯାଏ ଭଙ୍ଗାଇଲା । ଯେତେ ଦେବଦେବୀ, ପିଣ୍ଡିକାମାନ ସବୁଙ୍କୁ ହିଁ ଖଣ୍ଡ କଲା ।" ମାଦଳା ପାଞ୍ଜି । ଏଥିରୁ ଅନୁମାନ କରାଯାଇଥିଲା ଯେ, କଳାପାହାଡ଼ ଆକ୍ରମଣରେ ଭଗ୍ନ ମୂର୍ତ୍ତିଗୁଡ଼ିକର ବିକୃତତାକୁ ଲୋକଲୋଚନରୁ ଲୁଚାଇ ଦେବାପାଇଁ ସଂପୂର୍ଣ୍ଣ ମନ୍ଦିର ଉପରେ ଚୂନ ଓ ବାଲିର ଆସ୍ତରଣ କରାଯାଇଥିଲା । ଶ୍ରୀମନ୍ଦିର ମୂର୍ତ୍ତିଗୁଡ଼ିକର ପ୍ରକୃତ ସ୍ୱରୂପ ଦୀର୍ଘ ତିନି ଶହ ବର୍ଷରୁ ଊର୍ଦ୍ଧ୍ୱ ସମୟ ଏହି ଚୂନ ଓ ବାଲିର ଆସ୍ତରଣ ତଳେ ଲୁଚି ରହିଥିବାରୁ କଳାପାହାଡ଼ର ଉପରୋକ୍ତ ଅପକାର୍ଯ୍ୟର ସତ୍ୟାସତ୍ୟ ଜାଣିବା ସମ୍ଭବପର ନଥିଲା ବୋଲି ଐତିହାସିକ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ 'ଓଡ଼ିଶା ଇତିହାସ' ପୁସ୍ତକରେ ଲେଖିଯାଇଛନ୍ତି । କିନ୍ତୁ ବର୍ତ୍ତମାନ ମନ୍ଦିର ଉପରୁ ଏହି ଚୂନ ଓ ବାଲିର ଆସ୍ତରଣଟିକୁ ଛଡ଼ାଇ ଦେବାପରେ ଉପରୋକ୍ତ ଅନୁମାନଟି ସଂପୂର୍ଣ୍ଣ ଭିତ୍ତିହୀନ ତଥା ମାଦଳାପାଞ୍ଜିରେ କଳାପାହାଡ଼ ସମ୍ବନ୍ଧୀୟ ଉପରୋକ୍ତ ବିବରଣୀଟି ସଂପୂର୍ଣ୍ଣ ମିଥ୍ୟାବୋଲି ପ୍ରମାଣିତ ହୋଇଛି ।

କଳାପାହାଡ଼ ଏକ ଛଦ୍ମନାମ ବା ଉପାଧି ମାତ୍ର । ମୁସଲମାନ୍ ଇତିହାସରେ ଅନେକ ମୁସଲମାନ୍ କଳାପାହାଡ଼ ଛଦ୍ମନାମ ବା ଉପାଧି ଧାରଣ କରିଥିବାର ଦୃଷ୍ଟାନ୍ତ ରହିଛି । (୧) ତାରିଖ୍-ଇ-ଶେରସାହି ଗ୍ରନ୍ଥରେ ବାହାଲାଲ୍ ଲୋଦୀଙ୍କର ଭଣଜା କଳାପାହାଡ଼ ଫର୍ମୁଲି ଔଧ ସରକାରର ଜାଗିରଦାର୍ ଥିବାର ବର୍ଣ୍ଣନା ଅଛି । ଓ୍ୱାକାୟତ୍-ଇ-ମୁସ୍ତାକୀରେ ବାହାଲାଲ୍ ଲୋଦୀଙ୍କ ଭଣଜାର ମିଆଁ ମହମ୍ମଦ କଳାପାହାଡ଼ ନାମ ଉଲ୍ଲେଖ ଅଛି । (୨) ଆକବରନାମାରେ 'ରାଜୁ' କଳାପାହାଡ଼ର ଏକ ସାଥୀ ଥିବାର ବର୍ଣ୍ଣିତ ହୋଇଛି । (୩) 'ଫେରିସ୍ତା' ଗ୍ରନ୍ଥ ଅନୁସାରେ ୧୫୬୭ ରୁ ୧୫୬୮ ଖ୍ରୀଷ୍ଟାବ୍ଦ ମଧ୍ୟରେ ମାସୁମ୍ ଖାଁ 'କଳାପାହାଡ଼ ଆଫ୍‌ଗାନ୍'କୁ ପରାସ୍ତ କରିଥିଲେ । କଳାପାହାଡ଼ ଆଫ୍‌ଗାନ୍ ସେନାବାହିନୀରେ ଏକ ଶକ୍ତିଶାଳୀ ଏବଂ ଦୁର୍ଦ୍ଧର୍ଷ ସେନାପତି ଥିଲା ବୋଲି ମୁନ୍ସୀ ଖାବୁତ୍ ତାରିଖରେ ଲେଖା ହୋଇଛି । (୪) ତବାକତ୍-ଇ-ଆକବରୀ ଅନୁସାରେ କଳାପାହାଡ଼ ଜଣେ ବିଶିଷ୍ଟ ଆଫ୍‌ଗାନ୍ ଅମୀର୍ ଥିଲା । (୫) ବ୍ରିଟିଶ୍ ସଂଗ୍ରହାଳୟରେ ସୁରକ୍ଷିତ ଥିବା ଶେଖ୍ କବିର୍ ବାଟିନ୍‌ଙ୍କ ରଚିତ, 'ଅଫ୍‌ସାନା-ଇ-ସାହାନ୍' ଗ୍ରନ୍ଥରେ ଆଫ୍‌ଗାନ୍ ବଂଶୋଦ୍ଭବ କଳାପାହାଡ଼ର ପ୍ରକୃତନାମ 'ଆଲ୍‌ହାବାଦ୍' ଉଲ୍ଲେଖ ଥିବା କଥା ଓଡ଼ିଶା ଇତିହାସ କଂଗ୍ରେସର ପଞ୍ଚଦଶ ବାର୍ଷିକ (୧୯୮୯) ସମ୍ମିଳନୀରେ ବିଶିଷ୍ଟ ଐତିହାସିକ କରୁଣାସାଗର ବେହେରା ତାଙ୍କର ସଭାପତି ଅଭିଭାଷଣରେ ପ୍ରକାଶ କରିଅଛନ୍ତି । ବଙ୍ଗଳାର ଆଫ୍‌ଗାନ୍ ସୁଲତାନ୍ ସୁଲେମାନ୍ କରାନୀ ଓଡ଼ିଶା ଆକ୍ରମଣର ନେତୃତ୍ୱ ନେଇଥିବା ସୁଲେମାନ୍‌ର ପୁତ୍ର ବାୟଜିଦ୍ ଏବଂ ବାୟଜିଦ୍‌ଙ୍କ ସହଯୋଗୀ ସିକନ୍ଦର୍ ଉଜ୍‌ବେକ୍‌ଙ୍କ ମଧ୍ୟରୁ କାହାର କଳାପାହାଡ଼ ଛଦ୍ମନାମ ବା ଉପାଧି ଥିବାର କୌଣସି ଐତିହାସିକ ପ୍ରାମାଣିକ ତଥ୍ୟ ନାହିଁ । ଠିକ୍ ସେହିପରି ଜଗନ୍ନାଥ ମନ୍ଦିର ଆକ୍ରମଣ କରିଥିବା କଳାପାହାଡ଼ର ପ୍ରକୃତ ମୁସଲମାନ୍ ନାମ କ'ଣ ଥିଲା, ତାହା ଏ ପର୍ଯ୍ୟନ୍ତ ଜଣାନାହିଁ ।

ମାଦଳା ପାଞ୍ଜିର ରଚନା କାଳ ସମ୍ପର୍କରେ ଭିନ୍ନ ଭିନ୍ନ ମତ ରହିଥିଲେ ହେଁ ରାଜା ରାମଚନ୍ଦ୍ର ଦେବ (ପ୍ରଥମ)ଙ୍କ ସମୟରେ ମାଦଳା ପାଞ୍ଜିର ନୂତନ ସଙ୍କଳନ ହୋଇଥିଲା ବୋଲି ବହୁ ଐତିହାସିକ ମତ ବ୍ୟକ୍ତ କରିଛନ୍ତି । ଭିନ୍ନ ଭିନ୍ନ ସମୟରେ ଓଡ଼ିଶା ଆକ୍ରମଣ କରିଥିବା ବହୁ ମୁସଲମାନଙ୍କର ନାମ ମାଦଳାପାଞ୍ଜିରେ ଉଲ୍ଲେଖ ରହିଥିଲେ ହେଁ ଆକ୍ରମଣକାରୀ ଆଫଗାନ୍ ସେନାଧ୍ୟକ୍ଷମାନଙ୍କ ପ୍ରକୃତ ନାମ ଉଲ୍ଲେଖ କରାଯାଇନାହିଁ । ତତ୍କାଳୀନ ରାଜନୈତିକ ଘଟଣାବଳୀକୁ ଅନୁଧ୍ୟାନ କଲେ ଜଣାଯାଏ ଯେ, ନବଗଠିତ ଖୋର୍ଦ୍ଧା ରାଜ୍ୟର ରାଜା ରାମଚନ୍ଦ୍ର ଦେବଙ୍କ ସହ ଆଫଗାନ୍ ଶାସକମାନଙ୍କର ସୁସମ୍ପର୍କ ଥିଲା । ଏଣୁ ସମ୍ଭବତଃ ରାମଚନ୍ଦ୍ର ଦେବଙ୍କ ନିର୍ଦ୍ଦେଶରେ ଉଦ୍ଦେଶ୍ୟମୂଳକ ଭାବେ ମାଦଳାପାଞ୍ଜିରେ ଆକ୍ରମଣକାରୀ ଆଫଗାନ୍‌ମାନଙ୍କ ପ୍ରକୃତ ନାମ ଲେଖାଯାଇନାହିଁ ।

ଆଫଗାନ୍ ଆକ୍ରମଣ ଏକ ଧର୍ମଯୁଦ୍ଧ ନଥିଲା । ବଙ୍ଗଳାର ସୁଲତାନ୍ ସୁଲେମାନ୍ କରାନୀ ଓ ଓଡ଼ିଶାର ଗଜପତି ରାଜା ମୁକୁନ୍ଦ ଦେବଙ୍କ ମଧ୍ୟରେ ତିକ୍ତ ସମ୍ପର୍କ ଏବଂ ଅନ୍ୟାନ୍ୟ ବହୁ ରାଜନୈତିକ ଘଟଣାକୁ ନେଇ ଉଭୟ ଶାସକଙ୍କ ମଧ୍ୟରେ ଯୁଦ୍ଧ ବିଗ୍ରହ ଘଟିଥିଲା । ଆଫଗାନ୍‌ମାନେ ଯୁଦ୍ଧରେ ବିଜୟୀ ହୋଇ କଟକ ଦଖଲ କରି ୧୫୯୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଓଡ଼ିଶାରେ ରାଜତ୍ୱ କରିଥିଲେ । ଜଗନ୍ନାଥ ମନ୍ଦିର ଆକ୍ରମଣ କରିବା ଆଫଗାନ୍‌ମାନଙ୍କ ମୁଖ୍ୟ ଉଦ୍ଦେଶ୍ୟ ନଥିଲା । ଯଦି ଆଫଗାନ୍ କଳାପାହାଡ଼ ଦ୍ୱାରା ଜଗନ୍ନାଥ ମନ୍ଦିର ଆକ୍ରମଣ ହୋଇ ସମସ୍ତ ଦାରୁବିଗ୍ରହକୁ ନଷ୍ଟ କରି ଦିଆଯାଇଥିଲା, ତେବେ ଅଳ୍ପ କେତେବର୍ଷ ପରେ ଆଫଗାନ୍ ମୁସଲମାନ୍‌ମାନେ ଓଡ଼ିଶା ଶାସନ କରୁଥିବାସମୟରେ ଶ୍ରୀମନ୍ଦିରରେ କେଉଁ ପରିସ୍ଥିତିରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଆଦିଙ୍କ ନବକଳେବରର ପୁନଃପ୍ରତିଷ୍ଠା ସମ୍ଭବ ହୋଇ ପାରିଲା ? ଧର୍ମାନ୍ଧ ଆଫଗାନ୍ ମୁସଲମାନ୍ ଶାସକ କିପରି ଏହା ବରଦାସ୍ତ କରିଥିଲେ ?

ଆଫଗାନ୍ ଆକ୍ରମଣରେ ଶ୍ରୀମନ୍ଦିରର ରତ୍ନ ସିଂହାସନ ଶୂନ୍ୟ ପଡ଼ିଥିବା ବେଳେ ଓଡ଼ିଶାରେ କେହି ଗଜପତି ରାଜା ନଥିଲେ । ରାଜା ରାମଚନ୍ଦ୍ର ଦେବ ନବକଳେବର ଦାରୁବିଗ୍ରହଗୁଡ଼ିକୁ ଶ୍ରୀମନ୍ଦିରରେ ପୁନଃପ୍ରତିଷ୍ଠା କରି ଶେଷରେ ଗଜପତି ଉପାଧି ପ୍ରାପ୍ତ ହୋଇଥିଲେ । ବଂଶାନୁକ୍ରମିକ ଗଜପତି ପରମ୍ପରାର ଏହା ବ୍ୟତିକ୍ରମ ଥିଲା । ପରଲୋକଗତ ଗଜପତି ରାଜା ମୁକୁନ୍ଦଦେବଙ୍କ ପୁତ୍ର, ଅନୁଗତ ପ୍ରଜା ଓ ସମର୍ଥକ ବହୁ ରାଜା ଓ ରାଜକର୍ମଚାରୀମାନେ ରାମଚନ୍ଦ୍ରଦେବଙ୍କୁ ବିରୋଧ କରୁଥିବା ବେଳେ ଓଡ଼ିଶା ଜନମାନସରେ ରାମଚନ୍ଦ୍ର ଦେବଙ୍କୁ ନୂତନ ଗଜପତି ରାଜା ରୂପେ ଗ୍ରହଣ କରିବାପାଇଁ ରାମଚନ୍ଦ୍ର ଦ୍ୱାରା ବହୁ ପ୍ରଚାର ଓ ଅନ୍ୟମାନଙ୍କ ସମ୍ପର୍କରେ ବହୁ ଅପପ୍ରଚାର କରାଯାଇଥିଲା । ମାଦଳାପାଞ୍ଜିରେ ରାମଚନ୍ଦ୍ର ଦେବଙ୍କ କୀର୍ତ୍ତି ଓ ଯୋଗ୍ୟତାକୁ ଦର୍ଶାଇବାକୁ ଯାଇ ଅତିରଞ୍ଜିତ ପ୍ରଶସ୍ତି ରଚନା କରାଯାଉଥିଲା ବେଳେ କେତେକ ଘଟଣାକୁ ଗୋପନ ରଖାଯାଉ । କଳାପାହାଡ଼ ଅପକୀର୍ତ୍ତିର ଅତିଭୌତିକ ଓ ଅବାସ୍ତବ କାହାଣୀ ରଚନା ରାମଚନ୍ଦ୍ର ଦେବଙ୍କ ରାଜନୈତିକ ସ୍ୱାର୍ଥ ହାସଲ ପାଇଁ ଉଦ୍ଦିଷ୍ଟ ଥିଲା ।

ଶ୍ରୀଜଗନ୍ନାଥ ଓଡ଼ିଆ ଜାତିର ସ୍ୱାଭିମାନର ପ୍ରତୀକ । ଶ୍ରୀଜଗନ୍ନାଥଙ୍କ ଇତିହାସକୁ ଓଡ଼ିଆ ଜାତିର ଇତିହାସ କହିଲେ ଅତ୍ୟୁକ୍ତି ହେବ ନାହିଁ । କଳାପାହାଡ଼ର ଶ୍ରୀମନ୍ଦିର ଆକ୍ରମଣ ଓ ଦାରୁ ବିଗ୍ରହ ଦାହ କିମ୍ବଦନ୍ତୀ ଓ ଅବାସ୍ତବ କାହାଣୀ ଉପରେ ପର୍ଯ୍ୟବସିତ । ଏ ସମ୍ପର୍କରେ ଅଦ୍ୟାବଧି ଉପଲବ୍ଧ ତଥ୍ୟଗୁଡ଼ିକ ସନ୍ଦେହଯୁକ୍ତ ଓ ବିବାଦୀୟ । ଦୁର୍ବଳ ତଥ୍ୟ ଓ କିମ୍ବଦନ୍ତୀକୁ ଆଧାର କରି ଓଡ଼ିଶା ଇତିହାସରେ କଳାପାହାଡ଼କୁ ଏକ ଐତିହାସିକ ଚରିତ୍ର ରୂପେ ଗ୍ରହଣ କରିବା କେତେଦୂର ସମୀଚୀନ, ବିଚାର୍ଯ୍ୟ ।

## ସହାୟକ ଗ୍ରନ୍ଥ


୧-The History of the Gajapati Kings of Orissa-Prabhat Mukherjee, Kitab Mahal.

2-History of Orissa-K.C. Panigrahi, Kitab Mahal

୩-ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ, ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ସମ୍ପାଦିତ- ଉତ୍କଳ ବିଶ୍ୱବିଦ୍ୟାଳୟ ।

୪-ମାଦଳା ପାଞ୍ଜିର କାଳ ଓ କଳା -ଅଧ୍ୟାପକ କୃଷ୍ଣଚନ୍ଦ୍ର ଭଞ୍ଜ, ତାରାତାରିଣୀ ବୁକଷ୍ଟୋର ।

୫-ଓଡ଼ିଶା ଇତିହାସ-ଡକ୍ଟର ହରେକୃଷ୍ଣ ମହତାବ, ଷ୍ଟୁଡେଣ୍ଟସ୍ ଷ୍ଟୋର, ୧୯୪୮


ଚୌଦ୍ୱାର, ୭୫୪୦୨୫

• • •

# ଦର୍ପ ଦଳନ

ସୁଭଦ୍ରାଙ୍କ ରଥ ଦର୍ପଦଳନ ଦେବତାଙ୍କ ପ୍ରଦତ୍ତ । ଏହାର ଉଚ୍ଚତା ୩୧ ହାତ । ୫୯୩ ଖଣ୍ଡ କାଷ୍ଠରେ ନିର୍ମିତ । ୧୨ଟି ଚକ । ଏହାର ରକ୍ଷକ ଜୟଦୁର୍ଗା । ଧ୍ୱଜାରେ ତ୍ରିପୁରା ସୁନ୍ଦରୀ ବିରାଜମାନ । ଆୟୁଧ-ପଦ୍ମକହ୍ଲାର । ରଥର ଆବରଣ କୃଷ୍ଣଲୋହିତ । ରଥ ଶିରର ଦେବତା ହେଲେ ଭକ୍ତିସୁମେଧ । ତାଙ୍କର ସେବା କରନ୍ତି ସୁମେଧା ଦେବୀ । ଏ ରଥର ପାର୍ଶ୍ୱ ଦେବତାମାନେ ହେଲେ ବିମଳା, ଚାମୁଣ୍ଡା, ଭଦ୍ରକାଳୀ, ହରଚଣ୍ଡିକା, ମଙ୍ଗଳା, ବାରାହୀ, କାତ୍ୟାୟିନୀ, ଜୟଦୁର୍ଗା, କାଳୀ । ସାରଥୀଙ୍କ ନାମ ଅର୍ଜୁନ । ଉଗ୍ରଚଣ୍ଡୀ ଏ ରଥକୁ ରକ୍ଷା କରନ୍ତି । ଏ ରଥର ୪ଟି ଅଶ୍ୱ ହେଲେ ରୋଚିକା, ମୋଚିକା, ଜିତା ଓ ଅପରାଜିତା । ସ୍ୱର୍ଣ୍ଣଚୂଡ଼ ନାମକ ନାଗ ଏ ରଥର ରଜ୍ଜୁ ହୋଇଛନ୍ତି । ରଥର ମୁଖୀ ହେଲା ବ୍ରହ୍ମବର୍ତ୍ତା । ରଥର ଦେବୀ ଶ୍ରୀ, ଭୂ । ଏହାର ଗନ୍ଧର୍ବଙ୍କ ନାମ ହା ହା-ରଥଚାଳଣଙ୍କ ନାମ ମହାଳର । ଯକ୍ଷଙ୍କ ନାମ ହେଉଛି-ଲିହୁଳିକା । ରଥଗର୍ଭର ଅଷ୍ଟଶ୍ୱରୀ ହେଲେ -ଶକ୍ତି ଶମ୍ଭା, ଜୟା, ବିଜୟା, ଘୋରା, ଅଘୋରା, ମୁଣ୍ଡା, କାଳୀ । ରଥିପଟାରେ ଦ୍ଧୁଣ୍ଡ ସୁପଭ, ବନ୍ଧୁ, ଶୃଙ୍ଗୀ, ଧ୍ରୁବ, ଉଲ୍ଲୁକ ନାମା ଛ'ଜଣ ଋଷି ବିରାଜମାନ କରନ୍ତି । ରଥ କୁମ୍ଭର ନାମ ଅମୃତା, ଜୀବା, କାମ୍ୟା ତ୍ରି ବାଜ । ଦ୍ୱାଦଶ ଚରଣ ଭୁବନେଶ୍ୱରୀ, ଚନ୍ଦ୍ର, ଗଙ୍ଗା, ଯମୁନା, ଦ୍ୱାରପାଳିକା । କେତର ନାମ ନାଦାମ୍ବିକା ।



# ଓଡ଼ିଶାର ପଞ୍ଜାଙ୍ଗରେ ଜଗନ୍ନାଥଙ୍କ ପ୍ରଭାବ

● ଡକ୍ଟର ବ୍ରଜକିଶୋର ସ୍ୱାଇଁ

ଭାରତୀୟ ଜ୍ୟୋତିଷଶାସ୍ତ୍ରର ତିନୋଟି ଭାଗ ଅଛି । ପ୍ରତ୍ୟେକ ଭାଗକୁ 'ସ୍କନ୍ଧ' କୁହାଯାଏ । ଏହା ଗଣିତ ଜ୍ୟୋତିଷ, ଫଳିତ ଜ୍ୟୋତିଷ ଓ ମୁହୂର୍ତ୍ତ ଜ୍ୟୋତିଷ ନାମରେ ଖ୍ୟାତ । ଗଣିତ ଜ୍ୟୋତିଷରେ ଅଖଣ୍ଡକାଳକୁ ବିଭକ୍ତ କରାଯାଇ ତା'ର ଅବୟବମାନଙ୍କର ଗଣନା କରାଯାଇଥାଏ । ଫଳିତ ଜ୍ୟୋତିଷରେ ବିଭକ୍ତ କାଳର ଅବୟବଗୁଡ଼ିକର ପ୍ରଭାବ ଯୋଗୁ ଯେଉଁ ଫଳାଫଳ ମିଳେ, ତାହାର ପୂର୍ବନିର୍ଦ୍ଧାରଣ କରାଯାଏ । ମୁହୂର୍ତ୍ତ ଜ୍ୟୋତିଷରେ କାଳର ବିଭିନ୍ନ ଅବୟବର ବ୍ୟାବହାରିକ ସୀମା ନିର୍ଦ୍ଧାରଣ କରାଯାଇଥାଏ । ଏହି ଦୃଷ୍ଟିରୁ ମୁହୂର୍ତ୍ତ ସ୍କନ୍ଧର ଧର୍ମଶାସ୍ତ୍ର ବା ସ୍ମୃତି ଶାସ୍ତ୍ର ସହିତ ସମ୍ପର୍କ ରହିଛି । (୧) ମୁହୂର୍ତ୍ତସ୍କନ୍ଧ ଅନୁସାରେ କାଳର ବ୍ୟାବହାରିକ ସୀମା ରେଖାର ନିରୂପଣ କରିସାରିବା ପରେ ଧର୍ମଶାସ୍ତ୍ର ଅନୁସାରେ ତା'ର ଧାର୍ମିକ ତଥା ସାମାଜିକ ଲୋକବ୍ୟବହାର ଯୋଗ୍ୟତା ନିର୍ଣ୍ଣୟ କରାଯାଏ । ଏହି ବେଳେ ଧର୍ମଶାସ୍ତ୍ରର ତିନୋଟି ନିର୍ଣ୍ଣୟ ପଦ୍ଧତି ଅନୁସୃତ ହୁଏ । ଯଥା-ବୈଦିକ ସ୍ମାର୍ତ୍ତ ପଦ୍ଧତି, ପୌରାଣିକ ସ୍ମାର୍ତ୍ତପଦ୍ଧତି ଏବଂ ଆଗମିକ ବା ତାନ୍ତ୍ରିକ ସ୍ମାର୍ତ୍ତପଦ୍ଧତି । (୨) ଏହି ତ୍ରିବିଧ ପଦ୍ଧତିରେ ସାମାଜିକ ତଥା ଧାର୍ମିକ ଜୀବନଯାତ୍ରାରେ କାଳକୁ ବ୍ୟବହାର କରିବା ନିମନ୍ତେ ନାନା ଅଞ୍ଚଳରେ ନାନା ପ୍ରକାର ଆଞ୍ଚଳିକ ପ୍ରଭାବ ଦେଖିବାକୁ ମିଳେ । ଓଡ଼ିଶାରେ ବହୁ ପ୍ରାଚୀନ କାଳରୁ ଏହି ପ୍ରଭାବ ସୁନିୟନ୍ତ୍ରିତ ହୋଇ ଆସିଅଛି । ଏହି ପ୍ରଭାବକୁ ନିୟନ୍ତ୍ରଣ କରିବାରେ ମୁଖ୍ୟତଃ ଜଗନ୍ନାଥ ବିଶିଷ୍ଟ ଭୂମିକା ଗ୍ରହଣ କରିଛନ୍ତି, ଯାହାର ବ୍ୟାବହାରିକ ରୂପରେଖ କେବଳ ପଞ୍ଜାଙ୍ଗ ବା ପଞ୍ଜିକାମାନେ ହିଁ ଧରିରଖିଛନ୍ତି ।

ପୁରୀରେ ଶ୍ରୀଜଗନ୍ନାଥ ମନ୍ଦିର ପ୍ରତିଷ୍ଠିତ ହେବା ସମୟରୁ ଓଡ଼ିଶାର ପଞ୍ଜାଙ୍ଗରେ ଜଗନ୍ନାଥଙ୍କର ପ୍ରଭାବ ଅତୁଟ ରହିଆସିଛି । ଶ୍ରୀମନ୍ଦିର ପ୍ରତିଷ୍ଠା ହେବା ସମୟରେ ପୁରୀରେ ଓଡ଼ିଶାର ପଞ୍ଜାଙ୍ଗର ଆଦ୍ୟ ପ୍ରବର୍ତ୍ତକ ଆଚାର୍ଯ୍ୟ ଶତାନନ୍ଦ ଅବସ୍ଥାନ କରୁଥିଲେ । (୩) ସେ ତିନୋଟି ପ୍ରସିଦ୍ଧ ଗ୍ରନ୍ଥ ରଚନା କରିଯାଇଛନ୍ତି । ଯଥା-ଭାସ୍ୱତୀ, ଶତାନନ୍ଦ ସଂଗ୍ରହ ଏବଂ ଶତାନନ୍ଦ ରତ୍ନମାଳା । ଏହି ତିନୋଟି ଗ୍ରନ୍ଥ ମଧ୍ୟରୁ 'ଭାସ୍ୱତୀ' ପୃଥିବୀ ପ୍ରସିଦ୍ଧ ଜ୍ୟୋତିଷ ଗ୍ରନ୍ଥ । (୪) ଖ୍ରୀଷ୍ଟାବ୍ଦ ଏକାଦଶ ଶତକର ଉତ୍ତରାର୍ଦ୍ଧରେ (୧୦୯୯ଖ୍ରୀ.) ଆଚାର୍ଯ୍ୟ ଶତାନନ୍ଦ ଏହି ଗ୍ରନ୍ଥ ରଚନା କରି ସର୍ବପ୍ରଥମେ ଜଗନ୍ନାଥଙ୍କର ପ୍ରତିଷ୍ଠାକାଳ ସେତୁ ସମ୍ପର୍କରେ ସୂଚନା ଦେଇଛନ୍ତି । (୫) ଏହି ସମୟରୁ ରାମାନୁଜଙ୍କ ନେତୃତ୍ୱରେ ଦକ୍ଷିଣ ଭାରତରୁ ବୈଷ୍ଣବ ପରମ୍ପରା ଓଡ଼ିଶାରେ ଆନୁଷ୍ଠାନିକ ଭାବେ ପ୍ରବେଶ କରିଛି । (୬) ଫଳରେ ପ୍ରାଚୀନ ଓଡ଼ିଶାରେ ଶତାନନ୍ଦଙ୍କର ସ୍ମାର୍ତ୍ତବିଚାର ସହିତ ବୈଷ୍ଣବୀୟ ଉପାସନା ବ୍ୟବହାରର ମିଶ୍ରଣ ଘଟିଥିବା ପ୍ରସଙ୍ଗକୁ ଏଡ଼ାଇ ଦେଇ ହେବ ନାହିଁ । ଆଚାର୍ଯ୍ୟ ଶତାନନ୍ଦ ଜଣେ ସ୍ମାର୍ତ୍ତ ପଣ୍ଡିତ । ତାଙ୍କର ଶତାନନ୍ଦ ରତ୍ନମାଳା ଏବଂ ଶତାନନ୍ଦ ସଂଗ୍ରହରେ ସେ ଅନେକ ସ୍ମାର୍ତ୍ତ ପରମ୍ପରାକୁ ସାମାଜିକ ଗ୍ରହଣୀୟତା ଦୃଷ୍ଟିରୁ ଅନ୍ତର୍ଭୁକ୍ତ କରିଯାଇଛନ୍ତି । (୭) ତେବେ ଓଡ଼ିଶାର ପଞ୍ଜାଙ୍ଗ ଗଣନା ଆଚାର୍ଯ୍ୟ ଶତାନନ୍ଦଙ୍କଠାରୁ ଆରମ୍ଭ ହୋଇଥିଲେ ହେଁ ପଠାଣି ସାମନ୍ତଙ୍କର 'ସିଦ୍ଧାନ୍ତ ଦର୍ପଣ' ଅନୁସାରେ ଗଣନା ପରବର୍ତ୍ତୀ ସମୟରେ ପ୍ରବର୍ତ୍ତିତ ହୋଇଅଛି । (୮) ଶ୍ରୀଜଗନ୍ନାଥ ମନ୍ଦିରରେ ଏହି ଅନୁସାରେ ପୂଜାକାଳ ନିରୂପିତ ହୋଇ ଆସୁଥିବା ବେଳେ ବିରଜା ମଣ୍ଡଳରେ ଶତାନନ୍ଦଙ୍କର 'ଭାସ୍ୱତୀ' ଅଦ୍ୟାବଧି ଅନୁସୃତ ହୋଇ ଆସୁଅଛି । (୯) ତେଣୁ ଓଡ଼ିଶାର ପଞ୍ଜାଙ୍ଗ ଉପରେ ଉଭୟ ଜଗନ୍ନାଥ ଏବଂ ବିରଜାଙ୍କୁ କେନ୍ଦ୍ର କରି ପ୍ରଭାବ ପଡ଼ିଥିଲେ ମଧ୍ୟ ଜଗନ୍ନାଥଙ୍କ ପ୍ରଭାବ ଅତି ବ୍ୟାପକ ଏବଂ ଗଭୀର ।

ବିଶ୍ଳେଷଣ କରିବାରେ ଏହାର ଚର୍ଚ୍ଚା ଆବଶ୍ୟକ । ସର୍ବ ପ୍ରଥମେ ଏହି ପରିପ୍ରେକ୍ଷୀରେ ବର୍ଷର ଆରମ୍ଭ ପ୍ରସଙ୍ଗ ବିଚାରକୁ ନିଆଯାଉ । ସାରା ଭାରତରେ ଚୈତ୍ରମାସ ଶୁକ୍ଳପକ୍ଷ ପ୍ରତିପଦା ତିଥିକୁ ଚାନ୍ଦ୍ରବର୍ଷର ଆରମ୍ଭ ଦିନଭାବରେ ଗ୍ରହଣ କରାଯାଏ । (୧୦) ପୃଥିବୀର ଜନ୍ମ ଦିନ ଭାବରେ ଏହା ସ୍ୱୀକୃତ । ଏହି ଦୃଷ୍ଟିରୁ ସୌରବର୍ଷର ଆରମ୍ଭ ମଧ୍ୟ ଏହି ଦିନଠାରୁ ହୋଇଅଛି । ସୌରବର୍ଷର ଆରମ୍ଭ ଦିନଟି ମେଷ ସଂକ୍ରାନ୍ତି ବା ମହାବିଷୁବ ସଂକ୍ରାନ୍ତି । (୧୧) ଯେଉଁ ଦିନ ସର୍ବ ପ୍ରଥମେ ଏହି ଦିନଟି 'ବର୍ଷାରମ୍ଭ' ଭାବରେ ଚିହ୍ନଟ କରାଯାଇଛି ସେହିଦିନ ଉଭୟ ଚୈତ୍ର ଶୁକ୍ଳ ପକ୍ଷର ପ୍ରତିପଦା ଏବଂ ମେଷ ସଂକ୍ରାନ୍ତି ଏକତ୍ର ପଡ଼ିଛନ୍ତି । ଫଳରେ ଚାନ୍ଦ୍ରବର୍ଷ ଓ ସୌର ବର୍ଷର ଆରମ୍ଭ ଦିନ 'ଏକ' ହୋଇଛି ଯାହାକୁ ପୁରାଣକାରମାନେ ପୃଥିବୀର ଜନ୍ମଦିନ ବୋଲି ଆଖ୍ୟା ଦେଇଛନ୍ତି । କିନ୍ତୁ ପରବର୍ତ୍ତୀ ବର୍ଷମାନଙ୍କରେ ବର୍ଷର ଆରମ୍ଭ ଦିନ ପୃଥକ୍ ହୋଇଯାଇଛି । କାରଣ ସୌରବର୍ଷ ୩୬୫ ଦିନ ବିଶିଷ୍ଟ ହୋଇଥିବା ବେଳେ ଚାନ୍ଦ୍ରବର୍ଷ ୩୫୪ ଦିନ ବିଶିଷ୍ଟ । ତେଣୁ ସୌରବର୍ଷ ସମାପ୍ତ ହେବାର ୧୧ ଦିନ ପୂର୍ବରୁ ଚାନ୍ଦ୍ରବର୍ଷ ସମାପ୍ତ (୩୬୫-୩୫୪=୧୧) ହେଉଥିବାରୁ ପରବର୍ତ୍ତୀ ଚାନ୍ଦ୍ର ଏବଂ ସୌରବର୍ଷର ଆରମ୍ଭ ଦିନ କଦାପି ଏକ ହୋଇପାରେ ନାହିଁ । (୧୩) ତେଣୁ ଚୈତ୍ର ଶୁକ୍ଳ ପ୍ରତିପଦା ଦିନ ମେଷ ସଂକ୍ରାନ୍ତି (ମହାବିଷୁବ ସଂକ୍ରାନ୍ତି) ପଡ଼େ ନାହିଁ । ଏହା ଫଳରେ ବର୍ଷର ଆରମ୍ଭ ଦିନ ଭାବରେ ସାର୍ବଜନୀନ ଦୃଷ୍ଟିକୋଣରୁ କେଉଁଟିକୁ ଗ୍ରହଣ କରାଯିବ, ସେ ସମ୍ପର୍କରେ ବୈମତ୍ୟ ଆସେ । ଉଲ୍ଲେଖଯୋଗ୍ୟ ଯେ ସମଗ୍ର ଦକ୍ଷିଣ ଭାରତରେ ଚୈତ୍ରମାସ ଶୁକ୍ଳପକ୍ଷର ପ୍ରତିପଦା ତିଥିଟିକୁ ବର୍ଷର ଆରମ୍ଭ ଦିନ ଭାବରେ ଗ୍ରହଣ କରାଯାଇ ଉତ୍ସବମାନ ପାଳନ କରାଯାଇଥାଏ । ଦକ୍ଷିଣ ଓଡ଼ିଶାରେ ତେଲୁଗୁ ଭାଷାଭାଷୀ ଆନ୍ଧ୍ର ଲୋକେ ଏହି ଦିନଟିକୁ ତେଲୁଗୁ ନବବର୍ଷ ଭାବରେ ମାନି ଆସନ୍ତି । କିନ୍ତୁ ଶ୍ରୀଜଗନ୍ନାଥଙ୍କ ସେବା ପୂଜାରେ ଏହି ଦିନଟିକୁ ବର୍ଷାରମ୍ଭ ଭାବରେ ସ୍ୱୀକାର କରାନଯାଇ ମେଷ ସଂକ୍ରାନ୍ତି ଅର୍ଥାତ୍

ମହାବିଷୁବ ସଂକ୍ରାନ୍ତିକୁ ଗ୍ରହଣ କରାଯାଉଥିବାରୁ ସମଗ୍ର ଓଡ଼ିଶାରେ ଏହି ଦିନଠାରୁ ପଞ୍ଜିକା ବା ପାଞ୍ଜି ଆରମ୍ଭ ହୋଇଥାଏ ।

ପ୍ରତ୍ୟେକ ଚାନ୍ଦ୍ରମାସରେ ଦୁଇଟି ପକ୍ଷ ଥାଏ । ଯଥା-କୃଷ୍ଣପକ୍ଷ ଓ ଶୁକ୍ଳପକ୍ଷ । ତେବେ ମାସର କେଉଁ ପକ୍ଷଟି ପ୍ରଥମ ଏବଂ କେଉଁ ପକ୍ଷଟି ଦ୍ୱିତୀୟ, ସେ ସମ୍ପର୍କରେ ଐକମତ୍ୟ ନାହିଁ । ସମଗ୍ର ଦକ୍ଷିଣ ଭାରତ ଏବଂ ଅନ୍ୟତ୍ର ଅମାବାସ୍ୟା ଦିନ ଚାନ୍ଦ୍ରମାସ ସମାପ୍ତ ହେଉଥିବାରୁ ଶୁକ୍ଳପକ୍ଷଟି ମାସର ପ୍ରଥମ ପକ୍ଷଭାବେ ଗୃହୀତ ହୋଇଥାଏ । କିନ୍ତୁ ଶ୍ରୀଜଗନ୍ନାଥଙ୍କ ସେବା ପୂଜା ପାଇଁ ଏହି କ୍ରମ ଅନୁସୃତ ହୋଇ ନଥାଏ । ଏହି ପରିପ୍ରେକ୍ଷୀରେ ଶ୍ରୀଜଗନ୍ନାଥଙ୍କ ସେବା ପୂଜା ନିମନ୍ତେ ଚାନ୍ଦ୍ରମାସର ଶେଷ ଦିନଟି ହେଉଛି 'ପୂର୍ଣ୍ଣିମା' । ସୁତରାଂ ପୂର୍ଣ୍ଣିମାନ୍ତ ମାସ ହିଁ ଜଗନ୍ନାଥଙ୍କ ପାଇଁ ଉଦ୍ଦିଷ୍ଟ । (୧୩)ଏହି ବିଧାନକୁ ଅନୁସରଣ କରି ସାରା ଓଡ଼ିଶାର ପଞ୍ଜିକାରେ ପ୍ରଥମ ପକ୍ଷଟି କୃଷ୍ଣପକ୍ଷ ଏବଂ ଦ୍ୱିତୀୟ ପକ୍ଷଟି ଶୁକ୍ଳ ପକ୍ଷଭାବରେ ଗୃହୀତ ହୋଇଥାଏ । ଚାନ୍ଦ୍ର ମାସ କୃଷ୍ଣ ପ୍ରତିପଦାରେ ଆରମ୍ଭ ହୋଇ ପୂର୍ଣ୍ଣିମାରେ ସମାପ୍ତ ହୁଏ । (୧୪)

ଉଭୟ ସୌରବର୍ଷ (୩୬୫ ଦିନ) ଏବଂ ଚାନ୍ଦ୍ରବର୍ଷ (୩୫୪ ଦିନ)ର ସମୀକରଣ ନିମନ୍ତେ 'ଜ୍ୟୋତିଷ ଶାସ୍ତ୍ର'ରେ ଏବଂ 'ସ୍ମୃତି'ରେ ମଳମାସର ଅବଧାରଣା କରାଯାଇଛି । ଗୋଟିଏ ବର୍ଷରେ ଚାନ୍ଦ୍ରବର୍ଷଠାରୁ ସୌରବର୍ଷ ୧୧ ଦିନ ଅଧିକ । ଏହି ହିସାବରେ ଦୁଇବର୍ଷ ଆଠମାସ ଷୋହଳ ଦିନ ବ୍ୟବଧାନ ମଧ୍ୟରେ ୩୦ ଦିନ ବିଶିଷ୍ଟ ଗୋଟିଏ ମାସ ଅଧିକ ହୁଏ । (୧୫) ଯେଉଁ ବର୍ଷ ଯେଉଁ ମାସପରେ ଏହି ୩୦ ଦିନ ବିଶିଷ୍ଟ ଚାନ୍ଦ୍ରମାସଟି ଅଧିକ ହୁଏ, ସେହିବର୍ଷ ସେହି ଅଧିକ ମାସଟିରେ କୌଣସି ସଂକ୍ରାନ୍ତି ପଡ଼େ ନାହିଁ । କାରଣ ବାରମାସରେ ବାରଟି ସଂକ୍ରାନ୍ତି ନିୟମିତଭାବରେ ପଡୁଥିବାରୁ ଏହି ଅଧିକମାସ ନିମନ୍ତେ ଆଉ ବଳକା ସଂକ୍ରାନ୍ତି ନଥାଏ । ସଂକ୍ରାନ୍ତି ବିହୀନ ମାସଟି ଅଶୁଦ୍ଧ । ଏହି ଅଶୁଦ୍ଧକାଳରେ କୌଣସି ଶୁଭ କାର୍ଯ୍ୟ କରାଯାଏ ନାହିଁ । ଉଲ୍ଲେଖଯୋଗ୍ୟ ଯେ ଯେଉଁଠି ଅମାବାସ୍ୟାକୁ ଚାନ୍ଦ୍ରମାସର ଅନ୍ତିମ ଦିନ ଭାବରେ ଗ୍ରହଣ କରାଯାଏ, ସେଇଠି ଶୁକ୍ଳପକ୍ଷ ପ୍ରତିପଦା ଦିନଠାରୁ ଆରମ୍ଭ କରି ଅମାବାସ୍ୟା ପର୍ଯ୍ୟନ୍ତ ମଳମାସ ହୁଏ ଏବଂ ତା'ପରେ ଶୁଦ୍ଧମାସ ହୁଏ । କିନ୍ତୁ ଏହି ବ୍ୟବସ୍ଥା ଶ୍ରୀଜଗନ୍ନାଥଙ୍କ ସେବାପୂଜାରେ ଲାଗୁ ହୁଏ ନାହିଁ । ଉଲ୍ଲେଖ ଯୋଗ୍ୟ ଯେ ଚଳିତ ବର୍ଷରେ ଜ୍ୟେଷ୍ଠମାସ 'ମଳମାସ' ହୋଇଅଛି । ଜଗନ୍ନାଥଙ୍କ ସେବା ପୂଜାରେ ଚାନ୍ଦ୍ରମାସର ପ୍ରଥମ ପକ୍ଷ କୃଷ୍ଣପକ୍ଷ ହୋଇଥାଏ ଏବଂ ଶୁକ୍ଳପକ୍ଷ ଦ୍ୱିତୀୟପକ୍ଷ ଗୃହୀତ ହୋଇଥାଏ । କିନ୍ତୁ ମଳମାସ ବ୍ୟବସ୍ଥାରେ ପ୍ରଥମ ପକ୍ଷ ଶୁକ୍ଳପକ୍ଷ ଏବଂ ଦ୍ୱିତୀୟ ପକ୍ଷ କୃଷ୍ଣ ହୋଇଥାଏ । ଏହି ବ୍ୟବସ୍ଥାରେ ଓଡ଼ିଶାରେ ଜ୍ୟେଷ୍ଠ ମାସର ପ୍ରଥମ କୃଷ୍ଣ ପକ୍ଷ ଶୁଦ୍ଧ ପକ୍ଷଭାବରେ ଗ୍ରହଣ କରାଯାଇ (୧-୫-୯୯ -୧୫-୫-୯୯) ପ୍ରଥମ ଶୁକ୍ଳପକ୍ଷ (ତା ୧୬-୫-୯୯ରୁ ୩୦-୫-୯୯ପର୍ଯ୍ୟନ୍ତ) ଓ ତା'ପରେ ଦ୍ୱିତୀୟ କୃଷ୍ଣପକ୍ଷ (ତା ୩୧-୫-୯୯ରୁ ୧୩-୬-୯୯ ପର୍ଯ୍ୟନ୍ତ) କୁ ମିଶାଇ ଗୋଟିଏ ମାସ ମଳମାସ ଭାବରେ ଗ୍ରହଣ କରାଯାଇଅଛି । ଏଠାରେ ପରବର୍ତ୍ତୀ ଜ୍ୟେଷ୍ଠ ମାସର ଦ୍ୱିତୀୟ ଶୁକ୍ଳପକ୍ଷଟି (ତା ୧୪-୬-୯୯ରୁ ତା ୨୮-୬-୯୯) ଶୁଦ୍ଧ ପକ୍ଷ ଭାବରେ ଗ୍ରହଣ କରାଯାଉଥିବାରୁ ଷାଠିଏ ଦିନ ବିଶିଷ୍ଟ ଉକ୍ତ ଜ୍ୟେଷ୍ଠମାସର ପ୍ରଥମ ପନ୍ଦର ଦିନ ଶୁଦ୍ଧ, ଶେଷ ପନ୍ଦର ଦିନ ଶୁଦ୍ଧ ଏବଂ ତନ୍ମଧ୍ୟରେ ୩୦ ଦିନ ବିଶିଷ୍ଟ ଗୋଟିଏ ପୂର୍ଣ୍ଣ ଜ୍ୟେଷ୍ଠମାସ ସଂକ୍ରାନ୍ତିରହିତ ହୋଇଥିବାରୁ ତାହା ମଳମାସ ଭାବରେ ଗୃହୀତ ।ଉଲ୍ଲେଖ ଯୋଗ୍ୟ ଯେ ଚଳିତବର୍ଷ ବୃଷ ସଂକ୍ରାନ୍ତି ମଇ ୧୫ ତାରିଖରେ (ଜ୍ୟେଷ୍ଠ ଅମାବାସ୍ୟା ଦିନ) ପଡ଼ି ମିଥୁନ ସଂକ୍ରାନ୍ତି ଜୁନ୍ ୧୫ ତାରିଖରେ ପଡ଼ିଥିବାରୁ ମଇ ୧୬ ତାରିଖ (ଜ୍ୟେଷ୍ଠ ପ୍ରଥମ ଶୁକ୍ଳପ୍ରତିପଦା) ଠାରୁ ଜୁନ୍ ୧୩ ତାରିଖ (ଦ୍ୱିତୀୟ ଅମାବାସ୍ୟା) ପର୍ଯ୍ୟନ୍ତ ମଳମାସ ହୋଇଅଛି । ଅନ୍ୟତ୍ର ଏହି ବ୍ୟବସ୍ଥା ଏହିପରି ଭାବରେ ପ୍ରବର୍ତ୍ତିତ ନହୋଇ କେବଳ ଶ୍ରୀଜଗନ୍ନାଥଙ୍କ ସେବାପୂଜା ନିମନ୍ତେ ଉଦ୍ଦିଷ୍ଟ ହୋଇଥିବାରୁ ସମଗ୍ର ଓଡ଼ିଶାର ପଞ୍ଜିକାମାନଙ୍କରେ ଏତାଦୃଶ ଶୁଦ୍ଧାଶୁଦ୍ଧ କାଳ ବ୍ୟବସ୍ଥା ସର୍ବସାଧାରଣଙ୍କ ନିମନ୍ତେ ଉଦ୍ଦିଷ୍ଟ ହୋଇଅଛି ।

ସାଧାରଣତଃ ଜ୍ୟେଷ୍ଠ କୃଷ୍ଣ ପକ୍ଷରେ ଶ୍ରୀଜଗନ୍ନାଥଙ୍କ 'ଅନବସର' ଅନୁଷ୍ଠିତ ହୁଏ । ଯେଉଁ ବର୍ଷ ଆଷାଢ଼ ଚାନ୍ଦ୍ରମାସ ଅଧିକ(ମଳ) ହୁଏ,ସେ ବର୍ଷ ନବକଳେବର ଅନୁଷ୍ଠିତ ହୁଏ ।ଏବର୍ଷ ଅନବସର ନିମନ୍ତେ ତିନୋଟି ପକ୍ଷ ଅର୍ଥାତ୍ ୪୫ ଦିନ ଏକାଦିକ୍ରମେ ଆବଶ୍ୟକ ।ଏହି ୪୫ ଦିନ ମଧ୍ୟରୁ ପ୍ରଥମ ପନ୍ଦର ଦିନ (ଅର୍ଥାତ୍ ଶୁଦ୍ଧ କୃଷ୍ଣ ପକ୍ଷ) ସବୁବର୍ଷ ପରି ସାଧାରଣ ଅନବସର ଏବଂ ପରବର୍ତ୍ତୀ ୩୦ ଦିନ (ମଳମାସ) ନବକଳେବର ପର୍ବ ଉଦ୍ଦିଷ୍ଟ । (୧୬)ଭାରତର ଅନ୍ୟ ଅଞ୍ଚଳ ପରି ଯଦି ଅମାବାସ୍ୟାନ୍ତ ମାସ ଏହି ସ୍ଥଳରେ ଗୃହୀତ ହେବ, ତେବେ ମାସ 'ମଧ୍ୟରେ' ଜ୍ୟେଷ୍ଠ ପୂର୍ଣ୍ଣିମା ପଡ଼ିବ ଏବଂ ତା' ପରେ ଜ୍ୟେଷ୍ଠ କୃଷ୍ଣପକ୍ଷ ଆରମ୍ଭ ହୋଇଯିବ ।ମଳମାସର ବ୍ୟବସ୍ଥାନୁସାରେ ନବକଳେବର ନିମନ୍ତେ ମଳ ଓ ଶୁଦ୍ଧକୁ ମିଶାଇ ଆଷାଢ଼ ମାସର ୪୫ ଦିନ ଆବଶ୍ୟକ । କିନ୍ତୁ ଅମାବାସ୍ୟାନ୍ତ ମାସରେ ଆଷାଢ଼ମାସର ୩୦ ଦିନ ମଳ ମାସ ନିମନ୍ତେ ମିଳିବ ନାହିଁ । ତାହା ହୋଇ ଜ୍ୟେଷ୍ଠକୃଷ୍ଣ ପକ୍ଷକୁ ମିଶାଇବାକୁ ପଡ଼ିବ । କିନ୍ତୁ ଏହା ଜଗନ୍ନାଥଙ୍କ ନବକଳେବର ବ୍ୟବସ୍ଥାର ବିଧି ବହିର୍ଭୂତ । କେବଳ ପୂର୍ଣ୍ଣିମାନ୍ତ ମାସରେ ହିଁ ଏହି ଆଷାଢ଼ ୪୫ ଦିନ ଏକାଦିକ୍ରମେ ମିଳିବାର ବ୍ୟବସ୍ଥା ହୁଏ (ଶୁଦ୍ଧ ଆଷାଢ଼ କୃଷ୍ଣପକ୍ଷ +ମଳ ଆଷାଢ଼ ଶୁକ୍ଳ ପକ୍ଷ +ମଳ ଆଷାଢ଼ କୃଷ୍ଣପକ୍ଷ= ୪୫ ଦିନ) ପୂର୍ଣ୍ଣିମାନ୍ତ ମାସ ହିଁ ଜଗନ୍ନାଥଙ୍କ ସେବା ପୂଜା ପାଇଁ ଉପଯୋଗୀ । ଏତାଦୃଶ ବ୍ୟବସ୍ଥାର ଅନିବାର୍ଯ୍ୟତାକୁ ଉପଲବ୍ଧି କରି ଓଡ଼ିଶାର ପଞ୍ଜିକାରେ ପୂର୍ଣ୍ଣିମାନ୍ତ ମାସ ସର୍ବସାଧାରଣଙ୍କର ସାମାଜିକ ଓ ଧାର୍ମିକ କାର୍ଯ୍ୟକଳାପ ପାଇଁ ବ୍ୟବସ୍ଥିତ ହୋଇଅଛି ।

ମହାବିଷୁବ ସଂକ୍ରାନ୍ତିଠାରୁ ଓଡ଼ିଶାରେ ପଞ୍ଜିକାର ଆରମ୍ଭ ହେଉଥିଲେ ମଧ୍ୟ ଫାଲ୍ଗୁନ ପୂର୍ଣ୍ଣିମାରେ ଶ୍ରୀଜଗନ୍ନାଥଙ୍କ ଦୋଳଯାତ୍ରାରେ ଦୋଳପୂର୍ଣ୍ଣିମା ଦିନ ଶ୍ରୀଜୀଉଙ୍କ ନିକଟରେ ଆଗାମୀ ବର୍ଷର କାଳାନୁପାତି ଫଳାଫଳ ପାଠକରାଯାଏ । ଶ୍ରୀଜଗନ୍ନାଥ ଓଡ଼ିଶାର ରାଷ୍ଟ୍ରଦେବତା ହୋଇଥିବାରୁ ରାଷ୍ଟ୍ରମୁଖ୍ୟଙ୍କ ନିକଟରେ ରାଜଜ୍ୟୋତିଷୀ କାଳଗଣନା କରି ତାଙ୍କର ଭବିଷ୍ୟତ ଫଳ ଶୁଣାଇ ଥାଆନ୍ତି ପୂର୍ବବର୍ଷର ଶେଷ ଦିନରେ । ଏହି ପରିପ୍ରେକ୍ଷୀରେ ଫାଲ୍ଗୁନ ପୂର୍ଣ୍ଣିମା ବର୍ଷର ଶେଷ ଦିନ । ତା'ପର ଦିନ ଚୈତ୍ରମାସ ଆରମ୍ଭ ହେଉଥିବାରୁ ଏହା ପରବର୍ତ୍ତୀ ବର୍ଷର ଦିନ । ଏହି ପରମ୍ପରାକୁ ଅନୁସରଣ କରି ଓଡ଼ିଶାରେ ସର୍ବତ୍ର ଦୋଳପୂର୍ଣ୍ଣିମାରେ ଦୋଳଗୋବିନ୍ଦଙ୍କୁ ଦୋଳାରେ ବସାଇ ପଞ୍ଜିକାପାଠ ଓ ଶ୍ରବଣ କରାଯାଏ । (୧୭) ଶ୍ରୀଜଗନ୍ନାଥଙ୍କର ଏହି ଉତ୍ସବ ଏବଂ କାର୍ଯ୍ୟକ୍ରମ ସାରା ଓଡ଼ିଶାରେ

[illegible]

ଅନୁଷ୍ଠିତ ହେଉଥିବାରୁ ଓଡ଼ିଶାର ପଞ୍ଜାଙ୍ଗରେ ଏ ବିଷୟରେ ସ୍ୱତନ୍ତ୍ର ଉଲ୍ଲେଖ ଥାଏ । ଓଡ଼ିଶାରେ ସେବାକାରୀମାନେ ଦୋଳପୂର୍ଣ୍ଣିମାଠାରୁ ଦୋଳପୂର୍ଣ୍ଣିମା ପର୍ଯ୍ୟନ୍ତ ବର୍ଷଭୋଗୀ ବାର୍ଷିକ ବେତନ ପାଆନ୍ତି । ତେଣୁ ଯେଉଁମାନେ ସେବାକାରୀଙ୍କୁ ନିଯୁକ୍ତି ଦିଅନ୍ତି, ସେମାନେ ଦୋଳପୂର୍ଣ୍ଣିମା ପରଦିନଠାରୁ ନିଯୁକ୍ତି ଦିଅନ୍ତି । ଯେଉଁମାନେ ସେବାକାରୀଙ୍କୁ କାର୍ଯ୍ୟରୁ ଅପସାରଣ କରନ୍ତି କିମ୍ବା ଅବ୍ୟାହତି ଦିଅନ୍ତି, ସେମାନେ ଦୋଳପୂର୍ଣ୍ଣିମା ଦିନ ଅବ୍ୟାହତି ଦିଅନ୍ତି । ଆପାତତଃ ଓଡ଼ିଶାରେ ଶ୍ରୀଜଗନ୍ନାଥଙ୍କର ଏତାଦୃଶ ପର୍ବ ମର୍ଯ୍ୟାଦାକୁ ସମ୍ମାନ ଜଣାଇ ଓଡ଼ିଶାରେ ଲୋକବ୍ୟବହାର ଦୃଷ୍ଟିରୁ ଦୋଳପୂର୍ଣ୍ଣିମା ବର୍ଷାନ୍ତ ଦିବସଭାବରେ ଗୃହୀତ ହୋଇଅଛି ।

ଦୁର୍ଗାପୂଜା ଭାରତର ଗୋଟିଏ ବିଶିଷ୍ଟ ପର୍ବ । ସର୍ବଭାରତୀୟ କ୍ଷେତ୍ରରେ ଏହାର ସାର୍ବଜନୀନତା ସ୍ୱୀକୃତ ହୋଇଥିଲେ ହେଁ ଓଡ଼ିଶା ଏବଂ ବଙ୍ଗଳାରେ ଏହାର ଗୁରୁତ୍ୱ ସର୍ବାଧିକ । ତଥାପି ବଙ୍ଗଳା ଅପେକ୍ଷା ଓଡ଼ିଶାରେ ଦୁର୍ଗାପୂଜାର ବୈଶିଷ୍ଟ୍ୟ ଅନୁଭୂତ ହୁଏ । ଓଡ଼ିଶାରେ ବିରଜା ଏବଂ ବିମଳାଙ୍କର ପୂଜାକାଳ ବଙ୍ଗଳାର ଦୁର୍ଗାପୂଜାର କାଳ ଠାରୁ ଭିନ୍ନ । ବଙ୍ଗଳାରେ ଦୁର୍ଗାପୂଜାର କର୍ମକାଳ ପୂର୍ବାହ୍ନ ଏବଂ ପ୍ରାତଃ ହୋଇଥିବାବେଳେ ଓଡ଼ିଶାରେ ଏହା ନିଶାର୍ଦ୍ଧ । ତେଣୁ ଅଷ୍ଟମୀ (ମହାଷ୍ଟମୀ) ପ୍ରଭୃତି ତିଥି ନିଶାର୍ଦ୍ଧକୁ ଯେଉଁଦିନ ବ୍ୟାପିକରି ଥାଏ, ସେହିଦିନ ଜଗନ୍ନାଥଙ୍କ ମନ୍ଦିର ପରିସରରେ ବିମଳାଙ୍କର ଅଷ୍ଟମୀ ପୂଜା ହୁଏ । କିନ୍ତୁ ବଙ୍ଗଳା ପ୍ରଭୃତି ଅନ୍ୟ ଅଞ୍ଚଳରେ ସୂର୍ଯ୍ୟୋଦୟ ସମୟକୁ ଅଷ୍ଟମୀତିଥି ଯେଉଁଦିନ ଥାଏ, ସେହିଦିନ ମହାଷ୍ଟମୀ ପୂଜା ହୋଇଥାଏ । ଉଲ୍ଲେଖଯୋଗ୍ୟ ଯେ ବଙ୍ଗଳାରେ ଦୁର୍ଗା ମୃଣ୍ମୟୀ ହୋଇଥିବା ସ୍ଥଳେ ଶ୍ରୀମନ୍ଦିରରେ ବିମଳା ଏବଂ ଯାଜପୁରରେ ବିରଜା ପୀଠଦେବୀ ଅଟନ୍ତି । ମୃଣ୍ମୟ ଦେବୀଙ୍କର ପୂଜା ଭୂତ ଦୃଷ୍ଟିରୁ ଅନୁଷ୍ଠିତ ହେଉଥିବା ସ୍ଥଳେ ପୀଠ ଦେବୀଙ୍କର ପୂଜା 'ନିତ୍ୟ' ଦୃଷ୍ଟିରୁ ଅନୁଷ୍ଠିତ ହୁଏ । (୧୮) ଶ୍ରୀମନ୍ଦିରରେ ବିମଳା ଦେବୀଙ୍କର ପୀଠ ପୂଜା ପରମ୍ପରା ସମଗ୍ର ଓଡ଼ିଶାରେ ଅନୁସୃତ ହେଉଥିବାରୁ ନିଶାର୍ଦ୍ଧପୂଜା ସମଗ୍ର ଓଡ଼ିଶାରେ ପାଳିତ ହୁଏ । ଓଡ଼ିଶାର ପଞ୍ଜାଙ୍ଗରେ ଏହି ପରିପ୍ରେକ୍ଷୀରେ ନିଶାର୍ଦ୍ଧ ବ୍ୟାପ୍ତ ତିଥିର ଦୁର୍ଗାପୂଜା ନିମନ୍ତେ ବ୍ୟବସ୍ଥା କରାଯାଇଥାଏ । କିନ୍ତୁ ପରମ୍ପରା ଦୃଷ୍ଟିରୁ ମୃଣ୍ମୟୀ ମୂର୍ତ୍ତି ପୂଜା ବ୍ୟବସ୍ଥା ଓଡ଼ିଶାରେ ନାହିଁ । ଏହା ବଙ୍ଗୀୟ ପରମ୍ପରା ଅନୁସାରେ ଅନୁଷ୍ଠିତ ହୋଇଥାଏ । ଯେଉଁଦିନ ସାୟଂକାଳରେ ଦଶମୀ ତିଥି ଥାଏ, ସେହିଦିନ ଶ୍ରୀଜଗନ୍ନାଥଙ୍କ ସେବା ପୂଜା ବ୍ୟବସ୍ଥାରେ ଦଶହରା ପର୍ବ ଅନୁଷ୍ଠିତ ହୁଏ । କିନ୍ତୁ ଯେଉଁଦିନ ସୂର୍ଯ୍ୟୋଦୟ ସମୟକୁ 'ଦଶମୀ'ଥାଏ ସେହିଦିନ ବଙ୍ଗୀୟମତେ ଦଶହରା ଅନୁଷ୍ଠିତ ହୋଇ ଥାଏ । ଏହି ପରିପ୍ରେକ୍ଷୀରେ ଶ୍ରୀମନ୍ଦିରରେ ପୀଠ ଦେବୀଙ୍କର 'ଦଶହରା' ଯାତ୍ରା ଓଡ଼ିଶାରେ ଅନୁସୃତ ହେଉଥିବାରୁ ମୃଣ୍ମୟୀଦେବୀଙ୍କର ଦଶହରା ପର୍ବ ବଙ୍ଗୀୟ ମତେ ଦ୍ୱିତୀୟ ଦଶମୀ ଭାବରେ ଓଡ଼ିଶାର ପଞ୍ଜାଙ୍ଗରେ ଉଲ୍ଲିଖିତ ରହେ । ଚଳିତ ବର୍ଷ ଏହି ପରମ୍ପରାକୁ ଅନୁସରଣ କରି ଶ୍ରୀମନ୍ଦିରର ପୀଠ ଦେବୀଙ୍କ ପୂଜା ପାଇଁ ଅକ୍ଟୋବର ମାସ ୧୯ ତାରିଖ 'ଦଶହରା' ଉଦ୍ଦିଷ୍ଟ ହୋଇଥିବା ସ୍ଥଳେ ବଙ୍ଗୀୟମତେ ଅକ୍ଟୋବର ୨୦ ତାରିଖ ଧାର୍ଯ୍ୟ କରାଯାଇଛି । ଯେହେତୁ ଆସନ୍ତା ଅକ୍ଟୋବର ୧୯ ତାରିଖ ଦିନ ଦଶମୀ ତିଥି ସୂର୍ଯ୍ୟୋଦୟ ବେଳରୁ ରହିଲେ ସାୟଂକାଳକୁ ଥିବାରୁ ଏ ଦିନ ଓଡ଼ିଶାରେ ଦଶହରା । ଅକ୍ଟୋବର ୨୦ ତାରିଖ ଦିନ ସୂର୍ଯ୍ୟୋଦୟ ବେଳକୁ ଦଶମୀ ତିଥି ଥିବାରୁ ଏ ଦିନ ବଙ୍ଗୀୟମତେ ଦଶହରା ସ୍ପଷ୍ଟ କରାଯାଇଅଛି । ଓଡ଼ିଶାର ପଞ୍ଜାଙ୍ଗରେ ଜଗନ୍ନାଥଙ୍କ ପ୍ରଭାବ ଯୋଗୁ ବଙ୍ଗୀୟ ପରମ୍ପରା ଠାରୁ ଓଡ଼ିଶାର ପରମ୍ପରା ସ୍ପଷ୍ଟ ହୋଇଯାଇଛି ।

ଉପଯୁକ୍ତ ଦୃଷ୍ଟାନ୍ତ ଦ୍ୱାରା ଭାରତର ବିଭିନ୍ନ ଅଞ୍ଚଳରେ ପ୍ରଚଳିତ ଓ ପ୍ରଣୀତ ପଞ୍ଜାଙ୍ଗମାନଙ୍କ ଅପେକ୍ଷା ଓଡ଼ିଶାର ପଞ୍ଜାଙ୍ଗରେ କେତେକ ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୁଏ । ବୈଦିକ, ପୌରାଣିକ ଓ ଆଗମିକ ବ୍ୟବସ୍ଥା ଅନୁସାରେ ପଞ୍ଜାଙ୍ଗରେ ନାନା କାର୍ଯ୍ୟକ୍ରମ ପାଇଁ ନାନା ସମୟ ନିର୍ଦ୍ଧାରିତ ହେଉଥିଲେ ହେଁ ଏହାର ସର୍ବଭାରତୀୟ ସ୍ୱୀକୃତି ଅଛି । କିନ୍ତୁ ଓଡ଼ିଶାରେ ଯେଉଁ ସ୍ୱାତନ୍ତ୍ର୍ୟ ଅଛି, ତାହା କେବଳ ଜଗନ୍ନାଥଙ୍କ ପ୍ରଭାବ ଯୋଗୁ ସମ୍ଭବ ହୋଇପାରିଛି । ଶ୍ରୀମନ୍ଦିରର ସର୍ବବିଧ ପୂଜା ଓ ପର୍ବପର୍ବାଣି ନିମନ୍ତେ ସୂର୍ଯ୍ୟୋଦୟକାଳୀନ ତିଥିକୁ ଗ୍ରହଣ କରାଯାଉଥିବାରୁ ଜଗନ୍ନାଥଙ୍କର ସେବାପୂଜା ଓ ପର୍ବପର୍ବାଣି ନିମନ୍ତେ କର୍ମକାଳ ଠିକଣା କରିବାରେ କୌଣସି ଅସୁବିଧା ହୁଏ ନାହିଁ, ଯାହାକି ଅନ୍ୟ ଅଞ୍ଚଳରେ ନଥିବାରୁ ଘୋର ଅସୁବିଧାର ସମ୍ମୁଖୀନ ହେବା ଅବସ୍ଥା ପରିଲକ୍ଷିତ ହୋଇଥାଏ । ସୁତରାଂ ଓଡ଼ିଶାର ପଞ୍ଜାଙ୍ଗରେ ଶ୍ରୀଜଗନ୍ନାଥଙ୍କ ପ୍ରଭାବକୁ ଆଧାର କରି ଏଥିରେ ଦେଖାଦେଉଥିବା ପାର୍ଥକ୍ୟ, ବୈଷମ୍ୟ ଓ ସାର୍ବଜନୀନତାର ମୂଳତତ୍ତ୍ୱ ଖୋଜି ବାହାର କରିବା ପାଇଁ ଗବେଷଣା ହେଲେ ଜଗନ୍ନାଥ କେନ୍ଦ୍ରିକ ଉତ୍କଳୀୟ ସଂସ୍କୃତିର ଯୁକ୍ତିଯୁକ୍ତତା ପ୍ରତିଷ୍ଠିତ ହୋଇପାରିବ ।

1.P.V. Kane : History of Dharmashastra. Vol.V.Pt.I. (B.O.R.I., Poona, 1974) Ch.III

2. S.R. Goyal : Religious History of Ancient India. Vol.II.P3

3.K.N.Mahapatra : A Descriptive Catalogue of Sanskrit Manuscript of Orissa State Musium. Vol. I (Bhubaneswar, Orissa) Intro.P.2

୪. ଦ୍ର: ଭାସ୍ୱତୀ-ଚୌଖମ୍ବା ସଂସ୍କୃତ ସଂସ୍ଥାନ, ବାରାଣସୀ ସଂସ୍କରଣ, ୧୯୮୯

୫. ଖାଖାଗ୍ନି ବେଦ ପ୍ରମିତେ ଯୁଗାବ୍ଦେ

ଦିବ୍ୟୋକ୍ତିତଃ ଶ୍ରୀପୁରୁଷୋତ୍ତମସ୍ଥଃ ।

ସରସ୍ୱତୀ ଶଙ୍କରୟୋସ୍ତନୂଜଃ

ଶ୍ରୀମାନ୍ ଶତାନନ୍ଦ ଇତି ପ୍ରସିଦ୍ଧଃ ॥

ଭାସ୍ୱତୀର ଶେଷ ଶ୍ଳୋକ ॥

ଅଧିକନ୍ତୁ ଦ୍ରଷ୍ଟବ୍ୟ : Orissa Historical Research Journal, Vol.V.Pt.3-4.pp.183-189

୬. ସତ୍ୟନାରାୟଣ ରାଜଗୁରୁ : ଓଡ଼ିଶାର ଇତିହାସ , ଭାଗ-୧(ଗ୍ରନ୍ଥ ମନ୍ଦିର, କଟକ).

୭.B.K. Swain : Significance of Satananda Samgraha. Paper Presented in All India Oriental Conference,Rohtak Session and Published in

ଲେଖକ ପ୍ରସଙ୍ଗ

୮.ଦ୍ର.ସିଦ୍ଧାନ୍ତ ଦର୍ପଣର ଭୂମିକା (ପଣ୍ଡିତ ବୀର ହନୁମାନ୍ ଶାସ୍ତ୍ରୀ) - ତଦ୍ୟାଳିଧ୍ର ଖଡ଼ିଗଡ଼ୁ ସଂସ୍କରଣ

୯. ଦ୍ର. ବିରଜା ପଞ୍ଜିକା

୧୦. ଚୈତ୍ରେ ମାସି ଜଗଦ୍ ବ୍ରହ୍ମା ସସର୍ଜ ପ୍ରଥମେଽହନି ।

ଶୁକ୍ଳପକ୍ଷେ ସମଗ୍ରଂ ତଦା ସୂର୍ଯ୍ୟୋଦୟେ ସତି ॥

ପ୍ରବର୍ତ୍ତୟାମାସ ତଦା କାଳସ୍ୟ ଗଣନାମପି ।

ଗ୍ରହାନାଗାନୃତୂନ୍ ମାସାନ୍ ବତ୍ସରାନ୍ ବତ୍ସରାଧିପାନ୍ ॥ ବ୍ରହ୍ମପୁରାଣ

କାଳମାଧବ (ଙ.ବ୍ରଜକିଶୋର ସ୍ୱାଇଁ), ବାରଣସୀ, ୧୯୮୯, ପୃ.୨୮

୧୧. ଚାନ୍ଦ୍ରଃ ସଂବତ୍ସର ଶ୍ଚୈତ୍ର ଶୁକ୍ଳ ପ୍ରତିପଦାଦିଃ ଫାଲ୍ଗୁନ ଦର୍ଶାନ୍ତଃ ।

ସୌରସ୍ତୁ ମେଷାଦିର୍ମୀନାନ୍ତଃ ॥

କାଳମାଧବ (ବାରଣସୀ .୧୯୮୯ ପୃ୨୭

୧୨.ଦ୍ର.ଟିପ୍ପଣୀ-୧୦

୧୩. ସୌରବର୍ଷୋ ପଞ୍ଚଷଷ୍ଟ୍ୟୁତ୍ତର ତ୍ରିଶତ ବାସରୈଃ (୩୬୫)

ବାର୍ହସ୍ପତ୍ୟ ଏକ ଷଷ୍ଟ୍ୟୁତ୍ତର ତ୍ରିଶତ ବା ସରୈଃ ॥(୩୬୧)

ସବନୋଦଃ ଷଷ୍ଟ୍ୟଧିକ ତ୍ରିଶତୈର୍ବାସରୈର୍ଭବେତ୍ ॥(୩୬୦)

ଚତୁଃପଞ୍ଚାଶଦଧିକ ତ୍ରିଶତାହୈସ୍ତୁ ଚାନ୍ଦ୍ର କଃ (୩୫୪)

ଗଦାଧର ପଦ୍ଧତି (କାଳସାର)-ରାଧାରମଣ ପ୍ରେସ୍, କଟକ, ୧୯୬୦, ପୃ୪

୧୪. ମାସ ବୃତାଦିକମସ୍ତୁଦେଶେ ତୁ ପୂର୍ଣ୍ଣିମାନ୍ତ ମାସେ ଏବ ବୃତ୍ତି ।

କାଳସାର ପୃ-୧୦

୧୫-ତ୍ରାତ୍ରିଂଶଦ୍ଭିର୍ଗତୈ ମାସୈର୍ଦିନୈଃ ଷୋଡ଼ଶଭିସ୍ତଥା

ଘଟିକାନା ଚତୁଷ୍କେଣ ପତତ୍ୟଧିକ ମାସକଃ ॥ କାଳମାଧବ,ପୃ-୨୪,

କାଳସର୍ବସ୍ୱ ପୃ:୨୦

୧୬. ନାଳାନ୍ଦ୍ରି ମହୋଦୟ, ୧୫/୨, ୮୫

୧୭. ଦ୍ର. ୧୯୯୯ ମସିହା ପଞ୍ଜିକା -ଦୋଳପୂର୍ଣ୍ଣିମା ତିଥି ଅଥବା ୨୦-୩-୨୦୦୦ ଦିନର ଓଡ଼ିଶାର ପାଞ୍ଜି

18. Trilochan Misra : Pt.Kulamani Mishra Memorial Lecture -Studies in Dharmashastra (BBSR.1997) P.163

୧୯ ସର୍ବଯାତ୍ରାଦି କାର୍ଯ୍ୟେଷୁ ଶ୍ରୀପୁରୁଷୋତ୍ତମ ଭୁବନେଶ୍ୱର କ୍ଷେ ପ୍ରସାଦଯୋର୍ଭୂଦୟ ବେଧ ଏବ ଗୃହ୍ୟତେ । କାଳସାର -ପୃ ୧୫

*ଉପାଚାର୍ଯ୍ୟ,ସ୍ନାତକୋତ୍ତର ଧର୍ମଶାସ୍ତ୍ର ବିଭାଗ*
*ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ, ଶ୍ରୀବିହାର, ପୁରୀ*

# ନେତ୍ରପରି ନେତ୍ରଟିଏ

● ଶ୍ରୀ ଦାମୋଦର ବେହେରା

ଏଇ କ'ଣ ସେଇ ଆଖି
ବକାଆଖି
ବାଣ୍ଟେ ଖାଲି ଅମୃତ ମହକ ଆଉ
ରକ୍ଷି ଭୋକେ ଜଳିବାର ନିଆଁ
ତୋର ଦୁଇ ଆଖି ପାଇଁ
ନୀରବେ ନିଥରେ ଥରେ
ଦେଖି ଦେଖି ଏ ସାରା ଦୁନିଆ ।

ଦରିଆର ଆରପାରେ
ଭୁଇଁ ଭୁଇଁ ଦିଗନ୍ତର ଚୂଡ଼ା
ଆଖିରେ ଆଖିରେ ଏତେବଡ଼ ସମ୍ମୋହନ
ଡିଆଇଛୁ ମାଖି ତୁ ଅଞ୍ଜନ
ଏବେ ଖାଲି ସ୍ୱପ୍ନେ ଆଉ ଜାଗରଣେ
ଥରି ଯାଉଛି ବିବିକ୍ତ ଚୈତନ୍ୟ ମୋର ।

ସେଇତ ଗୋଟିଏ ଦୃଶ୍ୟ
ନେତ୍ର ପରି ନେତ୍ରଟିଏ

ଚାହିଁ ଦେଲେ ଚମକାଏ
ଆକାଶ ଓ ପୃଥିବୀର
ଜମକୁଟ ପ୍ରତିବିମ୍ବ
ମନପ୍ରାଣେ ସଧାରେ ହଜାଏ ।
ମୋଠାରେ ମହତ ମୋର ସାତ୍ତ୍ୱିକ ଆବେଗ
ଅଭୁଲା ଅଭୁଲା ପଣ
ଜାଗ୍ରତ ମୁଦ୍ରାଙ୍କ
ଏଇ କ'ଣ ସେଇ ଆଖି
ସବୁ କିଛି ଭୁଲିବାର ନିଶାସକ୍ତ
ନୀରବ ଚୁମ୍ବକ ।
ଏବେ ଖାଲି କାଟହୁଏ ମାଟିପିଣ୍ଡ
ମୁହ୍ୟମାଣ ଲହୁ ଲୁହେ
ଲୋଡ଼େ ତୁମ ଦୃଷ୍ଟିପାତ
ଦୂରାନ୍ତରେ ସ୍ମିତପ୍ରାଣ
ପାଲଟିଛି ଆଜି ମୁହିଁ
ଏକାନ୍ତ ଚାତକ ।

*ଅଧ୍ୟାପକ ଓଡ଼ିଆ ବିଭାଗ*
*ଯୁଗଳହରା ମହାବିଦ୍ୟାଳୟ, ଗା-ବେଟନା ପୋ-ପାଟପୁର, ଯାଜପୁର*
*ଜଗତ ପୁରୀ*



# ଇନ୍ଦ୍ରଦ୍ୟୁମ୍ନ କ'ଣ ଉତ୍କଳର ରାଜା ?

● ଡକ୍ଟର ସୁରେନ୍ଦ୍ର କୁମାର ମିଶ୍ର

ଶ୍ରୀଜଗନ୍ନାଥ-ଚେତନାରେ ଇନ୍ଦ୍ରଦ୍ୟୁମ୍ନ ଜଣେ ପୌରାଣିକ ରାଜା । ଇତିହାସ ଆଜି ପର୍ଯ୍ୟନ୍ତ ତାଙ୍କୁ ସ୍ୱୀକାର କରିନାହିଁ । ଇନ୍ଦ୍ରଦ୍ୟୁମ୍ନଙ୍କର ବାସ୍ତବ ଐତିହାସିକ ମୂଲ୍ୟ ରହିଛି ନା ପୌରାଣିକ ପ୍ରତୀକାତ୍ମକ, ତାହା ଉପରେ ଗବେଷଣା ଚାଲୁ ରହିଛି । ଓଡ଼ିଶାର ଅନେକ ଐତିହାସିକ ଇନ୍ଦ୍ରଦ୍ୟୁମ୍ନଙ୍କୁ ନେଇ ଯେଉଁ ସିଦ୍ଧାନ୍ତରେ ପହଞ୍ଚିଛନ୍ତି ତାହା ନିର୍ବିବାଦ ହୋଇନାହିଁ ।

ବ୍ରହ୍ମପୁରାଣରେ ସେ ଅବନ୍ତୀର ଏବଂ ଉଜ୍ଜୟିନୀର ରାଜାଥିବାବେଳେ ସ୍କନ୍ଦପୁରାଣରେ କେବଳ ଅବନ୍ତୀର ରାଜା ବୋଲି ଉଲ୍ଲେଖ ରହିଛି । କନିଂହାମଙ୍କ ମତରେ ପାଳବଂଶର ସେ ଶେଷରାଜା । ଫ୍ଲିଟ୍‌ଙ୍କ ମତରେ ମଧ୍ୟଦେଶ ଶ୍ରୀପୁରର ଉଦୟନଙ୍କ ପୁତ୍ର ଇନ୍ଦ୍ରବଳ ହେଉଛନ୍ତି ଇନ୍ଦ୍ରଦ୍ୟୁମ୍ନ । ମାତ୍ର ପୌରାଣିକମତ ହେଉ କିମ୍ବା ଐତିହାସିକ ମତ ହେଉ, କୌଣସିଟି ଇନ୍ଦ୍ରଦ୍ୟୁମ୍ନଙ୍କ ସମ୍ବନ୍ଧରେ ଶେଷ ମତ ବୋଲି ଏ ପର୍ଯ୍ୟନ୍ତ ସର୍ବମାନ୍ୟ ହୋଇ ପାରିନାହିଁ ।

ସମ୍ପ୍ରତିମ ପ୍ରକାଶିତ 'କେଦାର ଖଣ୍ଡପୁରାଣ' (ଯାହାକି ପ୍ରାଚ୍ୟ ବିଦ୍ୟା ଅକାଦମୀ, ହରିଦ୍ୱାର ପକ୍ଷରୁ ସଂସ୍କୃତଭାଷା ଓ ଦେବନାଗରୀ ଲିପିରେ ମୁଦ୍ରିତ) ଇନ୍ଦ୍ରଦ୍ୟୁମ୍ନଙ୍କ ଉପରେ ଏକ ନୂତନ ତଥ୍ୟ ଉଲ୍ଲେଖ କରୁଛି । ଯାହା ଏହି ପ୍ରବନ୍ଧର ମୁଖ୍ୟ ଆଲୋଚ୍ୟ ବିଷୟ ।

ଉକ୍ତ ପୁରାଣଟି ସଂସ୍କୃତଶ୍ଳୋକ ଆକାରରେ ଲିଖିତ । ମାତ୍ର ଉପପୁରାଣ କିମ୍ବା ଔପପୁରାଣ ମଧ୍ୟରେ ଯାର ନାମ ନାହିଁ । ତେଣୁ ମନେହୁଏ ବିଭିନ୍ନ ପ୍ରାନ୍ତରେ ଲିଖିତ ହୋଇ ଥିବା କେତେକ ପ୍ରାନ୍ତୀୟ ସଂସ୍କୃତ ପୁରାଣ ପରି ଏହା ଏକ ପ୍ରାନ୍ତୀୟ ପୁରାଣ । କିନ୍ତୁ ପୁରାଣର ସର୍ବଭାରତୀୟ ଧର୍ମଚେତନାର ଆବେଦନ ସ୍ୱୀକାର୍ଯ୍ୟ ।

ପୁରାଣରେ ହିମାଳୟକୁ ପାଞ୍ଚଖଣ୍ଡରେ ବିଭକ୍ତ କରାଯାଇଛି । ନେପାଳଖଣ୍ଡ, ମାନସଖଣ୍ଡ, କେଦାରଖଣ୍ଡ, ଜଳନ୍ଧରଖଣ୍ଡ ଏବଂ କାଶ୍ମୀରଖଣ୍ଡ । ଯା ମଧ୍ୟରୁ 'କେଦାରଖଣ୍ଡ', ସ୍କନ୍ଦ ପୁରାଣ ଅନ୍ତର୍ଗତ ହୋଇଥିବାର ଆମେ ଜାଣୁ । 'କେଦାରଖଣ୍ଡ' ପୁରାଣର ଶେଷରେ "ଇତି ଶ୍ରୀସ୍କାନ୍ଦେ କେଦାରଖଣ୍ଡେ"......ବୋଲି ଲେଖାଯାଇଛି । ମାତ୍ର ସ୍କନ୍ଦପୁରାଣର କେଦାରଖଣ୍ଡ ବିଷୟବସ୍ତୁଠାରୁ ଏହି 'କେଦାରଖଣ୍ଡ ପୁରାଣ'ର ବିଷୟବସ୍ତୁ ସଂପୂର୍ଣ୍ଣ ଭିନ୍ନ ଲାଗୁଛି । ଏହା 'ବ୍ୟାସ'ଙ୍କ ଲିଖିତ ମଧ୍ୟ ନୁହେଁ । ଜଣାପଡୁଛି ଅନ୍ୟ କେଉଁ ସିଦ୍ଧପୁରୁଷଙ୍କ ଦ୍ୱାରା ଲିଖିତ । ଏହା ଦ୍ୱାଦଶ ଶତାବ୍ଦୀ ପରବର୍ତ୍ତୀ କାଳରେ ଲିଖିତ ହୋଇଥିବାର ମନେହୁଏ ।

## ଇନ୍ଦ୍ରଦ୍ୟୁମ୍ନ ପ୍ରସଙ୍ଗ

ହିମାଳୟସ୍ଥିତ 'ଦେବପ୍ରୟାଗ' ବର୍ଣ୍ଣନାପ୍ରସଙ୍ଗ ଦ୍ରଷ୍ଟବ୍ୟ । ଯାର ମାହାତ୍ମ୍ୟରେ କୁହାଯାଇଛି, ଯେଉଁଠାରେ ଭଗବାନ ଜଗନ୍ନାଥ ବିଷ୍ଣୁ ବିରାଜମାନ, ସେଠାରେ ମାନବ ପରମଗତି ପ୍ରାପ୍ତ ହୁଏ ।

ବିନାଽଽୟାସେନ ଦେବେଶ ନରୋ ଯାତି ପରାଂ ଗତିମ୍ ।
ଯତ୍ର ଦେବୋ ଜଗନ୍ନାଥୋ ନିତ୍ୟଂ ସନ୍ନିହିତୋ ଭବେତ୍ ।।
(କେ.ଖ.ପୁ : ୩।୧୪୯।୨୨)

ତେବେ ଏହି ଜଗନ୍ନାଥ କେଉଁଠାରେ ବିରାଜମାନ ! ଇନ୍ଦ୍ରଦ୍ୟୁମ୍ନଙ୍କୁ ସତ୍ୟଯୁଗର ରାଜା ରୂପେ ସ୍ୱୀକାର କରି ସେ 'ଉତ୍କଳ'ର ରାଜା ଥିଲେ ବୋଲି ଉଲ୍ଲେଖ କରିଛନ୍ତି ।

ପୁରା କୃତଯୁଗେ ରାଜା ବଭୂବ ନୃପବନ୍ଦିତଃ ।
ଇନ୍ଦ୍ରଦ୍ୟୁମ୍ନ ଇତି ଖ୍ୟାତଃ ଉତ୍କଳେ ମୁନିସତ୍ତମ ।।(୧୫୯/୩) ।।

ଏକଦା ଇନ୍ଦ୍ରଦ୍ୟୁମ୍ନ ପହଞ୍ଚି ଥିଲେ ହିମାଳୟର 'ବୈଶମ୍ପାୟନ' ମୁନିଙ୍କ ଆଶ୍ରମରେ । ବୈଶମ୍ପାୟନଙ୍କୁ ନିଜର ପରିଚୟ ଦେବାକୁ ଯାଇ କହିଛନ୍ତି- ଆପଣ ଉତ୍କଳରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ନାମ ଶୁଣିଥିବେ, ମୁଁ ହେଉଛି ସେଇ ଇନ୍ଦ୍ରଦ୍ୟୁମ୍ନ । ଆପଣଙ୍କୁ ଅଭିବାଦନ କରୁଛି ।

ଉତ୍କଳେଶୋ ମୁନିଶ୍ରେଷ୍ଠ ! ଇନ୍ଦ୍ରଦ୍ୟୁମ୍ନ ଇତି ଶ୍ରୁତଃ ।
ଦାସୋଽହଂ ତ୍ୱାଦୃଶାନାଂ ତୁ ବିପ୍ର ତ୍ୱାମଭିବାଦୟେ ।।(୧୫୯/୧୫)

ନିଜର ଦୁଷ୍ଟ ବୁଦ୍ଧି ମନ୍ତ୍ରୀମାନଙ୍କର ଷଡ଼ଯନ୍ତ୍ର ଫଳରେ ମୁଁ ଆଜି ରାଜ୍ୟଭ୍ରଷ୍ଟ(୧୫୯/୧୭) । ପୁନଃ ରାଜ୍ୟ ପ୍ରାପ୍ତିର ଅଭିଳାଷ ମୋର ଅଛି । ରାଜ୍ୟପ୍ରାପ୍ତି ପାଇଁ 'ଦେବପ୍ରୟାଗ'ରେ ନାରାୟଣଙ୍କ ତପସ୍ୟା ହିଁ ଉତ୍କୃଷ୍ଟ ପନ୍ଥା ବୋଲି ବୈଶମ୍ପାୟନଙ୍କ ଠାରୁ ଜାଣି ଦେବପ୍ରୟାଗ ଗମନ କରିଛନ୍ତି । କଠୋର ତପସ୍ୟାରେ ସିଦ୍ଧି ଲାଭ କରିଛନ୍ତି ଇନ୍ଦ୍ରଦ୍ୟୁମ୍ନ । ସେ ଯେଉଁଠି ସିଦ୍ଧି ଲାଭ କରି ବିଷ୍ଣୁଙ୍କର କୃପା ଲାଭ କରିଥିଲେ, ତାହା ଆଜି ମଧ୍ୟ 'ଇନ୍ଦ୍ରଦ୍ୟୁମ୍ନ' ତୀର୍ଥ ରୂପେ ପରିଚିତ ।

ତପସ୍ୟାରେ ସନ୍ତୁଷ୍ଟ ହୋଇ ସ୍ୱୟଂ ନାରାୟଣ ତାଙ୍କୁ ଦର୍ଶନ ଦେଇଛନ୍ତି । ନାରାୟଣଙ୍କ ଦର୍ଶନରେ ସେ ଭାବବିହ୍ୱଳ ହୋଇ ସ୍ତବ କରିଛନ୍ତି, ନାରାୟଣଙ୍କୁ ପୁରୁଷୋତ୍ତମ ଭାବରେ (୧୫୯/୪୦) ମହାପ୍ରଭୁ ଇନ୍ଦ୍ରଦ୍ୟୁମ୍ନଙ୍କୁ ବର ମାଗିବା ପାଇଁ କହିବାବେଳେ ଇନ୍ଦ୍ରଦ୍ୟୁମ୍ନ ମାନସିକ ସ୍ତରରେ ସଂପୂର୍ଣ୍ଣ ପରିବର୍ତ୍ତିତ ହୋଇଯାଇଛନ୍ତି । ରାଜ୍ୟ ଲାଭ ତାଙ୍କ ପାଇଁ ତୁଚ୍ଛ ମନେ ହୋଇଛି । ସେ ମାଗିଛନ୍ତି ଭକ୍ତି ।

କିନ୍ତୁ ପ୍ରଭୁ ତାଙ୍କୁ ଉପଦେଶ ଦେଇଛନ୍ତି - "ସମସ୍ତ କାର୍ଯ୍ୟ ମତେ ସମର୍ପଣ କରି ରାଜ୍ୟ ଶାସନ କର । ରାଜକାର୍ଯ୍ୟ ତୁମ ପାଇଁ ଶ୍ରେୟ । ତୁମର କର୍ମରେ ଆଉ ବନ୍ଧନ ହେବ ନାହିଁ । ତୁମେ ବନ୍ଧନମୁକ୍ତ ।"

ଇନ୍ଦ୍ରଦ୍ୟୁମ୍ନ ଫେରି ଆସିଛନ୍ତି ଦେବପ୍ରୟାଗରୁ ନିଜ ରାଜ୍ୟକୁ । ରାଜ୍ୟର ସମସ୍ତ ଶତ୍ରୁଙ୍କୁ ପରାଭୂତ କରି 'ମହାରାଜ' ରୂପେ ପୁନଃ ନିଜର

ଶକ୍ତିସାମର୍ଥ୍ୟ ପ୍ରତିଷ୍ଠିତ କରିଛନ୍ତି । ନିଜ ହୃଦୟରେ ମହାପ୍ରଭୁଙ୍କୁ ସ୍ମରଣ କରି ଆସମୁଦ୍ର ଭୂ-ମଣ୍ଡଳରେ ରାଜ୍ୟଭୋଗ କରିଛନ୍ତି ।

ତତ୍ରାପି ଭେଜନ୍ତଂ ହି ସମାସ୍ଥାପ୍ୟ ସଦାହୃଦି ।

କୃତବାନ୍ ରାଜ୍ୟଭୋଗଂ ତୁ ସମୁଦ୍ରାନ୍ତଂ ହି ନାରଦ !(୧୫୯/୬୦)

ପ୍ରଭୁ ଇନ୍ଦ୍ରଦ୍ୟୁମ୍ନଙ୍କ ରାଜ୍ୟରେ ଅର୍ଥାତ୍ ଉତ୍କଳ ରାଜ୍ୟରେ ନିତ୍ୟସନ୍ନିହିତ ହୋଇ ସେହି ଦିନଠାରୁ ରହିଲେ । ସେହି ଦେଶ (ଉତ୍କଳ) 'ଶ୍ରୀପୁରୁଷୋତ୍ତମକ୍ଷେତ୍ର' ରୂପେ ପ୍ରସିଦ୍ଧି ଲାଭ କଲା ।

ବିଷ୍ଣୁର୍ବୈ ଭଗବାଂସ୍ତତ୍ର ନିତ୍ୟଂ ସନ୍ନିହିତୋଽଭବତ୍ ।

ନାମାଽସ୍ୟାଽଭୂତ୍ ତୁ ଦେଶସ୍ୟ ପୁରୁଷୋତ୍ତମ କ୍ଷେତ୍ରକମ୍ । (୧୫୯/୬୧)

ଏହି ପୁରାଣ ଉତ୍କଳ ଦେଶକୁ ସାମଗ୍ରିକ ଭାବେ 'ଶ୍ରୀପୁରୁଷୋତ୍ତମ କ୍ଷେତ୍ର'ରେ ପର୍ଯ୍ୟବସିତ କରିଛନ୍ତି । ଏହି କ୍ଷେତ୍ରରେ ଶ୍ରୀବିଷ୍ଣୁନାରାୟଣ ଅବସ୍ଥାନ କରି ଆସୁଛନ୍ତି ଇନ୍ଦ୍ରଦ୍ୟୁମ୍ନଙ୍କ ସମୟରୁ । ସେ ପୁଣି ପୁରୁଷୋତ୍ତମ କ୍ଷେତ୍ରରେ 'ପୁରୁଷୋତ୍ତମ' ନାମରେ ପରିବର୍ତ୍ତିତ ହୋଇଛନ୍ତି । ସେଇ ପୁରୁଷୋତ୍ତମଙ୍କୁ ଉକ୍ତ ପୁରାଣ ପ୍ରଥମରୁ 'ଜଗନ୍ନାଥ' ରୂପେ (୧୪୯/୨୨) ଚିହ୍ନିତ କରି ମୋକ୍ଷ ପ୍ରସଙ୍ଗ ଅବତାରଣା କରିଛି । ଅତଏବ ଶ୍ରୀନାରାୟଣଙ୍କଠାରୁ ଶ୍ରୀଜଗନ୍ନାଥଙ୍କ ପର୍ଯ୍ୟନ୍ତ ବିକାଶକ୍ରମରେ 'ଉତ୍କଳ' ନାମ ଅପରିବର୍ତ୍ତିତ ରହିଛି । ତେବେ କ'ଣ 'କଳିଙ୍ଗ'ଠାରୁ ସ୍ୱତନ୍ତ୍ର ଥିବା 'ଉତ୍କଳ' ରାଜ୍ୟର ତତ୍କାଳୀନ ସମୟସୀମା ମଧ୍ୟରେ ଏହି ପୁରାଣ ରଚିତ ! ଏବଂ ଇନ୍ଦ୍ରଦ୍ୟୁମ୍ନ କ'ଣ ସେଇ ସମୟର ରାଜା ! ମନେହୁଏ ତତ୍କାଳୀନ ଉତ୍କଳରେ ରାଜାଙ୍କ ନାମ 'ବ୍ୟାସ'ଙ୍କ ପରି ଏକ ଆଲଙ୍କାରିକ ନାମ ଥିଲା । ଯେ କେହି 'ବ୍ୟାସ' ଆସନକୁ ଆସିଲେ 'ବ୍ୟାସ' ନାମରେ ପରିଚିତ ହେଲାପରି, ଯେ କେହି ଉତ୍କଳର ରାଜା ହେଉଥିଲେ ସେ 'ଇନ୍ଦ୍ରଦ୍ୟୁମ୍ନ' ନାମରେ ପରିଚିତ ହେଉଥିଲେ । ଶ୍ରୀଜଗନ୍ନାଥ ସଂସ୍କୃତିରେ ଯେତେବେଳେ କିଛି ଅଭିନବ ପଦକ୍ଷେପ ନିଆଯାଇଛି କିମ୍ବା ଏକ ଅଭିନବ ପରମ୍ପରା ସୃଷ୍ଟି ହୋଇଛି ସେତେବେଳେ 'ଇନ୍ଦ୍ରଦ୍ୟୁମ୍ନ'ଙ୍କ ନାମ ସେଥିରେ ସଂଶ୍ଳିଷ୍ଟ ହୋଇଛି । ତେବେ ରାଜ୍ୟରୁ ବିତାଡ଼ିତ ହୋଇ ପୁଣି ଅନ୍ୟର ବଳରେ ବଳୀୟାନ ହୋଇ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ପ୍ରଭୁଙ୍କୁ ପୁନଃ ସଂସ୍ଥାପିତ କରିଥିବା ସେଇ ଇନ୍ଦ୍ରଦ୍ୟୁମ୍ନ ନାମଧାରୀ ରାଜା କିଏ ? ପ୍ରଥମେ ଶ୍ରୀମନ୍ଦିର ପ୍ରତିଷ୍ଠା କରିଥିବା (ପୌରାଣିକ ମତରେ) ଇନ୍ଦ୍ରଦ୍ୟୁମ୍ନ ଏ ଇନ୍ଦ୍ରଦ୍ୟୁମ୍ନ ହୁଅନ୍ତି, ତେବେ ସେ ଉତ୍କଳର ରାଜା ବୋଲି ପ୍ରମାଣିତ ହେଉଥିବାବେଳେ ପୁଣି ମାଳବର ବା ଅବନ୍ତୀର ଇନ୍ଦ୍ରଦ୍ୟୁମ୍ନ ବୋଲି ବର୍ଣ୍ଣନା ମିଳୁଥିବା ଇନ୍ଦ୍ରଦ୍ୟୁମ୍ନଙ୍କୁ ଆମକୁ ଠାବ କରିବାକୁ ହେବ । ଠାବ କରିବାକୁ ହେବ 'ଇନ୍ଦ୍ରଦ୍ୟୁମ୍ନ' ଏକ ଆଲଙ୍କାରିକ ନାମ ନା ବାସ୍ତବ ନାମ । ସେ ବଳୟରୁ ଆମେ ଉର୍ଦ୍ଧ୍ୱକୁ ନଯିବା ପର୍ଯ୍ୟନ୍ତ କହିପାରିବାନି ଯେ ସେଇ ପୁରାଣ ବର୍ଣ୍ଣିତ ଇନ୍ଦ୍ରଦ୍ୟୁମ୍ନ ଉତ୍କଳର ରାଜା ନୁହଁନ୍ତି ବୋଲି ।

*ଗବେଷଣା ଅଧିକାରୀ, ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ*
*ଶ୍ରୀ ବିହାର, ପୁରୀ*

• • •

# ଚକାଆଖି

• ଶ୍ରୀ ବିଜୟ କୁମାର ଦାଶ

ଚକା ଆଖି !
କାଳର କଳା ଚଉଡ଼ିରେ
ଟାଣି ହୋଇଯାଏ
ଏ ଦେହର ନନ୍ଦିଘୋଷ ରଥ
ତୁମେ ଜାଣ,
କେତେ ଦୀର୍ଘ ଏ ଜୀବନର ବଡ଼ଦାଣ୍ଡ,
ଖାଲ, ଢିପ, କଣ୍ଟକିତ ପଥ ।
ଅନନ୍ତ ଦୁଃଖରେ ଭରା
ଏ ସଂସାର ମାୟାର ଅରଣ୍ୟ
ତୁମେ ତ ଦେଖାଅ ବାଟ ଅନ୍ଧାରରୁ ଆଲୁଅକୁ
ତୁମ ଆଖି ସୂର୍ଯ୍ୟ ଚନ୍ଦ୍ର,
ପ୍ରଶାନ୍ତିର ଅପୂର୍ବ କିରଣ ।
ଘଣ୍ଟ, ଘଣ୍ଟା, କାହାଳୀ ଶବ୍ଦରେ
ତୁମେ ଆସ ବଡ଼ଦାଣ୍ଡ
ଫୁଲମୟ ଟାହିଆ ଲଗାଇ ଅରୟ ମୁହାଁରେ
ଲେପିଦିଅ କରୁଣାର ଶୀତଳ ଚନ୍ଦନ
କ୍ଷତାକ୍ତ ପ୍ରାଣରେ, ବିବଶ ଦେହରେ ।
ତୁମ ସୁରଭିତ ଶ୍ରୀଅଙ୍ଗରେ
ଝୁଲୁଥାଏ ତୁଳସୀ, ଦୟଣାର ମାଳ
ତୁମ ଶ୍ରୀପୟର ଧୋଇବାକୁ
ମୋ ଆଖିରେ ସମୁଦ୍ରର ଜଳ ।
ଚକାଆଖି !
ମୁଁ ତୁମ ଶରଣରେ ଚିରକାଳ
ତୁମ ଭାବ ବନ୍ଧନରେ
ମୁଁ କାଳ କାଳ....... ।

*ଅଧ୍ୟାପକ, ଅର୍ଥନୀତି ବିଭାଗ,*
*ଆଞ୍ଚଳିକ ପଞ୍ଚାୟତ ମହାବିଦ୍ୟାଳୟ*
*ବୁଢ଼ନପୁର, ଯାଜପୁର, -୭୫୫୦୧୬*



# ଶ୍ରୀ ମନ୍ଦିରରେ ଗରୁଡ଼ ଉପାସନା

● ଡ଼ଃ. ରଘୁନାଥ ପାତ୍ର

ଜଳ, ସ୍ଥଳ ଓ ଆକାଶରେ ବିଚରଣ ପାଇଁ ଜଳଚର, ସ୍ଥଳଚର ଓ ଗଗନ ବିହାରୀ ଯାନର ଆବଶ୍ୟକତା ଉପଲବ୍ଧି ହୁଏ । ସେହି ଦୃଷ୍ଟିରୁ ଭଗବାନ ଶଙ୍କରଙ୍କ ବାହନ ବୃଷଭ(ସ୍ଥଳଚର), ବ୍ରହ୍ମାଙ୍କ ବାହନ ମରାଳ (ଜଳଚର) ଓ ବିଷ୍ଣୁଙ୍କ ବାହନ ଗରୁଡ଼ (ଗଗନ ବିହାରୀ) । ଶିବଙ୍କ ବାହନ ବୃଷଭପରି ବିଷ୍ଣୁଙ୍କ ବାହନ ଗରୁଡ଼ ଅଗ୍ରବନ୍ଦ୍ୟ । ଶିବ ବା ବିଷ୍ଣୁଙ୍କୁ ଆବାହନ କରିବା ପୂର୍ବରୁ ସେମାନଙ୍କ ବାହନଙ୍କ ପ୍ରୀତି ଭାଜନ ହେବା ବିଧେୟ । ଶିବ, ବିଷ୍ଣୁ, ଦୁର୍ଗା, ଗଣେଶଙ୍କୁ ଯଥାକ୍ରମେ ସେମାନଙ୍କର ବାହନ ବୃଷଭ, ଗରୁଡ଼, ସିଂହ ଓ ମୂଷିକ ପଛରେ ପ୍ରଣାମ କରିବାର ଶାସ୍ତ୍ରୀୟ ବିଧାନ ଅଛି ।

ଶବ୍ଦାର୍ଥ : ଗରୁଡ଼ ଶବ୍ଦର ଆଭିଧାନିକ ଅର୍ଥ ହେଉଛି ବିଷ ନାଶକାରୀ ବା ଉଡ଼ିବା ପକ୍ଷୀ ।

ଗର=ବିଷ+ଉଡ଼୍ ଧାତୁ(ଅର୍ଥାତ୍ ବିଷ ଉଡ଼ାଇ ଦେବା ବା ବିଷନାଶକାରୀ) ବା ଗରୁଡ଼୍=ପକ୍ଷୀ+ଡ଼ୀ(ଧାତୁ) (ଅର୍ଥାତ୍ ଉଡ଼ିବା ପକ୍ଷୀ)-

ପୂର୍ଣ୍ଣଚନ୍ଦ୍ର ଭାଷାକୋଷ

ତାତ୍ତ୍ୱିକ ପରିଚୟ : ଏକଦା ଭଗବାନ ଶଙ୍କର ପାର୍ବତୀଙ୍କ ପ୍ରଶ୍ନର ଉତ୍ତର ଦେବା ଛଳରେ କହିଛନ୍ତି- ''ହେ ପାର୍ବତୀ ! ମୁଁ ଗରୁଡ଼ ରୂପରେ ଭଗବାନ ଶ୍ରୀମନ୍ ନାରାୟଣଙ୍କର ପରିଚର୍ଯ୍ୟା କରେ ଓ ଭଗବାନ ବିଷ୍ଣୁ ବୃଷଭ ରୂପରେ ମୋର ପରିଚର୍ଯ୍ୟା କରନ୍ତି ।'' ତେଣୁ ଭଗବାନ ବିଷ୍ଣୁ ଓ ଶଙ୍କରଙ୍କ ମଧ୍ୟରେ ଅବିଚ୍ଛିନ୍ନ ସମ୍ପର୍କ ପ୍ରଣିଧାନଯୋଗ୍ୟ । ଉଭୟଙ୍କ ମଧ୍ୟରେ ଉଚ୍ଚନୀଚ ବା ମୁଖ୍ୟ ଗୌଣ ଭାବ ଆଣିବା ଅତୀବ ପାପପ୍ରଦ ।

ବୈଶିଷ୍ଟ୍ୟ : ଏକଦା ଦ୍ୱାରକାଧିପତି ଭଗବାନ ଶ୍ରୀକୃଷ୍ଣ ଗରୁଡ଼ ପୃଷ୍ଠରୁ ଅବତରଣ କରି ଯୁଧିଷ୍ଠିରଙ୍କୁ ପ୍ରଣାମ କରିବା ସମୟରେ ଯୁଧିଷ୍ଠିର ସ୍ୱ ଆସନ ତ୍ୟାଗ କରି ଗରୁଡ଼ଙ୍କ ପାଦତଳେ ପ୍ରଣାମ କରିଥିଲେ ଓ ଗରୁଡ଼ ଯୁଧିଷ୍ଠିରଙ୍କୁ ବର ପ୍ରଦାନ କରିଥିଲେ । ଏଥିରୁ ଗରୁଡ଼ଙ୍କ ବୈଶିଷ୍ଟ୍ୟ ସର୍ବସ୍ୱୀକୃତ ।

ଶ୍ରୀକୃଷ୍ଣ ଓ ଗରୁଡ଼ ଉଭୟ ମୌଳିକ ଓ ଅନପେକ୍ଷ ତତ୍ତ୍ୱ । ଏଠାରେ ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କ ନମସ୍ୟ ଓ ଗରୁଡ଼ ଯୁଧିଷ୍ଠିରଙ୍କ ନମସ୍ୟ ।

ଜନ୍ମବୃତ୍ତାନ୍ତ : କଶ୍ୟପ ଋଷିଙ୍କର ଅନ୍ୟତମା ପତ୍ନୀ ବିନତା, ଋଷିଙ୍କ ନିକଟରେ ପୁତ୍ରକାମନା କରି ଦୁଇଟି ଅଣ୍ଡା ପ୍ରସବ କଲେ । ଅଣ୍ଡା ଫୁଟିବାରେ ବହୁତ ବିଳମ୍ବ ହେବାରୁ ବିନତା ଅପେକ୍ଷା ନକରି ଗୋଟିଏ ଅଣ୍ଡା ଫୁଟାଇ ଦେଲେ ଓ ତନ୍ମଧ୍ୟରୁ ଏକ ଶୋଣିତ ଆପ୍ଲୁତ ବିକଳାଙ୍ଗ ସନ୍ତାନର ଅଭ୍ୟୁଦୟ ହେଲା । ସେ ହେଉଛନ୍ତି ବିନତାଙ୍କ ଜ୍ୟେଷ୍ଠ ପୁତ୍ର ଅରୁଣ, ସୂର୍ଯ୍ୟଦେବଙ୍କ ରଥର ସାରଥୀ । ସନ୍ତାନର ବିକଳାଙ୍ଗ ଦେଖି ଅନ୍ୟ ଅଣ୍ଡାଟି ଫୁଟାଇଲେ ନାହିଁ । ଶତବର୍ଷ ପରେ ସେ ଅଣ୍ଡାରୁ ଗୋଟିଏ ସନ୍ତାନ ଜନ୍ମ ହେଲା । ସେ ସନ୍ତାନଟିର ନାମ ଗରୁଡ଼ । ବିନିତାଙ୍କଠାରୁ ଜନ୍ମ ହୋଇଥିବାରୁ ତାଙ୍କ ନାମ ବୈନତେୟ ଓ କାଶ୍ୟପଙ୍କ ଔରସରେ ଜନ୍ମ ହୋଇଥିବାରୁ ଅନ୍ୟନାମ କାଶ୍ୟପି । କ୍ଷଣକ ମଧ୍ୟରେ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡ ଭ୍ରମଣ କରିପାରୁଥିବାରୁ ନାମ ପକ୍ଷୀରାଜ, ଗଗନ ବିହାରୀ ଓ ଖଗେଶ୍ୱର । ପକ୍ଷୀମାନଙ୍କ ଭିତରେ ଇନ୍ଦ୍ର ହୋଇଥିବାରୁ ପକ୍ଷୀନ୍ଦ୍ର ନାମରେ ପରିଚିତ ।

ରୂପ ବା ଆକୃତି : (୧) (ପୁରାଣରେ) : ମହାଭାରତ ବର୍ଣ୍ଣିତ ଗରୁଡ଼ ଅର୍ଦ୍ଧେକ ପକ୍ଷୀ ଓ ଅର୍ଦ୍ଧେକ ମାନବାକୃତି । ଶରୀର ସ୍ୱର୍ଣ୍ଣାଭ, ମୁଖମଣ୍ଡଳ ଶ୍ୱେତବର୍ଣ୍ଣ, ପକ୍ଷଯୁଗଳ ରକ୍ତ ବର୍ଣ୍ଣ, ଅଧର ପକ୍ଷୀସମ ଚଞ୍ଚୁ ।

(୨) (ସ୍ଥାପତ୍ୟରେ) : ସାଧାରଣତଃ ଗରୁଡ଼ କଳାମୁଗୁନି ପ୍ରସ୍ତରରେ ନିର୍ମିତ । ଗରୁଡ଼ ବିଗ୍ରହରେ ଦୁଇଟି ପାଦ, ଦୁଇଟି ପକ୍ଷ ଓ ଦୁଇଟି ହସ୍ତ ଅଛି । ମସ୍ତକ, କପୋଳ, କର୍ଣ୍ଣ, ଅଧର, ଚିବୁକ, ହସ୍ତ ଓ ବକ୍ଷଦ୍ୱୟ ମାନବାକୃତି । ନାସିକା ସୁଦୀର୍ଘ ବାମ ଜାନୁ ବା ଦକ୍ଷିଣ ଜାନୁପାତ ପୂର୍ବକ କରଯୋଡ଼ି ପ୍ରାର୍ଥନାରତ । ଏହାକୁ ଗରୁଡ଼ାସନ କୁହାଯାଏ ।

କିଛି ବର୍ଷ ପୂର୍ବେ କୌଣସି ଦୁର୍ବୃତ୍ତ ଦ୍ୱାରା ଗୁଣ୍ଡିଚା ମନ୍ଦିରର ଗରୁଡ଼ ଚୋରୀ ହୋଇଥିଲା । ପରେ ଧରା ପଡ଼ିବାରୁ ଉକ୍ତ ମୂର୍ତ୍ତି ଏବେ ଶ୍ରୀମନ୍ଦିର ଦକ୍ଷିଣ ଗୃହରେ ପୂଜା ପାଉଛନ୍ତି କାରଣ ମୂର୍ତ୍ତିଚୋରୀ ପରେ ଗୁଣ୍ଡିଚା ମନ୍ଦିରରେ ନବ ପ୍ରତିଷ୍ଠିତ ମୂର୍ତ୍ତି ପୂଜା ପାଉଛନ୍ତି । ଦକ୍ଷିଣ ଗୃହରେ ଥିବା ଗରୁଡ଼(ଅର୍ଥାତ୍ ଗୁଣ୍ଡିଚା ମନ୍ଦିରର ପୂର୍ବତନ ଗରୁଡ଼)ଙ୍କ କାରୁକଳା କୁଶଳତା ଅତି ହୃଦୟ ସ୍ପର୍ଶୀ ।

ଶୁଣାଯାଏ, କଟକର ମଣ୍ଡରାମ ମଠରେ ପ୍ରତିଷ୍ଠିତ ଗରୁଡ଼ ମୂର୍ତ୍ତି ଅତି ବିରାଟକାୟ, ତଳପ୍ରାୟ ୪ ଫୁଟ ଉଚ୍ଚ । କୌଣସି ସ୍ତମ୍ଭ ଉପରେ ଆସୀନ ନହୋଇ ତଳେ ବସିଛନ୍ତି । ଏପରି ମୂର୍ତ୍ତି ଅନ୍ୟତ୍ର ଦୁର୍ଲ୍ଲଭ ।

ବିଷ୍ଣୁଙ୍କ ବାହନ ଗରୁଡ଼ : ମହାଭାରତରେ ଅଛି, ଗରୁଡ଼ଙ୍କ ଜନ୍ମଦାତ୍ରୀ ବିନତା ସପତ୍ନୀ କଦ୍ରୁଙ୍କ ସହିତ ଏକ 'ପଣ' ବା 'ବାଜି'ରେ ହାରିଯାଇ ତାଙ୍କର ଦାସତ୍ୱ ସ୍ୱୀକାର କଲେ । ମାତାଙ୍କୁ ଦାସତ୍ୱରୁ ମୁକ୍ତ କରିବାକୁ ଇଚ୍ଛା ପ୍ରକାଶ କରି ଗରୁଡ଼ ବିମାତା କଦ୍ରୁଙ୍କୁ ପ୍ରାର୍ଥନା କଲେ । କଦ୍ରୁ କହିଲେ ଗରୁଡ଼ ଯଦି ସ୍ୱର୍ଗରୁ ଅମୃତ ଆଣି ତାଙ୍କୁ ଦେବେ ତେବେ ତାଙ୍କ ମାତା ଦାସତ୍ୱରୁ ମୁକ୍ତ ହେବେ । ଗରୁଡ଼ ଅମୃତ ସନ୍ଧାନରେ ସ୍ୱର୍ଗ ଯାତ୍ରା କଲେ । ଦେବଗଣ ଓ ଅମୃତ ରକ୍ଷକ ବିଶ୍ୱକର୍ମାଙ୍କୁ ପରାସ୍ତ କରି ଗରୁଡ଼ ଅମୃତ ଭାଣ୍ଡ ଆଣିଲେ । ନିଜେ ଅମୃତ ପାନର ଲୋଭ ସମ୍ବରଣ କରି ଶ୍ରୀମନ୍ ନାରାୟଣଙ୍କ ସମ୍ମୁଖସ୍ଥ ହେଲେ । ଗରୁଡ଼ଙ୍କ ଏତାଦୃଶ ଅନାସକ୍ତ ଆଚରଣରେ ଭଗବାନ ବିଷ୍ଣୁ ପ୍ରୀତହୋଇ ଅମରତ୍ୱର ଅଧିକାରୀ କଲେ । ଅର୍ଥାତ୍ ଅମୃତ ପାନ ନକରି ମଧ୍ୟ ଗରୁଡ଼ ଭଗବାନ ଶ୍ରୀମନ୍ ନାରାୟଣଙ୍କ ଅହେତୁକି କୃପାରୁ ଅମରତ୍ୱ ଲାଭ କଲେ । ଶାସ୍ତ୍ରରେ ଅଛି, ଗରୁଡ଼

ବଦରୀନାଥ ଆଶ୍ରମରେ କଠୋର ତପସ୍ୟା କରି ବିଷ୍ଣୁଙ୍କର ବରପ୍ରାପ୍ତି ହୋଇ ବାହନ ହୋଇଥିଲେ ଓ ରଥ ଧ୍ୱଜରେ ସ୍ଥାନ ପାଇଥିଲେ ।

ଗରୁଡ଼ଙ୍କ ହସ୍ତରେ ଅମୃତ କଳସୀ ଦେଖି କଦ୍ରୁ ଆନନ୍ଦିତ ହେଲେ ଓ ଅବିଳମ୍ବେ ବିନତାଙ୍କୁ ଦାସତ୍ୱରୁ ମୁକ୍ତ କଲେ । ଅମୃତ ଭାଣ୍ଡ କୁଶାସନରେ ରଖାଗଲା । କଦ୍ରୁ ନନ୍ଦନ ସର୍ପଗଣ ସ୍ନାନାନ୍ତେ ଅମୃତପାନ କରିବାକୁ ଇଚ୍ଛା କରି ସମସ୍ତେ ସ୍ନାନ କରିବାକୁ ଗଲେ। ଇତ୍ୟବସରରେ ଦେବରାଜ ଇନ୍ଦ୍ର ଅମୃତ ଭାଣ୍ଡ ଅପହରଣ କଲେ । ସର୍ପକୁଳ ଭଗ୍ନ ମନୋରଥ ହୋଇ କୁଶାସନକୁ ଲେହନ କରିବାରୁ ଜିହ୍ୱା କୁଶଧାରରେ ଦୁଇଭାଗ ହେଲା ଯାହାକି ଆଜି ସର୍ପମାନଙ୍କର ଦେଖାଯାଏ । (ମହାଭାରତ, ଆଦିପର୍ବ)

ସର୍ପଭୁକ୍ ଗରୁଡ . : ଅମୃତ ଭାଣ୍ଡ ଧରି ଗରୁଡ଼ ଅମର ଲୋକରୁ ପ୍ରତ୍ୟାବର୍ତ୍ତନ କରିବା ସମୟରେ ଶଚୀପତି ପୁରନ୍ଦର କ୍ରୋଧାନ୍ୱିତ ହୋଇ ବଜ୍ରପାତ କଲେ । ଗରୁଡ଼ଙ୍କର କିଛି କ୍ଷତି ହେଲାନି ସତ କିନ୍ତୁ ଇନ୍ଦ୍ରଙ୍କ ସମ୍ମାନାର୍ଥେ ଡେଣାରୁ ଗୋଟିଏ ପର ତ୍ୟାଗ କଲେ । ଇନ୍ଦ୍ର ନିରୁପାୟ ହୋଇ ଗରୁଡ଼ଙ୍କ ସହ ମିତ୍ରତା ସ୍ଥାପନ କଲେ ଓ ଅମୃତ ଭାଣ୍ଡ ଫେରାଇ ନେବାକୁ ଚାହିଁଲେ । ଗରୁଡ଼ କହିଲେ-"ହେ ଦେବରାଜ ଇନ୍ଦ୍ର ! ମାତା ବିନତାଙ୍କ ଦାସତ୍ ମୁକ୍ତି ପରେ ଆପଣ ଅମୃତଭାଣ୍ଡ ଅପହରଣ କରିପାରନ୍ତି ।" ଇନ୍ଦ୍ରପ୍ରୀତ ହୋଇ ବରପ୍ରଦାନ କଲେ । ଆଜିଠାରୁ ତୁମେ ସର୍ପଭୁକ୍ ବା ଅହିଭୁକ ଭକ୍ଷକ ହେବ ।" ସର୍ପଗଣ ସ୍ନାନ ସାରି ଫେରିବା ପୂର୍ବରୁ ଇନ୍ଦ୍ରଦେବ ଅମୃତ ଅପହରଣ କଲେ । ବଜ୍ରାଘାତରେ ଗରୁଡ଼ ଇନ୍ଦ୍ରଙ୍କ ସମ୍ମାନାର୍ଥେ ଏକ ପର ତ୍ୟାଗ କରିଥିବାରୁ ତାଙ୍କ ନାମ 'ସୁପର୍ଣ୍ଣ' ରହିଲା ।

ଶ୍ରୀମନ୍ଦିର ଗରୁଡ ସ୍ତମ୍ଭ : ଶ୍ରୀମନ୍ଦିର ଗରୁଡ଼ ସ୍ତମ୍ଭ ରତ୍ନସିଂହାସନଠାରୁ ପ୍ରାୟ ୧୬୫ ଫୁଟ ଦୂର । ଛତ୍ରଭୋଗ ମଣ୍ଡପ(ଭଦାଣ୍ଡ ଘର) ସମ୍ମୁଖରେ ଅବସ୍ଥିତ । ଉଚ୍ଚତା ପ୍ରାୟ ୧୦ଫୁଟ ଓ ଗୋଲେଇ ପ୍ରାୟ ୩ ଫୁଟ । ସ୍ତମ୍ଭଟି ଶ୍ୱେତବର୍ଣ୍ଣ । ସ୍ତମ୍ଭର ପାଦପୀଠ କଳାମୁଗୁନି ପଥର ପରିବେଷ୍ଟିତ ସୁନ୍ଦର ଆସ୍ଥାନ । ଊର୍ଦ୍ଧ୍ୱରେ ପ୍ରାୟ ୨ ଫୁଟ ଉଚ୍ଚତା ବିଶିଷ୍ଟ ଗରୁଡ଼ ମୂର୍ତ୍ତି ଓ ତତ୍ ସଲଗ୍ନ ପାଦପୀଠ କଳାମୁଗୁନି (ମତାନ୍ତରେ ଗରୁଡ଼ ଶିଳା) ପଥରରେ ନିର୍ମିତ । ଗରୁଡ଼ଙ୍କ ମସ୍ତକ, କପୋଳ, ଚିବୁକ, କର୍ଣ୍ଣ, ଅଧର, ହସ୍ତ ଓ ବକ୍ଷସ୍ଥଳ ମାନବାକୃତି । ନାସା ସୁଦୀର୍ଘ, ପକ୍ଷୀର ଚଞ୍ଚୁ ସଦୃଶ । ଗରୁଡ଼ଙ୍କ ଦକ୍ଷିଣ ଜାନୁ ତଳେ ଓ ବାମ ଜାନୁ ଉପରକୁ । ସେ ପଶ୍ଚିମାଭିମୁଖୀ ହୋଇ ସର୍ବଦା ମହାପ୍ରଭୁଙ୍କୁ ପ୍ରଣାମ ରତ । ପକ୍ଷଯୁଗଳ ବିସ୍ତାରିତ ।

ଗରୁଡ଼ ସ୍ତମ୍ଭରେ ଉପରୁ ତଳ ପର୍ଯ୍ୟନ୍ତ ଫଟା ଦାଗ ଓ ଗଣ୍ଠି ଥିବାରୁ କେତେକଙ୍କ ମତରେ ଏହା ଏକ ପ୍ରାଚୀନ ଦାରବ ଯୂପ ଯାହାକି ମନ୍ଦିରର ପ୍ରତିଷ୍ଠା ସମୟରେ ଉପସ୍ଥାପିତ କରାଯାଇଥିଲା । ପରବର୍ତ୍ତୀ ସମୟରେ ଏହା ଉପରେ ଏକ ପ୍ରଲେପ ଦିଆଯାଇଥିବାରୁ ଦାରୁରୂପେ ନିରୂପଣ କରିବା କଷ୍ଟକର । ଅନ୍ୟ କେତେକଙ୍କ ମତରେ ଏହା ଏକ ସ୍ୱତନ୍ତ୍ର ଶିଳା- ଗରୁଡ଼ ଶିଳା । ଗରୁଡ଼ଶିଳା ସମ୍ବନ୍ଧରେ ସ୍କନ୍ଦପୁରାଣ (ବିଷ୍ଣୁ ଖଣ୍ଡ)ରେ ଉଲ୍ଲେଖ ଅଛି ଯେ ଏକଦା ଗରୁଡ଼ ବଦ୍ରିକାଶ୍ରମରେ ଏକ ଶିଳା ଉପରେ ଉପବେଶନ କରି କଠୋର ତପସ୍ୟା କଲେ ଓ ତାଙ୍କ ତପସ୍ୟାରେ ପ୍ରୀତ ହୋଇ ଭଗବାନ ପୁଣ୍ଡରୀକାକ୍ଷ ବର ଦେଲେ- 'ଯେଉଁ ବ୍ୟକ୍ତି ଗରୁଡ଼ ଶିଳାରେ ଶରଣ ପଶିବ ତାକୁ ବିଷବ୍ୟାଧି ଲାଗିବ ନାହିଁ । ତେଣୁ ପୁରାଣବିତ୍‌ମାନଙ୍କ ମତରେ ଏହା 'ଗରୁଡ଼ ଶିଳା'ରେ ନିର୍ମିତ । ଉପରୁ ତଳ ପର୍ଯ୍ୟନ୍ତ ଫାଟିଥିବା ଦେଖି କେହି କେହି ଗରୁଡ଼ ରୋଗିତ ଆଖ୍ୟା ଦେଇଥାଆନ୍ତି । ତେବେ ଏହା ଏକ ଶ୍ୱେତମର୍ମର ରୂପାନ୍ତରିତ ଶିଳା ।

ଗରୁଡ ସେବକଙ୍କ ମତରେ (୧) ପ୍ରତିଦିନ ବିଶେଷ କରି କାର୍ତ୍ତିକ ମାସରେ ସ୍ତମ୍ଭ ଚତୁପାର୍ଶ୍ୱରେ ଯେତେ ଦୀପ ଜଳେ, ଯଦି ସ୍ତମ୍ଭଟି ଦାରୁର ହୋଇଥାଆନ୍ତା, ତେବେ ଉତ୍ତାପ ଓ ଅଗ୍ନି ସଂଯୋଗରେ ଜଳି ଯାଇଥାନ୍ତା । ଦାରୁ ପାର୍ଶ୍ୱରେ ଏତେ ଦୀପ ଜଳିବାର ବ୍ୟବସ୍ଥା ନଥାନ୍ତା ।

(୨) ଯଦି ଦାରୁରେ ହୋଇଥାଆନ୍ତା ତେବେ ପ୍ରତ୍ୟହ ସ୍ପର୍ଶରେ ଆସି ନଷ୍ଟ ହୋଇଯାଆନ୍ତା । ତେଣୁ ସେମାନଙ୍କ ମତରେ ଏହା ପ୍ରସ୍ତର ନିର୍ମିତ । ସ୍ତମ୍ଭର ବୈଶିଷ୍ଟ୍ୟ ବର୍ଣ୍ଣନା କରିବାକୁ ଯାଇ କହନ୍ତି, ଦୀପ ଜଳିଲେ ସ୍ତମ୍ଭର ଆସ୍ଥାନ ଓ ଗରୁଡ଼ଙ୍କ ପାଦପୀଠ ତାତିଯାଏ କିନ୍ତୁ ସ୍ତମ୍ଭଟି ତାତେନା । କାର୍ତ୍ତିକ ମାସରେ ବେଶୀ ଦୀପ ଜଳିବା ସମୟରେ ସ୍ତମ୍ଭ ଦେହରୁ ବିନ୍ଦୁ ବିନ୍ଦୁ ହୋଇ ଝାଳ ବାହାରେ । ତେବେ ସ୍ତମ୍ଭଟି ଶ୍ୱେତବର୍ଣ୍ଣ ଓ ସ୍ତମ୍ଭର ପାଦପୀଠ ଓ ବିଗ୍ରହର ପାଦପୀଠ କୃଷ୍ଣ ବର୍ଣ୍ଣ ହୋଇଥିବାରୁ ,ସ୍ତମ୍ଭଟି ବିକିରଣରେ ତାତି ଅପେକ୍ଷାକୃତ ଶୀତଳ ରହେ । କାରଣ କଳାରଙ୍ଗ ଧଳାରଙ୍ଗଠାରୁ ଶୀଘ୍ର ଉତ୍ତାପ ଗ୍ରହଣ କରି ଗରମ ହୁଏ । ଦୀପ ଧୂଆଁରେ ସ୍ତମ୍ଭର ଉପରିଭାଗ କଳା ପଡ଼ିଯାଇଛି ।

ଗରୁଡ଼ ସ୍ତମ୍ଭ ଫାଟିବା ନେଇ ଏକ ପ୍ରବାଦ ଅଛି । ଶଙ୍କରାଚାର୍ଯ୍ୟ ଶ୍ରୀକ୍ଷେତ୍ର ଆସିବା ପୂର୍ବରୁ ବୌଦ୍ଧାଚାର୍ଯ୍ୟଗଣ ମହାପ୍ରଭୁଙ୍କର ପୂଜାର୍ଚ୍ଚନା କରୁଥିଲେ । ଉଭୟଙ୍କ ମଧ୍ୟରେ ମତଭେଦ ଦେଖାଦେବା ସଙ୍ଗେ ଧର୍ମ ସଂଘର୍ଷ ସୃଷ୍ଟି ହେଲା । ଉଭୟଙ୍କ ମଧ୍ୟରେ ଜ୍ଞାନର ପ୍ରତିଯୋଗିତା ଚାଲିଲା । ବୌଦ୍ଧାଚାର୍ଯ୍ୟଗଣ ବୌଦ୍ଧ ତାନ୍ତ୍ରିକ ପ୍ରକ୍ରିୟାରେ ସ୍ତମ୍ଭଟିକୁ ଦୁଇଫାଳ କରି ଶଙ୍କରାଚାର୍ଯ୍ୟଙ୍କୁ ଯୋଡ଼ିବାକୁ କହିଲେ । ଶଙ୍କର ଅନାୟାସରେ ସ୍ତମ୍ଭଟି ଦଣ୍ଡ ସ୍ପର୍ଶରେ ଯୋଡ଼ିଦେଲେ ଓ ବୌଦ୍ଧାଚାର୍ଯ୍ୟଗଣ ଲଜ୍ଜିତ ହେଲେ । ତେଣୁ ବୃକ୍ଷରେ ଫଟା ଦାଗ ଥିବା ପରି ଗରୁଡ ସ୍ତମ୍ଭର ଉପରୁ ତଳ ପର୍ଯ୍ୟନ୍ତ ଏକ ଫଟା ଦାଗ ରହିଛି ।

ପ୍ରତ୍ୟହ ପୂଜା : (୧) ଗରୁଡ଼ ସ୍ନାନ : ପ୍ରତ୍ୟହ ମହାପ୍ରଭୁଙ୍କର ଅବକାଶ ବା ସ୍ନାନ ସରିବାପରେ ଶାଢ଼ୀବନ୍ଧା ଦ୍ୱାରା ସେବକ ସିମାନଙ୍କ କୁମ୍ଭ ଗରାରେ ପାଣି ଆଣି କାଠ ନିଶୁଣିରେ ଚଢ଼ି ଗରୁଡ଼ଙ୍କୁ ସ୍ନାନ କରାନ୍ତି । ପୂର୍ବଦିନ ଲାଗିଥିବା ମାଳଚୂଳ ମୈଲମ (ବାହାର) କରି ଗରୁଡ଼ଙ୍କୁ ଦୁଧ, ଚନ୍ଦନ, ଦହି, ମହୁ, ଘିଆ, ପଇଡ଼ ଲଗାଇ ଜଳରେ ସ୍ନାନ କରାନ୍ତି । ବସ୍ତ୍ର ପରିଧାନ କରାଇ ମହାପ୍ରଭୁଙ୍କ ପ୍ରସାଦୀ ଫୁଲମାଳ ଓ ସଦା ପୁଷ୍ପ ମାଳ (ଅମୁଣିଆ)ରେ ସୁସଜ୍ଜିତ କରାନ୍ତି । ରତ୍ନ ସିଂହାସନରେ, ମହାପ୍ରଭୁଙ୍କ କଳେବର ସପ୍ତାବରଣରେ ନିର୍ମିତ ହୋଇ ଥିବାରୁ ପ୍ରତ୍ୟହ ଦର୍ପଣରେ ପ୍ରତିବିମ୍ବ ସ୍ନାନ କରାଯାଏ । କିନ୍ତୁ ଗରୁଡ଼ଙ୍କ ଶରୀର ପ୍ରସ୍ତର ନିର୍ମିତ ହୋଇଥିବାରୁ ଜଳରେ ପ୍ରତ୍ୟକ୍ଷ ସ୍ନାନ କରାଯାଏ । ଗରୁଡ଼ଙ୍କୁ ଉପାସନା କଲେ ଓ ଗରୁଡ଼ଙ୍କ ପବିତ୍ର ସ୍ନାନୋଦକରେ ସ୍ନାନକଲେ ଜନ୍ମଜନ୍ମାନ୍ତର ପାପ, ଯମଦଣ୍ଡ, ସ୍ତ୍ରୀମାନଙ୍କର ବନ୍ଧ୍ୟାଦୋଷ, ଦୁରାରୋଗ୍ୟ ବ୍ୟାଧି, ଭୂତପ୍ରେତାଦିର ଭୟ ଓ ସର୍ପଭୟ ଦୂରୀଭୂତ ହୁଏ । ତେଣୁ ଭକ୍ତ ପବିତ୍ର ସ୍ନାନୋଦକରେ ସ୍ନାନପାଇଁ ପ୍ରତ୍ୟହ ବହୁଭକ୍ତ ଭୁଣ୍ଡ ହୁଅନ୍ତି ଗରୁଡ଼ ସ୍ତମ୍ଭ ନିକଟରେ । ସ୍ନାନୋଦକର ଛିଟିକା ପଡ଼ିଗଲେ ଭକ୍ତ ନିଜକୁ କୃତାର୍ଥ ମଣେ । ଗରୁଡ଼ ସେବକ ମଧ୍ୟ ଉପସ୍ଥିତ ଭକ୍ତଙ୍କ ଉପରେ ପବିତ୍ର ସ୍ନାନୋଦକ ଛିଞ୍ଚି ଦିଅନ୍ତି ।

(୨) ନୈବେଦ୍ୟ : ଶ୍ରୀମନ୍ଦିରରେ ପ୍ରତ୍ୟହ ସକାଳେ ସୂର୍ଯ୍ୟ ପୂଜାପରେ ଦ୍ୱାରପାଳ ଜୟ ବିଜୟ ଓ ଗରୁଡ଼ଙ୍କ ପଞ୍ଚୋପଚାର ପୂଜନ ହୋଇଥାଏ । କେବଳ ନୀଳାଦ୍ରିନାଥ ନିଜର ପ୍ରାତଃ ଭୋଜନ ପୂର୍ବରୁ ଦାସଗଣଙ୍କର ପ୍ରାତଃଭୋଜନ କଥା ବୁଝିଥାଆନ୍ତି । ତେଣୁ ମହାପ୍ରଭୁଙ୍କର ପ୍ରାତଃ ଭୋଜନ ବା ଧୂପ ପୂଜା ପୂର୍ବରୁ ଦ୍ୱାରପାଳ ଗରୁଡ଼ଙ୍କୁ ପଞ୍ଚୋପଚାରରେ ଉତ୍ସର୍ଗ ହୋଇଥାଏ ଖୁଆଁଳି ନୈବେଦ୍ୟ-ଭୋଗ ।

୩) ଗରୁଡ଼ଙ୍କ ଧ୍ୟାନ :

"ଓଁ ତପ୍ତସ୍ୱର୍ଣ୍ଣ ବର୍ଣ୍ଣହନେ କ୍ଷମା ବଳବତା

ମଧ୍ୟେ ତାରା ସୁନ୍ଦରଂ

ଉଦ୍ଧତ୍ ଭକ୍ତି ରସ ପରାୟଣ ପଦଂ

ଜାନ୍ୱୋତୁ ଭାର୍ଯ୍ୟ ସ୍ୱଗଂ ।

ଅଗ୍ରେ ଧାରା ପରାୟଣ ସ୍ତ୍ରୀଣମଧ୍ୟ

ନାଗାବଳି ବର୍ଣ୍ଣଣ

ସର୍ବେଷଂ ବଳ ଗର୍ବିଣୋ ଭୟଧରଂ

ଡଂ ପକ୍ଷୀରାଜଂ ଭଜେ ॥"

୪) ଗରୁଡ଼ଙ୍କ ମନ୍ତ୍ର : ଓଁ ପକ୍ଷୀନ୍ଦ୍ରାୟ ନମଃ ।

୫) ଗରୁଡ଼ ମୁଦ୍ରା : ଭଗବାନ ବିଷ୍ଣୁଙ୍କ ପ୍ରୀତ୍ୟର୍ଥେ ବିଷ୍ଣୁଙ୍କ ପୂଜା ସମୟରେ ଗରୁଡ଼ ମୁଦ୍ରା ପ୍ରଦର୍ଶନ କରାଯାଏ ।

'ହସ୍ତୌ ତୁ ବିମୁଖୌ କୃତ୍ୱା ଗ୍ରଥୟିତ୍ୱା କନିଷ୍ଠକେ ।

ମିଥଃ ତର୍ଜନିକେ ଶ୍ଲିଷ୍ଟେ ଶିଷ୍ଟା ବକ୍ରୁ ଷ୍ଟକୌ ତଥା ।

ମଧ୍ୟମାନାମିକାଭ୍ୟାନ୍ତୁ ଦ୍ୱୌପକ୍ଷାବିବ ଚାଳୟେତ୍ ।

ଏଷା ଗରୁଡ଼ ମୁଦ୍ରାସ୍ୟାଦ୍ ବିଷ୍ଣୋଃ ସନ୍ତୋଷ ବର୍ଦ୍ଧିନୀ ।"

ଗରୁଡ଼ ଶୟନ ଦ୍ୱାଦଶୀ :

ଆଷାଢ଼ ଶୁକ୍ଳ ଏକାଦଶୀ 'ହରି ଶୟନ ଏକାଦଶୀ' ଓ କାର୍ତ୍ତିକ ଶୁକ୍ଳ ଏକାଦଶୀ 'ହରି ଉତ୍ଥାନ ଏକାଦଶୀ' ରୂପେ ସର୍ବଜନ ବିଦିତ । ଭଗବାନ ଶ୍ରୀମନ୍ ନାରାୟଣଙ୍କର ଶୟନ କାଳରେ ବିବାହ ବ୍ରତାଦି ଶୁଭକାର୍ଯ୍ୟ ଅନୁଷ୍ଠିତ ହୁଏ ନାହିଁ ।

ଆଷାଢ଼ ଶୁକ୍ଳ ଏକାଦଶୀ ଦିନ ତିନି ରଥରେ ତିନି ଠାକୁର ଠାକୁରାଣୀଙ୍କର ସୁନାବେଶ ହେଉଥିବା ବେଳେ ଶ୍ରୀମନ୍ଦିରରେ ହରିଶୟନୋତ୍ସବ ପାଳିତ ହୁଏ । ବଳଭଦ୍ରଙ୍କ ପ୍ରତୀକ ବାସୁଦେବ, ସୁଭଦ୍ରାଙ୍କ ପ୍ରତୀକ ଭୁବନେଶ୍ୱରୀ ଓ ଜଗନ୍ନାଥଙ୍କ ପ୍ରତୀକ ନାରାୟଣ ଶୟନ ଠାକୁର ଠାକୁରାଣୀ ରୂପେ ଶୟନ କରି ଥାଆନ୍ତି । ତେଣୁ ଉକ୍ତ ଦିବସ ହରିଶୟନ ରୂପେ ସୁବିଦିତ ।

ଏହାର ପରଦିନ ଅର୍ଥାତ୍ ଆଷାଢ଼ ଶୁକ୍ଳ ଦ୍ୱାଦଶୀ ଦିନ ଗରୁଡ଼ଙ୍କ ଶୟନୋତ୍ସବ ପାଳିତ ହୁଏ । ଏଥିରେ ଶ୍ରୀମନ୍ଦିର ପର୍ବଯାତ୍ରା ଯୋଗାଣିଆ, ପୂଜାପଣ୍ଡା ଓ ପୂଜାପଣ୍ଡା ଯୋଗ ଦେଇଥାଆନ୍ତି । ମହାପ୍ରଭୁଙ୍କର ସନ୍ଧ୍ୟାଧୂପ ପରେ ଗରୁଡ଼ଙ୍କୁ ପଞ୍ଚାମୃତରେ ମହାସ୍ନାନ କରାଇ ନବବସ୍ତ୍ର ପରିଧାନ କରାଯାଏ । ସୁଗନ୍ଧ ପୁଷ୍ପମାଲ୍ୟ ପ୍ରଦାନ କରାଯାଏ । ଗରୁଡ଼ଙ୍କୁ ପଞ୍ଚୋପଚାରରେ ଶୀତଳ ଭୋଗ ଓ ଆଳତି ବନ୍ଦାପନା କରନ୍ତି ।

ଆଷାଢ଼ ଶୁକ୍ଳ ଏକାଦଶୀ ଦିନ ଶ୍ରୀମନ୍ ନାରାୟଣ ପଲ୍ୟଙ୍କରେ ନିଦ୍ରାଗତ ହେବାପରେ, ଆଷାଢ଼ ଶୁକ୍ଳ ଦ୍ୱାଦଶୀ ଦିନ (ଅର୍ଥାତ୍ ପରଦିନ) ପକ୍ଷୀରାଜ ଗରୁଡ଼ ଶ୍ରୀହରିଙ୍କ ପଲ୍ୟଙ୍କ ତଳେ ଶୟନ କରନ୍ତି । ଧନ୍ୟ ଦାସବତ୍ସଳ ନୀଳାଦ୍ରିଚନ୍ଦ୍ରମା ! ଧନ୍ୟ ପ୍ରଭୁଭକ୍ତ ପକ୍ଷୀରାଜ !

ଗରୁଡ଼ ଉତ୍ଥାପନ ଦ୍ୱାଦଶୀ : କାର୍ତ୍ତିକ ଶୁକ୍ଳ ଏକାଦଶୀ ଦିନ ହରି ଉତ୍ଥାନ ଏକାଦଶୀ ପାଳିତ ହୁଏ ଓ ଶୟନ ଠାକୁର ଠାକୁରାଣୀ ଶୟନ ପ୍ରକୋଷ୍ଠରୁ ଭଣ୍ଡାର ଗୃହକୁ ବିଜେ କରନ୍ତି । ଏହାର ଠିକ୍ ପରଦିନ ଅର୍ଥାତ୍ କାର୍ତ୍ତିକ ଶୁକ୍ଳ ଦ୍ୱାଦଶୀ ଦିନ ଗରୁଡ଼ ଉତ୍ଥାନ । ଉକ୍ତ ଦିନ ମହାପ୍ରଭୁଙ୍କର ସନ୍ଧ୍ୟାଧୂପ ପରେ ଗରୁଡ଼ ପଞ୍ଚାମୃତରେ ସ୍ନାନ କରି ନବବସ୍ତ୍ର ଓ ପୁଷ୍ପମାଲ୍ୟ ଧାରଣ କରନ୍ତି । ନୈବେଦ୍ୟ, ବନ୍ଦାପନା, ଆଳତି ଓ ପୁଷ୍ପାଞ୍ଜଳି ପ୍ରଦାନ କରାଯାଏ । ନିଦ୍ରା ପରିହରି ଜାଗ୍ରତ ହେବାକୁ ଗରୁଡ଼ଙ୍କୁ ପ୍ରାର୍ଥନା କରାଯାଏ ।

ଗରୁଡ଼ ସେବକ : ଶ୍ରୀମନ୍ଦିର ଗରୁଡ଼ ସେବକ ହେଉଛନ୍ତି ଶାଢ଼ୀ ବନ୍ଧା ଶୁଦ୍ଧସେବକ । ବିବାହ ପରେ ଶାଢ଼ୀ ବନ୍ଧା ହୋଇଥାଏ କିନ୍ତୁ ପୂର୍ବରୁ ନୁହେଁ । ପିଲାଦିନୁ ଶ୍ରୀମନ୍ଦିର ଉପରେ ଚଢ଼ିବା ପାଇଁ ଅଭ୍ୟାସ କରନ୍ତି । ଗରୁଡ଼ ସେମାନଙ୍କ ସହାୟକ, ରକ୍ଷାକର୍ତ୍ତା । ଏମାନଙ୍କୁ ଚୁନରା ସେବକ କୁହାଯାଏ । ଏମାନେ ଗରୁଡ଼ ସେବା, ଏକାଦଶୀ ଦିନ ମହାଦୀପ ଜାଳିବା ସେବା, ଧ୍ୱଜା ବାନ୍ଧିବା ସେବା ଓ ଶ୍ରୀମନ୍ଦିରରେ ଚୂନ ଦେବା ସେବା କରିଥାଆନ୍ତି । ଶାଢ଼ୀ ବାନ୍ଧିବା ପୂର୍ବରୁ ଏମାନେ ଧ୍ୱଜାବାନ୍ଧି ପାରିବେ । ଶ୍ରୀମନ୍ଦିର ସେବା ଏମାନଙ୍କ ପୁରୁଷାନୁକ୍ରମିକ ଓ ସାଧାରଣତଃ କରଣ ଜାତିର ଲୋକ ସହିତ ବୈବାହିକ ସମ୍ବନ୍ଧ ସ୍ଥାପନ କରନ୍ତି । ଯାହାର ଯେଉଁଦିନ ପାଳିଥାଏ, ସେ ଆସି ପାଳି ଖଟନ୍ତି । ଶାଢ଼ୀ ବନ୍ଧା ସେବକମାନଙ୍କ ମଧ୍ୟରେ ଶ୍ରୀକୁଞ୍ଜ ବିହାରୀ ମହାନ୍ତି, ଶ୍ରୀଲକ୍ଷ୍ମୀଧର ମହାପାତ୍ର, ଶ୍ରୀ ବିଶ୍ୱନାଥ ମହାପାତ୍ର ପ୍ରମୁଖ ଅନେକ ଅଛନ୍ତି । ଗରୁଡ଼ଙ୍କ ନିକଟରେ ଯାହା ଆଦାୟ ହୁଏ, ପାଳି ଖଟୁଥିବା ଚୁନରା ସେବକ ନିଅନ୍ତି ।

ଶିଳାଲେଖରେ ଗରୁଡ଼ : ବହୁ ପ୍ରାଚୀନ ଶିଳାଲେଖରେ ଭଗବାନ ବିଷ୍ଣୁଙ୍କୁ ଗରୁଡ଼ ଧ୍ୱଜ ବା ଗରୁଡ଼ କେତୁ ରୂପେ ବର୍ଣ୍ଣନା କରାଯାଇଛି । ସ୍ୱର୍ଗୀୟ ଶ୍ରୀ ସତ୍ୟନାରାୟଣ ରାଜଗୁରୁଙ୍କ Invocatory Verses from inscriptions'ରୁ ପଞ୍ଚମ ଓ ଦ୍ୱାଦଶ ଶତାବ୍ଦୀର କେତେକ ଶିଳାଲେଖରୁ ଗରୁଡ଼ଙ୍କ ପ୍ରଶସ୍ତି ପ୍ରକାଶ ପାଏ ।

"ଜୟତି ବିଭୁଶ୍ଚତୁର୍ଭୁଜ ଶ୍ଚତୁରର୍ଣ୍ଣବ ବିପୁଳ ସଲିଳ ପର୍ଯ୍ୟଙ୍କଃ ।

ଜଗତଃ ସ୍ଥିତ୍ୟୁତ୍ପତ୍ତିନ୍ୟାୟାଦି ହେତୁ ର୍ଗରୁଡ଼ କେତୁଃ ।"

(ERAN Stone inscription of Budhagupta A.D.485)

[No.5,Page 4, Vol I]

[Edited by J.F.Fleet in C.I.I. Vol III p 89. The inscription belongs to the 5th Century AD on Palaeographical Groud.]

ଆରାଧନାୟମମବୈରପି ପାତୁ ଯୁଷ୍ମାନ୍

ପାଦାରବିନ୍ଦ ଯୁଗଳଂ ଗରୁଡ଼ ଧ୍ୱଜସ୍ୟ ।

ବିନ୍ୟସ୍ତ କୌସ୍ତୁଭମଣେରୁ ଭସୋ ବଭୂବ୍ୟ

ଲକ୍ଷ୍ମୀର୍ନଖାଗ୍ର ଖଚିତଂ ଜଗତେ ଭଣ୍ଡଯତ୍ (୧)

(AJMER Stone inscription, 12th Century AD) [NO 52, Page 29, Vol I] (this is a very important epigraph as it gives desciption of Visnu's ten Avatars, There is no Avatar Like Balaram, In the Place of Balaram, Comes Krishna.)

[Edited by D.C. Sarkar in E.I. xxix pp 180-182 ff]

ଭକ୍ତକବିଙ୍କ ଗରୁଡ଼ : ଭକ୍ତକବିଙ୍କ ସହିତ ରାମ ଓ ଜାନକୀଙ୍କର ଓ ପକ୍ଷୀରାଜ ଗରୁଡ଼

ଭକ୍ତ ପ୍ରସଙ୍ଗ

ଲକ୍ଷ୍ମଣ ଯୁଦ୍ଧ କରି ନାଗପାଶ ବନ୍ଧନରେ ପଡ଼ିଲେ । ଗରୁଡ଼ଙ୍କୁ ସ୍ମରଣ କରିବାରୁ ଗରୁଡ଼ ରମ୍ୟକ ଦ୍ୱୀପରୁ ଆସି ପହଞ୍ଚିଲେ । ଅହିଭୁକ୍ ଗରୁଡ଼ଙ୍କୁ ଦେଖିବା ମାତ୍ରେ ସମସ୍ତ ଅହିକୁଳ ଭୟରେ ଚାଲିଗଲେ ଓ ଶ୍ରୀରାମ ଲକ୍ଷ୍ମଣ ନାଗପାଶ ବନ୍ଧନରୁ ମୁକ୍ତ ହେଲେ । ଗରୁଡ଼ଙ୍କ ମନରେ ସନ୍ଦେହ ସୃଷ୍ଟି ହେଲା ଯେ, ଯାହାର ନାମ ଜପ କରି ନରଲୋକ ଭବବନ୍ଧନରୁ ମୁକ୍ତ ହୋଇଯାଏ ସେ କିପରି ନିଶାଚର ରାକ୍ଷସର ନାଗପାଶ ବନ୍ଧନରେ ପଡ଼ିଲେ !

ଗରୁଡ଼ ସନ୍ଦେହ ମୋଚନ ପାଇଁ ନାରଦ, ବ୍ରହ୍ମା ଓ ଶଙ୍କରଙ୍କୁ ଜିଜ୍ଞାସା କଲେ । ଶଙ୍କରଙ୍କ ନିର୍ଦ୍ଦେଶକ୍ରମେ ଗରୁଡ଼ ପକ୍ଷୀତୀର୍ଥକୁ ଯାଇ ଭୁଷଣ୍ଡି କାକଙ୍କୁ ସାକ୍ଷାତ କଲେ । ପରମ ରାମାନୁଗତ ପ୍ରାଣ କାକ ଭୁଷଣ୍ଡଙ୍କଠାରୁ ଶ୍ରୀରାମ ଚରିତ ଶ୍ରବଣ କରି ଗରୁଡ଼ଙ୍କର ସନ୍ଦେହ ମୋଚନ ହେଲା । ସେ ଜାଣି ପାରିଲେ ଏସବୁ ପ୍ରଭୁଙ୍କ ଲୀଳା ! ଶ୍ରୀରାମଙ୍କ ପାଦପଦ୍ମରେ ଚିତ୍ତ ନିବେଶ କରି ଗୁଣାନୁକୀର୍ତ୍ତନ ପୂର୍ବକ ଗରୁଡ଼ ପ୍ରତ୍ୟାବର୍ତ୍ତନ କଲେ । କାକ ଭୁଷଣ୍ଡି ଗରୁଡ଼ଙ୍କୁ ଉପଦେଶ ଛଳରେ କହିଥିଲେ-ହେ ପକ୍ଷୀରାଜ ! ଭବ ସାଗରରୁ ତରିବାକୁହେଲେ ଜୀବ ନିଜକୁ ସେବକ ରୂପେ ସେବ୍ୟ ଭଗବାନ ରାଘବେନ୍ଦ୍ରଙ୍କୁ ଭଜନ କରିବା ଶ୍ରେୟ ।

ଗରୁଡ଼ ଭୁଷଣ୍ଡିଙ୍କୁ ବହୁ ପ୍ରଶଂସା କରି ଶ୍ରୀରାମଙ୍କ ପଦାରବିନ୍ଦରେ ଚିତ୍ତ ସମର୍ପଣ କରି ରମ୍ୟକ ଦ୍ୱୀପକୁ ବାହୁଡ଼ିଲେ ।

ଗରୁଡ଼ ଭୁଷଣ୍ଡ କାକଙ୍କୁ ଜ୍ଞାନବୈରାଗ୍ୟ ସମ୍ବନ୍ଧୀୟ ସପ୍ତପ୍ରଶ୍ନ ପଚାରିଥିଲେ ଓ ଭୁଷଣ୍ଡି ସମୁଚିତ ଉତ୍ତର ଦେଇ ଗରୁଡ଼ଙ୍କର ପ୍ରୀତିଭାଜନ ହୋଇଥିଲେ । ଗରୁଡ଼ଙ୍କ ସପ୍ତପ୍ରଶ୍ନ (୧) ସବୁଠାରୁ ଦୁର୍ଲ୍ଲଭ ଶରୀର କାହାର ? (୨) ସବୁଠାରୁ ବଡ଼ ଦୁଃଖ କଣ ? (୩) ସବୁଠାରୁ ବଡ଼ ସୁଖ କଣ ? (୪) ସନ୍ଥ ଓ ଅସନ୍ଥ ଭେଦ ବିଚାର କିପରି ? (୫) ଶ୍ରୁତିରେ ସବୁଠାରୁ ପୁଣ୍ୟବସ୍ତୁ କ'ଣ ? (୬) ସବୁଠାରୁ ମହାନ୍ ପାପ କଣ ? (୭) ମାନସ ରୋଗ କ'ଣ ? କାକ ଭୁଷଣ୍ଡିଙ୍କର ଯଥାକ୍ରମେ ଉତ୍ତର (୧) ଜ୍ଞାନ, ବୈରାଗ୍ୟ ଓ ଭକ୍ତି ପ୍ରଦାୟକ ନରଶରୀର (୨) ଦରିଦ୍ରତା (୩) ସନ୍ଥ ସଙ୍ଗ (୪) ସନ୍ଥ ପରର ସୁଖ ପାଇଁ ଦୁଃଖ ସହ୍ୟ କରେ ଓ ଅସନ୍ଥ ପରକୁ ସନ୍ତପ୍ତ କରେ (୫) ଅହିଂସା (୬) ପରନିନ୍ଦା (୭) ମୋହ ଓ ଅବିବେକିତା ଇତ୍ୟାଦି ।

(ରାମଚରିତ ମାନସ, ଉତ୍ତରା କାଣ୍ଡ)

ଗାରୁଡ଼ି ମନ୍ତ୍ର : ଗରୁଡ଼ ଅହିକୁଳର ଶତ୍ରୁ ହୋଇଥିବାରୁ ତାଙ୍କ ମନ୍ତ୍ରରେ ଉପଚାର କଲେ ବିଷ ନଷ୍ଟ ହୁଏ ଓ ସର୍ପଭୟ ଦୂର ହୁଏ । ଏହାକୁ ଓଡ଼ିଆରେ "ଗାରୁଡ଼ିମନ୍ତ୍ର" କହନ୍ତି ।

ମନ୍ତ୍ର : କ୍ଷିପ୍ ଓଁ ସ୍ୱାହା (ତନ୍ତ୍ରସାର)

ଉପସଂହାର : ପକ୍ଷୀରାଜ ଗରୁଡ଼ଙ୍କ ବିଷୟ ସ୍କନ୍ଦପୁରାଣ, ବିଷ୍ଣୁପୁରାଣ, ଗରୁଡ଼ ପୁରାଣ, ଗରୁଡ଼ୋପନିଷଦ, ନୀଳାଦ୍ରି ମହୋଦୟ ଓ ବାମଦେବ ସଂହିତା ଦ୍ରଷ୍ଟବ୍ୟ । ଗରୁଡ଼ଙ୍କୁ ଉପାସନା କଲେ ସର୍ପଭୟ, ଭୂତପ୍ରେତଭୟ, ରୋଗବ୍ୟାଧି ଭୟ, ବନ୍ଧ୍ୟାଦୋଷ ଓ ପାପାଦିଭୟ ଅନାୟାସେ ଦୂରୀଭୂତ ହୁଏ । ଭକ୍ତ ସକଳ ବିପଦରୁ ରକ୍ଷା ପାଇବାକୁ ଓ ଭଗବାନ ବିଷ୍ଣୁଙ୍କ କୃପାଭାଜନ ହେବାପାଇଁ ଗରୁଡ଼ଙ୍କୁ ପ୍ରାର୍ଥନା କରିଥାଏ ।

"ଖଗେନ୍ଦ୍ର କଶ୍ୟପୋଦ୍‌ଭୂତ କାଦ୍ରବେୟ କୁଳାନ୍ତକ ।
ଅରୁଣା ବରଜଂ ନୌମି ସର୍ବପାପ ପ୍ରମୋଦୟେ ।"

ବୃନ୍ଦାବନ ଧର,
ଲୋକନାଥ ରୋଡ୍, ପୁରୀ-୧

• • •

# ତୃଷ୍ଣା

● ମନୋରମା ଆଚାର୍ଯ୍ୟ

ପ୍ରେମମୟ !
ତୋ' ଚକାଆଖିର ସମ୍ମୋହନରେ
ଆଖିରେ ଆଖିଏ ଲୁହ ମୋର
ତୃଷ୍ଣା ପାଲଟିଗଲା ।
ବଂଶୀ କଳାକର !
ତୋ' କଳାର ଆକର୍ଷଣରେ
ମୋ' ଦେହ, ମନରେ ଏଇ ଦେଖ,
କେତେ କଳଙ୍କର କଳାଛିଟା !
ତୋତେ ଭଲ ପାଇବାର ଆବେଗରେ
ତୋ'ର ସବୁ ଇଚ୍ଛାକୁ ମାନି ନେଲି
ଯେତେ ଦୁଃଖ ଉପହାର ଦେଲୁ
ସୁଖ ଭାବି ସହିନେଲି ଛାତିକୁ ପଥର କରି ।
ମହାବାହୁ !
ଆଜି ତୋତେ ଧନ ମାଗୁନାହିଁ,
ଜନ ମାଗୁନାହିଁ,
ତୋ' ଶରଧାବାଲିରୁ ବି ହାତେ ମାଗୁନାହିଁ
ଅନୁଭବି ନେ' ଥରେ
କ୍ଷତାକ୍ତ ହୃଦୟର
ଗୋପନ ବ୍ୟଥାକୁ ମୋ'ର
ଯାହା କା' ଆଗେ ମୁଁ ପାରିନି ବୁଝାଇ ।
ମୃଦୁ-ସମୀରଣେ ଦୋଳାୟିତ କେତ ତୋ'ର
ପତିତପାବନ
ଅହରହ କରୁଛି ପ୍ରଚାର
ଶାନ୍ତି-ପ୍ରୀତି-ମୈତ୍ରୀ ମମତାର
ତୋ' କରୁଣାର
ଶୀତଳ ଚନ୍ଦନ ସ୍ପର୍ଶରେ
ସବୁ ମଣିଷକୁ ଦେ' ଶାନ୍ତି
ଦିବ୍ୟ-ଆଲୋକ ସନ୍ଧାନ ॥

'ମାତୃ ନିଳୟ', ଲୋକନାଥ ରୋଡ୍
ହରଚଣ୍ଡୀ ସାହି, ପୁରୀ-୭୫୨୦୦୧



# ଶ୍ରୀ ମହାପ୍ରସାଦ

● ଅଧ୍ୟାପକ ଶ୍ରୀ ଗୋପାଳ ଚନ୍ଦ୍ର ତ୍ରିପାଠୀ

ଶ୍ରୀମହାପ୍ରସାଦ ସଦୃଶ ପବିତ୍ର ବସ୍ତୁ ବିଶ୍ୱରେ ବିରଳ । ଏ ଅନ୍ନ ସ୍ୱୟଂ ବିଷ୍ଣୁସ୍ୱରୂପ । ଏ ଅନ୍ନକୁ ପାକ କରନ୍ତି ପରମ ବୈଷ୍ଣବୀ ଶକ୍ତି ମହିମାମୟୀ ମହାଲକ୍ଷ୍ମୀ ଓ ଭୋଜନ କରନ୍ତି ସ୍ୱୟଂ ଶ୍ରୀଜଗନ୍ନାଥ । ସ୍କନ୍ଦ ପୁରାଣରେ କୁହାଯାଇଛି–

'ଯୁଧୋପମ' ପଦତ୍ୟକ୍ତ' ଭୁକ୍‌ତ୍ତେ ନାରାୟଣ ପ୍ରଭୁଃ' (୧) ଜଗନ୍ନାଥଙ୍କର ଭୋଜନାବଶେଷ ଅନ୍ନ ବ୍ୟଞ୍ଜନାଦି ସେବନ କଲେ ସମସ୍ତ ପାପ କ୍ଷୟ ହୁଏ । ସମସ୍ତ ବର୍ଣ୍ଣାଶ୍ରମୀ, ବିଧବା, ବ୍ରତଧାରୀ, ଦୀକ୍ଷିତ, ସର୍ବେହାରୀ ବ୍ୟକ୍ତିଗଣ ମହାପ୍ରସାଦ ସେବନରେ ପବିତ୍ର ହୁଅନ୍ତି । ଉଚ୍ଚ ନୀଚ ଭେଦ ଭାବର ପ୍ରଶ୍ନ ଉଠେ ନାହିଁ । ବ୍ରାହ୍ମଣ, ଶୂଦ୍ର ଏକ ସ୍ଥାନରେ ବସି ଏହାକୁ ସେବନ କରିଥାନ୍ତି । ମହାପ୍ରସାଦ ଯଦି ବେଶ୍ୟାଳୟରେ ଥାଏ କିମ୍ବା ପତିତ ବ୍ୟକ୍ତି ଯଦି ଏ ଅନ୍ନ ସ୍ପର୍ଶ କରିଥାନ୍ତି, ତଥାପି ଏହା ଦୂଷିତ ହୁଏ ନାହିଁ । ଏହା ସର୍ବରୋଗ ନିବାରକ,ପାପ କ୍ଷୟ କାରକ, ଦାରିଦ୍ର୍ୟ ବିନାଶକ, ଆୟୁ ପ୍ରଦାୟକ ଏବଂ ଶ୍ରୀ ଓ ଶୁଭଦାୟକ ବୋଲି କଥିତ ଅଛି । ସ୍କନ୍ଦ ପୁରାଣରେ କୁହାଯାଇଛି–

ସର୍ବରୋଗୋପଶମନଂ ପ୍ରତ୍ର ପୌତ୍ରପ୍ରବର୍ଦ୍ଧନମ୍ ।
ଦାରିଦ୍ର୍ୟହରଣଂ ଶ୍ରେଷ୍ଠଂ ବିଦ୍ୟାୟୁଷ ଶ୍ରୀପଦଂ ଶୁଭମ୍ ॥(୨)

ଶ୍ରୀଜଗନ୍ନାଥଙ୍କ ଅନ୍ନ ପ୍ରସାଦକୁ ମହାପ୍ରସାଦ ବୋଲି କୁହାଯାଇଥାଏ । ଶ୍ରୀକ୍ଷେତ୍ର ବ୍ୟତୀତ ଅନ୍ୟତ୍ର ମହାପ୍ରସାଦ ମିଳେ ନାହିଁ । ଶ୍ରୀମନ୍ଦିରରେ ମହାପ୍ରସାଦର ପ୍ରକ୍ରିୟା ନିମ୍ନମତେ ହୋଇଥାଏ । ପ୍ରଥମତଃ, ପ୍ରସାଦର ଷଡ଼ଙ୍ଗ ସଂସ୍କାର ଦ୍ୱାରା ଅନ୍ନତ୍ୱର ବିଲୋପ କରାଯାଇ ବ୍ରହ୍ମତ୍ୱର ଆରୋପ କରାଯାଉଥିବାରୁ ଏହା ମହାପ୍ରସାଦ ପଦବାଚ୍ୟ । ଏହି ଷଡ଼ଙ୍ଗ ସଂସ୍କାର ହେଉଛି (୧) ମହାଲକ୍ଷ୍ମୀଙ୍କ ଦ୍ୱାରା ବୈଷ୍ଣବାଗ୍ନିରେ ପାକ (୨) ଶ୍ରୀଯନ୍ତ୍ର ଉପର ପଦ୍ମ ମୁଦ୍ରାରେ ନୈବେଦ୍ୟ ନିମିତ୍ତ ସ୍ୱର୍ଣ୍ଣ ପାତ୍ରରେ ପରିବେଷଣ (୩) ଦ୍ୱାତ୍ରିଂଶ ଅକ୍ଷରୀ ପାତାଳ ନୃସିଂହ ମନ୍ତ୍ରରେ ପ୍ରୋକ୍ଷିତ (୪) ଗୋବିନ୍ଦ ଅଷ୍ଟାଦଶାକ୍ଷର ଗୋପାଳ ମନ୍ତ୍ରରେ ନିବେଦିତ (୫) ଭୈରବୀ ଚକ୍ରର ଅଧିଷ୍ଠାତ୍ରୀ ମହାଭୈରବୀ ଶ୍ରୀକ୍ଷେତ୍ର ରାଜେଶ୍ୱରୀ ବିମଳାଙ୍କୁ ସମର୍ପଣ (୬) ବିଷ୍ୱକ୍‌ସେନ, ଶୁକ,ପ୍ରହ୍ଲାଦ, ହନୁମାନ, ନାରଦ, ବୈନତେୟ, ଶିବ ଓ ଉଦ୍ଧବାଦି ଆଦି ଅଷ୍ଟ ସାତ୍ତ୍ୱିକ ବୈଷ୍ଣବଙ୍କୁ ଅନ୍ନ ବଳି ପ୍ରଦାନ । ଦ୍ୱିତୀୟତଃ, ଶ୍ରୀଜଗନ୍ନାଥ ମନ୍ଦିରସ୍ଥ ରୋଷଘରେ ରନ୍ଧନ ପ୍ରକ୍ରିୟାରେ ତାନ୍ତ୍ରିକ ବିଧାନ ଥିବା ଜଣାଯାଏ । ପ୍ରତ୍ୟେକ ଦିନ ରନ୍ଧନ ପୂର୍ବରୁ ବୈଷ୍ଣବାଗ୍ନି ସମ୍ପୃକ୍ତ କରାଯାଏ । ରୋଷଘରେ ଥିବା ଚୁଲିର ୬ ଗୋଟି ଛିଦ୍ର ଥାଏ । ଏହି ଛିଦ୍ର ହେଉଛି ଷଟ୍‌କୋଣାତ୍ମକ ଅଗ୍ନି ଯନ୍ତ୍ର । ଏଥିରେ ଥରକେ ନଅଗୋଟି ହାଣ୍ଡି ବସେ । ଉକ୍ତ ୬ ଓ ୯ ତାନ୍ତ୍ରିକ ବିଧାନ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ । ତୃତୀୟତଃ, ଏହା ମହାଲକ୍ଷ୍ମୀଙ୍କ ଦ୍ୱାରା ପାକ କରାଯାଇ ସ୍ୱୟଂ ବିଷ୍ଣୁ ଭୋଜନ କରୁଥିବାରୁ ଏହା ଅତ୍ୟନ୍ତ ଦୁର୍ଲ୍ଲଭ ବସ୍ତୁ । ପଦ୍ମ ପୁରାଣରେ କୁହାଯାଉଛି– ତତ୍ରାନ୍ନ ପାଚିକା ଲକ୍ଷ୍ମୀଃ ସ୍ୱୟଂ ଭୋକ୍ତା ଜନାର୍ଦ୍ଦନଃ", ଚତୁର୍ଥତଃ, ମହାପ୍ରସାଦକୁ କେହି କେହି ମା ପ୍ରସାଦ ବୋଲି କହିଥାନ୍ତି । କାରଣ ଦାରୁବ୍ରହ୍ମ ଜଗନ୍ନାଥଙ୍କୁ ନିବେଦିତ ଅନ୍ନ ମା ବିମଳାଙ୍କୁ ସମର୍ପଣ କରାଯିବା ପରେ ଏହା ମହାପ୍ରସାଦ ଭାବରେ ବିଦିତ । ଅତଏବ ଏହି ପ୍ରକ୍ରିୟାରେ ଅନ୍ୟତ୍ର ପ୍ରସାଦ ନୈବେଦ୍ୟର ବିଧାନ ନଥିବାରୁ ଏବଂ ଏହା ଅନ୍ୟ ଦେବ ଦେବୀଙ୍କ ପ୍ରସାଦଠାରୁ ବଡ଼ ହୋଇଥିବାରୁ ଏହାକୁ ମହାପ୍ରସାଦ ବୋଲି କୁହାଯାଏ ।

ମହାପ୍ରସାଦ ଶବ୍ଦ ମଧ୍ୟରେ ଆନନ୍ଦ, ପ୍ରୀତି, ପ୍ରେମ, ପ୍ରସନ୍ନତା, ନିର୍ମଳତା, ପବିତ୍ରତା ତଥା ପାବନତା ଭାବ ରହିଥାଏ । ମହାପ୍ରସାଦକୁ ମଧ କୈବଲ୍ୟ, ନିର୍ମାଲ୍ୟ ବୋଲି କୁହାଯାଇଥାଏ । କୈବଲ୍ୟ କେବଳ ଶବ୍ଦରୁ ସୃଷ୍ଟି ହୋଇଥିବାରୁ ଏହାର ଅର୍ଥ ହେଉଛି ଏକମାତ୍ର ପରମ ପଦାର୍ଥ । ଉପେନ୍ଦ୍ର ଭଞ୍ଜଙ୍କ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' ଗ୍ରନ୍ଥର ପ୍ରଥମ ଛାନ୍ଦରେ ବର୍ଣ୍ଣନା ଅଛି–

"ମୁକ୍ତି ଦେବା ଗୁପ୍ତ ହୋଇଥାଇ ଯୁକ୍ତାକ୍ଷରେ ।
ବୈଷ୍ଣବ ବିହୁନେ କେହୁ ଜାଣିବ ସଂସାରେ ॥"

ଏହାର ଅର୍ଥ ହେଲା, ଜଗନ୍ନାଥ ଶବ୍ଦ ମଧ୍ୟରେ ଗୋଟିଏ ଯୁକ୍ତାକ୍ଷର ଅଛି, ତାହା ହେଲା 'ନ୍ନ' । ଏହାକୁ ସ୍ୱତନ୍ତ୍ର ଭାବରେ ଉଚ୍ଚାରଣ କରିହୁଏ ନାହିଁ । ତେଣୁ ତା ପୂର୍ବରୁ ସ୍ୱରବର୍ଣ୍ଣ 'ଅ' ସଂଯୁକ୍ତ କରି ଉଚ୍ଚାରଣ କରିବାକୁ ହୋଇଥାଏ । 'ଅ' ସଂଯୁକ୍ତ କରି ଉଚ୍ଚାରଣ କଲେ ଶବ୍ଦଟି ହୁଏ 'ଅନ୍ନ' । ଏହି ଅନ୍ନହିଁ କୈବଲ୍ୟ । ସେହିପରି ଏହାକୁ ନିର୍ମାଲ୍ୟ କହିବା ମୂଳରେ ରହିଛି ନିର୍ମଳ ଭାବ, ପବିତ୍ରତା ତଥା ପାବନତା । ମହା ନିର୍ବାଣ ତନ୍ତ୍ର ଅନୁଯାୟୀ–

'ଜାତି ଭେଦୋ ନ କର୍ତବ୍ୟଃ ପ୍ରସାଦେ ପରମାତ୍ମନଃ'। ତେଣୁ ମହାପ୍ରସାଦ ସେବନରେ ଉଚ୍ଚନୀଚ, ଜାତିବର୍ଣ୍ଣ ଭେଦଭାବ ଓ ତତ୍ ଜନିତ ସଂକୀର୍ଣ୍ଣତା ରହି ନଥାଏ । ସାମ୍ୟବାଦ ପରି ଏକ ଉଚ୍ଚ ଚିନ୍ତାଧାରା ଏଥିରୁ ସୂଚିତ ହୁଏ । ଭଗବାନ ବିଷ୍ଣୁଙ୍କର ଅର୍ଘ୍ୟ ଶେଷ ଜଳ, ଆଚମନୀୟ ଜଳ, ପାଦୋଦକ, ସ୍ନାନୋଦକ ପ୍ରତ୍ୟେକଟି ପାପ ବିନାଶକ, ଅକାଳ ମୃତ୍ୟୁ ନିବାରକ ଏବଂ ବ୍ୟାଧି ବିନାଶକ ଅଟେ । ଏହି ଜଳରେ ଆଉ ହେଲେ ଅଶୌଚ ବାର୍ତ୍ତା ଶୁଣିଲେ ମଧ କେହି ଅଶୁଦ୍ଧ ହୁଅନ୍ତି ନାହିଁ । ମୁକ୍ତିଦାତା ଶ୍ରୀଜଗନ୍ନାଥ ମନୁଷ୍ୟମାନଙ୍କୁ ଅନୁଗ୍ରହ କରିବା ପାଇଁ ପୁରୁଷୋତ୍ତମ କ୍ଷେତ୍ରରେ ମହିମାମୟୀ ମହାଲକ୍ଷ୍ମୀଙ୍କ ସହ ନିରନ୍ତର ଅବସ୍ଥାନ କରୁଅଛନ୍ତି ।

ଭକ୍ତ ପ୍ରସଙ୍ଗ

ଦୀର୍ଘ ଦିନ ଧରି ସଞ୍ଚିତ, ଅତ୍ୟନ୍ତ ଶୁଷ୍କ ଅଥବା ଦୂର ସ୍ଥାନରୁ ଅଣାଯାଇଥିବା କାହିଁକି , ଏହାକୁ ପରମ ଆନନ୍ଦରେ ସେବନ କରିବା ବିଧିଯୁକ୍ତ । ମହାପ୍ରସାଦ ସେବନର କେତେକ ବିଧି ରହିଅଛି । (୧) ମହାପ୍ରସାଦ ସେବନ ସମୟରେ ପବିତ୍ର ତଥା ନିର୍ମଳ ମନରେ ଓ ଆତ୍ମଗର୍ବ ନରଖି ସେବନ କରିବାକୁ ହେବ । (୨) ମହାପ୍ରସାଦ ଅକୁଣ୍ଠିତ ଭାବରେ ପରମ ଆଗ୍ରହର ସହ ସେବନ କରିବା ବିଧି । (୩) କୌଣସି ଆସନରେ ନ ବସି ମହାପ୍ରସାଦ ସେବନ କରାଯାଇଥାଏ । (୪) ସେବନ ପୂର୍ବରୁ 'ନୀଳାଚଳ ନିବାସାୟ ନିତ୍ୟାୟ ପରମାତ୍ମନେ' ବଳଭଦ୍ର ସୁଭଦ୍ରାଭ୍ୟାଂ ଜଗନ୍ନାଥାୟତେ ନମଃ 'ସ୍ମରଣ କରି ସେବନ କରାଯାଇଥାଏ । (୫) ଉଚ୍ଚ ନୀଚ୍ଚ ଭେଦ ଭାବ ନରଖି ଏକ ସ୍ଥାନରେ ମହାପ୍ରସାଦ ସେବନ କରିବା ପରମ କର୍ତ୍ତବ୍ୟ । (୬) ଯେ କୌଣସି ସମୟରେ ଶୌଚ ଅଶୌଚ ବିଚାର ନକରି ଏହାକୁ ଗ୍ରହଣ କରାଯାଏ । (୭) ମହାପ୍ରସାଦ ଶୁଖିଲା ହେଉ କିମ୍ବା ବାସି ହେଉ, ଦୂର ଦେଶରୁ ଅଣାଯାଇଥାଏ, ଏହା ପ୍ରାପ୍ତି ହେବା ମାତ୍ରେ ସ୍ଥାନ, କାଳ,ପାତ୍ର, ଅବସ୍ଥା ଆଦି ବିଚାର ନକରି ତତ୍କ୍ଷଣାତ୍ ସେବନ କରିବା ବିଧି । (୮) ମହାପ୍ରସାଦ ସହିତ ସାଧାରଣ ରନ୍ଧନ ପ୍ରସ୍ତୁତ ଖାଦ୍ୟ ଗ୍ରହଣ ନିଷିଦ୍ଧ ।

ଶ୍ରୀମହାପ୍ରସାଦ ବା ନିର୍ମାଲ୍ୟ କହିଲେ କେବଳ ମହାପ୍ରଭୁଙ୍କ ଅନ୍ନ ପ୍ରସାଦକୁ ନ ବୁଝାଇ ଶ୍ରୀଜୀଉଙ୍କ ବ୍ୟବହୃତ ଫୁଲ, ଚନ୍ଦନ, ଶ୍ରୀକପଡ଼ା, ଇତ୍ୟାଦି ଦିବ୍ୟ ବସ୍ତୁକୁ ବୁଝାଇଥାଏ । ସେଥିପାଇଁ ସ୍କନ୍ଦ ପୁରାଣରେ ଯଥାର୍ଥରେ କୁହାଯାଇଛି- .

ପୁଷ୍ପ ଚନ୍ଦନ ମାଲ୍ୟାଦି ଯଦଙ୍ଗେ ରୂପ ଧାର୍ଯ୍ୟତେ ।
ଅପନୀତଂ ଯଥାକାଳେ ନିର୍ମାଲ୍ୟଂ ତତ୍ ପ୍ରକୀର୍ତ୍ତିତମ୍ ।

ପାର୍ବତୀ, ମଙ୍ଗଳା,ଦୁର୍ଗା, ବିମଳା, କାଳୀ, ଓ ଚଣ୍ଡୀ ଆଦି ଠାକୁରାଣୀଙ୍କୁ ଶ୍ରୀଜଗନ୍ନାଥଙ୍କ ଶ୍ରୀଅଙ୍ଗ ଲାଗି ଫୁଲ ଲାଗି କରିବା ଓ ଶ୍ରୀ ମହାପ୍ରସାଦ ସମର୍ପଣ କରିବା ଦ୍ୱାରା ମା'ଙ୍କର ଆଶୀର୍ବାଦ ମିଳିଥାଏ । ଦେବୀମାନଙ୍କ ପରି ପରମଭକ୍ତ ବୀର ହନୁମାନଙ୍କର ମଧ୍ୟ ମହାପ୍ରସାଦ ପ୍ରାପ୍ତି ପାଇଁ ପ୍ରବଳ ଆଗ୍ରହ ।

ମହାପ୍ରସାଦ ପରି ସ୍ୱାଦ, ରୁଚିକର ତଥା ପୁଷ୍ଟିକର ବସ୍ତୁ ବିଶ୍ୱରେ ବିରଳ । ଶ୍ରୀ ମନ୍ଦିରର ରୋଷରେ ବ୍ୟବହୃତ ହେଉଥିବା ଜଳ ଗଙ୍ଗା ଓ ଯମୁନା ନାମକ ଦୁଇଗୋଟି କୂପରୁ ଅଣାଯାଇଥାଏ । ଏହି ଜଳର ନିଶ୍ଚିତ ଭାବରେ ପାକାନୁକୂଳ କିଛି ରାସାୟନିକ ଗୁଣ ଅଛି, ଫଳରେ ପ୍ରସ୍ତୁତ ହେଉଥିବା ଖାଦ୍ୟ ପଦାର୍ଥକୁ ଏହା ଅମୃତ କରିଦେଇଥାଏ । ସେହିପରି ଶ୍ରୀମନ୍ଦିର ରୋଷରେ ବ୍ୟବହୃତ ଅଗ୍ନିରେ ସ୍ୱାତନ୍ତ୍ର୍ୟ ରହିଅଛି । ରୋଷ ଘରେ ବିରାଜମାନ କରୁଥିବା ଶ୍ରୀଅଗ୍ନିଶ୍ୱର ମହାଦେବ ଉକ୍ତ ଅଗ୍ନିର ରକ୍ଷକ ଏବଂ ସେ ମଧ୍ୟ ପାକ ବିଶେଷଜ୍ଞ । ପୁନଶ୍ଚ, ମହାଲକ୍ଷ୍ମୀ ରନ୍ଧନ କାରିଣୀ ଏବଂ ଦକ୍ଷିଣକାଳୀ ରୋଷର ତତ୍ତ୍ୱାବଧାରିଣୀ ଅଟନ୍ତି । ବିଦଗ୍ଧ କବି ସ୍ୱର୍ଗତ ଚନ୍ଦ୍ର ଶେଖର ପଟ୍ଟନାୟକ ପାକଶାଳା ସମ୍ପର୍କରେ ଲେଖି ଯାଇଛନ୍ତି ଯେ-

ଯେଉଁ ରୋଷଶାଳେ ଜଗତମାତ ରନ୍ଧନକାରୀ
ରୋଷର ଚଉକୀ ଜଗୁଛନ୍ତି ମାତ ଦକ୍ଷିଣକାଳୀ ॥
କିଉଦନ୍ତୀ ଲକ୍ଷ୍ମୀ, ବିମଳା ଦେବୀ, ଦକ୍ଷିଣକାଳୀ
ନିଯୋଗୀ ସେ ରୋଷ ଶାଳରେ ନିତି ଖଟନ୍ତି ପାଳି ।
ଅପମବ ତେଣୁ ସମବ ସେହି ପାକଶାଳାରେ ।

\+ + +

ଏହି ସବୁ କାରଣରୁ ସୁପକାରମାନେ କୌଣସି ବିଶେଷ ଯତ୍ନ ନେଇ ପାକ କରୁଥିଲେ ସୁଦ୍ଧା ଭୋଗ ଦ୍ରବ୍ୟ ଅପୂର୍ବ ସ୍ୱାଦଯୁକ୍ତ ହୋଇଥାଏ । ପ୍ରତ୍ୟେକ ସୁପକାର ମୁକ୍ତ କଣ୍ଠରେ ସ୍ୱୀକାର କରନ୍ତି ଯେ ଯାହା ହେଉଛି ତାହା ଜଗନ୍ନାଥ ମହାପ୍ରଭୁଙ୍କ ଇଚ୍ଛାନୁଯାୟୀ ।

ଶ୍ରୀଜଗନ୍ନାଥଙ୍କୁ ଅର୍ପିତ ନୈବେଦ୍ୟ ଶ୍ରୀକ୍ଷେତ୍ର ଅଧିଷ୍ଠାତ୍ରୀ ଦେବୀ ବିମଳାଙ୍କୁ କାହିଁକି ସମର୍ପଣ କରାଯାଏ ଏହା ମୂଳରେ ଏକ କିମ୍ବଦନ୍ତୀ ଅଛି । ଥରେ ଦେବର୍ଷି ନାରଦ ଭଗବାନ ବିଷ୍ଣୁଙ୍କର ଭୋଜନ ପରେ ତାଙ୍କ ଉଚ୍ଛିଷ୍ଟରୁ କିଛି ପ୍ରସାଦ ପାଇ ନିଜକୁ ଧନ୍ୟ ମନେ କରି ଅତି ଉଲ୍ଲାସରେ କୈଳାସରେ ପହଞ୍ଚିଲେ । ତାଙ୍କର ଉଲ୍ଲାସ ଭାବର କାରଣ ନାରଦଙ୍କ ଠାରୁ ବୁଝି ଦେବ ଦେବ ମହାଦେବ କୈବଲ୍ୟ ସେବା ପାଇଁ ଲାଳାୟିତ ହେଲେ । ଦୈବାତ୍ ନାରଦଙ୍କ ଦାଢ଼ିରେ କଣିକାଏ କୈବଲ୍ୟ ଲାଗିଥିବା ଦେଖି ଶିବ ପରମ ଆନନ୍ଦରେ ତାକୁ ସେବା କଲେ ଓ ଅତ୍ୟନ୍ତ ପ୍ରେମ ବିହ୍ୱଳ ହେଲେ । ଦେବର୍ଷି ନାରଦ ଓ ଦେବ ଦେବ ମହାଦେବ ପରମାନନ୍ଦରେ ଭାବ ବିହ୍ୱଳ ଥିବା ବେଳେ ଦେବୀ ପାର୍ବତୀ ସେଠାରେ ଉପସ୍ଥିତ ହୋଇ ସମସ୍ତ ବିଷୟ ଅବଗତ ହେଲେ । ମହାଦେବୀ ପାର୍ବତୀ ଦେବ ଦେବ ମହାଦେବଙ୍କର ଅର୍ଦ୍ଧାଙ୍ଗିନୀ ହୋଇଥିବାରୁ କଣିକାଏ କୈବଲ୍ୟରୁ ଅର୍ଦ୍ଧ କଣିକାଏ ତାଙ୍କର ପ୍ରାପ୍ୟ ଥିଲା ବୋଲି କହି କୈବଲ୍ୟ ପ୍ରାପ୍ତି ପାଇଁ ତପସ୍ୟାରତ ହେଲେ । ପାର୍ବତୀଙ୍କ ତପସ୍ୟାରେ ପରିତୁଷ୍ଟ ବିଷ୍ଣୁ ପ୍ରକଟ ହୋଇ ତାଙ୍କୁ କୈବଲ୍ୟ ପ୍ରଦାନ କଲେ ଏବଂ କହିଲେ ଯେ ମୁଁ ଯେତେବେଳେ ଦାରୁ ବ୍ରହ୍ମ ଭାବରେ ନୀଳାଚଳରେ ବିରାଜମାନ କରିବି ସେତେବେଳେ ମହାଦେବୀ ପାର୍ବତୀ ବିମଳା ରୂପରେ ସେଠାରେ ବିରାଜିତ ହୋଇଥିବେ ଓ ପ୍ରତ୍ୟହ ପ୍ରତ୍ୟେକ ଭୋଗ ପରେ ତାଙ୍କୁ ମହାପ୍ରସାଦ ଅର୍ପଣ କରାଯିବ । ମା ପାର୍ବତୀ କଣିକାଏ କୈବଲ୍ୟ ପାଇଁ ଘୋର ତପସ୍ୟା କରିଥିଲେ ସତ, କିନ୍ତୁ ତାଙ୍କ ପାଇଁ ପ୍ରତ୍ୟହ ନୈବେଦ୍ୟର ବ୍ୟବସ୍ଥା କରାଗଲା । ଏଥିରୁ ଜଣାଯାଏ ମହାପ୍ରସାଦ ପାଇଁ ଦେବ ଦେବୀ, ମୁନି ଋଷି ଆଦି କିଭଳି ବ୍ୟାକୁଳ ହୋଇଥାନ୍ତି ଓ ମହାପ୍ରସାଦ ପ୍ରାପ୍ତିରେ ନିଜକୁ ଧନ୍ୟ ମନେ କରିଥାନ୍ତି । ମହାପ୍ରସାଦର ମାହାତ୍ମ୍ୟ ବିଭିନ୍ନ ଶାସ୍ତ୍ରରେ ବର୍ଣ୍ଣନା କରାଯାଇ ଅଛି । ଭକ୍ତଗଣ ମହାପ୍ରସାଦ ସେବନ କରି କହି ଉଠନ୍ତି-

କୃତାର୍ଥୋହଂ କୃତାର୍ଥୋହଂ କୃତାର୍ଥୋହଂ ନ ସଂଶୟ ।
ଦେବ ଦେବ ଜଗନ୍ନାଥ ତବ ନିର୍ମାଲ୍ୟ ଭକ୍ଷଣାତ୍ ॥

ଅର୍ଥାତ୍, ହେ ଦେବ ଦେବ ଜଗନ୍ନାଥ ! ଆପଣଙ୍କ ନିର୍ମାଲ୍ୟ ସେବନ କରି ନିଶ୍ଚିତ ଭାବରେ ମୁଁ କୃତାର୍ଥ ହୋଇଗଲି ।

କାୟମନ ବାକ୍ୟରେ, ଭକ୍ତିଭାବରେ, ପରମ ଆନନ୍ଦରେ ମହାପ୍ରସାଦ ସେବନ କରି ଓ ନିଜର ମନ ପ୍ରାଣକୁ ଶ୍ରୀଜଗନ୍ନାଥଙ୍କ ଚରଣାରବିନ୍ଦରେ ସମର୍ପଣ କଲେ ଜୀବନ ଧନ୍ୟ ହେବ, ମଧୁମୟ ହେବ, ଏହା ନିଃସନ୍ଦେହ ।

ତୋଳମଣ୍ଡପ ସାହି, ପୁରୀ


ସୂଚୀ
(୧) ସ୍କନ୍ଦ ପୁରାଣ-ବିଷ୍ଣୁଖଣ୍ଡ-୩୮ ଅଧ୍ୟାୟ-୩ ଶ୍ଳୋକ
(୨) ସ୍କନ୍ଦ ପୁରାଣ -ବିଷ୍ଣୁଖଣ୍ଡ-୩୮ ଅଧ୍ୟାୟ-୧୧ ଶ୍ଳୋକ


ଉତ୍କଳ ପ୍ରସଙ୍ଗ

# ରଥ ନିର୍ମାଣରେ ସେବା ନିଯୋଗ ଓ ରଥଯାତ୍ରାରେ ନିଯୁକ୍ତ ସେବାୟତ

● ଶ୍ରୀ ପଙ୍କଜ ସାହୁ

କ୍ଷେତ୍ରରାଜ ଶ୍ରୀକ୍ଷେତ୍ରର ଶ୍ରୀମନ୍ଦିରରେ ବିରାଜିତ ଦେବରାଜ ଶ୍ରୀଜଗନ୍ନାଥଙ୍କ ଦୈନନ୍ଦିନ ସେବା ନିର୍ବାହ ନିମିତ୍ତ ଅଗଣିତ ସେବାୟତ ସର୍ବଦା ସେବା ନିଯୁକ୍ତ ଥାଆନ୍ତି । ଶ୍ରୀ ଜଗନ୍ନାଥଙ୍କ ସାନ୍ନିଧ ଲାଭକରି ଶ୍ରୀକ୍ଷେତ୍ରର ପ୍ରତିଟି ଧୂଳିକଣା ଯେପରି ପବିତ୍ରିତବୋଧ ହୋଇଥାନ୍ତି; ସେହିପରି ଶ୍ରୀନାଥଙ୍କ ପ୍ରାତ୍ୟହିକ ବର୍ଷ ମଧ୍ୟରେ ଅନୁଷ୍ଠିତ ତ୍ରୟୋଦଶ ଯାତ୍ରା ମଧ୍ୟରୁ ଶ୍ରେଷ୍ଠତମ ଯାତ୍ରା ଶ୍ରୀଗୁଣ୍ଡିଚା ଉପଲକ୍ଷେ ଶ୍ରୀଜଗନ୍ନାଥ ମହାପ୍ରଭୁ ରଥାରୋହଣ କଲାପରେ ରଥ ଓ ରଥପଥ ମଧ୍ୟ ଦେବତାର ପ୍ରାଧାନ୍ୟ ଲାଭ କରିଥାନ୍ତି । ଏହି ପ୍ରସଙ୍ଗରେ ଯଥାର୍ଥରେ କୁହାଯାଇଛି– ''ରଥ ବୋଲେ ବଡ଼ ମୁହିଁ ପଥବୋଲେ ମୁହିଁ/ଅଲକ୍ଷ୍ୟେ ହସନ୍ତି ପ୍ରଭୁ ବ୍ରହ୍ମାଣ୍ଡ ଗୋସାଇଁ । ରଥପଥ ବଡ଼ଦାଣ୍ଡ ଧୂଳିରେ ଅବଗାହନ କରି ପାପ କ୍ଷାଳନଜନିତ ଆନନ୍ଦରେ ଭକ୍ତପ୍ରାଣ ଉଦ୍‌ବେଳିତ ହେବା ସହିତ ମହାପ୍ରଭୁଙ୍କୁ କୋଳକରି, ରଥରେ ଶିର ଲଗାଇ ଏକ ଦିବ୍ୟ ଅନୁଭୂତିରେ ତନ୍ମନ ପୁଲକିତ ହୋଇଉଠେ । ଉକ୍ତ ରଥ ନିର୍ମାଣ ନିମିତ୍ତ ଯେଉଁ ଦକ୍ଷ ସେବାୟତମାନେ ସୁନିର୍ଦ୍ଦିଷ୍ଟଭାବେ ନିଜ ନିଜ କର୍ମବିଭାଗ ଅନୁସାରେ ସ୍ୱୀୟ ଶ୍ରମବିନ୍ଦୁ ଯୋଗରେ ମହାପ୍ରଭୁଙ୍କର ରଥଯାତ୍ରାକୁ ମହନୀୟ ତଥା ରାଜକୀୟ କରି ଗଢ଼ିତୋଳିଛନ୍ତି, ସେହିମାନେ ହିଁ ଉକ୍ତ ଶାସ୍ତ୍ରାନୁମୋଦିତ ମହାନ ପର୍ବର ନିର୍ମାତା ଅଟନ୍ତି । ପ୍ରକୃଷ୍ଟ କୁଶଳୀ ଶିଳ୍ପୀଙ୍କ କାର୍ଯ୍ୟଦକ୍ଷତା ସହିତ ସେହିମାନଙ୍କ ନିଷ୍ଠା ଓ ଭକ୍ତିପ୍ରବଣତା ଦ୍ୱାରା ଶ୍ରୀଗୁଣ୍ଡିଚା ଯାତ୍ରା ସୁସମ୍ପନ୍ନଭାବେ ସମ୍ପାଦିତ ହୋଇଥାଏ, ସେହି ସେବାୟତମାନଙ୍କ କାର୍ଯ୍ୟାବଳୀର ବିଶଦ ବିବରଣୀ ପ୍ରଦାନ କରିବା ହେଉଛି ପ୍ରସ୍ତାବିତ ଆଲୋଚନାର ମୁଖ୍ୟ ଉପଜୀବ୍ୟ ।

ମହାରାଣୀ ଗୁଣ୍ଡିଚାଙ୍କ ଅନୁରୋଧକ୍ରମେ ଜନ୍ମବେଦୀକୁ ଯାତ୍ରା କରିବା ନିମିତ୍ତ ଶ୍ରୀଜଗନ୍ନାଥ ଇଚ୍ଛା ପ୍ରକାଶ କରିବାରୁ ତାଙ୍କର ଆଦେଶରେ ପ୍ରାଗୈତିହାସିକ ଯୁଗରେ କିମ୍ବଦନ୍ତୀର ସମ୍ରାଟ ଇନ୍ଦ୍ରଦ୍ୟୁମ୍ନ ନୂତନ ରଥନିର୍ମାଣ ପାଇଁ ଆବଶ୍ୟକ ବ୍ୟବସ୍ଥା ଗ୍ରହଣ କରିଥିଲେ । ଶ୍ରୀଜଗନ୍ନାଥ ଦେବତାର ଉନ୍ମେଷ ଓ ବିକାଶ ନିମିତ୍ତ ରାଜା ଇନ୍ଦ୍ରଦ୍ୟୁମ୍ନ (କ୍ଷତ୍ରିୟ), ପୁରୋହିତ ବିଦ୍ୟାପତି(ବ୍ରାହ୍ମଣ), ବିଶ୍ୱକର୍ମା ଅନନ୍ତ ମହାରଣା(ବୈଶ୍ୟ) ଓ ଶବରରାଜ ବିଶ୍ୱାବସୁ(ଶୂଦ୍ର) ପ୍ରଭୃତିଙ୍କର ଅବଦାନ ଅନସ୍ୱୀକାର୍ଯ୍ୟ । ପ୍ରଥମେ ଏହି ପ୍ରତିନିଧିଙ୍କ ସମ୍ମିଳିତ ଉଦ୍ୟମରେ ଶ୍ରୀଜଗନ୍ନାଥଙ୍କ ସେବାପୂଜା ଆରମ୍ଭ ହେଉଥିଲା । ବିଗ୍ରହ ତଥା ରଥ ନିର୍ମାଣ ନିମିତ୍ତ ବିଶ୍ୱକର୍ମା ବା ବଢ଼େଇ ମହାରଣାଙ୍କ ଅବଦାନ ନିଶ୍ଚିତ ରୂପେ ଅନ୍ୟମାନଙ୍କ ଅପେକ୍ଷା ଗୁରୁତ୍ୱପୂର୍ଣ୍ଣ । କିମ୍ବଦନ୍ତୀ ଅନୁଯାୟୀ ରାଜା ଇନ୍ଦ୍ରଦ୍ୟୁମ୍ନ ବ୍ରହ୍ମାଙ୍କଠାରୁ ସେଥିପାଇଁ ବରଭିକ୍ଷା କରିଥିଲେ ଯେ ''ମୋ ବଂଶ ପଛେ ନାଶ ଯାଉ/ ବୁଢ଼ା ବଢ଼େଇ ବଂଶ ଥାଉ ।''

ଏହି ବୁଢ଼ା ବଢ଼େଇ ବଂଶ ସେହି କାଳରୁ ଅଛି ଓ ନବକଳେବର ସମୟରେ ଶ୍ରୀଜୀଉମାନଙ୍କର ଚତୁର୍ଦ୍ଧାମୂର୍ତ୍ତି ନିର୍ମାଣ କରିବା ସହିତ ପ୍ରତିବର୍ଷ ଶ୍ରୀଗୁଣ୍ଡିଚା ରଥତ୍ରୟ ନିର୍ମାଣ କରିଆସୁଅଛି । କେବଳ ବର୍ଦ୍ଧକୀ ନୁହନ୍ତି ରଥ ନିର୍ମାଣ ଓ ସଜ୍ଜୀକରଣର ମୁଖ୍ୟ ନାୟକ ହେଉଛନ୍ତି ରଥକାର । ଏମାନେ ପ୍ରଥମେ ସାତଶ୍ରେଣୀରେ ବିଭକ୍ତ ହୋଇଥିବାରୁ ସେମାନଙ୍କୁ ସପ୍ତରଥକାର ବା ସପ୍ତନାୟକ କୁହାଯାଇଥାଏ । ସେମାନଙ୍କ ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା । ଯଥା -

(୧) ଗୁଣାକାର-ଏମାନେ ରଥର ବିଭିନ୍ନ ଅଙ୍ଗବିଶେଷର ମାନମାନ ନିର୍ଦ୍ଧାରଣ କରନ୍ତି ।

୨) ମୁଖ୍ୟ ରଥକାର -ଏମାନେ ରଥର ମୁଖ୍ୟ ଅଂଶଗୁଡ଼ିକୁ ନିର୍ମାଣ କରନ୍ତି ।

୩) ଲୌହକାର -ଏମାନେ ରଥରେ ବ୍ୟବହୃତ ଚକାବଳା, କୁରାଣ୍ଡିଆ, କଣ୍ଟା ପ୍ରଭୃତି ଲୌହ ଉପାଦାନ ଓ ବଢ଼େଇ ମହାରଣାଙ୍କ ଆବଶ୍ୟକ ଯନ୍ତ୍ରପାତି ତିଆରି କରନ୍ତି ।

୪) ଛନ୍ଦାକାର-ରଥକାଠମାନ କାନ୍ଧରେ ବୋହି ଛନ୍ଦ ଓ ଛେକାରେ ସଜାନ୍ତି ।

୫) ରୂପକାର-ଏମାନେ ସାରଥି , ଅଶ୍ୱ, ରଥପାଳ ପ୍ରଭୃତି ରୂପ ଖୋଦନ କରନ୍ତି ।

(୬) ଚିତ୍ରକାର-ଏମାନେ ରଥର ବିଭିନ୍ନ ଅଂଶ ଚିତ୍ରଣ କରନ୍ତି ।

(୭) ସୂଚିକାର-ଏମାନେ କନାରେ ରଥର ମଣ୍ଡଣି, ଚାନ୍ଦୁଆ, ନେତ ତିଆରି କରନ୍ତି ।

ଏକଦା ଉପର୍ଯ୍ୟୁକ୍ତ ରଥକାର ବା ନାୟକମାନଙ୍କୁ ନେଇ ସାତୋଟି ନିଯୋଗ ଗଠିତ ହୋଇଥିଲା । ପରବର୍ତ୍ତୀ କାଳରେ ଏମାନଙ୍କ ସହିତ ଢଉଣାଳିଆ ଓ ରଙ୍ଗତା ନାମରେ ଆଉ ଦୁଇଗୋଟି ନିଯୋଗ ଗଠିତ ହୋଇଥିଲା । ସେମାନେ ଯଥାକ୍ରମେ ଢଉଣାଳଦ୍ୱାରା ଅରଣ୍ଡି, ଝରା, କନକମୁଣ୍ଡାଇ ରଙ୍ଗ କରୁଥିଲେ ଓ ରାହୁମୁଣ୍ଡ, ହଂସ ଏବଂ ନବଗୁଞ୍ଜର ସଜାଉଥିଲେ । ଶ୍ରୀନାଥଙ୍କ ରଥଯାତ୍ରାକୁ ସମ୍ପୂର୍ଣ୍ଣ ଶୃଙ୍ଖଳିତ ଓ ସୁନିୟନ୍ତ୍ରିତ କରିବା ନିମିତ୍ତ ଗଜପତି ଅନଙ୍ଗଭୀମ ଦେବ ଯେଉଁ ଛତିଶା ନିଯୋଗ ଖଞ୍ଜିଥିଲେ; ସେମାନେ ହେଲେ - ୧.ରଥକାର ନାୟକ, ୨.ତଳବଢ଼େଇ, ୩.ଭାଇବଢ଼େଇ, ୪.ରୂପ ଖଣ୍ଡାବଢ଼େଇ, ୫.ମୁଣ୍ଡିମରା ମହାରଣା, ୬.ଚାମରା, ୭.କରତିଆ, ୮.ଗରଗଡ଼ିଆ, ୯.ଦିହୁଡ଼ିଆ, ୧୦.ପିଣ୍ଡିକିଆ, ୧୧.କଉଣାଳିଆ, ୧୨.ଖୁଣ୍ଟିଆ, ୧୩.ପହଣ୍ଡିଆ, ୧୪.ଦୋଳିଆ, ୧୫.କଡ଼ିଆ, ୧୬.ବଢ଼କାଠିଆ, ୧୭.ରଥ ଜଗିଆ, ୧୮.ରଥ ଘଣ୍ଟୁଆ, ୧୯.ରଥ ମୁଦୁଲି, ୨୦.ରଥ କଳସା, ୨୧.ରଥ

ଝୋଲା, ୨୨.ଋଣ ବଳାର, ୨୩.ରଥଭୋଇ, ୨୪.ରଥ ପାଇକ, ୨୫.ଚୋପଦାର, ୨୬.ଚିତ୍ରକାର, ୨୭.ଧ୍ୱଜକାର, ୨୮, ଛତ୍ରକାର, ୨୯.ଚକାଅପସର ଯୋଗାଣିଆ, ୩୦.ଦରଜୀ, ୩୧.ସୁତଲୀ, ୩୨.କମାର ଭଣ୍ଡା, ୩୩.ଦଉଡ଼ି ବଳା, ୩୪.ବାପଦକାର, ୩୫.ଚରଠାକୁ, ୩୬.ଢ଼ାହୁକ ।

ରଥ ନିର୍ମାଣ ତଥା ରଥଯାତ୍ରାନୁଷ୍ଠାନ ନିମିତ୍ତ ଗଜପତି ଅନଙ୍ଗଭୀମ ଦେବଙ୍କ ଆଲୋଚ୍ୟ ସେବାୟତ ନିଯୁକ୍ତି ଏକ ଅର୍ବାଚୀନ ବ୍ୟବସ୍ଥା ହେଲେହେଁ ଏହା ଯେ ସର୍ବପ୍ରଥମ ବିଧିବଦ୍ଧ ବ୍ୟବସ୍ଥା ତାହା ଅନସ୍ୱୀକାର୍ଯ୍ୟ । ବର୍ତ୍ତମାନ ଆବଶ୍ୟକତାବୋଧରୁ ଉକ୍ତ ଛତିଶା ନିଯୋଗ ସତ୍ତାଶ ନିଯୋଗରେ ଅର୍ଥାତ୍ ଷାଠିଏରୁ ଊର୍ଦ୍ଧ୍ୱବିଭାଗରେ ପରିଣତ ହୋଇ ରଥଯାତ୍ରାର ସୁପରିଚାଳନା କରାଯାଉଛି । ନିମ୍ନରେ ସେହି ସେବାୟତମାନଙ୍କର ସଂକ୍ଷିପ୍ତ ବିବରଣୀ ପ୍ରଦତ୍ତ ହେଲା ।

୧.ଅବିରଦୋଳା ନାୟକ-ଫାଲଗୁନ ପୂର୍ଣ୍ଣିମା ପରବର୍ତ୍ତୀ ପଞ୍ଚଦୋଳ ମଧ୍ୟବର୍ତ୍ତୀ ଦ୍ୱିତୀୟା ତିଥିରେ ଦଶପଲ୍ଲା ରାଜବାଟିକୁ ଦୋଳ ଅବିର ନେଇ ଯାଆନ୍ତି ।

୨. କାଠକଟା ପାଇକ-ପୁରୀ ରାଜଦରବାରରୁ କାଠ ଯୋଗାଣ ନିମିତ୍ତ ହୁକୁମନାମା ନେଇ ଦଶପଲ୍ଲା ଯାଆନ୍ତି ।

୩. ବର୍ଚ୍ଛେଇତ ପାଇକ-ଶ୍ରୀଜଗନ୍ନାଥଙ୍କ ଧ୍ୱଜା, ଧଣ୍ଡାମାଳ ଓ ମହାପ୍ରସାଦ ନେଇ ଦଶପଲ୍ଲା ଓ ରଣପୁର ଅରଣ୍ୟ ନାୟକଙ୍କୁ କାଠକାଟିବା ପାଇଁ ନିମନ୍ତ୍ରଣ ଦିଅନ୍ତି ।

୪.କଟାଳି ନାୟକ-ଉପଯୁକ୍ତ ଶୁଭଦିନ ଦେଖି ଅରଣ୍ୟରୁ କାଠ କାଟନ୍ତି ।

୫-ପଟାଳିକେକା-ଶ୍ରୀଜୀଉଙ୍କ ମହାପ୍ରସାଦ, ଖଣ୍ଡୁଆ, ପତାକା ନେଇ ପୂର୍ବରୁ କାଠକଟା ସ୍ଥାନକୁ ଯାଇଥାନ୍ତି ।

୬. ଭେଳାବନ୍ଧାଇ-ଶୁଭ ମୁହୂର୍ତ୍ତରେ କାଠଗୁଡ଼ିକ ସଂଯୋଗପୂର୍ବକ ଭେଳା ବାନ୍ଧନ୍ତି ।

୭.ପଟାଳିବନ୍ଧାଇ -ଶ୍ରୀଜଗନ୍ନାଥଙ୍କ ପତାକା ଦେଇ ନଈରେ ପଟାଳି ଛାଡ଼ନ୍ତି ।

୮.ପଟାଳି ପଣ୍ଡୁଆ-ପଟାଳି ଉପରେ ବିଜେ ପଣ୍ଡା ବଳାଇ ନଦୀ ପଥରେ ଆସନ୍ତି ।

୯.କାଠ ଗଣତିଆ-କାଠପୋଲ ନିକଟସ୍ଥ ହୁଡ଼ହୁଡ଼ିଆ ଘାଟରେ ପଟାଳି ଲାଗିଲେ ଗଣତିକରି କୂଳରେ କାଠ ସଜାଡ଼ ରଖନ୍ତି ।

୧୦.ପଟାଳି ଜଗିଆ-କାଠ ଗଣି ଲୋକାଦଣ୍ଡାରେ ବାନ୍ଧନ୍ତି ଓ ନଈରେ ଭାସି ନଯିବା ପାଇଁ ଘାଟରେ ଜଗି ରହନ୍ତି ।

୧୧. ମଠ ଶଗଡ଼ିଆ-୨୦ ହାତ ଉର୍ଦ୍ଧ୍ୱ ଦଉଡ଼ି ଖେୟା ପାଇବା ଆଶାରେ ବଡ଼ ମଠ, ଏମାର ମଠ, ରାଘବଦାସ ମଠ ଓ ଓଡ଼ିଆ ମଠ : ଶଗଡ଼ିଆ ପଠାଇ ହୁଡ଼ହୁଡ଼ିଆ କୂଳରୁ ମହାଖଳାକୁ କାଠ ବୋହି ଆଣନ୍ତି ।

୧୨-ପାଣିଆ ଗଜନାୟକ-ଆବଶ୍ୟକ ହେଲେ ହାତୀ ଶୁଣ୍ଢରେ ନଦୀରୁ କାଠ ଉଠାଇ କୂଳରେ ରଖନ୍ତି । ସମ୍ପ୍ରତି କାଠ ଟ୍ରକରେ ଆସୁଥିବାରୁ ହାତୀ କାଠ ଉଠାଇବା ଦରକାର ପଡୁନାହିଁ ।

୧୩.ଛାମୁଣ୍ଡିଆ ସୁଆଁରିଆ-ରଥ ନିର୍ମାଣସ୍ଥାନ ମହାଖଳାରେ ଛାମୁଣ୍ଡିଆ କରନ୍ତି ।

୧୪. ମହାଖଳା ପାଇକ-ମହାଖଳାରେ ନିର୍ମିତ ରଥ ରକ୍ଷା ଜଗନ୍ତି ।

୧୫. ମହାଖଳା ଅମିନ-ରଥକାରଙ୍କ କାମ ତଦାରଖ କରିଥାନ୍ତି ।

୧୬.ମହାଖଳା ନାୟକ- ଯେଉଁ ଅଭିଜ୍ଞ ମହାରଣାମାନେ ରଥକୁ ହଳଚିହ୍ନ ଓ ପଦ୍ମଚିହ୍ନ ଦେଇ ବାଡ଼ ଅନୁସାରେ କାଠକୁ ପୃଥକ ପୃଥକ ସଜେଇ ରଖନ୍ତି ।

୧୭.ମହାଖଳା ପରିଛା-ଶାସ୍ତ୍ରାନୁସାରେ ରଥର ବିଭିନ୍ନ ଅଙ୍ଗ ପାଇଁ କାଠ ନିର୍ବାଚନ କରନ୍ତି ।

୧୮.ମହାଖଳା ଦୁହୁଡ଼ିଆ -ମହାଖଳାରେ ଦିହୁଡ଼ି ଜାଳନ୍ତି ।

୧୯.ଅନୁକୂଳ ମହାରଣା ୩ ଜଣ-ଏମାନେ ଅକ୍ଷୟତୃତୀୟାଠାରୁ ତିନିଖଣ୍ଡକାଠ ମହାଖଳାରେ ରଖି ହୋମପରେ ରଥ ଅନୁକୂଳ କାର୍ଯ୍ୟରେ ବ୍ୟବହାର କରନ୍ତି ।

୨୦. ବାଡ଼ ବଢ଼େଇ ୩ ଜଣ-ଏମାନେ ତିନିରଥ ପାଇଁ କାଠକୁ ଚିହ୍ନ କରି ପୃଥକ୍‌ଭାବେ ସଜାଡ଼ି ରଖନ୍ତି ।

୨୧.ପାହିମହାରଣା-ଏମାନେ ବାଡ଼ ଅନୁସାରେ କାମ କରିବାକୁ ନଦାକୁ ନଦା କାଠ ଖଞ୍ଜି ରଖନ୍ତି ।

୨୨.ଭୋଇମହାରଣା-ଏମାନେ ପୁରୀ ନିକଟବର୍ତ୍ତୀ ଗ୍ରାମରୁ ଆସି ସାମାନ୍ୟ ପାରିଶ୍ରମିକ ବଦଳରେ ଓ ସାମାନ୍ୟ ଖାଉଟି ଦ୍ରବ୍ୟ ନେଇ ରଥନିର୍ମାଣ କାର୍ଯ୍ୟରେ ଆବଶ୍ୟକ ସହାୟତା କରିଥାନ୍ତି ।

୨୩. ଚୂନକଟା ମହାରଣା- ଏମାନେ ଚୂନ ଘର୍ଷଣରେ ରଥରେ ଫିଟାଉଥାନ୍ତି ।

୨୪. କରତିଆ ନାୟକ-ପୂର୍ବରୁ କରତି ସାହି ଥିଲା । ଏମାନେ ହାତକରତରେ ରଥକାଠ ଓ ପଟା ଚିରିଥାନ୍ତି । ମାତ୍ର ଏବେ କରତ କଳରେ କାଠ ସହଜରେ ଚିରାଯାଇ ବ୍ୟବହୃତ ହେଉଛି ।

୨୫-ଓଲମ ଭେଣ୍ଡିଆ-ରଥ ନିଯୁକ୍ତ କାଞ୍ଚମାନ ପ୍ରସ୍ତୁତ କରନ୍ତି ।

୨୬- ନାହାକା ବସାଣ-ଯେଉଁ ଅଭିଜ୍ଞ ବଢ଼େଇମାନେ ରଥର ଖୁଣ୍ଟମାନଙ୍କୁ ନିର୍ମାଣ କରି ରଥରେ ସଂଯୋଜିତ କରନ୍ତି ।

୨୭. ରଥଭୋଇ ନାୟକ-ଏମାନେ ଜାତିରେ ଭୋଇ । ଏମାନେ ଭାବେ ରଥକାଠମାନ ବଢ଼େଇମାନଙ୍କୁ ଯୋଗାଇ ରଥ ଗଠନରେ ସାହାଯ୍ୟ ହୋଇଥାନ୍ତି ।

୨୮. ବାଡ଼ଭୋଇ-ପ୍ରତିବାଡ଼ରେ କାର୍ଯ୍ୟ ନିର୍ବାହ କରୁଥିବା ସଂଖ୍ୟକ ଭୋଇ ।

୨୯. ଭେଜାକାଠିଆ-ଯେଉଁ ଭୋଇ ଯୁବକମାନେ ରଥ ଆବଶ୍ୟକତାନୁସାରେ ରଥକାଠଗୁଡ଼ିକୁ ଭେଜ ଲଗାଇ ...

୩୦. ଯନ୍ତ୍ରଭେଣ୍ଡିଆ-ଚକ ଖଞ୍ଜାଯାଇଥିବା ଯନ୍ତ୍ରରେ ଯେଉଁମାନେ ଭୋଇ କାମ କରନ୍ତି ।

୩୧. ସାଙ୍ଗୀ ନାୟକ-ଦୁଇଜଣ ଲେଖାଏଁ ଲୋକ ... ଓଜନିଆ ବସ୍ତୁକୁ ଦଉଡ଼ିବାନ୍ଧି ବାଉଁଶ ସାହାଯ୍ୟରେ କାନ୍ଧରେ ... ଅନ୍ୟସ୍ଥାନକୁ ବୋହି ନିଅନ୍ତି, ସେମାନଙ୍କୁ ସାଙ୍ଗୀ କୁହାଯାଏ । ଏମାନେ ସାଙ୍ଗୀରେ କାଠ, ଚୂନ, ଚକ ଇତ୍ୟାଦି ବୋହିଥାନ୍ତି ।

୩୨. ଯନ୍ତ୍ରାବସାଳି ପାହିଭୋଇ-ଯନ୍ତ୍ର ଚୋରାମୁଣ୍ଡିଆରେ ... ଛେଳିବା ଏମାନଙ୍କ କାମ । ଯନ୍ତ୍ରାଗ ଅର୍ଥ ଯେଉଁ ... କରନ୍ତି ...

କ୍ରମଶଃ

୩୩. ମାଲସୁଆଁସିଆ-୪ଜଣ ବଳବାନ ଭୋଇ ମାଲ (ରଥ ଅଧ୍ୟକ୍ଷ) ବୋହି ଠିକ୍ ସ୍ଥାନରେ ରଖନ୍ତି ।

୩୪. କୋଠସୁଆଁସିଆ-ଏମାନେ ସବୁପ୍ରକାର ଅସ୍ଥାୟୀଶାଳା, ଦୁଆରମୁଣ୍ଡିଆ, ଚାରମାଳ ଓ ରଥଖଳାରେ ଛାମୁଣ୍ଡିଆ ବାନ୍ଧନ୍ତି । ରଥ ଓ ଚାନ୍ଦୁଆ ଧୋଇବା ମଧ୍ୟ ଏମାନଙ୍କର କାର୍ଯ୍ୟ ପରିସରଭୁକ୍ତ ।

୩୫. କମାରକଣ୍ଟା ଓଝାନାୟକ-ଲୁହାକଣ୍ଟା, ଚକାବଳା, ଗୋଳମୁଣ୍ଡାଖୁରୁଣ୍ଡିଆ ପ୍ରଭୃତି ମହାଖଳାର ଅସ୍ଥାୟୀ ଶାଳରେ ତିଆରି କରି ରଥକାମ ପାଇଁ ଯୋଗାଇଥାନ୍ତି ।

୩୬. କୋରାମୁଣ୍ଡିଆ-ଏମାନେ କାଠକୋରାମୁଣ୍ଡିଆ ପ୍ରୟୋଗକରି ରଥର ଚକ ଓ ଅନ୍ୟାନ୍ୟ ଅଙ୍ଗ ଉପାଙ୍ଗକୁ ସଜାଡ଼ନ୍ତି ।

୩୭. ରୂପକାର ନିଯୋଗ-ଏମାନେ ରଥ ସଂଯୋଜିତ ବିଭିନ୍ନ ମୂର୍ତ୍ତି, ଘୋଡ଼ା, ଶୁଆ ଓ ରଥପାଳ ପ୍ରଭୃତି ରୂପ ଖୋଦନ କରନ୍ତି ।

୩୮. ରୂପକାର ବଢ଼େଇ-ଏମାନେ ଅଷ୍ଟସଖୀଙ୍କୁ ଜାଲି ଉପରେ ଖଞ୍ଜନ୍ତି ।

୩୯. ଚିତ୍ରକାର-ଏମାନେ ରଥର ବିଭିନ୍ନ ଅଂଶ ଚିତ୍ର କରନ୍ତି ।

୪୦. ଦରଜୀନିଯୋଗ ନାୟକ-ରଥର ମଣ୍ଡଣି, ଚାନ୍ଦୁଆ, ଘେର, ଧ୍ୱଜ ଆଦି ତିଆରି କରନ୍ତି ।

୪୧. ମଣ୍ଡଣି-ଏମାନେ ରଥରେ ବିଭିନ୍ନ ଆଳଙ୍କାରିକ ସାଜସଜ୍ଜା ଆଦି କରିଥାନ୍ତି ।

୪୨. ଚଉଶାଳିଆ-ଏମାନେ କାଠି, ଅଗ, ଫରୁଆରେ ଚଉଶାଳ ତିଆରି କରିଥାନ୍ତି ।

୪୩. ଦଉମହାପାତ୍ର-ଏହି ଚିତ୍ରକରମାନେ ମହାପ୍ରଭୁଙ୍କ ଅଙ୍ଗସେବାର ଅଧିକାରୀ ।

୪୪. ରଙ୍ଗତା ନାୟକ-ଜରି, ଜମ୍ବୁରା ସାହାଯ୍ୟରେ ରଥମଣ୍ଡନ କରନ୍ତି ।

୪୫. ଚକାଆଣ୍ଟିଆ-ଏମାନେ ରଣି ପଟାରୁ ପାରାଭାଡ଼ି ପର୍ଯ୍ୟନ୍ତ ବନ୍ଧନ ଛେକନ୍ତି ।

୪୬. ଶୁଦ୍ଧ ସୁଆର ନାୟକ-ଏମାନେ ଖଳି, ଖଡ଼ି, ଲେପ ସଂସ୍କାରାଦି କର୍ମର ସମ୍ପାଦିତ ସେବକ ।

୪୭. ଦଉଡ଼ିବଳା ପାତ୍ର-ଏମାନେ ରଥ ଦଉଡ଼ି ବଳି ଯୋଗାଇଥାନ୍ତି ।

୪୮. ପାଟଡ଼ୋରି ନାୟକ- ଏମାନେ ଆହୁଣିଆ ଲାଗି ପାଟଡ଼ୋରି ଆଦି ଯୋଗାଇଥାନ୍ତି ।

୪୯. ରୁନ୍ଧାଫିଟା ବେଦନାୟକ-ଏମାନେ ରୁନ୍ଧାଫିଟା ପୂର୍ଣ୍ଣକୁମ୍ଭ ସ୍ଥାପନ କାର୍ଯ୍ୟ କରନ୍ତି ।

୫୦-ଅହୁଣିଆ ମହାରଣା ନାୟକ-ଏମାନେ ସେନାପଟା, ବାହୁଟ ଯୋଗାନ୍ତି ।

୫୧. ଖମରା ନାୟକ-ଡୋରରେ ବାହୁଟ ପଟାକୁ ସଂଯୋଗ କରନ୍ତି ।

୫୨. ବକୁଳବନ ପାହିମହାରଣା-ସାକ୍ଷୀଗୋପାଳ ବକୁଳବନରୁ ବାହୁଟ କାଠ କାଟି ଯୋଗାନ୍ତି ।

୫୩. ଘୋଷ ଘଣ୍ଟୁଆ-ସ୍ୱରା ନଗର ଘଣ୍ଟୁଆ ଓ ଘଣ୍ଟିମୁଣ୍ଡା ଘଣ୍ଟୁଆ ରଥରେ ଘଣ୍ଟ ବଜାନ୍ତି ।

୫୪-ଡ଼ାହୁକ-ଖଣ୍ଡିଆରଣ ବେରବୋଇ ଗ୍ରାମର ଏହି ସେବକ ରଥରେ ଗୀତ ବୋଲନ୍ତି ।

୫୫. ତେଲଦିଆକମାଣି- ଏମାନେ ଚକରେ ଶୁଦ୍ଧ ରାଶିତେଲ ଦେଇ ରଥ ଠିକ ଗଡ଼ିବା ବ୍ୟବସ୍ଥା କରନ୍ତି ।

୫୬. କଳାବେଠିଆ-ଅନ୍ଧାରି, ବୃନ୍ଦଗିରି ଓ କାଳିକାବାଡ଼ି ଗ୍ରାମର ଏହି ଅଧିବାସୀଗଣ ରଥ ଭିଡ଼ିବା, ରଥ ଦକ୍ଷିଣ ମୋଡ଼କରିବା କାର୍ଯ୍ୟ ନିର୍ବାହ କରନ୍ତି ।

୫୭ ଖରକା-ସେବାସ୍ଥଳ ବହିର୍ଦେଶ ଓ ରଥଦାଣ୍ଡ ପରିଷ୍କାର କରନ୍ତି ।

୫୮. ଆଦ୍ୟନ୍ତ ଡଗିଆ-ଏମାନେ ରଥ ଚାଲିଲା ସମୟରେ ରଥର କୌଣସି ଅଙ୍ଗବିଶେଷ ଭାଙ୍ଗିଗଲେ ସଙ୍ଗେ ସଙ୍ଗେ ମରାମତି କରିଥାନ୍ତି ।

୫୯. ଖୁରୁପିଆ-ରଥ କୌଣସିଠାରେ ଅଟକ୍ ପଡ଼ିଲେ ମାଟିକାଢ଼ି ଚକକୁ ଠିକ୍ ବାଟରେ ପକାନ୍ତି ।

୬୦. ମହଣ ପାଗିଆ ନାୟକ-ଏମାନେ କନକମୁଣ୍ଡାର ଉପରେ ପାଣି ନଗଳିବା ପାଇଁ ନାଲି କନାରେ ମହମ ଝୁଣା ଗିଲାପ ଦେଇ ବର୍ଷା ନିବାରକ ବ୍ୟବସ୍ଥା କରନ୍ତି ।

ଏତଦ୍‌ବ୍ୟତୀତ ପ୍ରୋକ୍ତ ତାଲିକା ବହିର୍ଭୂତ ରଥସେବା ସମ୍ପର୍କିତ କେତେକ ତଥ୍ୟ ନିମ୍ନରେ ପ୍ରଦତ୍ତ ହେଲା ।

(କ) ଗଜପତି ମହାରାଜା : ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ପ୍ରଥମ ତଥା ପ୍ରଧାନ ସେବକ । ଗଜପତିଙ୍କର ରଥଯାତ୍ରାରେ କେତେକ ନିର୍ଦ୍ଦିଷ୍ଟ ଭୂମିକା ରହିଛି । ଗଜପତିମହାରାଜା ଗୁଣ୍ଡିଚା ଓ ବାହୁଡ଼ା ରଥଯାତ୍ରା ଅବ୍ୟବହିତ ପୂର୍ବରୁ ତିନିରଥରେ ସମାର୍ଜନ କ୍ରିୟା (ଛେରା ପହଁରା) କରିଥାନ୍ତି । ଶ୍ରୀଜୀଉମାନେ ବାହୁଡ଼ାଦିନ ଗୁଣ୍ଡିଚା ମଣ୍ଡପରୁ ପ୍ରତ୍ୟାବର୍ତ୍ତନ କରି ରାଜନଅର ସମ୍ମୁଖରେ ପହଞ୍ଚିଲା ପରେ 'ଲକ୍ଷ୍ମୀ ନାରାୟଣ ଭେଟ' କରାଇବା ଗଜପତିଙ୍କର ଏକ ଅପରିହାର୍ଯ୍ୟ ସେବା ଅଟେ । ଗଜପତି ମହାରାଜା ଉତ୍ତରାଧିକାରୀ ସୂତ୍ରରେ ଆନ୍ତରିକତାର ସହିତ ଏହି ସବୁ ସେବା ନିର୍ବାହ କରିଥାନ୍ତି ।

(ଖ) ବିଶ୍ୱାବସୁ କୁଳନାୟକ : ଏମାନେ ଶ୍ରୀଅଙ୍ଗ ରକ୍ଷାକାରୀ ଆଦିସେବକଭାବେ ପରିଚିତ । ଲେପ ସଂସ୍କାରକର୍ମର ପବିତ୍ର ଦଇତ ଭାବର ସେବକ ଦଇତାମାନେ, ସେମାନଙ୍କର ଏକୋଇଶିଆଠାରୁ ଶ୍ରୀଜଗନ୍ନାଥଙ୍କର ଦଇତା ହେବାର ଯୋଗ୍ୟତା ଲାଭ କରିଥାନ୍ତି । ବିଶ୍ୱାବସୁ ବଂଶଧରରୂପେ ପୁରୀରେ ଅବସ୍ଥାନ କରୁଥିବା ୨୦ ଘରୁ ପ୍ରାୟ ୧୦୮ ଜଣ ଦଇତା ଶ୍ରୀଜଗନ୍ନାଥଙ୍କ ସେବା କରିଥାନ୍ତି । ସ୍ନାନ ପୂର୍ଣ୍ଣିମାରେ ଶ୍ରୀଜୀଉମାନେ ରତ୍ନ ସିଂହାସନ ପରିତ୍ୟାଗ କରିବାଠାରୁ ବାହୁଡ଼ାଯାତ୍ରା ପରେ ପୁନର୍ବାର ଶ୍ରୀମନ୍ଦିର ପ୍ରତ୍ୟାବର୍ତ୍ତନ ପର୍ଯ୍ୟନ୍ତ ମହାପ୍ରଭୁମାନେ ଦଇତାମାନଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରହନ୍ତି । ରଥଯାତ୍ରା ସମୟରେ ଏମାନେ ପ୍ରଥମେ ମଙ୍ଗଳା ରୋପଣ ସାମଗ୍ରୀ ପଣ୍ଡା, ମୁଦିରସ୍ତ ଓ ପତି ମହାପାତ୍ରଙ୍କୁ ଯୋଗାଇ ଦେଇଥାନ୍ତି । ଦଇତାମାନେ ଅନ୍ୟ ସେବାୟତଙ୍କ ସହଯୋଗରେ ମହାପ୍ରଭୁମାନଙ୍କୁ ପହଣ୍ଡି ବିଜେ କରାଇ ରଥାସୀନ କରିଥାନ୍ତି । ଛେରାପହଁରା ସମୟରେ ସେମାନେ ଗଜପତିଙ୍କୁ ରଥକୁ ପାଛୋଟି ନେଇଥାନ୍ତି । ଏମାନେ ସାଧାରଣତଃ ରଥୋପରି ଶ୍ରୀଜୀଉମାନଙ୍କୁ ଚିତାଲାଗି କରାଇଥାନ୍ତି ।

(ଗ) ବିଦ୍ୟାପତି ବଂଶଧର : ଶ୍ରୀଜଗନ୍ନାଥଙ୍କ ଦୈନିକ ସେବାନୀତିରେ ପତିମହାପାତ୍ରମାନଙ୍କର ଛୋଟବଡ଼ ଅନେକ ପ୍ରକାର ସେବା ରହିଛି ।

ଅଣସର ସମୟରେ ସେମାନଙ୍କର କେତେକ ନିର୍ଦ୍ଦିଷ୍ଟ ଭୂମିକାକୁ ଆଦୌ ଅସ୍ୱୀକାର କରିହେବ ନାହିଁ । ମାତ୍ର ମହାପାତ୍ରମାନେ ରଥକୁ ଗଲାବେଳେ ଓ ରଥରୁ ଆସିବା ସମୟରେ ଆବଶ୍ୟକ ବନ୍ଦାପନା ପତିମହାପାତ୍ରମାନେ କରିଥାନ୍ତି । ରଥ ଉପରେ ଶ୍ରୀଜୀଉମାନେ ଯେତେଦିନ ରହିବେ, ସେତେଦିନ ପର୍ଯ୍ୟନ୍ତ ପହୁଡ଼ ଆଳଟି କରିବା ଦାୟିତ୍ୱ ଏହି ବିଦ୍ୟାପତି ବଂଶଧର ପତିମହାପାତ୍ରଙ୍କର । ସେମାନେ ମଧ୍ୟ ଶ୍ରୀଜଗନ୍ନାଥଙ୍କୁ ଦହିପଟିଲାଗି ଓ ବନ୍ଦାପନା କରିଥାନ୍ତି ।

(ଘ) ବିଶ୍ୱକର୍ମା - ବ୍ରହ୍ମା ପ୍ରଦତ୍ତ ବର ଅନୁଯାୟୀ ସତ୍ୟଯୁଗୀୟ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ସମସାମୟିକ ବୃଦ୍ଧ ବଢ଼େଇର ବଂଶଧର ମାନେ, ନବକଳେବର ସମୟରେ ଦାରୁ ଅନ୍ୱେଷଣ ତଥା ଶ୍ରୀବିଗ୍ରହ ନିର୍ମାଣ ବ୍ୟତୀତ ପ୍ରତିବର୍ଷ ରଥ ନିର୍ମାଣର ସାମଗ୍ରିକ କାଠକାମ ସେମାନଙ୍କର ସେବା ପରିସରଭୁକ୍ତ ଅଟେ । ଏକଦା ଛଅଗୋଟି ରଥ ନିର୍ମାଣରେ ୩୬୭ ଜଣ ବଢ଼େଇ ମହାରଣା ରଥ ଗଠନ ନିମିତ୍ତ ନିଯୁକ୍ତି ପାଉଥିଲେ । ମାତ୍ର ବର୍ତ୍ତମାନ ତିନିରଥ ନିର୍ମାଣ ପାଇଁ ଶତାଧିକ ମହାରଣା କାର୍ଯ୍ୟ ନିର୍ବାହ କରୁଛନ୍ତି । ଏମାନଙ୍କ ମଧ୍ୟରୁ ପୁରୀରେ ଅବସ୍ଥାନ କରୁଥିବା ଦଶଗୋଟି ମହାରଣା ବା ବିଶ୍ୱକର୍ମା ପରିବାର ଶ୍ରୀଜଗନ୍ନାଥଙ୍କ ଶାଢ଼ୀବନ୍ଧା ସେବକ ଅଟନ୍ତି । ସେମାନେ ୪ ଶ୍ରେଣୀରେ ବିଭକ୍ତ ଯଥା-(୧) ତଡ଼ାଉଖି ଅମୀନ ମହାରଣା :ମହାରଥକାର ହିସାବରେ ସେ ରଥ ନିର୍ମାଣର ମୁଖ୍ୟ ନିର୍ଦ୍ଦେଶକ । ତାଙ୍କର ତତ୍ତ୍ୱାବଧାନରେ ରଥପାଇଁ ନିଯୁକ୍ତ ୧୬୫ ଜଣ ପାହିମହାରଣା, ୬ଜଣ କରତିଆ, ୬ଜଣ କମାରକଣ୍ଟା ନାୟକ ଓ ୬୬ ଜଣ ଭୋଇ ସେବକ କାର୍ଯ୍ୟ କରନ୍ତି । (୨) ତିନିରଥ ପାଇଁ ତିନିଜଣ 'ପୁତାର ମହାରଣା' : ଏମାନେ ରଥ ନିର୍ମାଣର ସହକାରୀ (୩) ତିନିରଥ ପାଇଁ ତିନିଜଣ 'ବାଡ଼ ମହାରଣା' : ଏମାନେ ରଥ ନିର୍ମାଣର ଉପନିର୍ଦ୍ଦେଶକ ଭାବରେ ବାଡ଼ ଅନୁସାରେ ଚକ୍ର, ହଳ, ପଦ୍ମ ଚିହ୍ନ ଦେଇ ଆବଶ୍ୟକ କାଠ ଗଣତି କରି ସଜାଡ଼ି ରଖନ୍ତି ।

(୪) ତିନିରଥ ପାଇଁ ତିନିଜଣ 'ତଳି ମହାରଣା' : ଏମାନେ ରଥ ନିର୍ମାଣର ଅନୁନିର୍ଦ୍ଦେଶକଭାବେ ପ୍ରାୟ ସବୁକାର୍ଯ୍ୟ କରିଥାନ୍ତି ।

ଉପର୍ଯ୍ୟୁକ୍ତ ଦଶଜଣ ଶାଢ଼ୀବନ୍ଧା ମହାରଣାଙ୍କ ପରିବାରରୁ କେହି ମରିଗଲେ, ଏମାନେ ମହାପ୍ରଭୁଙ୍କ ଅଙ୍ଗେଇରୁ ବମ୍ପା(ନିଆଁ) ନେଇ ଶବ ସତ୍କାର କରିଥାନ୍ତି । ତେଣୁ ଏମାନେ ଠାକୁରଙ୍କ ସେବା କରିବାକୁ ଭାଗ୍ୟବାନ ମନେ କରନ୍ତି । ଏମାନେ ଖେଇ ଆକାରରେ ଝଡ଼େଇନେଦା ଓ ମାଣ୍ଡୁଅ ପାଇବା ସଙ୍ଗେ ସଙ୍ଗେ ରଥ ନିର୍ମାଣ ସମୟରେ ଦୈନିକ ନିର୍ଦ୍ଧାରିତ ପାରିଶ୍ରମିକ ପାଉଥାନ୍ତି । ରଥଯାତ୍ରା ପରେ ଏମାନେ ରଥରୁ କେତେକ ଦାମୀ କାଠ ମଧ୍ୟ ପ୍ରାପ୍ୟ ସ୍ୱରୂପ ପାଉଥାନ୍ତି । ମନ୍ଦିର ପ୍ରଶାସନ ତରଫରୁ ରଥ ଗଠନ ନିମିତ୍ତ ଏମାନଙ୍କୁ ନୂତନ ହତିଆର ଯୋଗାଯାଏ । ଏମାନଙ୍କ ବ୍ୟତୀତ ଅନ୍ୟ ଶତାଧିକ ପାହିମହାରଣା ପୁରୀ ନିକଟବର୍ତ୍ତୀ ଗ୍ରାମରୁ ଆସି ହୃଷ୍ଟ ମଜୁରୀ, ବଷ୍ଟିକାଠ ଓ ବାଟିଶିକାଠ ପ୍ରାପ୍ୟ ସ୍ୱରୂପ ପାଇ ରଥ ନିର୍ମାଣ ନିମିତ୍ତ ଶ୍ରମଦାନ କରିଥାନ୍ତି । (ଙ)କମାର କଣ୍ଟା ନାୟକ: ତିନିଜଣ କମାର ସେବାୟତ ରଥରେ ଆବଶ୍ୟକ କୁହାଳକଣ୍ଟା, ଚକାଚକା, ଦୋମୁଖୀ ଓ କୁରାଢ଼ିଆ ପ୍ରଭୃତି ମନ୍ଦିର ବେଢ଼ା ପାର୍ଶ୍ୱରେ ଥିବା ଅସ୍ଥାୟୀ ଶାଳରେ ପ୍ରସ୍ତୁତ କରି ଯୋଗାଇ ଥାନ୍ତି । ଓଝା ମହାରଣମାନେ ନବକଳେବର ସମୟରେ ଆବଶ୍ୟକ କୁରାଢ଼ି ମଧ୍ୟ ଯୋଗାଉଥାନ୍ତି ।

(ଚ) ଦରଜୀ ସର୍ଦ୍ଦାର : ଛତିଶା ନିଯୋଗରୁ ଏମାନେ ଗୋଟିଏ ନିଯୋ । ବର୍ତ୍ତମାନ ପୁରୀରେ ଅବସ୍ଥାନ କରୁଥିବା ୧୨ଟି ଦରଜୀ ପରିବା ମହାପ୍ରଭୁଙ୍କର ଆବଶ୍ୟକ ସେବା କରିବା ସହିତ ରଥ ମଣ୍ଡଣି କରିବ ଏମାନଙ୍କର ସ୍ୱତନ୍ତ୍ର ସେବା । ପୂର୍ବେ ମଖମଲ ଓ ରେଲରେ ରଥ ମଣ୍ଡଣି କରୁଥିଲେ । ବର୍ତ୍ତମାନ ରଥମଣ୍ଡଣି ନିମିତ୍ତ ୧୨୦୦ ମିଟ କନାରେ ରଥାବରଣ ସୀବନ କରିଥାନ୍ତି । କନକ ମୁଣ୍ଡଇ ପର୍ଯ୍ୟନ୍ତ ରଥଧ୍ୱଜା ତିଆରି କରି ଯୋଗାଉଥାନ୍ତି ।

(ଛ) ଚିତ୍ରକାର ଦତ୍ତ ଖଟଣି ନିଯୋଗ : ଛତିଶା ନିଯୋଗ ଅନ୍ତ ଏହି ଚିତ୍ରକାରମାନଙ୍କର ଅଣସର ଘରେ ଶ୍ରୀଜୀଉଙ୍କୁ ନବଯୌବନ ପ୍ର କରିବା ମୁଖ୍ୟ ସେବା ଅଟେ । ଏହା ବ୍ୟତୀତ ପ୍ରତିବର୍ଷ ରଥଯୋ ଏମାନଙ୍କର କେତେକ ନିର୍ଦ୍ଦିଷ୍ଟ ଭୂମିକା ରହିଛି । ରଥନିର୍ମାଣ କାର୍ଯ୍ୟ ହେଲେ ଚିତ୍ରକାର ନିଯୋଗ ରଥର ବିଭିନ୍ନ ଅଙ୍ଗରେ ଚିତ୍ରକଳା କରି ରଥକୁ ସୁଶୋଭିତ କରିଥାନ୍ତି । ଚିତ୍ରକାର ନିଯୋଗର ଆ ହିଙ୍ଗୁଳ, ହରିତାଳ, ଶଙ୍ଖ, ଖଡ଼େଇକଳା, ତୁତିଆ ଓ ନାଲଗ ସିଂହାସନ, ନାଟମଣ୍ଡପ, ଅରଖୁଣ୍ଟିକା ଓ ଚକା ପ୍ରଭୃତି ଚିତ୍ରିତ କରିଥା ଓ କୁମ୍ଭରେ ଯଥାକ୍ରମେ ଦ୍ୱାଦଶଦଳ ଓ ଅଷ୍ଟଦଳ ପଦ୍ମ, ଚ୍ଛାୟାରେ ଗୁଣିକା, ପରିଧିର ଦୁଇଗୋଟି ଧାର ମଧ୍ୟରେ ପାଣ୍ଡୁଆ ବେଢ଼ା ଚିତ୍ର । ମଧ୍ୟ ପରିଧିର ବଳୁରା ଧାରରେ ସପ୍ତରେଙ୍ଗୀ ଆକୃତି ଚିତ୍ରଣ ଏହି ସମସ୍ତମାନଙ୍କୁ ମେଘାଡ଼ମ୍ବର କୁହାଯାଏ । ଅ... ଠାର ଉ କୋଣଦେଶରେ ବିରାଳ ମୂର୍ତ୍ତି, କୋଣ ଚତୁଷ୍ଟୟରେ ଗରୁଡ଼ ଜହ୍ନମୋହ୍ନମାନଙ୍କରେ ସିଂହ ବିରାଳ ଚିତ୍ରକରାଯାଏ । ଏମାନେ ମୁଖରେ ପର୍ଣ୍ଣଧାରଣ କରିଥିବା ହଂସଶ୍ରେଣୀ ଚିତ୍ରଣ କରିଥାନ୍ତି । ପର୍ଣ୍ଣମାଳାଧାରୀ ହଂସମାଳିକା ରଥରେ ମଙ୍ଗଳ ଦାୟିକା ଅଟେ । ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ରଥରେ ଯଥାକ୍ରମେ ଜୟବିଜୟ ଓ ଗଙ୍ଗାଯମୁନା ନାମକ ରଥପାଳ ମୂର୍ତ୍ତି ଏମାନେ କରିଥାନ୍ତି । ସିଂହାସନ ଉପରେ କଳସ, ତାରନିମ୍ନରେ ରାହୁମୁଣ୍ଡରୁ ଲତାଯୁକ୍ତ ବାଙ୍କପଟି ଓ ଦୁଇପଟେ ଦୁଇଗୋଟି ମକରମୁ କରାଯାଏ । ଏହାରି ଉପରେ ଦାରୁବ୍ରହ୍ମ ଆଉଜି ବସନ୍ତି । ଦୁଇପଟେ ଯୋଡ଼ହସ୍ତରେ ଦଣ୍ଡାୟମାନ ରଥ ଉପାସକ ଚିତ୍ରିତ ହୋଇଥାଏ । ଶ୍ରୀଜଗନ୍ନାଥ ଓ ବଳଭଦ୍ରଙ୍କ ରଥରେ ଯଥାକ୍ରମେ ବ୍ରହ୍ମା-ବିଷ୍ଣୁ ଓ ଶିବ-ଚିତ୍ରିତ ହୋଇଥିବା ସ୍ଥଳେ ସୁଭଦ୍ରାଙ୍କ ରଥରେ ଆଳଟୋପ ଜୟାବିଜୟା ଅଙ୍କିତ ହୋଇଥାନ୍ତି । ପ୍ରତିରଥରେ ୮ଟି ଦ୍ୱାରଯୋ ମଧ୍ୟ ଅଙ୍କିତ ହୋଇଥାଏ । ତୋରଣର ଦୁଇପାର୍ଶ୍ୱରେ ଅପ୍ସରାମାନଙ୍କ ଚିତ୍ର, ଉଷିପଟାରେ ଯୋଡ଼ହସ୍ତ ଋଷିମାନଙ୍କର ଚିତ୍ର, କପୋତବିନ୍ଧ କପୋତବାହିନୀର ଚିତ୍ର, ବନ୍ଧନଦାଣ୍ଡିରେ ଊର୍ଦ୍ଧ୍ୱମୁଖୀ ଅଷ୍ଟଦଳ ଓ ଅଷ୍ଟଦଳ ଅଙ୍କନ କରାଯାଏ । ପ୍ରତିରଥର କଳସ ଦୁଇପଟେ ଓଲଟ ଶୁକଯୁଗଳଙ୍କୁ ଚିତ୍ରକାରମାନେ ଅଙ୍କନ କରିଥାନ୍ତି ।

(ଜ) ରୂପକାର - ରଥକୁ ଶୋଭନୀୟ କରିବା ନିମିତ୍ତ ଚିତ୍ର ଖୋଦନ କରିଥାନ୍ତି ଖଞାଯାଏ । ଏଗୁଡ଼ିକ ରୂପକାରମାନେ ସାଧାରଣତଃ ତିନିବାଡ଼ ନିମନ୍ତେ ରୂପକାର ଶାଢ଼ୀବନ୍ଧା ସେବକଭାବେ ନିଯୁକ୍ତ । ଏମାନେ ନବକଳେବର ସମୟରେ ସାରଥୀ, ଘୋଡ଼ା, ପାର୍ଶ୍ୱଦେବତା, ଶୁଆ ପ୍ରଭୃତି ନିର୍ମାଣ କରିଥାନ୍ତି, ଯାହାକି ପ୍ରତିବର୍ଷ ରଥଯାତ୍ରାବେଳେ ରଥରେ ଲାଗେ ।

କ୍ରମଶଃ

ଅବ୍ୟବହୃତ ହୁଏ । ମାତ୍ର ପ୍ରତିବର୍ଷ ନବ ନିର୍ମିତ ରଥର କାଟଗୋଡ଼, କଣଭୁଜ, ପାର୍ଶ୍ୱ ପ୍ରଭୃତିରେ ବିଭିନ୍ନ ରୂପକାରମାନେ ଖୋଦନ କରିଥାନ୍ତି । ଏମାନେ ତିନିରଥ ନିମନ୍ତେ ତିନିଗୋଟି ଧ୍ୱଜଦେବତା ମଧ ନିର୍ମାଣ କରିଥାନ୍ତି । ଶ୍ରୀଜଗନ୍ନାଥଙ୍କ ରଥପାଇଁ ମୁଖରେ ସର୍ପ ଧାରଣ କରିଥିବା ଉଡନ୍ତାଯ଼ମାନ ଗରୁଡ଼ଙ୍କ ରୂପ, ବଳଭଦ୍ରଙ୍କ ରଥପାଇଁ ସପଛନ୍ଦମୟ ଲାଙ୍ଗଳଧ୍ୱଜ ଓ ସୁଭଦ୍ରାଙ୍କ ରଥ ନିମିତ୍ତ ପଦ୍ମଧ୍ୱଜ ଏମାନେ ରକ୍ତ ଚନ୍ଦନ କାଠରେ ନିର୍ମାଣ କରନ୍ତି ।

(ଙ) ଚିତ୍ରକାରିଗର : ଏମାନେ ସେବାୟତ ସମ୍ପ୍ରଦାୟଭୁକ୍ତ ନୁହନ୍ତି । ସାମାନ୍ୟ ପାରିଶ୍ରମିକ ନେଇ ଏମାନେ ରାହୁମୁଣ୍ଡ, ଝରା ଓ ମଣ୍ଡଣୀ ଉପରେ ପତ୍ର ଓ ଫୁଲ ପ୍ରଭୃତି ତଳିରେ ତିଆରି କରି ସଂଯୋଗ କରିଥାନ୍ତି ।

(ଛ) ଚିତ୍ରଣୀ ସେବକ : ଠାକୁରଙ୍କ ପୁରୁଣା ଚିତାମାପରେ ଏମାନେ ନୂଆରେ ଚିତା ତିଆରି କରନ୍ତି । ମହାପ୍ରଭୁମାନେ ରଥାସୀନ ହେବାପରେ ଓ ଛେରାପହଁରା ପୂର୍ବରୁ ମନ୍ଦିରରୁ ଛତ୍ର କାହାଳୀ ପ୍ରଭୃତି ଶୋଭାଯାତ୍ରାରେ ଏମାନଙ୍କ ଆଣି ଠାକୁରଙ୍କଠାରେ ଲାଗି କରାଯାଇଥାଏ । ଏହାକୁ ଚିତ୍ରଲାଗି କୁହାଯାଏ ।

(ଜ) ଘଣ୍ଟୁଆ :-ମନ୍ଦିର ପ୍ରଶାସନ ତରଫରୁ ଯୋଗାଇ ଦିଆଯାଇଥିବା ଲୁଗାଓ ନୂଆ ଗାମୁଛା ପିନ୍ଧି ପହଣ୍ଡି ସମୟରେ ଓ ରଥଚାଲିବା ସମୟରେ ଘଣ୍ଟ ବଜାଇଥାନ୍ତି । ଠାକୁର ଚାରମାଳ ଉପରେ ରଥାରୋହଣ କରିବା ସମୟରେ ଏମାନେ ମଧ ଘଣ୍ଟ ବଜାନ୍ତି ।

(ଝ) ଡ଼ାହୁକ -'ହୋ' ଭଗତେ...' ବୋଲିରୁ ସମସ୍ତେ ଡ଼ାହୁକଙ୍କୁ ଚିହ୍ନିପାରନ୍ତି । ଏମାନେ ଖଣ୍ଡିଆବନ୍ଧ ବେରବୋଇ ଗ୍ରାମର ଅଧିବାସୀ । ପ୍ରତ୍ୟେକ ରଥରେ ୬ଜଣ ଡ଼ାହୁକ ଶ୍ରୀମନ୍ଦିର ପ୍ରଶାସନ ତରଫରୁ ପାରିଶ୍ରମିକ ନେଇ ସେବା କରି ଆସୁଛନ୍ତି । ଏମାନେ ବେକରେ ଫୁଲମାଳ ପକାଇ ବେତ ହଲାଇ ଅଶ୍ଳୀଳ ବୋଲି ମାଧ୍ୟମରେ ରଥ ଟାଣିବା ପାଇଁ ଜନତାଙ୍କରେ ଉନ୍ମାଦନା ଭରିଦେଇଥାନ୍ତି । ମାତ୍ର ପ୍ରଶାସନିକ କଟକଣା ଯୋଗୁଁ ୧୯୯୭ ରଥଯାତ୍ରାଠାରୁ ସେମାନେ ଆଉ ଅଶ୍ଳୀଳ ବୋଲି ପରିବେଷଣ କରୁନାହାନ୍ତି ।

(ଞ) ରଥଦଉଡ଼ି ବଳା : ରାଜଗୁରୁମଠ ତତ୍ତ୍ୱାବଧାନରେ ଷୋଳ ଶାସନର ବ୍ରାହ୍ମଣମାନେ ରଥଦଉଡ଼ି ବୋଲି ଯୋଗାଉଥିଲେ । ମାତ୍ର ବର୍ତ୍ତମାନ ତିନିରଥ ପାଇଁ ୨୫୦ ଫୁଟ ଲମ୍ବ ୮" ଗୋଲେଇ ବିଶିଷ୍ଟ ୧୨ଟି ନୂଆଦଉଡ଼ି କଲିକତାର ଏମ୍.ଏସ୍.ଢ଼େ କୋ. ପ୍ରସ୍ତୁତ କରି ପରିବର୍ତ୍ତିତ ତଥା ପରିବର୍ଦ୍ଧିତ ରୂପରେ ପ୍ରତିବର୍ଷ ଯୋଗାଇ ଆସୁଛନ୍ତି ।

(ଟ) ମଠ ସେବା : ପୁରୀରେ ଅବସ୍ଥିତ ଅନେକ ମଠ ମଧ୍ୟରୁ କେତେକ ନିର୍ଦ୍ଦିଷ୍ଟ ମଠର ରଥଯାତ୍ରା ଉପଲକ୍ଷେ କିଛିଟା ନିର୍ଦ୍ଧାରିତ ସେବା ରହିଛି । ବଡ଼ଓଡ଼ିଆମଠ କଳା ଆଣି ଘେର ଚାନ୍ଦୁଆ ପ୍ରସ୍ତୁତ କରି ଯୋଗାଇଥାନ୍ତି । ରାଘବଦାସମଠ ପହଣ୍ଡିଡ଼ୋରି , ଅଣସର ପଲତା ଓ ଘଣାଡ଼ୋରି ବୁଣି ଯୋଗାଇଥାନ୍ତି । ବଡ଼ମଠ, ଏମାରମଠ, ରାଘବ ଦାସ ମଠ ଓ ଓଡ଼ିଆମଠ ଗଡ଼ିଆ ପଠାଇ ମହାଖଳାକୁ ରଥକାଠ ବୋହିଆଣନ୍ତି । ସମ୍ପ୍ରତି ଟ୍ରକ ଯୋଗେ କାଠ ଆସୁଥିବାରୁ ମଠ ଗଡ଼ିଆମାନେ କେବଳ ବିଧି ନିର୍ବାହ କରୁଛନ୍ତି ।

(ଣ) ରଥ ଭୋଇ : ପ୍ରତିରଥ ପାଇଁ ତୁଇଜଣ ଲେଖାଏଁ ୬ଜଣ ଦାରୁବହା ଭୋଇ ଅଛନ୍ତି । ଏମାନଙ୍କ ବ୍ୟତୀତ ପ୍ରାୟ ୬୦ ଜଣ ଭୋଇ ପ୍ରତିବର୍ଷ ଆବଶ୍ୟକ ପାରିଶ୍ରମିକ ପାଇ ଅକ୍ଷୟ ତୃତୀୟାଠାରୁ ଶ୍ରୀଗୁଣ୍ଡିଚା ପର୍ଯ୍ୟନ୍ତ ରଥସେବା କରିଥାନ୍ତି । ରଥକାମ ପାଇଁ ଏମାନେ ଛାମୁଣ୍ଡିଆ କରନ୍ତି । ରଥ ନିର୍ମାଣ ସମୟରେ ମହାରଣାଙ୍କ ପାଖେ ରହି ତାଙ୍କ ବରାଦ ଅନୁଯାୟୀ ଶ୍ରମଦାନ କରିଥାନ୍ତି । ମହାରଣା ଯେଉଁ ରଥାବୟବକୁ ଚଳେ ଦେଇ ଦିଅନ୍ତି, ଏମାନେ ତାକୁ ନେଇ ରଥରେ ଖଞ୍ଜନ୍ତି । ରଥ ଭୋଇମାନେ ପ୍ରତିରଥରେ ୪ ଗୋଟି ଲେଖାଏଁ ଗୋଟାଳିଆକାଠ ତଳୁ ରଥ ବରାଣ୍ଡି ପର୍ଯ୍ୟନ୍ତ ସଂଯୋଗ କରି ତା ଉପରେ ନଡ଼ିଆ କିମ୍ବା ତାଳ ବତା ଧାଡ଼ିକରି ପକାଇ ସିଂହଦ୍ୱାର ସମ୍ମୁଖରେ ଓ ଶ୍ରୀଗୁଣ୍ଡିଚା ମନ୍ଦିର ପାଖରେ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ରଥରେ ଯଥାକ୍ରମେ ୧୬ ହାତ, ୧୪ ହାତ ଓ ୧୨ ହାତ ଲମ୍ବ ଓ ୮ ହାତ ଓସାରର ଚାରମାଳ ବାନ୍ଧନ୍ତି । ଉକ୍ତ ଚାରମାଳ ଉପରେ ଅଚଳ ମହାମେରୁ ଦାରୁବ୍ରହ୍ମ ଚତୁର୍ଦ୍ଧାମୂର୍ତ୍ତି ରଥାରୋହଣ ଓ ରଥାବତରଣ କରିଥାନ୍ତି । ଚାରମାଳ ବାନ୍ଧିବା ବ୍ୟତୀତ ଏମାନେ ଘୋଡ଼ା ଯୋଚିବା, ରଥ ଉପରକୁ ସାରଥୀତ୍ରୟ ଉଠାଇବା, ରଥ ଚାଲିବା ସମୟରେ ରଥର ଅବାଞ୍ଛିତ ଗତି ରୋକିବା ନିମିତ୍ତ ରଥର ଆଗଚକ ସମ୍ମୁଖରେ ଗତି ନିୟନ୍ତ୍ରଣକାରୀ ଓଳଘକାଠ ପକାଇବା ଇତ୍ୟାଦି ଏମାନଙ୍କର ଗୁରୁତ୍ୱପୂର୍ଣ୍ଣ ସେବା ଅଟେ । ରଥଯାତ୍ରା ପରେ ରଥ ଭାଙ୍ଗିବା ସହିତ ରଥରେ ବ୍ୟବହୃତ ଲୁହାକଣ୍ଟା, ଲୁହାବଳା ନେଇ ମନ୍ଦିର ଅଫିସରେ ଜମା ଦିଅନ୍ତି ।

(ତ) କଳାବେଠିଆ : ଶ୍ରୀଜଗନ୍ନାଥଙ୍କ ସମ୍ପତ୍ତି ଭୋଗ କରୁଥିବା କଳାବେଠିଆଗଣ ଅନ୍ଧାରି, ବ୍ରହ୍ମଗିରି ଓ କାଳିକାବାଡ଼ି ଗ୍ରାମରେ ବାସ କରୁଛନ୍ତି । ଯେତେବେଳେ ରଥଦାଣ୍ଡ ଅନୁପଯୁକ୍ତ ଥିଲା ଓ ଶ୍ରୀଗୁଣ୍ଡିଚା ପାଇଁ ଛଅରଥ ହେଉଥିଲା , ସେତେବେଳେ ରଥଟାଣିବା ପାଇଁ ୪୨୦୦ ଜଣ କଳାବେଠିଆ ନିଯୁକ୍ତି ପାଇଥିଲେ ।

R.L. Mitra "Antiquities of Orissa" ରେ ଲେଖିଛନ୍ତି ଯେ The actual operation of dragging being after wards performed by a body of 4200 coolies, called Kalabetiyas who enjoy rent free lands in the neighbouring village for their service"

ସମ୍ପ୍ରତି ଗମନାଗମନ ପଥର ସୁବିଧା ଦୃଷ୍ଟିରୁ ବହୁ ଜନସମାଗମ ହେଉଥିବାରୁ ରଥଟାଣିବା ପାଇଁ କଳାବେଠିଆଙ୍କର ଆବଶ୍ୟକତା ପଡୁନାହିଁ, ମାତ୍ର ଶ୍ରୀଗୁଣ୍ଡିଚା ପୂର୍ବଦିନ ରଥତ୍ରୟକୁ ମହାଖଳାରୁ ସିଂହଦ୍ୱାରକୁ ଆଣିବା, ରଥକୁ ବାହୁଡ଼ାଯାତ୍ରା ପୂର୍ବରୁ ଶରଧାବାଲିରେ ଦକ୍ଷିଣ ମୋଡ଼ କରିବା, ସର୍ବୋପରି ନିର୍ଦ୍ଦିଷ୍ଟ ସମୟରେ ରଥତ୍ରୟ ଗୁଣ୍ଡିଚା ମନ୍ଦିରରେ କିମ୍ବା ଶ୍ରୀମନ୍ଦିରରେ ଲାଗି ନପାରିଲେ, ଏକଦା କଳାବେଠିଆଙ୍କ ସହାୟତା ନିଆଯାଉଥିଲା ।

ଆଲୋଚ୍ୟ ସେବାୟତଙ୍କ ବ୍ୟତୀତ ରଥ ଯଦି କୌଣସି ଅସୁବିଧାର ସମ୍ମୁଖୀନ ହୁଏ, ତେବେ ଗଜପତି ମହାରାଜା ପାଳନ କରିଥିବା ହାତୀମାନଙ୍କର ସାହାଯ୍ୟ ନିଆଯାଇ ରଥକୁ ଠିକ୍ ବାଟକୁ ଅଣାଯାଇଥାଏ । ଏହାସହିତ ହାତୀମାନେ ହୁକୁହୁଳିଆ ଘାଟରୁ କାଠ ବୋହିବା ଓ ଛେରାପହଁରା ଉଦ୍ଦେଶ୍ୟରେ ଗଜପତି ମହାରାଜ ବିଜେ କଲା ସମୟରେ ରାଜାଙ୍କୁ ବାଟ କଢ଼େଇ ନେବା ପ୍ରଭୃତି କାର୍ଯ୍ୟ ହାତୀମାନଙ୍କ ଦ୍ୱାରା ସମ୍ପାଦିତ ହୋଇଥାଏ । ଶ୍ରୀଜଗନ୍ନାଥଙ୍କ ରଥଯାତ୍ରାରେ ମହାପ୍ରଭୁଙ୍କର ପ୍ରାୟ ସମସ୍ତ ସେବକଙ୍କର କିଛିନାକିଛି ଭୂମିକା ରହିଛି । ତତ୍ ସହିତ ରାଜ୍ୟସରକାରଙ୍କର କର୍ତ୍ତବ୍ୟକୁ ଏକ୍ଷେତ୍ରରେ ଆଦୌ ଉପେକ୍ଷା କରାଯାଇ ନପାରେ । ଶାନ୍ତି ରକ୍ଷା ନିମିତ୍ତ ପୋଲିସ୍ ବିଭାଗ, ଆକସ୍ମିକ ଦୁର୍ଘଟଣାର ପ୍ରତିକାର ପାଇଁ ଅଗ୍ନିସମସେବା ବିଭାଗ, ସଂକ୍ରାମକ ରୋଗର ପ୍ରତିଷେଧକ ନିମିତ୍ତ ସ୍ୱାସ୍ଥ୍ୟ ବିଭାଗ ପ୍ରଭୃତି ସତତ କର୍ମତତ୍ପର ରହିଥାନ୍ତି । ଏମାନଙ୍କ ବ୍ୟତୀତ ବିଭିନ୍ନ ସ୍ୱେଚ୍ଛାସେବୀ ଅନୁଷ୍ଠାନ ମଧ ଜଳଯୋଗାଣ, ଆବଶ୍ୟକ ସେବାଶୁଶ୍ରୂଷା ଇତ୍ୟାଦି ଦାୟିତ୍ୱ ବହନ କରିଥାନ୍ତି । ସର୍ବୋପରି ଜନସାଧାରଣ ଏକତ୍ରିତ ହୋଇ ପ୍ରଭୁଙ୍କ ରଥଚାଳନାରେ ସକ୍ରିୟ ଅଂଶଗ୍ରହଣ କରି ସାମ୍ୟମୈତ୍ରୀ-ସମନ୍ୱୟ ପ୍ରତିଷ୍ଠାରେ ସହାୟକ ହୋଇଥାନ୍ତି ।

ନୂଆଗାଁ, ଲକ୍ଷ୍ମୀପୁର, ଭୁବନେଶ୍ୱର-୨



# ମାନବଧର୍ମର ମହୋତ୍ସବ-ଘୋଷଯାତ୍ରା

● ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର

ଦାରୁବ୍ରହ୍ମ ପତିତପାବନ ଶ୍ରୀ ଜଗନ୍ନାଥ ବ୍ରହ୍ମଧାମ ନୀଳାଚଳରେ ଅନାଦି କାଳରୁ ନିତ୍ୟଲୀଳାଲୀନ । ବୈଦିକ, ଅବୈଦିକ, ଜୈନ, ବୌଦ୍ଧ, ବୈଷ୍ଣବ, ଶୈବ, ଶାକ୍ତ, ନାଥ, ଅଘୋରୀ, ଅଲେଖପନ୍ଥୀ, କବୀର ପନ୍ଥୀ, ନାନକ ପନ୍ଥୀ, ମୁସଲମାନ, ଖ୍ରୀଷ୍ଟିୟାନ ତଥା ସକଳ ଜଗତର ସେ ନାଥ । ବାହୁପ୍ରସାରି ସେ ସର୍ବଙ୍କୁ ଆପଣାର କରି ନେଉଛନ୍ତି। ତାଙ୍କ ପାଖରେ ବଡ଼ ସାନ, ଉଚ୍ଚନୀଚ, ଛୁଆଁ ଅଛୁଆଁ, ଧନୀ ଦରିଦ୍ର,ଜାତି ଅଜାତି, ଦେଶୀ ବିଦେଶୀର ଭାବ ନାହିଁ । ତାଙ୍କ ମହାପ୍ରସାଦ ସେବାରେ ବ୍ରାହ୍ମଣ ଚାଣ୍ଡାଳର ଭେଦନାହିଁ। ରାଜରାଜେଶ୍ୱର ପରମ୍ପରାରେ ତିନିଧୂପ ପାଞ୍ଚ ଅବକାଶ ଭିତରେ ବି ସେ ଅଗଣିତ ଭକ୍ତଙ୍କୁ ଦର୍ଶନର ସୌଭାଗ୍ୟ ଦେଇଥାନ୍ତି ସାହାଣ ମେଳାରେ । ସେ ଚରାଚର ବିଶ୍ୱ ବ୍ରହ୍ମାଣ୍ଡର ନାଥ । ବିଶ୍ୱର ସକଳ ମାନବ ତାଙ୍କରି । ଅପଲକ ଚକାନୟନରେ ସମଗ୍ର ମାନବ ସମାଜର ଲୀଳାଖେଳା ଦେଖୁଛନ୍ତି ସେ । ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟ ପରିପୂରିତ ତାଙ୍କର ପ୍ରତ୍ୟେକଟି ଲୀଳା ମାନବୀୟ । ବିଶ୍ୱର ସକଳ ମାନବ ସମାଜ ତାଙ୍କର ଏକାନ୍ତ ଆପଣାର । ଚକାନୟନ ବଡ଼ାଆଖି ଭୁଜଙ୍କର ଲୀଳାର ମହନୀୟତା ହେଉଛି ଆପଣାର ପ୍ରିୟ ଭକ୍ତ ମାନବ ପ୍ରେମରେ ମାନବୀୟ ଲୀଳା ସଂରଚନା କରି ରତ୍ନସିଂହାସନରୁ ମାନବଧର୍ମର ମହାପୀଠ ବଡ଼ଦାଣ୍ଡକୁ ଓହ୍ଲାଇ ଆସନ୍ତି ଘୋଷଯାତ୍ରା ଅବସରରେ । ଦାରୁବ୍ରହ୍ମଙ୍କର ଅବାରିତ ଦର୍ଶନ, ସ୍ପର୍ଶନର ସୌଭାଗ୍ୟ ଲାଭ କରିଥାନ୍ତି ସକଳ ଶ୍ରେଣୀର ମାନବ ଏହି ଲୋକକଲ୍ୟାଣକାରୀ ଦିବ୍ୟ ମହୋତ୍ସବରେ । ଜାତି ଧର୍ମ ବର୍ଣ୍ଣ ସମ୍ପ୍ରଦାୟ ନିର୍ବିଶେଷରେ ବିଶ୍ୱର ସକଳ ମାନବ ଘୋଷଯାତ୍ରା ଅବସରରେ ତାଙ୍କ ରଥ ଦଉଡ଼ି ଟାଣିବାର ସମାନ ଅଧିକାର ଲାଭ କରିଛନ୍ତି । ମାନବ ଜାତିର ଐତିହ୍ୟରେ ସମନ୍ୱୟର ମହୋତ୍ସବ ରୂପେ ଘୋଷଯାତ୍ରା ବିଶ୍ୱପ୍ରସିଦ୍ଧି ଲାଭ କରିପାରିଛି । ବିଶ୍ୱର ସକଳ ଧର୍ମଧାରା ଓ ମତବାଦ ଯୁଗେ ଯୁଗେ ଏହି ମାନବବାଦୀ ମହୋତ୍ସବରେ ଉଦ୍‌ବୁଦ୍ଧ ହୋଇ ଆସିଛନ୍ତି । ମାନବଧର୍ମର ପ୍ରତୀକାତ୍ମକ ବିଗ୍ରହ ଶ୍ରୀଜଗନ୍ନାଥଙ୍କର ଘୋଷଯାତ୍ରା ମାନବପ୍ରେମ ଉଦ୍‌ଘୋଷଣା କରି ଯୁଗେ ଯୁଗେ ମାନବଧର୍ମର ମହୋତ୍ସବ ରୂପେ ମହିମାବନ୍ତ ।

ଘୋଷଯାତ୍ରାରେ ଶ୍ରୀଜଗନ୍ନାଥ, ସୁଭଦ୍ରା, ବଳରାମ ଓ ସୁଦର୍ଶନ ରଥାରୂଢ଼ ହୋଇ ଅନ୍ତର୍ବେଦୀ ବା ରତ୍ନ ସିଂହାସନରୁ ଜନ୍ମବେଦୀ ବା ଗୁଣ୍ଡିଚା ମନ୍ଦିରର ଯଜ୍ଞବେଦୀକୁ ଯାତ୍ରା କରନ୍ତି । ସେଠାରେ ସାତଦିନ ନିବାସ କରି ପତିତପାବନ ନାମକୁ ସାର୍ଥକ କରିଥାନ୍ତି । ଲୋକ କଲ୍ୟାଣ କାମନାରେ ଦାରୁବ୍ରହ୍ମଙ୍କ ଆବିର୍ଭାବ ନିମିତ୍ତ ରାଜର୍ଷି ଇନ୍ଦ୍ରଦ୍ୟୁମ୍ନ ଏହି ଜନ୍ମବେଦୀରେ ପାଞ୍ଚଶତ ବର୍ଷ ପର୍ଯ୍ୟନ୍ତ ଅଶ୍ୱମେଧ ଯଜ୍ଞ ସମ୍ପାଦନ କରିଥିଲେ । ତାଙ୍କ ପ୍ରାର୍ଥନାରେ ଅନନ୍ତ କୋଟି ବ୍ରହ୍ମାଣ୍ଡ ନାୟକ ମାନବଧର୍ମର ପୁନଃପ୍ରତିଷ୍ଠା ନିମିତ୍ତ ଦାରବୀ ତନୁରେ ସେହି ଯଜ୍ଞବେଦୀରେ ଆବିର୍ଭୂତ ହୋଇଥିଲେ । ସ୍ୱୟଂ ଦାରୁବ୍ରହ୍ମ ଉଦ୍‌ଘୋଷଣା କରିଛନ୍ତି ।

ଗୁଣ୍ଡିଚା ମଣ୍ଡପଂ ନାମ ଯତ୍ରାହମଜନଂ ପୁରା
ଅଶ୍ୱମେଧ ସହସ୍ରସ୍ୟ ମହାବେଦୀ ତଦା ଭବତ
ମମୋତ୍ପତ୍ତେଶ୍ଚ ନିଳୟଂ ପ୍ରୀତିକୂଳମ୍ ଶାଶ୍ୱତମ୍
ବହୁକାଳଂ ସ୍ଥିତଶ୍ଚାହଂ ମମାସ୍ମିନ୍ ପ୍ରୀତିରୁତ୍ତମଃ

ଶୁଭ ଆବିର୍ଭାବର ପୁଣ୍ୟ ସ୍ମୃତିକୁ ଉଜ୍ଜୀବିତ ରଖିବା ନିମିତ୍ତ ଜଗନ୍ନାଥ ସ୍ୱଇଚ୍ଛାରେ ପ୍ରତିବର୍ଷ ନବଦିନାତ୍ମକ ମହୋତ୍ସବରେ ଶ୍ରୀମନ୍ଦିର ରୂପୀ ବୈକୁଣ୍ଠରୁ ଆପଣାର ପ୍ରିୟ ଜନ୍ମପୁରୀ ଗୁଣ୍ଡିଚା ମଣ୍ଡପକୁ ବିଜେ କରନ୍ତି । ଶ୍ରୀଜଗନ୍ନାଥଙ୍କର ଏହି ପ୍ରାଚୀନ ବାର୍ଷିକ ମହୋତ୍ସବ ଘୋଷଯାତ୍ରା, ରଥଯାତ୍ରା, ଗୁଣ୍ଡିଚା ଯାତ୍ରା, ମହାବେଦୀ ଯାତ୍ରା, ଜନ୍ମବେଦୀ ଯାତ୍ରା, ପତିତପାବନ ଯାତ୍ରା, ନବଦିନ ଯାତ୍ରା, ଦଶାବତାର ଯାତ୍ରା, ଆଡ଼ପମଣ୍ଡପ ଯାତ୍ରା ପ୍ରଭୃତି ବହୁ ନାମରେ ଖ୍ୟାତ । ଜଗତବନ୍ଧୁ ଜଗନ୍ନାଥ ଏହି ଦିବ୍ୟଘୋଷ ଯାତ୍ରାରେ ଜାତି, ଧର୍ମ,ବର୍ଣ୍ଣ, ସମ୍ପ୍ରଦାୟ ନିର୍ବିଶେଷରେ ସକଳ ମାନବ ସମାଜକୁ ଦର୍ଶନ ଓ ସ୍ପର୍ଶନର ସୌଭାଗ୍ୟ ପ୍ରଦାନ କରି ମାନବଧର୍ମର ମହନୀୟତା ଉଦ୍‌ଘୋଷଣା କରିଛନ୍ତି । ଏହି ପ୍ରସଙ୍ଗରେ ଘୋଷ ଯାତ୍ରା ହିଁ ଅଖିଳ ମାନବ ସମାଜକୁ ବିଶେଷ ଆକର୍ଷଣ କରିପାରିଛି । ଦାରୁବ୍ରହ୍ମଙ୍କର ରଥଯାତ୍ରା କରିବାର ରାସ୍ତାର ନାମ ବଡ଼ଦାଣ୍ଡ । ଏ ବଡ଼ଦାଣ୍ଡରେ ସମସ୍ତେ ସମାନ । ଅଗଣିତ ଭକ୍ତଙ୍କ ପଦ ଧୂଳିରେ ପବିତ୍ର ବଡ଼ଦାଣ୍ଡ । ଏଠାରେ ହିନ୍ଦୁ, ଶିଖ, ମୁସଲମାନ, ଖ୍ରୀଷ୍ଟିୟାନ, ଜୈନ, ବୌଦ୍ଧ ସମସ୍ତେ ପଦାର୍ପଣ କରିଛନ୍ତି । ଧନୀ, ମାନୀ, ଜ୍ଞାନୀ, ଯୋଗୀ, ଋଷି, ମୁନି ସମସ୍ତେ ଏଠାରେ ଶରଧାବାଲି ସ୍ପର୍ଶ କରିବା ମାତ୍ରେ ଆପଣା ଭିତରେ ଥିବା ଅହଂକୁ ପାଶୋରି ଦେଇ ମାନବବାଦର ଉଦାରତାରେ ମିଶି ଯାଉଛନ୍ତି । ବଡ଼ଦାଣ୍ଡର ମହନୀୟତା ହେଉଛି ଘୋଷଯାତ୍ରା ଅବସରରେ ତପୀ, ପାପୀ,ଜ୍ଞାନୀ, ଅଜ୍ଞାନୀ, ପବିତ୍ର ଅପବିତ୍ର, ଛୁଆଁ ଅଛୁଆଁ ସମସ୍ତେ ଏହି ବଡ଼ଦାଣ୍ଡରେ ଦାରୁବ୍ରହ୍ମଙ୍କର ପାବନ ସ୍ପର୍ଶର ମହତ୍ତା ଅନୁଭବ କରିପାରନ୍ତି । ମହାବାହୁ ଜଗନ୍ନାଥଙ୍କ ନିକଟରେ କେହି ପତିତ ହୋଇନାହିଁ ସେ ସ୍ୱୟଂ ପାବନାବତାର । ତାଙ୍କ ଘୋଷଯାତ୍ରାର ମହନୀୟତା ସର୍ବୋପରି "ସର୍ବେଷାଂ ପାବନଂ ମହତ୍" । ଏହା ପ୍ରଭୁଙ୍କର ସ୍ୱୟଂ ଲୀଳା ।

ସ୍ନାନ ଗୁଣ୍ଡିଚାଏ ବେନି ସ୍ୱୟଂ ଲୀଳା ଯାର
ପତିତ ପାବନ ଅର୍ଥେ ପ୍ରାସାଦୁ ବାହାର

ଏହି ଦିବ୍ୟ ମାନବକଲ୍ୟାଣକାରୀ ମହୋତ୍ସବରେ ପ୍ରଭୁ ଜଗନ୍ନାଥ ଅଗଣିତ ପତିତଙ୍କୁ ପାବନର ଅଧିକାର ଦେଇ ଏହାକୁ ପତିତପାବନ ଯାତ୍ରାର ମାନ୍ୟତା ପ୍ରଦାନ କରିଅଛନ୍ତି ।

[illegible]

ବୈଦିକ ସଂସ୍କୃତିରେ ଘୋଷଯାତ୍ରାର ଐତିହ୍ୟ ପ୍ରାଚୀନ ଏବଂ ଏହା ଗୁଣ୍ଡିଚା ମହୋତ୍ସବ ରୂପେ ଖ୍ୟାତ । ପ୍ରାଚୀନ ସାହିତ୍ୟରେ ଏହି ମହୋତ୍ସବର ମହନୀୟତା ଉଦ୍‌ଘୋଷଣା କରାଯାଇ କୁହାଯାଇଛି –

ଯତ୍ନାତ୍ସମ୍ଭୁ ଜଗତ୍ୟସ୍ମିନ୍ ବିଶେଷାତ୍ ପ୍ରୀତିଜଙ୍ଗ ନାରାମ୍

ତସ୍ମାନ୍ଦ ମହତୀ ଯାତ୍ରା କୋ ବକ୍ତୁଂ ଭୁବି ଚ କ୍ଷମଃ

ଶ୍ରୀଜଗନ୍ନାଥ ଚକାନୟନ । ତାଙ୍କ ଚକା ଆଖିରେ ସଭିଏଁ ସମାନ । ସମଗ୍ର ମାନବ ସମାଜ ତାଙ୍କରି ସନ୍ତାନ । ବାହୁପ୍ରସାରି ସେ ଜାତି, ବର୍ଣ୍ଣ, ଧର୍ମ, ସମ୍ପ୍ରଦାୟ ନିର୍ବିଶେଷରେ ସକଳ ପ୍ରକାରର ମାନବଙ୍କୁ ଆପଣାର କରି ମହାବାହୁ ବୋଲାଉଛନ୍ତି । ତାଙ୍କ ବଳୀୟାର ଭୁଜ ତଳେ ସମସ୍ତେ ସୁରକ୍ଷିତ । ତାଙ୍କ ଘୋଷଯାତ୍ରାରେ ରାଜା, ପ୍ରଜା, ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରାଦି ଚତୁର୍ବର୍ଣ୍ଣ ତଥା ଅନ୍ୟାନ୍ୟ ବ୍ୟକ୍ତି ସମାନ ବିବେଚିତ ହୋଇଥାନ୍ତି ।

ଯଥା ଚତୁର୍ବିଧା ବର୍ଣ୍ଣା ଅନ୍ୟେଚ ପୃଥଗ୍ ଜନାଃ

ଜନାମହତ୍ରାଣ୍ତ ତଦା ସମାନାସ୍ତତ୍ର ଭାନ୍ତି ବୈ ।

ଶ୍ରୀଜଗନ୍ନାଥ ଆପଣାର ସ୍ୱୟଂ ଲୀଳା ଘୋଷଯାତ୍ରାରେ ଉଚ୍ଚ, ନୀଚ, ସାନ, ବଡ଼, ଜାତି ଓ ଅଜାତିର ପ୍ରାଚୀର ଉଠାଇ ଦେଉଛନ୍ତି । ତାଙ୍କ ସମାବେଶର ଉଦାର ପରମ୍ପରାରେ ଦରିଦ୍ର, କୃପଣ,ଗୃହସ୍ଥ, ମାଲିକ, ସ୍ୱଦେଶୀ, ବିଦେଶୀ ସଭିଏଁ ସମାନ ।

ଦରିଦ୍ରୋ କୃପଣୋବାପି ଗୃହସ୍ଥ ପ୍ରଭୁରେବ ବା

ସ୍ୱଦେଶୀ ପରଦେଶ୍ୟାବା ସର୍ବତତ୍ର ସମାନତାଃ

ମାନବ ସମାଜକୁ ସାମ୍ୟ,ମୈତ୍ରୀ ଓ ବିଶ୍ୱଭ୍ରାତୃତ୍ୱର ମହାମନ୍ତ୍ରରେ ଉଦ୍‌ବୁଦ୍ଧ କରାଇବା ହିଁ ଘୋଷଯାତ୍ରାର ମହତ ଲକ୍ଷ୍ୟ ।

ଆର୍ଯ୍ୟ ପରମ୍ପରାରେ ଘୋଷଯାତ୍ରାରେ ରାଜା ଓ ଚାଣ୍ଡାଳର ଭେଦ ନାହିଁ । ରାଜା ମଧ୍ୟ ଏହି ମହୋତ୍ସବରେ ରାଜକୀୟ ପୋଷାକ ପରିଧାନ ପୂର୍ବକ ଛେରାପହଁରା ସମ୍ପନ୍ନ କରି ପ୍ରଥମ ସେବକର ଗୌରବ ଅର୍ଜନ କରିଥାନ୍ତି । ରଥାରୂଢ଼ ଶ୍ରୀଜଗନ୍ନାଥଙ୍କ ନିକଟରେ ସେ ସମସ୍ତ ଆଭିଜାତ୍ୟ ଓ ଆତ୍ମାଭିମାନ ପରିହାର କରି ଚାଣ୍ଡାଳ ସଦୃଶ ସ୍ୱର୍ଣ୍ଣ ସମାର୍ଜନୀରେ ଛେରାପହଁରା କରିଥାନ୍ତି । ସାର୍ବଭୌମ ଅଧିକାରୀର ଏହା ହେଉଛି ଅହଙ୍କାରରହିତ ସର୍ବୋତ୍କୃଷ୍ଟ ସେବା । ଶ୍ରୀଜଗନ୍ନାଥଙ୍କ ଶ୍ରୀଚରଣ ତଳେ ଗଜପତି ମଧ୍ୟ ଦୀନହୀନ ଅକିଞ୍ଚନ ଝାଡୁଦାର । ସମନ୍ୱୟାତ୍ମକ ଆର୍ଯ୍ୟ ସଂସ୍କୃତିରେ ସେବା ବିଭାଜନର ଏହା ହିଁ ମହନୀୟ ପରମ୍ପରା । ରାଜଗୁରୁ, ବ୍ରାହ୍ମଣ ଓ ରାଜବିରାଦରଙ୍କ ଗହଣରେ ରାଜକୀୟ ପରିପାଟୀରେ ବିଜେ କରି ସ୍ୱୟଂ ଗଜପତି ସ୍ୱହସ୍ତରେ ରଥ ଚତୁର୍ପାର୍ଶ୍ୱ ମାର୍ଜଣା କରି ସମନ୍ୱୟଧାରାରେ ଉଦ୍‌ବୁଦ୍ଧ ହୋଇଥାନ୍ତି । ପତିତଜନଙ୍କ ପରିତ୍ରାଣକାରୀ ଜଗନ୍ନାଥଙ୍କ ନିକଟରେ ଲକ୍ଷେ ରାଜାଙ୍କର ମଉଡ଼ମଣି ଗଜପତି ବିନମ୍ର ଅନୁ ନିବେଦନ ଜଣାଇଥାନ୍ତି :

ପତିତାନାଂ ପତିତୋହଂ ତ୍ୱମେବ ପାପ ହାରକଃ

ପବନ ପ୍ରଭୁଶ ! ଦେହି ନିଷ୍କଳା ଭକ୍ତି ମେ ବିଭୋ

ରାଜାଧିରାଜ ଶ୍ରୀ ଜଗନ୍ନାଥଙ୍କ ନିକଟରେ କେହି ରାଜା ନୁହନ୍ତି । ସମସ୍ତେ ସମାନ । ଏହା ହିଁ ଆର୍ଯ୍ୟ ପରମ୍ପରାରେ ମାନବିକତାର ମହାନୁଭବତା ।

ଶାବର ସଂସ୍କୃତିରେ ଘୋଷଯାତ୍ରାର ମହାନ୍ ଐତିହ୍ୟ ରହିଛି । ଗୁଣ୍ଡିଚା ମନ୍ଦିରରେ ପ୍ରଥମେ ଶ୍ରୀଜଗନ୍ନାଥ ଶବରମାନଙ୍କ ଦ୍ୱାରା ଉପାସିତ ହେଉଥିଲେ । ତେଣୁ ପ୍ରତିବର୍ଷ ଦାରୁବିଗ୍ରହଙ୍କୁ ଗୁଣ୍ଡିଚା ମନ୍ଦିରକୁ ଘୋଷଯାତ୍ରା ଅବସରରେ ନିଆଯାଇ ଶବର ବଂଶଜ ଦୟିତାମାନଙ୍କୁ ସେବାଧିକାର ଦେବାର ମହାନ ପରମ୍ପରା ପ୍ରଚଳିତ । ଗବେଷକଙ୍କ ମତରେ ଶବର ଉପାସିତ ଜଗନ୍ନାଥ ହିଁ ପରବର୍ତ୍ତୀ କାଳରେ ଜଗନ୍ନାଥ ନାମରେ ପ୍ରସିଦ୍ଧି ଲାଭ କରିଛନ୍ତି । ଦାରୁ ଉପାସନା ଶବର ଜାତିର ମୌଳିକ ପରମ୍ପରା । ଏହାର ମହନୀୟତା ହେଉଛି ଜାତିଭେଦ ବିଚାରଶୂନ୍ୟତା । ଏହି ପ୍ରେରଣାଦୃଷ୍ଟିରେ ସମସ୍ତଙ୍କୁ ସମାନ ସେବାଧିକାର ଦେବା କାମନାରେ ଘୋଷଯାତ୍ରାର ସୃଷ୍ଟି । ପରବର୍ତ୍ତୀ କାଳରେ ଅନ୍ୟ ସଂସ୍କୃତି ପ୍ରଭାବରେ ଜଗନ୍ନାଥ ଉପାସନା ଭିନ୍ନରୂପ ଧାରଣ କରିଥିଲେ ହେଁ ଘୋଷଯାତ୍ରାର ସାର୍ବଜନୀନ ଉପାସନାର ଧାରା ଅବ୍ୟାହତ ରହିଛି । ସକଳ ଶ୍ରେଣୀର ମାନବଙ୍କୁ ମୋକ୍ଷ ପ୍ରଦାନ କାମନାରେ ଶ୍ରୀଜଗନ୍ନାଥ ଘୋଷଯାତ୍ରାରେ ଶ୍ରୀମନ୍ଦିରରୁ ବାହାରିଆସି ଜନତାର ମହାସମୁଦ୍ର ମଧ୍ୟରେ ନିଜକୁ ଏକୀଭୂତ କରି ଶାବରୀୟ ପରମ୍ପରାର ସୁରକ୍ଷା କରିଥାନ୍ତି । ଘୋଷ ଶବ୍ଦର ଅର୍ଥ ମଙ୍ଗଳ । ମାନବ ସମାଜର ମଙ୍ଗଳକାମନାରେ ଏହି ଯାତ୍ରା ଅନୁଷ୍ଠିତ ହେଉଥିବାରୁ ଏହାର ନାମ ଘୋଷଯାତ୍ରା ।

ଆଷାଢ଼ସ୍ୟାମଳେ ପକ୍ଷେ ଦ୍ୱିତୀୟା ପୁଷ୍ୟା ସଂଯୁତେ

ଚରାଚର ହିତାର୍ଥାୟ ଘୋଷଯାତ୍ରା ବିଧୀୟତେ ।

ଜୈନ ସମ୍ପ୍ରଦାୟରେ ଘୋଷଯାତ୍ରାର ପ୍ରଚଳନ ବହୁ ପ୍ରାଚୀନ କାଳରୁ ରହିଅଛି । ଜୈନମାନଙ୍କର ବିଶ୍ୱାସ "ଜୀନନାଥ" ଶବ୍ଦରୁ "ଜଗନ୍ନାଥ" ଶବ୍ଦର ସୃଷ୍ଟି । ଜୈନଧର୍ମର ୨୪ ତୀର୍ଥଙ୍କରଙ୍କ ମଧ୍ୟରୁ ୨୨ ଜଣ ତୀର୍ଥଙ୍କରଙ୍କର ପ୍ରତୀକ ରୂପେ ବାଇଶି ପାହାଚ ପରିକଳ୍ପିତ । ପ୍ରାଚୀନ ଜୈନଶାସ୍ତ୍ରରୁ ପ୍ରମାଣ ମିଳିଥାଏ ଯେ ଆଷାଢ଼ ଶୁକ୍ଳ ଦ୍ୱିତୀୟା ହେଉଛି ଜୈନମାନଙ୍କର ୨୩ ତୀର୍ଥଙ୍କର ପାର୍ଶ୍ୱନାଥଙ୍କର ଗର୍ଭକଲ୍ୟାଣ ଦିବସ । ତେଣୁ ଏହି ପୁଣ୍ୟ ଦିବସରେ ଜଗନ୍ନାଥଙ୍କର ଘୋଷଯାତ୍ରା ଅନୁଷ୍ଠିତ ହୁଏ ବୋଲି ଜୈନଧର୍ମୀଙ୍କର ବିଶ୍ୱାସ । ଐତିହାସିକବୃନ୍ଦଙ୍କ ମତରେ ପ୍ରାଚୀନ ଉତ୍କଳରେ ଜୈନଧର୍ମ ପ୍ରତିଷ୍ଠିତ ଥିଲା ଏବଂ ସେହି କାଳରୁ ଘୋଷଯାତ୍ରା ପ୍ରଚଳିତ । ଅଦ୍ୟାବଧି ଅନେକ ଗବେଷକ ଶ୍ରୀଜଗନ୍ନାଥଙ୍କୁ ଜୈନଧର୍ମର ପ୍ରତୀକ ରୂପେ ବିବେଚନା କରନ୍ତି । ପାରମ୍ପରିକ ଜୈନସିଦ୍ଧାନ୍ତରେ ଈଶ୍ୱରସତ୍ତା ସ୍ୱୀକୃତ ନଥିଲେ ହେଁ ବିକଶିତ ଜୈନସିଦ୍ଧାନ୍ତରେ ଜଗନ୍ନାଥ ନିର୍ବାଣଦାତା ରୂପେ ସ୍ୱୀକୃତ । ପ୍ରତ୍ୟେକ ମାନବଙ୍କୁ ନିର୍ବାଣର ସୌଭାଗ୍ୟ ଦେବା ନିମିତ୍ତ ଜୈନ ପରମ୍ପରାରେ ଘୋଷଯାତ୍ରାର ସୃଷ୍ଟି ।

ବୌଦ୍ଧ ଚେତନାରେ ଜଗନ୍ନାଥ ହିଁ ବୁଦ୍ଧ । ତ୍ରିମୂର୍ତ୍ତି ବୁଦ୍ଧ, ଧର୍ମ ଓ ସଂଘ ତଥା ସୁଦର୍ଶନ ଚକ୍ରର ପ୍ରତୀକ । ଗୌରବର ବିଷୟ, ପରବର୍ତ୍ତୀ କାଳରେ ଆର୍ଯ୍ୟଚେତନାରେ ବୁଦ୍ଧ ଓ ବୁଦ୍ଧରୂପୀ ଜଗନ୍ନାଥଙ୍କୁ ଦଶମ ଅବତାରର ମାନ୍ୟତା ଦିଆଯାଇ ଆଧ୍ୟାତ୍ମିକ ମିଳନ ସୃଷ୍ଟି କରାଯାଇଛି । ଗବେଷକ ଓ ଐତିହାସିକଙ୍କ ମତରେ ପୁରୀ ଏକ ପ୍ରାଚୀନ ବୌଦ୍ଧ ପୀଠ ଏବଂ ଶ୍ରୀଜଗନ୍ନାଥ ବୁଦ୍ଧଦେବତା ତଥା ବୌଦ୍ଧ ସଂସ୍କୃତିରୁ ହିଁ ଘୋଷ ଯାତ୍ରାର ସୃଷ୍ଟି । ପ୍ରାଚୀନ ବିଶ୍ୱରେ ବିଭିନ୍ନ ସ୍ଥାନରେ ବୌଦ୍ଧ ରଥଯାତ୍ରା ଅନୁଷ୍ଠିତ

ହେଉଥିଲେ ହେଁ ପୁରୀର ରଥଯାତ୍ରା ଏକ ମାନବଧର୍ମୀ ବୌଦ୍ଧ ପରମ୍ପରାରେ ଅଖିଳ ବିଶ୍ୱକୁ ଉଦ୍‌ବୁଦ୍ଧ କରିପାରିଛି । ବୌଦ୍ଧ ଦର୍ଶନରେ ଜାତିର ପ୍ରାଚୀର ନାହିଁ । ଜାତି ବର୍ଣ୍ଣ ନିର୍ବିଶେଷରେ ସକଳ ମାନବଙ୍କୁ ଜଗନ୍ନାଥଙ୍କ ଦର୍ଶନ, ସ୍ପର୍ଶନ ତଥା ମହାପ୍ରସାଦ ସେବନର ସୌଭାଗ୍ୟ ଦେବାର ମହାନ ପରିକଳ୍ପନାରେ ଘୋଷ ଯାତ୍ରା ଜନ୍ମ ନେଇଥିଲା ।

ସୌର ଉପାସକଙ୍କ ମତରେ ଶ୍ରୀଜଗନ୍ନାଥ ହିଁ ସକଳ ଜଗତର ଚକ୍ଷୁ ସ୍ୱରୂପ ପରମ ସୂର୍ଯ୍ୟ । ଶାକ୍ତମାନଙ୍କ ତାନ୍ତ୍ରିକ ବିଚାରବୋଧରେ ଶ୍ରୀଜଗନ୍ନାଥ ହିଁ ମହାଭୈରବ । ଶୈବ ଚେତନାରେ ସେ ମହାକାଳ ତଥା ବୈଷ୍ଣବୀୟ ଚେତନାରେ ମହାବିଷ୍ଣୁ । ବୈଚିତ୍ର୍ୟ ହେଉଛି ସୌର, ଶାକ୍ତ, ଶୈବ ଓ ବୈଷ୍ଣବ ପ୍ରତ୍ୟେକ ପରମ୍ପରାରେ ରଥଯାତ୍ରା ଏକ ପ୍ରଧାନ ବାର୍ଷିକ ମହୋତ୍ସବର ମାନ୍ୟତା ଲାଭ କରିଅଛି । ବିଶ୍ୱର ବିଭିନ୍ନ ମତ, ପଥ ଓ ସମ୍ପ୍ରଦାୟର ଘୋଷଯାତ୍ରା ହେଉଛି ମଧୁର ମିଳନ ମହୋତ୍ସବ । ବିଭିନ୍ନ ସମ୍ପ୍ରଦାୟ ଅନୁଗାମୀ ଭିନ୍ନ ଭିନ୍ନ ମାନବଗୋଷ୍ଠୀ ଏହି ମହୋତ୍ସବରେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବାକୁ ବଡ଼ଦାଣ୍ଡରେ ସମାଗତ ହୋଇଥାନ୍ତି । ସମସ୍ତଙ୍କର ଗୋଟିଏ କାମନା । "ରଥେ ତୁ ବାମନଂ ଦୃଷ୍ଟ୍ୱା ପୁନର୍ଜନ୍ମ ନବିଦ୍ୟତେ" । ବାମନ ହେଉଛି ରଥାରୂଢ଼ ଶ୍ରୀଜଗନ୍ନାଥଙ୍କର ଅପର ନାମ । ପରବର୍ତ୍ତୀ କାଳରେ ବାମନ ଶବ୍ଦ ସହିତ ଅମୃତମୟ ଦଧି ଶବ୍ଦଟିକୁ ସଂଯୋଗ କରାଯାଇ ତାନ୍ତ୍ରିକ ପ୍ରକ୍ରିୟାରେ ଦଧିବାମନ ରୂପରେ ଜଗନ୍ନାଥ ସଂସ୍କୃତି ସଂପ୍ରସାରିତ । ଦଧିବାମନରୂପୀ ଜଗନ୍ନାଥ ହିଁ ସର୍ବଧର୍ମ ସମନ୍ୱୟର ପ୍ରତୀକାତ୍ମକ ବିଗ୍ରହ । ମହାମିଳନୋତ୍ସବ ଘୋଷଯାତ୍ରାରେ ସକଳମାନବ ତାଙ୍କରି ଭିତରେ ଆପଣାର ଇଷ୍ଟଙ୍କୁ ହିଁ ଦର୍ଶନ କରିଥାନ୍ତି । ସେହି ହିସାବରେ ସକଳ ମାନବ ଗୋଷ୍ଠୀର ସମନ୍ୱୟ ଚେତନାର ପ୍ରତିଭୂ । ଶ୍ରୀଜଗନ୍ନାଥଙ୍କ ଘୋଷ ଯାତ୍ରା ମାନବୀୟ ଧର୍ମ ଓ ସାମ୍ୟମୈତ୍ରୀ ଅଧାରିତ ।

ଘୋଷଯାତ୍ରା ମାନବଧର୍ମ ଉଦ୍‌ଘୋଷଣାପୂର୍ବକ ସଂସ୍କୃତି ଧର୍ମ ପ୍ରସାରିତ । ସମଗ୍ର ବିଶ୍ୱର ମାନବ ସମାଜକୁ ଗୋଟିଏ ସୂତ୍ରରେ ବାନ୍ଧିରଖିବାରେ ଏହାର ମହିମା ଅତୁଳନୀୟ । ଘୋଷଯାତ୍ରାର ଶ୍ରୀଜଗନ୍ନାଥ କୌଣସି ନିର୍ଦ୍ଦିଷ୍ଟ ଗୋଷ୍ଠୀ, ସମ୍ପ୍ରଦାୟ ଅଥବା ଧର୍ମର ଦେବତା ନୁହନ୍ତି । ସେ ହେଉଛନ୍ତି ମାନବ ସଂସ୍କୃତିର ଏକ ଉତ୍ସ । ବିଶ୍ୱର ସକଳ ପ୍ରକାର ମାନବଙ୍କର ଚିନ୍ତା ଓ ବିଶ୍ୱାସକୁ ଏକତ୍ର କରିବା ହିଁ ଘୋଷଯାତ୍ରାର ମହତ ଲକ୍ଷ୍ୟ । ଏହି ଯାତ୍ରାରେ ସର୍ବଧର୍ମ ସମନ୍ୱୟ, ସାମ୍ୟ, ମୈତ୍ରୀ, ପ୍ରୀତି ପ୍ରଭୃତି ମାନବୀୟ ମୂଲ୍ୟବୋଧ ପରିଲକ୍ଷିତ । ଶ୍ରୀଜଗନ୍ନାଥ ହିଁ ଯଥାର୍ଥରେ ସାମ୍ପ୍ରଦାୟିକ ମୈତ୍ରୀର ସାରଥି ଏବଂ ତାଙ୍କ ଘୋଷଯାତ୍ରା ହେଉଛି ମାନବଧର୍ମର ମହୋତ୍ସବ ।

ସର୍ବସ୍ମିନ୍ ହୃଦୟେ ମହାପ୍ରଭୁ ଜଗନ୍ନାଥସ୍ୟ ଭକ୍ତି ଭଜନ୍,
ମୈତ୍ରୀ, ପ୍ରୀତି ବିଶ୍ୱବ ଶାନ୍ତି ସମତାଃ ସର୍ବାନ୍ତରେ ବର୍ଦ୍ଧନ
ଐକ୍ୟ ସ୍ନେହ ପରୋପକାର କରୁଣା ସେବାଦିଙ୍କ ପ୍ରଭଞ୍ଜନ,
ସର୍ବପ୍ରାଣ ବିକାଶ କୋ୍ଽସ୍ତୁ ଜୟଦଃ ଶ୍ରୀଧାମ ଘୋଷୋତ୍ସବଃ ।

*ବଡ଼ପଡ଼ା ସାହୀ, ଢେଙ୍କାନାଳ, ଦୂରଭାଷ-୩୨୬୬୬*

• • •

# ବ୍ୟଥା

• ଶ୍ରୀ ଦେଶବନ୍ଧୁ ମିଶ୍ର

କାହାର ସେ ନୁହେଁ, ଧନାର ସେ ନୁହେଁ
ସବୁ ରଙ୍ଗ ଯେ ତାହାର ପ୍ରିୟ
ଏ ମାଟିର ନୁହେଁ... ସେ ମାଟିର ନୁହେଁ
ସବୁ ମାଟି ତାର ଆଦରଣୀୟ ।
ଭାଗ ଭାଗ ନୁହେଁ ଯାହାର ଜଗତ
ସବୁ ଜାତି ହୁଏ ତାହାର ଭଗତ,
ସବୁରି ଅଟେ ସେ, ସବୁଠି ଅଛି ସେ
ତଥାପି ସେ ନୁହେଁ ବର୍ଣ୍ଣନୀୟ ।

ରଥ ତାର ଚାଲେ ସବୁ ଚଲାପଥେ
ବଡ଼ଦାଣ୍ଡରେ ନୁହଁଇ ଖାଲି
ସବୁ ନଦୀ ଜଳେ ନାଚ ତାର ଭାସେ
ସବୁ ବାଲି ତାର ଶରଧାବାଲି,
ବାସ୍ତବେ ଯିଏ ଏତେ ସୀମାତୀତ
ମଣିଷ ତାହାକୁ କରେ ସୀମାୟିତ,
ରଥ ଯାତ୍ରାର ଗହଳି ଭିତରୁ
ତେଣୁ ମୁଁ ଯାଉଛି ବ୍ୟଥାରେ ଢାଳି ।

*ଦଇତାପଡ଼ା ସାହି, ପୁରୀ*



# ପୁରୁଷୋତ୍ତମ ଓ ଜଗନ୍ନାଥ ଉପାସନା : ଏକ ଭିନ୍ନ ଦୃଷ୍ଟି

● ଡକ୍ଟର ହରିହର କାନୁନ୍‌ଗୋ

ସମଗ୍ର ଭାରତବର୍ଷରେ ଖ୍ରୀଷ୍ଟୀୟ ତୃତୀୟ-ଚତୁର୍ଥ ଶତାବ୍ଦୀରେ ଗୁପ୍ତରାଜାମାନଙ୍କର ପୃଷ୍ଠପୋଷକତାରେ ଭାଗବତଧର୍ମକୁ ବୈଷ୍ଣବ ଧର୍ମ ରୂପେ ପରିଚିତ କରି ସାଧାରଣ ଜନତାଙ୍କ ମଧ୍ୟରେ ଯେଉଁ ପ୍ରଚାର କରାଗଲା, ତାହାର ପ୍ରଭାବ ପରବର୍ତ୍ତୀ ଅବସ୍ଥାରେ ଓଡ଼ିଶାରେ ମଧ୍ୟ କ୍ରମଶଃ ଅନୁଭୂତ ହେବାକୁ ଲାଗିଲା । ତାତ୍ତ୍ୱିକ ଦୃଷ୍ଟିକୋଣରୁ ବିଚାର କଲେ ମୁଖ୍ୟତଃ ସୂର୍ଯ୍ୟ ଉପାସନାଦ୍ୱାରା ଆଧାରିତ ବୈଷ୍ଣବ ଧର୍ମଠାରୁ ଭାଗବତ ଧର୍ମ ସଂପୂର୍ଣ୍ଣ ଭିନ୍ନ ପ୍ରକାରର ।

ମହାଭାରତ ଯୁଦ୍ଧ ପୂର୍ବରୁ ବ୍ରାହ୍ମଣ୍ୟଧର୍ମ ସୂର୍ଯ୍ୟ ଉପାସନା ସହିତ ଚିହ୍ନିତ ହୋଇଥିଲା । ବହିରାଗତ ଆର୍ଯ୍ୟମାନେ ବାହ୍ୟପ୍ରକୃତିର ଜଡ଼ଶକ୍ତିମାନଙ୍କର ପୂଜା ଉପାସନା ସହିତ ଏହି ସୂର୍ଯ୍ୟ ଉପାସନା ବହନ କରି ଆଣିଥିଲେ । ଏହି ଉପାସନା ମୂଳତଃ ଯାଗଯଜ୍ଞ, ବଳି ଓ ସୋମରସ ପାନ ମଧ୍ୟରେ ସୀମିତ ରହିଥିଲା । ମହାଭାରତର ଘଟଣାଗୁଡ଼ିକ ସମୟରେ ବାସୁଦେବ ଶ୍ରୀକୃଷ୍ଣଙ୍କର କୂଟନୀତି ଫଳରେ ସାଧାରଣ ଜନତା ଏହି ଯାଗଯଜ୍ଞ ତଥା ଦେବଶକ୍ତିଗୁଡ଼ିକର ଉପାସନାରୁ ଦୃଷ୍ଟି ଫେରାଇ ନେଇ ତାହାକୁ ଏକ ଅନ୍ତର୍ମୁଖୀ ଆଧ୍ୟାତ୍ମିକ ଚେତନାରେ ପରିଣତ କରାଇଥିଲେ । ଏହି ମୌଳିକ ପରିବର୍ତ୍ତନର ଧାରାକୁ ଅକ୍ଷୁଣ୍ଣ ରଖି ମହାଭାରତର ପରବର୍ତ୍ତୀ ଅବସ୍ଥାରେ ଜୈନ ଓ ବୌଦ୍ଧ ଧର୍ମ ପରି ଅନ୍ତର୍ମୁଖୀ ଧର୍ମମାନ ମୁଣ୍ଡଟେକି ଥିଲା । ସେମାନଙ୍କର ପ୍ରଭାବ ସମସାମୟିକ ସମାଜକୁ ଏପରି ପ୍ରଚଣ୍ଡ ଭାବେ ପ୍ରଭାବିତ କରିଥିଲା ଯେ ବ୍ରାହ୍ମଣ୍ୟଧର୍ମ ସହିତ ଚିହ୍ନିତ ଏହି ସୂର୍ଯ୍ୟ ଓ ଅନ୍ୟାନ୍ୟ ଜଡ଼ ପ୍ରକୃତିର ଉପାସନା ସଂପୂର୍ଣ୍ଣ ନିଶ୍ଚିହ୍ନ ହୋଇଗଲା । ବସ୍ତୁତଃ ମହାଭାରତ ଯୁଦ୍ଧର ଅବସାନ ପରଠାରୁ ସମଗ୍ର ଭାରତବର୍ଷରେ ବାସୁଦେବ ଶ୍ରୀକୃଷ୍ଣଙ୍କ ଦ୍ୱାରା ପ୍ରବର୍ତ୍ତିତ ଭାଗବତ ଧର୍ମ ସହିତ ଜୈନ ଓ ବୌଦ୍ଧ ଧର୍ମମାନ ସମଗ୍ର ଜନସାଧାରଣଙ୍କୁ ଏଭଳି ଭାବେ ପ୍ରଭାବିତ କରିଥିଲା ଯେ ବ୍ରାହ୍ମଣ୍ୟଧର୍ମ ସଂପୂର୍ଣ୍ଣ ଭୂଲୁଣ୍ଠିତ ହୋଇଯାଇ ନିଶ୍ଚିହ୍ନ ପ୍ରାୟ ହୋଇ ଖ୍ରୀଷ୍ଟୀୟ ତୃତୀୟ ଓ ଚତୁର୍ଥ ଶତାବ୍ଦୀ ପର୍ଯ୍ୟନ୍ତ ମୁଣ୍ଡ ଟେକି ପାରିନଥିଲା । ଏହି ଧର୍ମର ପୃଷ୍ଠପୋଷକମାନେ ଭାଷା ଓ ଶବ୍ଦର ଆବରଣ ଦେଇ ନିଜର ଉପାସ୍ୟ ଦେବତା ସୂର୍ଯ୍ୟ ବା ବିଷ୍ଣୁଙ୍କୁ ଚତୁରତାର ସହିତ ଭାଗବତଧର୍ମ ଓ ବାସୁଦେବ ଶ୍ରୀକୃଷ୍ଣଙ୍କୁ ଚିହ୍ନିତ କରାଇ ଜନସାଧାରଣଙ୍କ ସମର୍ଥନ ହାସଲ କରିବା ପାଇଁ ଚେଷ୍ଟା କରୁଥିଲେ । ଏହି ବିଷ୍ଣୁ ଶବ୍ଦର ଉତ୍ପତ୍ତି ଆମେ ପ୍ରଥମଥର ପାଇଁ ଋଗବେଦର ୧-୮୫-୭, ୬-୪୮-୧୪ ମଣ୍ଡଳ, ସୂକ୍ତ ଓ ମନ୍ତ୍ରରେ ପାଇଥାଉ । [B.N. Mukherjee– In the name of Vishnu in the statesman, Saturday, 4 June 1994, P-11] ଅବଶ୍ୟ ପ୍ରଥମେ ବିଷ୍ଣୁ କଳ୍ପନା ସୂର୍ଯ୍ୟ କଳ୍ପନାରେ ଗର୍ଭିତ ଥିଲା । ବିଷ୍ଣୁ ଶବ୍ଦର ଅର୍ଥ ହେଉଛି ବ୍ୟାପ୍ତ । ସୂର୍ଯ୍ୟ କିରଣ ସମସ୍ତ ପୃଥିବୀରେ ବ୍ୟାପ୍ତ ହେଉଥିବାରୁ ସୂର୍ଯ୍ୟଙ୍କର ଅନ୍ୟନାମ ବିଷ୍ଣୁ । (ଋଗବେଦ ୧-୨୨-୧୮, ୧-୧୫୪-୧/ପଟ୍ଟନାୟକ, ଆଶୁତୋଷ-ଓଡ଼ିଆ ଭାଷା ସାହିତ୍ୟ, ଭୁବନେଶ୍ୱର, ୧୯୮୮, ପୃ.୨/ପଟ୍ଟନାୟକ, ଆଶୁତୋଷ-ବୈଷ୍ଣବ ସାହିତ୍ୟ ତତ୍ତ୍ୱ (ପ୍ରଥମ ଭାଗ), ୧୯୯୫, ପୃ.୧) । [History and culture of the Indian People' ଗ୍ରନ୍ଥରେ ମଧ୍ୟ ବିଷ୍ଣୁଙ୍କୁ ସୂର୍ଯ୍ୟ ବୋଲି କୁହାଯାଇଛି । [Apte, V.M.– Religion and Philosophy in the History and culture of the Indian People– The Vedic Age, Vol-I, Edi: R.C. Majumdar, Bharatiya Vidya Bhavan, Bombay, 1995, P.371] ବିଷ୍ଣୁ ଋଗବେଦର ମଧ୍ୟାହ୍ନକାଳୀନ ସୂର୍ଯ୍ୟଦେବତା । ବେଦରେ ବିଷ୍ଣୁ ବୋଲି କୌଣସି ସ୍ୱତନ୍ତ୍ର ଦେବତା ବା ମୁଖ୍ୟଦେବତା ନାହାନ୍ତି । ବେଦରେ ବିଷ୍ଣୁ ସୂର୍ଯ୍ୟ ଦେବତାଙ୍କର ବହୁ ନାମରୁ ଏକ ନାମ ମାତ୍ର । ଖ୍ରୀ.ପୂ. ସମ୍ଭବତଃ ସୂର୍ଯ୍ୟ ବା ମିତ୍ରପୂଜା ହିଁ ପରେ ବିଷ୍ଣୁପୂଜା ବା ବୈଷ୍ଣବ ଧର୍ମରେ ପରିଣତ ହୋଇଛି । (ସଂକ୍ଷିପ୍ତ ଓଡ଼ିଆ ଜ୍ଞାନକୋଷ, ତୃତୀୟ ଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର, ଭୁବନେଶ୍ୱର, ୧୯୬୪, ପୃ.୪୧୯) । ବେଦରେ ସୂର୍ଯ୍ୟଦେବଙ୍କର ଅପର ନାମ ବିଷ୍ଣୁ ବୋଲି 'ଚରିତ ଚିନ୍ତାମଣି'-ଗ୍ରନ୍ଥରେ ଉଲ୍ଲେଖ ଅଛି । (ରଥ, ପଣ୍ଡିତ ନୀଳକଣ୍ଠ-ଚରିତ ଚିନ୍ତାମଣି, ପୁରାଣ ଖଣ୍ଡ, ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର, ପ୍ରଥମ ସଂସ୍କରଣ, ୧୯୬୨, ପୃ.,୧୯୧) । ସେହିପରି ଋଗ୍‌ବେଦର ଅନ୍ୟତ୍ର ଏହି ସୂର୍ଯ୍ୟ ବା ବିଷ୍ଣୁଙ୍କୁ ବଳୀ ଗ୍ରହଣ କରୁଥିବା ଦେବତା (God of sacrifice) ରୂପେ ବର୍ଣ୍ଣନା କରାଯାଇଛି । [B.N. Mukherjee– In the name of Vishnu- in the Statesman, Satureday, 4 June 1994, P.11] ଇତିହାସରୁ ଜଣାଯାଏ ଯେ ବ୍ରାହ୍ମଣ୍ୟ ଧର୍ମର ପୃଷ୍ଠପୋଷକମାନେ ବାସୁଦେବ ଶ୍ରୀକୃଷ୍ଣଙ୍କୁ ବିଷ୍ଣୁଙ୍କର ଅବତାର ବୋଲି ଚିହ୍ନିତ କରିବା ପାଇଁ ଚେଷ୍ଟା କରିଛନ୍ତି । କାରଣ ଏକ ଅନ୍ତର୍ମୁଖୀ ଧର୍ମର ଦେବତା ବାସୁଦେବ ଶ୍ରୀକୃଷ୍ଣଙ୍କୁ ବାହ୍ୟଜଗତର ଜଡ଼ ତଥା ବହିର୍ମୁଖୀ ଦେବତା ସୂର୍ଯ୍ୟ ବା ବିଷ୍ଣୁଙ୍କୁ ସମାନ ଆସନ ଦେବା ସଂପୂର୍ଣ୍ଣ ଅବାସ୍ତବ । ଏପରି କରାଯିବାର କାରଣ ହେଉଛି ବ୍ରାହ୍ମଣ୍ୟ ଧର୍ମର ପୃଷ୍ଠପୋଷକମାନେ ଯେତେବେଳେ ଦେଖିଲେ ଯେ ଶୈବ, ଭାଗବତ, ଜୈନ ଓ ବୌଦ୍ଧ ଧର୍ମର ପ୍ରଚଣ୍ଡ ପ୍ରଭାବ ଆଗରେ ଏହି ବିଷ୍ଣୁ ବା ସୂର୍ଯ୍ୟ ଉପାସନା ତିଷ୍ଠିପାରିବ ନାହିଁ, ସେତେବେଳେ ସେମାନେ ପ୍ରଚାର କରିବାକୁ ଆରମ୍ଭ କଲେ ଯେ ଏ ସମସ୍ତେ ବିଷ୍ଣୁ ବା ସୂର୍ଯ୍ୟଙ୍କର ଅବତାର ଅଟନ୍ତି । ଏହିଭଳି ଚେଷ୍ଟା ମାଧ୍ୟମରେ ଗୁପ୍ତ ଯୁଗରେ ବ୍ରାହ୍ମଣ୍ୟଧର୍ମର ପୁନରୁତ୍‌ଥାନ ହୋଇଗଲା । ଏପ୍ରକାର ପ୍ରଚାର ଏଭଳି ଚକ୍ରାନ୍ତମୂଳକ ଭାବେ ହୋଇଗଲା ଯେ ତାହା ସାଧାରଣ ଜନତା ବୁଝି ପାରି ନଥିଲେ । ମାତ୍ର ସେମାନେ ବିଷ୍ଣୁଙ୍କୁ କୌଣସି ସମୟରେ ସୂର୍ଯ୍ୟ ବୋଲି ଗ୍ରହଣ କରିନାହାନ୍ତି ।

ବ୍ରାହ୍ମଣଧର୍ମର ପୃଷ୍ଠପୋଷକମାନେ ଏହି ବିଷ୍ଣୁ ଶବ୍ଦର ଅନ୍ତରାଳରେ ସୂର୍ଯ୍ୟଙ୍କୁ ରଖି ଆତ୍ମସନ୍ତୋଷ ଲାଭ କରିଛନ୍ତି ।

ଖ୍ରୀଷ୍ଟୀୟ ତୃତୀୟ-ଚତୁର୍ଥ ଶତାବ୍ଦୀ ବେଳକୁ ରାଷ୍ଟ୍ରଶକ୍ତିର ପୃଷ୍ଠପୋଷକତା ଲାଭ କରିବାରେ ସଫଳକାମ ହୋଇ ଯାଉଥିବା ତଥା ସୂର୍ଯ୍ୟଉପାସନାର ପ୍ରଚାରମାନେ ଉତ୍ସାହିତ ହୋଇ ଯେଉଁସବୁ ପୌରାଣିକ ସାହିତ୍ୟମାନ ସୃଷ୍ଟିକଲେ, ତହିଁରେ ଜାତିବର୍ଣ୍ଣ ନିର୍ବିଶେଷରେ ଉପାସିତ ସମସ୍ତ ଦେବଦେବୀ ଓ ଧର୍ମ ବିଶ୍ୱାସକୁ ଏହି ବିଷ୍ଣୁ ବା ସୂର୍ଯ୍ୟଙ୍କର ଅଂଶ ବିଶେଷ ବା ଅବତାର ରୂପେ ପ୍ରଚାର କରିବାକୁ ଆରମ୍ଭ କଲେ । ଏହି ପ୍ରଚାରର ଅଙ୍ଗ ସ୍ୱରୂପ ଆମେମାନେ କୌଶଲ୍ୟାନନ୍ଦନ ଶ୍ରୀରାମ, ବାସୁଦେବ ଶ୍ରୀକୃଷ୍ଣ, ଗୌତମବୁଦ୍ଧ, ମହାବୀର ଓ ନୃସିଂହ ପ୍ରଭୃତିଙ୍କୁ ତଥାକଥିତ ବିଷ୍ଣୁ ବା ସୂର୍ଯ୍ୟଙ୍କର ଅଂଶବିଶେଷ ଭାବେ ଉପରୋକ୍ତ ପୁରାଣ ସାହିତ୍ୟମାନଙ୍କରେ ପ୍ରଚାରିତ ଓ ପ୍ରସାରିତ ହୋଇଥିବାର ଦେଖିବାକୁ ପାଉଥାଉ । କୌଶଲ୍ୟାନନ୍ଦନ ଶ୍ରୀରାମ, ଦେବକୀନନ୍ଦନ ବାସୁଦେବ ଶ୍ରୀକୃଷ୍ଣ, ସ୍ତମ୍ଭ ଉପାସନାରୁ ନିର୍ଗତ ପ୍ରଭୁ ନୃସିଂହ ଏକ ଅନ୍ତର୍ମୁଖୀ ଚେତନାର ବାହକ ରୂପେ ସମସାମୟିକ ସମାଜକୁ ପ୍ରଚଣ୍ଡ ଭାବେ ପ୍ରଭାବିତ କରି ଆସୁଥିବା ବେଳେ ବିଭିନ୍ନ ପୌରାଣିକ ସାହିତ୍ୟ ସୃଷ୍ଟି କରି ତାହାରି ମାଧ୍ୟମରେ ପ୍ରଚାର କରିବାକୁ ଉଦ୍ୟମ କରାଗଲା ଯେ ଏମାନେ ସମସ୍ତେ ବହିର୍ମୁଖୀ ସୂର୍ଯ୍ୟ ବା ବିଷ୍ଣୁ ଉପାସନାର ବିଭୂତିମାତ୍ର ଅଟନ୍ତି । ଏହି ପ୍ରଚାର କେବଳ ଯେ କୌଶଲ୍ୟାନନ୍ଦନ ଶ୍ରୀରାମ, ଦେବକୀନନ୍ଦନ ବାସୁଦେବ ଶ୍ରୀକୃଷ୍ଣ ଓ ପୁରୁଷୋତ୍ତମ ନୃସିଂହଙ୍କ ସଂପର୍କରେ କରାଯାଉଥିଲା, ତାହା ନୁହେଁ, ମହାବୀର ଓ ଗୌତମବୁଦ୍ଧଙ୍କ ପରି ଜୈନ ଓ ବୌଦ୍ଧ ଧର୍ମର ଉପାସ୍ୟ ଦେବତାମାନଙ୍କୁ ମଧ୍ୟ ଠିକ୍ ସେହିପରି ଭାବେ ସୂର୍ଯ୍ୟ ବା ବିଷ୍ଣୁଙ୍କର ବିଭୂତି ବା ଅବତାର ରୂପେ ପ୍ରଚାର କରିବା ନିମନ୍ତେ ସମସ୍ତ ପ୍ରକାର ଚେଷ୍ଟା କରାଯାଉଥିଲା ।

ଐତିହାସିକ ଓ ତାତ୍ତ୍ୱିକ ଦୃଷ୍ଟିକୋଣରୁ ବିଚାର କଲେ ଦେଖାଯିବ ଯେ ଓଡ୍ରଭୂମିରେ ଜଗନ୍ନାଥ ବିଭିନ୍ନ ବନଜାତି, ନାଗ ଏବଂ ଓଡ୍ର ସଂପ୍ରଦାୟମାନଙ୍କରେ ସାମଗ୍ରିକ ଆଧ୍ୟାତ୍ମିକ ଚେତନାର ଏକ ସମନ୍ୱିତ ପରିପ୍ରକାଶ ବା ବିଭୂତି ରୂପେ ବୌଦ୍ଧମାନଙ୍କ ଦ୍ୱାରା ସପ୍ତମ-ଅଷ୍ଟମ ଶତାବ୍ଦୀବେଳକୁ ପୂଜିତ ଓ ଉପାସିତ ହୋଇ ଆସୁଥିଲେ । ବିଭିନ୍ନ ବନଜାତି, ନାଗ ଓ ଓଡ୍ରମାନଙ୍କର ଆଧ୍ୟାତ୍ମିକ ଚେତନାରେ ସମନ୍ୱୟ ରକ୍ଷାକରି ଯେଉଁ ଜଗନ୍ନାଥ ଉପାସନାର ସୃଷ୍ଟି କରାଯାଇଥିଲା, ତାହା ଏହି ବୌଦ୍ଧମାନଙ୍କ ଦ୍ୱାରା ହିଁ ସଂଘଟିତ ହୋଇଥିଲା । ଏଣୁଥିପାଇଁ ଆମେମାନେ ଅଦ୍ୟାବଧି ଜଗନ୍ନାଥ ଉପାସନାରେ ବୌଦ୍ଧଧର୍ମର ପ୍ରଭାବ ଲକ୍ଷ୍ୟ କରିଥାଉ । ଏହି ସମନ୍ୱିତ ଆଧ୍ୟାତ୍ମିକ ଭାବ ଓ ବିଚାରଧାରା ଏକ ଅନ୍ତର୍ମୁଖୀ ଚେତନାର ବାହକ ଓ ଏହାର ନିଜର ସ୍ୱାତନ୍ତ୍ର୍ୟ ଓ ବୈଶିଷ୍ଟ୍ୟ ରହିଛି, ଯାହା ସମଗ୍ର ଭାରତୀୟ ଜନମାନସକୁ ପ୍ରଭାବିତ କରିପାରିଛି ଓ ଠିକ୍ ଏଣୁଥିପାଇଁ ସପ୍ତମ ଅଷ୍ଟମ ଶତାବ୍ଦୀ ବେଳକୁ ଜଗନ୍ନାଥ ସମଗ୍ର ଓଡ୍ରଭୂଖଣ୍ଡର ରାଷ୍ଟ୍ର ଦେବତାର ସ୍ୱୀକୃତି ଓ ମର୍ଯ୍ୟାଦା ଲାଭ କରିସାରିଥିଲେ । ମାଦଳାପାଞ୍ଜି ଅନୁଯାୟୀ କେଶରୀବଂଶର ଆବିର୍ଭାବ ସମୟରେ ଯଯାତି ପ୍ରଥମ ପାଟ ରାଜା ହେବାପରେ ଓଡ଼ିଶାର ଏହି ରାଷ୍ଟ୍ର ଦେବତାଙ୍କର ଅନ୍ୱେଷଣ ହିଁ କରିଥିଲେ ଓ ତାହାଙ୍କୁ ଆଣି ସେ ପୁରୀରେ ପ୍ରତିଷ୍ଠା କରିଥିଲେ । ଶ୍ରୀଜଗନ୍ନାଥ ପୁରୀରେ ପ୍ରତିଷ୍ଠିତ ହେବା ବେଳକୁ ପ୍ରଭୁ ଶ୍ରୀରାମ, ବାସୁଦେବ ଶ୍ରୀକୃଷ୍ଣ ଓ ନୃସିଂହ ପ୍ରଭୃତି ଉପାସ୍ୟ ଦେବତାମାନଙ୍କୁ ପୁରୁଷୋତ୍ତମ ଆଖ୍ୟା ଦିଆଯାଇ ବିଷ୍ଣୁ ବା ସୂର୍ଯ୍ୟ ପର୍ଯ୍ୟାୟଭୁକ୍ତ ଅବତାର ବା ଅଂଶ ରୂପେ ପ୍ରଚାର ଓ ପ୍ରସାର ଚାଲୁ ରହିଥିଲା । ଏହି ପ୍ରଚାର ଓ ପ୍ରସାର ଖ୍ରୀଷ୍ଟୀୟ ତୃତୀୟ ଓ ଚତୁର୍ଥ ଶତାବ୍ଦୀ ଠାରୁ ବିଭିନ୍ନ ପୌରାଣିକ ସାହିତ୍ୟ ମାଧ୍ୟମରେ ଉପାସନା ଧାରାରୁ ଅବ୍ୟାହତ ରହିଅଛି । ଶ୍ରୀଜଗନ୍ନାଥ ପୁରୀରେ ରାଜଶକ୍ତି ମାଧ୍ୟମରେ ପ୍ରତିଷ୍ଠିତ ହେବାପରେ ତାହାଙ୍କୁ ମଧ୍ୟ ପ୍ରାରମ୍ଭରୁ ଅନ୍ୟମାନଙ୍କ ପରି ବିଷ୍ଣୁ ବା ସୂର୍ଯ୍ୟ ପର୍ଯ୍ୟାୟଭୁକ୍ତ ଅବତାରୀ ବା ଅଂଶ ରୂପେ ପ୍ରଚାର ଓ ପ୍ରସାର କରାଯାଇ ଆସୁଅଛି । ଉଦାହରଣ ସ୍ୱରୂପ ଦେଖାଯିବ ଯେ ବିଭିନ୍ନ ପ୍ରଚାର ମାଧ୍ୟମରେ ଶ୍ରୀଜଗନ୍ନାଥଙ୍କୁ ପୁରୁଷୋତ୍ତମ ଆଖ୍ୟା ଦିଆଯାଇ ପ୍ରଥମାବସ୍ଥାରେ ଶ୍ରୀନୃସିଂହଙ୍କର ବିଭୂତି ଓ ପରବର୍ତ୍ତୀ ଅବସ୍ଥାରେ ବାସୁଦେବ ଶ୍ରୀକୃଷ୍ଣ ସହିତ ଚିହ୍ନିତ କରାଯିବାର ଏକ ପ୍ରୟାସ ହୋଇ ଆସୁଛି । ମାତ୍ର ଐତିହାସିକ ଓ ତାତ୍ତ୍ୱିକ ଦୃଷ୍ଟିକୋଣରୁ ବିଚାରକଲେ ଦେଖାଯିବ ଯେ ଶ୍ରୀଜଗନ୍ନାଥ ପୁରୁଷୋତ୍ତମ ଆଖ୍ୟାଯୁକ୍ତ ହେଲେ ମଧ୍ୟ ପୁରୁଷୋତ୍ତମ ନୃସିଂହଙ୍କର ବିଭୂତି ହୋଇପାରିବେ ନାହିଁ । ଠିକ୍ ସେହିପରି ପୁରୁଷୋତ୍ତମ ଆଖ୍ୟାଯୁକ୍ତ ହେଲେ ମଧ୍ୟ ତାହାଙ୍କୁ ପୁରୁଷୋତ୍ତମ ଶ୍ରୀକୃଷ୍ଣଙ୍କ ସହିତ ଚିହ୍ନିତ କରାଯାଇପାରିବ ନାହିଁ । ପୁରୁଷୋତ୍ତମ ଆଖ୍ୟା ଦିଆଗଲେ ମଧ୍ୟ ତାତ୍ତ୍ୱିକ ଦୃଷ୍ଟିକୋଣରୁ ତାହା ସର୍ବବ୍ୟାପୀ ଶ୍ରୀ ଜଗନ୍ନାଥଙ୍କର ସଂପୂର୍ଣ୍ଣ ପରିଚୟ ହୋଇ ପାରିବ ନାହିଁ । ସମ୍ଭବତଃ ଏଣୁଥିପାଇଁ ସପ୍ତଦଶ ଶତାବ୍ଦୀର କବି ଦିବାକର ଦାସ ଉଲ୍ଲେଖ କରିଛନ୍ତି -

"ଜଗନ୍ନାଥ ଯେ ଷୋଳକଳା, ତହୁଁ କଳାଏ ନନ୍ଦ ବଳା

କଳାକୁ ଷୋଳକଳା କରି, ଗୋପେ ବିହରେ ନରହରି ।"

(ଜଗନ୍ନାଥ ଚରିତାମୃତ, ଷଷ୍ଠ ଅଧ୍ୟାୟ- ପୃ.୮୩,୮୪)

ଏଥିରୁ ଦେଖାଯିବ ଯେ ପୁରୁଷୋତ୍ତମ ଶବ୍ଦଟିକୁ ଏକ ସ୍ୱୀକୃତ ଶବ୍ଦଭାବେ ଗୁଣାତୀତ ଜଗନ୍ନାଥଙ୍କ ସଂପର୍କରେ ବ୍ୟବହାର କରାଯିବାର ଏକ ପ୍ରୟାସ କରାଯାଇଅଛି । ମାତ୍ର ଜଗନ୍ନାଥ ତାତ୍ତ୍ୱିକ ଦୃଷ୍ଟିକୋଣରୁ ତା' ଠାରୁ ବହୁ ଉର୍ଦ୍ଧ୍ୱରେ, ସଂପୂର୍ଣ୍ଣ ପୃଥକ ଓ ସ୍ୱତନ୍ତ୍ର । ଏ ଦୃଷ୍ଟିରୁ ପୁରୁଷୋତ୍ତମ ଆଖ୍ୟାଟି ବିଷ୍ଣୁଙ୍କ ପର୍ଯ୍ୟାୟଭୁକ୍ତ ବିଭୂତି ବା ଅବତାରୀ ରୂପେ ପ୍ରଚାରିତ କରାଯାଉଥିବା ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମ, ପୁରୁଷୋତ୍ତମ ବାସୁଦେବ ଶ୍ରୀକୃଷ୍ଣ ଓ ପୁରୁଷୋତ୍ତମ ନୃସିଂହଙ୍କ ପ୍ରତି ହୁଏତ ପ୍ରଯୁଜ୍ୟ ହୋଇପାରେ । ମାତ୍ର ଠିକ୍ ସେହିଦୃଷ୍ଟିରୁ ଏହା ଗୁଣାତୀତ ଜଗନ୍ନାଥଙ୍କ ପ୍ରତି ପ୍ରଯୁଜ୍ୟ ହୋଇପାରିବ ନାହିଁ ।

ସୋମବଂଶୀ ବା କେଶରୀ ବଂଶୀୟ ରାଜାମାନଙ୍କର ପୂର୍ବପୁରୁଷମାନେ ମଧ୍ୟପ୍ରଦେଶର ଶ୍ରୀପୁରଠାରେ ରାଜଧାନୀ କରି ରାଜତ୍ୱ କରୁଥିବା ବେଳେ ପୁରୁଷୋତ୍ତମ ନୃସିଂହ ସେମାନଙ୍କର ଗୃହଦେବତା ଥିଲେ । ରାଇପୁର ମ୍ୟୁଜିୟମରେ ସଂରକ୍ଷିତ ଏକ ଅଭିଲେଖରୁ ଜଣାଯାଏ ଯେ ସୋମବଂଶୀ ରାଣୀ ବାସଟ୍ଟା ଦେବୀ ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରେ ରାଜଧାନୀ ଶ୍ରୀପୁରଠାରେ ତାହାଙ୍କର ଗୃହଦେବତା ପୁରୁଷୋତ୍ତମ ନରସିଂହଙ୍କର ପୂଜା ଉପାସନା ନିମନ୍ତେ ଏକ ମନ୍ଦିର ନିର୍ମାଣ କରିଥିଲେ । ପରବର୍ତ୍ତୀ ଅବସ୍ଥାରେ ସୋମବଂଶୀମାନେ ସୋନପୁରଠାରେ ନିଜର ଶାସନ ପ୍ରତିଷ୍ଠା କରିବାପରେ ଗନ୍ଧମାର୍ଦ୍ଦନ ପର୍ବତ (ବଲାଙ୍ଗୀରର ନୃସିଂହନାଥ)ରେ ମଧ୍ୟ ପୁରୁଷୋତ୍ତମ ନରସିଂହଙ୍କର ଉପାସନା ନିମନ୍ତେ ଏକ ମନ୍ଦିର ନିର୍ମାଣ କରିଥିଲେ । ଠିକ୍

ଚଳନ୍ତି ପୃଷ୍ଠା

ତାପରବର୍ତ୍ତୀ ଅବସ୍ଥାରେ ପୁରୀରେ ନିଜର ଗୃହ ଦେବତା ପୁରୁଷୋତ୍ତମ-ନୃସିଂହଙ୍କ ପୂଜା ଆରାଧନା ନିମନ୍ତେ ସୋମବଂଶୀମାନେ ଏକ ମନ୍ଦିର ନିର୍ମାଣ କରିଥିବା କଥା ଇତିହାସରୁ ଜଣାଯାଏ । ରାଜ୍ୟଜୟ କଲାବେଳେ ଏହି ନୃସିଂହ ଉପାସନାକୁ ସମଗ୍ର ଓଡ଼ିଶାରେ ଆଦୃତ ଓ ପ୍ରଚଳନ କରିବା ପାଇଁ ସେହି ସୋମବଂଶୀ ରାଜାମାନଙ୍କର ପୃଷ୍ଠପୋଷକତାରେ ଅନେକ ଗ୍ରନ୍ଥ ସାହିତ୍ୟ ସୃଷ୍ଟି କରାଯାଇଥିଲା । ଏହି ପର୍ଯ୍ୟାୟରେ ଆମେ ମୁରାରୀ ମିଶ୍ରଙ୍କ 'ଅନର୍ଘରାଘବ' ନାଟକ, କୃଷ୍ଣ ମିଶ୍ରଙ୍କ 'ପ୍ରବୋଧ ଚନ୍ଦ୍ରୋଦୟ' ନାଟକ, ସତାନନ୍ଦଙ୍କ 'ଭାସ୍ୱତି' ଓ 'କୃତ୍ୟ କଳ୍ପତରୁ' ଏବଂ 'ବ୍ରହ୍ମଯାମଳ ତନ୍ତ୍ର' ଆଦି ଗ୍ରନ୍ଥ ଦେଖିବାକୁ ପାଉ । ଏହି ସବୁ ସାହିତ୍ୟରେ ଯେଉଁ ପୁରୁଷୋତ୍ତମଙ୍କର ସ୍ତୁତିଗାନ କରାଯାଇଛି, ତାହା ସୋମବଂଶୀଙ୍କ କର୍ତ୍ତୃକ ମଧ୍ୟପ୍ରଦେଶର ଶ୍ରୀପୁରରୁ ଆନୀତ ସ୍ୱୀୟ ଗୃହ ଦେବତା ପୁରୁଷୋତ୍ତମ ନୃସିଂହଙ୍କ ସମ୍ପର୍କରେ ହିଁ କରାଯାଇଛି । ଅନେକ ଐତିହାସିକ, ସାହିତ୍ୟିକ ତଥା ଗବେଷକ ଏହି ପୁରୁଷୋତ୍ତମ ନୃସିଂହଙ୍କୁ ଜଗନ୍ନାଥଙ୍କ ସହିତ ଚିହ୍ନିତ କରିବା ପାଇଁ ଏକ ଉଦ୍ୟମ କରିଅଛନ୍ତି । ସୋମବଂଶୀମାନେ ନିଜର ଗୃହଦେବତା ପୁରୁଷୋତ୍ତମ ନୃସିଂହଙ୍କୁ ମଧ୍ୟପ୍ରଦେଶର ଶ୍ରୀପୁରରୁ ଆଣି ପୁରୀରେ ଯେଉଁ ପୂଜାଉପାସନାର ବ୍ୟବସ୍ଥା କଲେ, ତାହା ଫଳରେ ସେତେବେଳେ ପୁରୀକୁ ପୁରୁଷୋତ୍ତମ ବା ପୁରୁଷୋତ୍ତମ କ୍ଷେତ୍ର ବୋଲି ପ୍ରଚାର କରାଯାଉଥିଲା । ସେସମୟରେ ପୁରୀରୁ ସମଗ୍ର ଓଡ଼ିଶାରେ ପୁରୁଷୋତ୍ତମ ନୃସିଂହଙ୍କର ପୂଜାଉପାସନା ପ୍ରଚଳନ କରିବା ନିମନ୍ତେ ଯେଉଁ ପ୍ରୟାସ କରାଯାଉଥିଲା, ସେଥିରେ ପୁରୁଷୋତ୍ତମ ନୃସିଂହଙ୍କୁ କ୍ଷେତ୍ରାଧିପତି ରୂପେ ପ୍ରଚାର କରାଯାଇ ସମଗ୍ର ପୁରୀକୁ କ୍ଷେତ୍ରାଧିପତିଙ୍କ ନାମାନୁସାରେ ପୁରୁଷୋତ୍ତମ ବା ପୁରୁଷୋତ୍ତମ କ୍ଷେତ୍ର ବୋଲି ପ୍ରଚାର କରାଗଲା । ମାତ୍ର ପରବର୍ତ୍ତୀ ଅବସ୍ଥାରେ ଓଡ୍ରଭୂଖଣ୍ଡର ରାଷ୍ଟ୍ରଦେବତାର ମର୍ଯ୍ୟାଦା ଓ ସ୍ୱୀକୃତି ଲାଭ କରିସାରିଥିବା ଜଗନ୍ନାଥଙ୍କୁ ପୁରୀରେ ଅବସ୍ଥାପିତ କଲାବେଳେ ସେ ଘଟଣାକ୍ରମେ ନୃସିଂହଙ୍କ ସ୍ଥାନରେ ପୁରୀର କ୍ଷେତ୍ରାଧିପତି ତଥା ମୁଖ୍ୟ ଅଧିଷ୍ଠିତ ଦେବତା (Presiding Deity) ର ସମ୍ମାନ ଓ ମର୍ଯ୍ୟାଦା ଲାଭ କଲେ । ସେ ଦୃଷ୍ଟିରୁ ବିଚାର କଲେ ଦେଖାଯିବ ଯେ ପୂର୍ବରୁ ପୁରୀକୁ ପୁରୁଷୋତ୍ତମ ବା ପୁରୁଷୋତ୍ତମ କ୍ଷେତ୍ରଭାବେ ପ୍ରଚାର କରାଯାଉଥିଲେ ମଧ୍ୟ ପରବର୍ତ୍ତୀ ଅବସ୍ଥାରେ ଘଟଣାକ୍ରମେ ତାହା ଜଗନ୍ନାଥ କ୍ଷେତ୍ର ବା ଜଗନ୍ନାଥ ଧାମରେ ପରିଣତ ହୋଇ ଜଗନ୍ନାଥ ତହିଁରେ ମୁଖ୍ୟ ଅଧିଷ୍ଠିତ ଦେବତା ହୋଇ ପୂଜା ପାଇଲେ । ଏ ଦୃଷ୍ଟିରୁ ବିଚାର କଲେ 'ପୁରୁଷୋତ୍ତମ ବା ପୁରୁଷୋତ୍ତମ କ୍ଷେତ୍ର' କହିଲେ 'ଜଗନ୍ନାଥ ବା ଜଗନ୍ନାଥ କ୍ଷେତ୍ର ବା ଜଗନ୍ନାଥ ଧାମ' ବୋଲି ବୁଝାଯିବ ନାହିଁ । ଏହି ଶବ୍ଦଗୁଡ଼ିକ ଏକ ଓ ଅଭିନ୍ନ ନୁହନ୍ତି । ପୁରୁଷୋତ୍ତମ କହିଲେ କେବଳ ପୁରୁଷୋତ୍ତମ ନୃସିଂହଙ୍କୁ ହିଁ ବୁଝାଏ-ଜଗନ୍ନାଥଙ୍କୁ ନୁହେଁ । ଜଗନ୍ନାଥ ସମ୍ପୂର୍ଣ୍ଣ ଭିନ୍ନ ଓ ସ୍ୱତନ୍ତ୍ର । ମାତ୍ର ଜଗନ୍ନାଥ ଶବ୍ଦକୁ ପୁରୁଷୋତ୍ତମ ଶବ୍ଦ ସହିତ ଚିହ୍ନିତ କରାଯାଇ ଜଗନ୍ନାଥଙ୍କୁ ବିଷ୍ଣୁ ପର୍ଯ୍ୟାୟଭୁକ୍ତ ବୈଷ୍ଣବଧର୍ମର ଦେବତା ରୂପେ ପ୍ରଚାର କରାଯିବାର ଏକ ଅପଚେଷ୍ଟା କରାଯାଇଛି । [ Chateswar Temple Inscription re-edited by Dr. Chhabra in Epigraphica Indica. Vol.XXIX, p-121-123]

ପ୍ରାରମ୍ଭରୁ ଜଗନ୍ନାଥଙ୍କୁ ପୁରୁଷୋତ୍ତମ ନୃସିଂହଙ୍କ ସହିତ ବା ତାଙ୍କର ବିଭୂତି ରୂପେ ଚିହ୍ନିତ କରିବା ପାଇଁ ପ୍ରୟାସ କରାଯାଉଥିଲେ ମଧ୍ୟ ପରବର୍ତ୍ତୀ ଅବସ୍ଥାରେ ବୈଷ୍ଣବ ଧର୍ମାବଲମ୍ବୀମାନେ ଭାଗବତ ଧର୍ମର ଉପାସ୍ୟଦେବତା ବାସୁଦେବ ଶ୍ରୀକୃଷ୍ଣଙ୍କୁ ଜଗନ୍ନାଥଙ୍କ ସହିତ ଚିହ୍ନିତ କରାଇବାର ପ୍ରୟାସ ଆରମ୍ଭ କରିଥିଲେ । ତାତ୍ତ୍ୱିକ ଦୃଷ୍ଟିକୋଣରୁ ଭାଗବତଧର୍ମର ବାସୁଦେବ ଶ୍ରୀକୃଷ୍ଣ ଓ ବୌଦ୍ଧମାନଙ୍କ ଦ୍ୱାରା ପ୍ରଚଳିତ ଜଗନ୍ନାଥଧର୍ମର ଦୃଷ୍ଟିଭଙ୍ଗୀରେ ବିଶେଷ ପ୍ରଭେଦ ନଥିଲେ ମଧ୍ୟ ଉଭୟ ଏକ ଓ ଅଭିନ୍ନ ନୁହନ୍ତି । ଠିକ୍ ଯେପରି ଭାଗବତ ଧର୍ମର ଉପାସ୍ୟ ବାସୁଦେବ ଶ୍ରୀକୃଷ୍ଣ ବୈଷ୍ଣବଧର୍ମର ଉପାସ୍ୟ ବିଷ୍ଣୁ ବା ସୂର୍ଯ୍ୟଙ୍କ ଠାରୁ ପୃଥକ ଓ ସ୍ୱତନ୍ତ୍ର ଅଟନ୍ତି, ସେହିପରି ବୌଦ୍ଧମାନଙ୍କ ଦ୍ୱାରା ପ୍ରଚଳିତ ଜଗନ୍ନାଥ ଧର୍ମ, ଭାଗବତ ଧର୍ମ ଓ ତାହାର ଉପାସ୍ୟ ଦେବତା ବାସୁଦେବ ଶ୍ରୀକୃଷ୍ଣଙ୍କ ଠାରୁ ପୃଥକ୍ ଓ ସ୍ୱତନ୍ତ୍ର । ତଥାପି ବୈଷ୍ଣବଧର୍ମାବଲମ୍ବୀମାନଙ୍କର ଚକ୍ରାନ୍ତ ଫଳରେ ପ୍ରଥମାବସ୍ଥାରେ ବାସୁଦେବ ଶ୍ରୀକୃଷ୍ଣଙ୍କୁ ବିଷ୍ଣୁଙ୍କର ଅଂଶବିଶେଷ ବା ଅବତାର ଭାବେ ପ୍ରଚାର କରି ବିଭିନ୍ନ ପୌରାଣିକ ସାହିତ୍ୟ ସୃଷ୍ଟି କରାଗଲା । ଠିକ୍ ସେହିପରି ପରବର୍ତ୍ତୀ ଅବସ୍ଥାରେ ଜଗନ୍ନାଥଙ୍କୁ ବିଭିନ୍ନ ପୌରାଣିକ ସାହିତ୍ୟ ମାଧ୍ୟମରେ ବାସୁଦେବ ଶ୍ରୀକୃଷ୍ଣଙ୍କ ସହିତ ଚିହ୍ନିତ କରାଇବା ପାଇଁ ଏକ ଅପଚେଷ୍ଟା ଅବ୍ୟାହତ ରଖାଯାଇଛି । ମାତ୍ର ଉଭୟଙ୍କର ଦୃଷ୍ଟିଭଙ୍ଗୀ ଭିନ୍ନ ଓ ପୃଥକ । ସମ୍ଭବତଃ ଏହି କଥାକୁ ଲକ୍ଷ୍ୟକରି ଦ୍ୱାଦଶ ଶତାବ୍ଦୀରେ କବି ଜୟଦେବ ଗାଇ ଉଠିଥିଲେ -

"ନିନ୍ଦସି ଯଜ୍ଞ ବିଧେରହଃ ଶ୍ରୁତିଜାତମ୍
ସଦୟ ହୃଦୟ ଦର୍ଶିତ ପଶୁଘାତମ୍
କେଶବ ଧୃତ - ବୁଦ୍ଧ ଶରୀର - ଜୟ ଜଗଦିଶ ହରେ ।"
(ଜୟଦେବ- ଗୀତଗୋବିନ୍ଦ, ଦଶାବତାର ସ୍ତୋତ୍ରମ୍)

ଜୟଦେବଙ୍କ ଉକ୍ତି ଅନୁସାରେ ଦ୍ୱାପରର କେଶବ ବା ବାସୁଦେବ ଶ୍ରୀକୃଷ୍ଣ ଓଡ୍ର ଭୂଖଣ୍ଡର ରାଷ୍ଟ୍ର ଦେବତା ଜଗନ୍ନାଥଙ୍କର ସ୍ଥାନ ଗ୍ରହଣ କରିଥିଲେ ମଧ୍ୟ ଦୃଷ୍ଟିଭଙ୍ଗୀର ଐକ୍ୟ ଓ ସାମ୍ୟସତ୍ତ୍ୱେ ଉଭୟ ଏକ ଓ ଅଭିନ୍ନ ନୁହନ୍ତି ବୋଲି ଅନେକ ଗବେଷକ ଦର୍ଶାଇ ଯାଇଛନ୍ତି । ପୂର୍ବକଥିତ ମତେ ବୈଷ୍ଣବ ବା ବ୍ରାହ୍ମଣ୍ୟ ଧର୍ମର ପୃଷ୍ଠପୋଷକମାନେ ପରିସ୍ଥିତିର ଚାପରେ ପଡ଼ି ବାସୁଦେବ ଶ୍ରୀକୃଷ୍ଣଙ୍କୁ ଅଗତ୍ୟା ବୈଷ୍ଣବ ବା ବ୍ରାହ୍ମଣ୍ୟ ଧର୍ମର ଦେବତା ରୂପେ ଗ୍ରହଣ କରିବାକୁ ବାଧ୍ୟ ହୋଇଥିଲେ ମଧ୍ୟ ଜଗନ୍ନାଥ ଧର୍ମ ସ୍ୱତନ୍ତ୍ର ଓ ପୃଥକ । ଏହି କଥା, ଆଲୋଚନା କରିବାକୁ ଯାଇ ଡଃ. ହରେକୃଷ୍ଣ ମହତାବ ତାହାଙ୍କ 'ଓଡ଼ିଶା ଇତିହାସ' ଗ୍ରନ୍ଥରେ ଦର୍ଶାଇ ଅଛନ୍ତି, "ଜଗନ୍ନାଥଙ୍କୁ ବ୍ରାହ୍ମଣଧର୍ମର ଦେବତା ବୋଲି ଗ୍ରହଣ କରିବାରେ ତିନୋଟି ପ୍ରବଳ ବାଧା ଅଛି- (୧) ଜଗନ୍ନାଥ, ଏହି ନାମ, (୨) ଜଗନ୍ନାଥଙ୍କ ମୂର୍ତ୍ତି ଓ (୩) ସୁଭଦ୍ରାଙ୍କର ତାଙ୍କ ସହ ସମାବେଶ ।

କୃଷ୍ଣ ବାସୁଦେବଙ୍କ ନାମ ଛୁଆଡ଼େ ଉଡ଼ିଯାଇ 'ଜଗନ୍ନାଥ' ନାମ କେଉଁଠୁ କିପରି ଆସିଲା ? + + + (ମହତାବ, ହରେକୃଷ୍ଣ-ଓଡ଼ିଶା ଇତିହାସ, ଷ୍ଟୁଡେଣ୍ଟସ୍ ଷ୍ଟୋର, ବହ୍ମପୁର-କଟକ,୧୯୪୮, ପୃ.୪୩୩)

ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ର, ଲୀଳା ପୁରୁଷୋତ୍ତମ ଶ୍ରୀକୃଷ୍ଣ ଓ ପୁରୁଷୋତ୍ତମ ନୃସିଂହଙ୍କୁ ବିଷ୍ଣୁ ବା ସୂର୍ଯ୍ୟଙ୍କର ବିଭୂତି ବା ଅବତାର ଭାବେ ପ୍ରଚାର କରିବା ସଙ୍ଗେ ସଙ୍ଗେ ବ୍ରାହ୍ମଣ୍ୟ ଧର୍ମର ପୃଷ୍ଠପୋଷକମାନେ ଓଡ଼ିଶାରେ ସୂର୍ଯ୍ୟ ବା ବିଷ୍ଣୁ ଉପାସନାର ସ୍ୱତନ୍ତ୍ର ପ୍ରଚଳନ ନିମନ୍ତେ ଏକ ଦୀର୍ଘ ବ୍ୟୟସାପେକ୍ଷ ପ୍ରୟାସ କରିଥିଲେ । ତାହାର ଫଳ ସ୍ୱରୂପ ଆମେ ପ୍ରସିଦ୍ଧ ଅର୍କ କ୍ଷେତ୍ର କୋଣାର୍କରେ ନିର୍ମିତ ବିଷ୍ଣୁ ବା ସୂର୍ଯ୍ୟ ମନ୍ଦିରଟି

ଦେଖିବାକୁ ପାଉଥାଉ । ବହୁ ଅର୍ଥ ବ୍ୟୟ କରି ଏକ ଅପୂର୍ବ କାରୁକାର୍ଯ୍ୟପୂର୍ଣ୍ଣ ମନ୍ଦିର ମାଧ୍ୟମରେ ଯେଉଁ ବିଷ୍ଣୁ ଉପାସନାର ପ୍ରଚଳନ କରାଗଲା, ତାହା ଓଡ଼ିଶାର ଜନସାଧାରଣ ଗ୍ରହଣ କରିପାରିଲେ ନାହିଁ । କୋଣାର୍କ ବିଷ୍ଣୁ ମନ୍ଦିରର ଅପୂର୍ବ କାରୁକାର୍ଯ୍ୟମୟ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ନିମନ୍ତେ ଓଡ଼ିଶାବାସୀ ଗର୍ବ ଅନୁଭବ କରୁଥାଇ ପାରନ୍ତି, ମାତ୍ର ବିଷ୍ଣୁ ଉପାସନାଟିକୁ ଗ୍ରହଣ କରି ପାରିଲେ ନାହିଁ । ତାହାରି ଫଳରେ କୋଣାର୍କର ଅରୁଣସ୍ତମ୍ଭ ଆଜି ପୁରୀ ବଡ଼ଦେଉଳର ସିଂହଦ୍ୱାର ସମ୍ମୁଖରେ ବଡ଼ଦାଣ୍ଡରେ ଅବସ୍ଥାପିତ କରାଯାଇଛି । ଅନ୍ୟପକ୍ଷରେ ବିଷ୍ଣୁ ମନ୍ଦିରଟି ସମ୍ପୂର୍ଣ୍ଣ ଭଗ୍ନ ସ୍ତୂପରେ ପରିଣତ ହୋଇଯାଇଛି । ଉଭୟ ଜଗନ୍ନାଥ ଓ କୋଣାର୍କର ବିଷ୍ଣୁମନ୍ଦିର ସମୁଦ୍ରକୂଳରେ ଅବସ୍ଥିତ ହୋଇଥିଲେ ମଧ୍ୟ କୋଣାର୍କମନ୍ଦିର ପୁରୀ ଠାରୁ ଅର୍ବାଚୀନ । ଗଙ୍ଗବଂଶୀ ଚୋଡ଼ଗଙ୍ଗ (ଖ୍ରୀ.ଅ. ୧୦୭୮-୧୧୪୭)ଙ୍କ ପୁରୀ ମନ୍ଦିର ନିର୍ମାଣ (ଖ୍ରୀ ୧୧୧୫-୧୧୪୭)ର ପ୍ରାୟ ଶହେ ବର୍ଷ ପରେ ପ୍ରଥମ ନରସିଂହଦେବ ବା ଲାଙ୍ଗୁଳା ନରସିଂହ ଦେବ (ଖ୍ରୀ:ଅ: ୧୨୩୮-୧୨୬୪) ଙ୍କ ଦ୍ୱାରା ଏହି କୋଣାର୍କ ମନ୍ଦିରଟି ନିର୍ମିତ ହୋଇଥିଲା ।

ବସ୍ତୁତଃ ଭାରତର ଜନସାଧାରଣ ସୂର୍ଯ୍ୟ ବା ବିଷ୍ଣୁ ଉପାସନାକୁ ବହୁ ସଂଖ୍ୟାରେ ପ୍ରତ୍ୟାଖ୍ୟାନ କରିଆସିଛନ୍ତି । ତେଣୁ ଏହି ସୂର୍ଯ୍ୟ ବା ବିଷ୍ଣୁ ଉପାସନାର ପୃଷ୍ଠପୋଷକମାନେ ଅନ୍ୟାନ୍ୟ ଜନପ୍ରିୟ ଦେବତାମାନଙ୍କୁ ବୈଷ୍ଣବୀୟ ବୋଲି ଅଭିହିତ କରି ସେହିମାନଙ୍କ ମାଧ୍ୟମରେ ବୈଷ୍ଣବ ଧର୍ମ ନାମରେ ବିଷ୍ଣୁ ଉପାସନାର ପରମ୍ପରାକୁ ବଞ୍ଚାଇ ରଖିବା ପାଇଁ ପ୍ରୟାସ କରିଚାଲିଛନ୍ତି । ଏହା ହିଁ ମୂଳତଃ ବୈଷ୍ଣବ ଧର୍ମର ସୃଷ୍ଟି ଓ ପ୍ରସାରର ଇତିହାସ । ଆଜି ଯଦି ଜଗନ୍ନାଥଙ୍କ ନିକଟରେ ଲକ୍ଷ ଲକ୍ଷ ଭକ୍ତ ଦର୍ଶକଙ୍କ ସମାଗମ ହେଉଛି, ତାହାର କାରଣ ହେଉଛି ଜଗନ୍ନାଥ ଧର୍ମ ସମ୍ପ୍ରଦାୟ ପ୍ରଚାରିତ ବୈଷ୍ଣବ ଧର୍ମ ଠାରୁ ଊର୍ଦ୍ଧ୍ୱରେ ଥାଇ ଏକ ମାନବବାଦୀ ଧର୍ମ ରୂପେ ନିଜର ସ୍ୱାତନ୍ତ୍ର୍ୟ ଓ ବୈଶିଷ୍ଟ୍ୟ ବଜାୟ ରଖି ପାରିଛି ।

ଏଥିରୁ ସ୍ପଷ୍ଟ ହୁଏ ଯେ ଜଗନ୍ନାଥ ପୁରୁଷୋତ୍ତମ ନୃସିଂହ ବା ବାସ୍ତବରେ ଶ୍ରୀକୃଷ୍ଣ ନୁହଁନ୍ତି । ଏହା ସ୍ୱୟଂ ଜଗନ୍ନାଥ ଧାମରେ ଅଧିଷ୍ଠିତ ଏକ ସ୍ୱତନ୍ତ୍ର ମାନବବାଦୀ ଦେବତା । ଏ ଦୃଷ୍ଟିରୁ ଜଗନ୍ନାଥ ଧାମକୁ ପୁରୁଷୋତ୍ତମକ୍ଷେତ୍ର ବୋଲି କୁହାଯିବା ଉଚିତ ନୁହେଁ । ପୁରୁଷୋତ୍ତମ କ୍ଷେତ୍ର ଶବ୍ଦଟି କେବଳ ପୁରୁଷୋତ୍ତମ-ନୃସିଂହଙ୍କ ପାଇଁ ପ୍ରଯୁଜ୍ୟ ।

ବରିଷ୍ଠ ଅଧ୍ୟାପକ, ସ୍ନାତକୋତ୍ତର ଓଡ଼ିଆ ବିଭାଗ,
ସରକାରୀ ମହାବିଦ୍ୟାଳୟ, ଅନୁଗୋଳ

• • •

# ଜଗନ୍ନାଥ ଜଣାଣ

• ଶ୍ରୀ ହାଡ଼ିବନ୍ଧୁ ମିଶ୍ର

ମୁଁ ଅନିତ୍ୟ ତୁମେ ନିତ୍ୟ          ମୁଁ ଅନୃତ ତୁମେ ସତ୍ୟ
ମୁଁ ଜୀବ ପରମ ତୁମେ ଆହେ ପରାତ୍ପର
ତୁଚ୍ଛ ଏ ଜୀବନାୟନେ          ଇଚ୍ଛା ନାହିଁ କିଛି ଆନେ
ତବ ମୁଖ-ପଦ୍ମ-ମଧୁ ମୋ ମନ ଭ୍ରମର ।

ମୁଁ ବୁଦ୍‌ବୁଦ ତୁମେ ସିନ୍ଧୁ          ମୁଁ କହ୍ଲାର ତୁମେ ଇନ୍ଦୁ
ହେ ବାଞ୍ଛିତ ପ୍ରିୟତମ ଜୀବନ ସର୍ବସ୍ୱ
ତୁମେ କାୟା ମୁହିଁ ଛାୟା          ମୁଁ ମୋହିତ ତୁମେ ମାୟା
ତୁମ ବିନା କାହିଁ ସତ୍ତା ମୋହରି ନିଜସ୍ୱ ?

ଦାରୁବ୍ରହ୍ମ ପରବ୍ରହ୍ମ          ବିରାଜିତ ମର୍ତ୍ତ୍ୟଧାମ
ନିରାଜିତ ନୀଳାଚଳେ ଚତୁର୍ଦ୍ଧା ମୂରତି
ରତ୍ନସିଂହାସନେ ବିଜେ          କରିଅଛ ଦେବରାଜେ
ବିତରୁଛ ସାମ୍ୟ ମୈତ୍ରୀ ଦୁର୍ଲ୍ଲଭ ବିଭୂତି ।

ନିଜ ରୂପ ନିଜେ ଚିହ୍ନି          କମନୀୟ କୃଷ୍ଣକାନ୍ତି
ହେ ଅଚିନ୍ତ୍ୟ ଚିନ୍ତାମଣି ପରମ କୃପାଳୁ
ପତିତ ଉଦ୍ଧାର ପାଇଁ          ଅଣାକାରୁ ହେଲ ତୋ
ପରାଗତି ମୁକ୍ତିଦାତା ବାଞ୍ଛା କଳ୍ପତରୁ ।

ସର୍ବବ୍ୟାପୀ ସର୍ବଦ୍ରଷ୍ଟା          ଅଖିଳ ବ୍ରହ୍ମାଣ୍ଡ ସ୍ରଷ୍ଟା
ସୃଷ୍ଟି ସ୍ଥିତି ଲୟକର୍ତ୍ତା ସର୍ବଶକ୍ତିମାନ
ଆର୍ତ୍ତତ୍ରାଣ ଅନ୍ତର୍ଯ୍ୟାମୀ          ଆହେ ଜଗନ୍ନାଥ ସ୍ୱାମୀ
ମୋ ନୟନପଥଗାମୀ ହୁଅ ଭଗବାନ ।

ନରେନ୍ଦ୍ରକୋଣ ...
ପୁରୀ-୨



# ଦାରୁ ଦେବତା ଶ୍ରୀଜଗନ୍ନାଥ

● ଶ୍ରୀ ପ୍ରଫୁଲ୍ଲ ପଟ୍ଟନାୟକ

"ନୀଳାଚଳନିବାସାୟ ନିତ୍ୟାୟ ପରମାତ୍ମନେ
ବଳଭଦ୍ରସୁଭଦ୍ରାଭ୍ୟାଂ ଜଗନ୍ନାଥାୟତେ ନମଃ"

ଶ୍ରୀ ନୀଳକନ୍ଦରରେ ଅଧିଷ୍ଠିତ ବିଶ୍ୱବିଦିତ ପ୍ରଭୁ ଜଗନ୍ନାଥ ଏକ ମହାନ୍ ବିସ୍ମୟ । ତାଙ୍କର ସୃଷ୍ଟିତତ୍ତ୍ୱ ଚିର ରହସ୍ୟମୟ । ବେଦ, ପୁରାଣ ଇତିହାସର ପ୍ରମାଣ ତଥା ବିଭିନ୍ନ ଆଖ୍ୟାୟିକାକୁ କେନ୍ଦ୍ରକରି ପ୍ରଭୁ ଶ୍ରୀ ଜଗନ୍ନାଥଙ୍କ ସ୍ଥିତିକୁ ବିଚାର କରାଯାଇପାରେ । କାରଣ ଜଗନ୍ନାଥଙ୍କର ନିର୍ଦ୍ଦିଷ୍ଟ ଇତିହାସ ନାହିଁ । ଇତିହାସ ଥିଲେ ସେ ଜଗତର ନାଥ ଭାବରେ ପ୍ରତିଫଳିତ ହୋଇନଥାନ୍ତେ । ଏସବୁ ସତ୍ତ୍ୱେ ଜଗନ୍ନାଥଙ୍କ ଆଦି, ଅନ୍ତ ଖୋଜି ପାଇବା ପାଇଁ ଆଜି ସମସ୍ତେ ବ୍ୟାକୁଳ ଓ ବ୍ୟଗ୍ର । ସେ ଉତ୍କଳୀୟ ଜନଜୀବନର ମୂର୍ତ୍ତିମନ୍ତ ପ୍ରତୀକ ନୁହଁନ୍ତି ବରଂ ସମଗ୍ର ବିଶ୍ୱଜୀବନର ମୂଳାଧାର ତଥା ସକଳ ଧର୍ମ ଚେତନାର ଚରମ ଅଭିବ୍ୟକ୍ତି ।

ଓଡ଼ିଆ ଭାଗବତ ରଚୟିତା ଭକ୍ତ ଜଗନ୍ନାଥ ଦାସ ଗୋସ୍ୱାମୀଙ୍କ କୃତ 'ଦାରୁବ୍ରହ୍ମ ଗୀତା'ରେ ବର୍ଣ୍ଣିତ ପ୍ରସଙ୍ଗକୁ ଏଠାରେ ଉଲ୍ଲେଖ କରାଯାଇପାରେ । ଏଥିରେ ଅଛି ଯେ ଜରାଶବରର ଶରାଘାତରେ ଶ୍ରୀକୃଷ୍ଣଙ୍କ ଦେହତ୍ୟାଗ ସମ୍ବାଦ ଶୁଣି ପଞ୍ଚୁପାଣ୍ଡବ ଭ୍ରାତାଗଣ ତାଙ୍କ ଦେହ ଦାହ କରିବାକୁ ସ୍ଥିର କଲେ । ସହଦେବଙ୍କ ନିର୍ଦ୍ଦେଶରେ ଦେହତ୍ୟାଗ ସ୍ଥାନରୁ ଚାରିକୋଶ ଅନ୍ତରରେ ଥିବା ନୀଳଗିରି ନିକଟସ୍ଥ ସ୍ୱର୍ଗଦ୍ୱାରରେ ଦେହଦାହ କରିବା ସ୍ଥିର ହେଲା । ଚନ୍ଦନ କାଠର ଏକ ପଲଙ୍କରେ ପାଣ୍ଡବମାନେ ଶ୍ରୀକୃଷ୍ଣଙ୍କ ଶବ ବହନ କରି ନୀଳଗିରି ନିକଟରେ ପହଞ୍ଚିଲେ । ସେଠାରୁ ନିକଟସ୍ଥ ଅରଣ୍ୟରୁ ଚନ୍ଦନ କାଠ ଆଣି ଶବ ସତ୍କାର ପାଇଁ ଅଗ୍ନି ସଂଯୋଗ କଲେ । ମାତ୍ର ଶ୍ରୀକୃଷ୍ଣଙ୍କ ପିଣ୍ଡ ଦଗ୍ଧ ହେବା ତେଣିକି ଥାଉ, ଦେହର ଗୋଟିଏ ରୋମ ସୁଦ୍ଧା ପୋଡ଼ିଲା ନାହିଁ । ଏହିପରି ପାଞ୍ଚଦିନ ପାଞ୍ଚ ରାତ୍ର ଗତ ହେବା ପରେ ଶୂନ୍ୟବାଣୀ ହେଲା, ଏହାକୁ ସମୁଦ୍ରରେ ମେଲାଣି ଦେଇ ଘରକୁ ଫେରିଯାଅ ଏବଂ ତାହାହିଁ କରାଗଲା । ଉପରୋକ୍ତ ପ୍ରସଙ୍ଗ ସାରଳା ଦାସଙ୍କ ମହାଭାରତରେ ମଧ ଉଲ୍ଲେଖ ରହିଛି । ମାତ୍ର ଏ ପ୍ରସଙ୍ଗର ପ୍ରାଚୀନତା ସମ୍ପର୍କରେ ଅନୁଧ୍ୟାନ କଲେ ସାରଳାଦାସଙ୍କ ପୂର୍ବରୁ ବାମଦେବ କୃତ 'ଇନ୍ଦ୍ରନୀଳମଣି' ପୁରାଣରେ ମଧ ଅନୁରୂପ ବର୍ଣ୍ଣନା ଦେଖିବାକୁ ମିଳେ । ପାଣ୍ଡବମାନେ କୋଟି ଅରୁଣ ତେଜ ତୁଲ୍ୟ ଇନ୍ଦ୍ରନୀଳମୟୀ ମୂର୍ତ୍ତିରୂପୀ ପ୍ରଭୁ ଶ୍ରୀକୃଷ୍ଣଙ୍କ ପବିତ୍ର ଶରୀରକୁ ସମୁଦ୍ରରେ ସଭକ୍ତିରେ ବିସର୍ଜନ କରି ଚିତା ପରିକ୍ରମା ଶେଷରେ ପୁନଃ ପୁନଃ ନମସ୍କାର ପୂର୍ବକ ଉତ୍ତରାପଥରେ ଯାତ୍ରା କଲେ । କିଛି ଦିନପରେ ବସୁ ନାମକ ଜଣେ ଶବର ଅରଣ୍ୟରେ ମୃଗୟା କରୁଥିବା ଭଗବାନଙ୍କର ଅପୋଡ଼ା ପିଣ୍ଡ ସମୁଦ୍ରରେ ଭାସୁଥିବାର ଦେଖି ତାକୁ ଆଣି ରୋହିଣୀ କୁଣ୍ଡ ନିକଟସ୍ଥ ବଟ ମୂଳରେ ରଖି ପୂଜା କଲା ଏବଂ ବସୁ ଶବରକୁ ଶୂନ୍ୟବାଣୀ ହେଲା ଯେ -

ବୋଲନ୍ତି ଶୁଣ ହେ ଶବର
ଭୟ ତୁ ମନରେ ନକର ।
ପୂର୍ବରେ ଭାଗ୍ୟ ଅଛୁ କରି
ଏଥେ ଦେଖିଲୁ ନରହରି ।
ଯାଆ ତୁ ନୀଳଗିରି ବନ
ତହିଁରେ ଅଛି ପୁଣ୍ୟ ସ୍ଥାନ ॥

ଏଣୁ ନୀଳଗିରି ପର୍ବତ କନ୍ଦରରେ ଶବର ବିଶ୍ୱାବସୁଙ୍କ ପୂଜିତ ଇନ୍ଦ୍ରନୀଳମଣି କାନ୍ତି ବିଗ୍ରହ ନୀଳମାଧବ ପରବର୍ତ୍ତୀ ଅବସ୍ଥାରେ ସାଗର ତୀରରେ ଦାରୁ ରୂପେ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ଦର୍ଶନ ଦେଇଥିଲେ । ଏହି ମହା ତରୁର ମୂଳ ଜଳ ସ୍ରୋତରେ ଭାସମାନ ହୋଇଥିବାରୁ ଅଧଃ ଉର୍ଦ୍ଧ୍ୱ ମୂଳ ଏବଂ ଶାଖା ସମୂହ ମହୋଦଧିରେ ନିମଗ୍ନ ହୋଇ ଅଧଃ ଶାଖା ହୋଇଛି । ଏହି ବୃକ୍ଷର ଚତୁଃ ଶାଖା ରାଜା ଦର୍ଶନ କରି ବିଷ୍ଣୁଙ୍କୁ ପାଇବାର ଶ୍ରମ ସାର୍ଥକ ହେଲା ବୋଲି ମନେକଲେ ଏବଂ ପୁରୁଷୋତ୍ତମ ବିଗ୍ରହର ମାନ୍ୟତା ପ୍ରଦାନକଲେ । ସ୍କନ୍ଦ ପୁରାଣୋକ୍ତ ଏକ ଦାରୁ ସମୁଦ୍ରକଣ୍ଠାଦୂର୍ଦ୍ଧ୍ୱାସମିଣୋତି ବିଚାରରେ ଏହି ଦାରୁ ପରବର୍ତ୍ତୀ କାଳରେ ଚତୁର୍ଦ୍ଧା ମୂର୍ତ୍ତି ଧାରଣ କରି ଶ୍ରୀକ୍ଷେତ୍ରରେ ପୂଜିତ ହେଉଛନ୍ତି ।

ଏସବୁ କିମ୍ବଦନ୍ତୀର ଦେବତା ଜଗନ୍ନାଥ ଯେ ସମୟର ବିବର୍ତ୍ତିତ ଧାରାରେ ଦାରୁବ୍ରହ୍ମର ମର୍ଯ୍ୟାଦା ଲାଭ କରିଛନ୍ତି, ଏହା ସ୍ୱୀକୃତ । ସ୍କନ୍ଦ ପୁରାଣରେ ବର୍ଣ୍ଣିତ ରୋହିଣୀ କୁଣ୍ଡ ଓ କଳ୍ପବଟ ଅଧ୍ୟାହର ଏକାଶତି ଅଞ୍ଚଳ ନୀଳମାଧବ ବିଗ୍ରହ ଦାରୁବ୍ରହ୍ମରେ ରୂପାନ୍ତରିତ ହେବା ରହସ୍ୟମୟ ହେଲେ ହେଁ ଏ କଥା ଏଥିରୁ ପ୍ରମାଣିତ ଯେ ଜଗନ୍ନାଥଙ୍କର ସ୍ଥିତି ଖୁବ୍ ପ୍ରାଚୀନ ଏବଂ ସେ ହେଉଛନ୍ତି ସ୍ୱୟଂ ଦାରୁବ୍ରହ୍ମ । ଅବଶ୍ୟ ପରବର୍ତ୍ତୀ କାଳରେ ଏହି ମହାବାହୁ ଜଗନ୍ନାଥ ବିଭିନ୍ନ ଧର୍ମ ମତବାଦର ସମନ୍ୱୟକୁ ରକ୍ଷାକରି ଚତୁର୍ଦ୍ଧା ବିଗ୍ରହର ରୂପ ଧାରଣ କରିଛନ୍ତି । ଏଣୁ ପୁରାଣମାନଙ୍କରେ ଦାରୁବ୍ରହ୍ମ ଅବତାରଣାର ପ୍ରସଙ୍ଗ ଖୁବ୍ ବ୍ୟାପକ ଭାବରେ ଦେଖିବାକୁ ମିଳେ ଏବଂ ବେଦୋକ୍ତ ଏହି ଅପୁରୁଷେୟ ଦାରୁ ଯେ ଆଜିର ଜଗନ୍ନାଥ, ଏହା ପୁରାଣକାରମାନେ ପ୍ରମାଣିତ କରିବାର ପ୍ରୟାସ କରିଛନ୍ତି । ଖାଲି ସେତିକି ନୁହେଁ, ଏହି ଦାରୁକୁ ବ୍ରହ୍ମ ରୂପେ ମଧ ପୁରାଣମାନଙ୍କରେ ପ୍ରତିପାଦିତ କରିବାର ଉଦ୍ୟମ ମଧ କରାଯାଇଛି ।

ଏହି ପରିପ୍ରେକ୍ଷୀରେ ଦାରୁ ବିଗ୍ରହ ଜଗନ୍ନାଥ ଓ ଶବର ପୂଜିତ ଦେବତା ନୀଳମାଧବ ଯେ ଏକ ଓ ଅଦ୍ୱିତୀୟ, ଏହା ବହୁ ପୁରାଣକାରଙ୍କ ବ୍ୟତୀତ ଐତିହାସିକମାନେ ପ୍ରତିପାଦିତ କରିବା ପାଇଁ ଭୁଲିଯାଇନାହାଁନ୍ତି । କାହାରି କାହାରି ମତରେ ଆଦିବାସୀ ସଉରାମାନଙ୍କ ଦାରୁପୂଜା ପରିକଳ୍ପନାରୁ ଶ୍ରୀଜଗନ୍ନାଥଙ୍କ ଉଦ୍ଭବ ହୋଇଛି । ଜଗନ୍ନାଥ ଶବ୍ଦଟି ଶବର ଭାଷାରେ ବ୍ୟବହୃତ 'ଜଗନ୍ତ' ଶବ୍ଦର ରୂପାନ୍ତର ମାତ୍ର । ସଉରା

ବା ଶବର ଭାଷାରେ ଏହାର ଅର୍ଥ ହେଉଛି 'ଜଗତର ଦେବତା' । କିନ୍ତୁ ଆଦିବାସୀ ସଂସ୍କୃତିରେ 'କିତୁଙ୍ଗ' କୌଣସି ନିର୍ଦ୍ଦିଷ୍ଟ ଦେବତା ନୁହଁନ୍ତି ବରଂ କିତୁଙ୍ଗର ରୂପ ଦଶବିଧ । ଯାହାକୁ ଜଗନ୍ନାଥଙ୍କର ଦଶାବତାର ଗ୍ରହଣର ମୂଳତତ୍ତ୍ୱ ରୂପେ ଗ୍ରହଣ କରାଯାଇପାରେ । ଏହି ମତ ମଧ୍ୟ ଡଃ. ବେଣୀ ମାଧବ ପାଢ଼ୀ ତାଙ୍କର 'ଦାରୁ ଦେବତା' ଗ୍ରନ୍ଥରେ ପୋଷଣ କରିଛନ୍ତି ।

ଏତଦ୍‌ବ୍ୟତୀତ ଜଗନ୍ନାଥଙ୍କୁ ଶବରମାନଙ୍କ ପୂଜିତ ଦାରୁଦେବତା ଶବରୀନାରାୟଣ ରୂପେ ବହୁ ଗବେଷକ ପ୍ରମାଣିତ କରିବାର ଉଦ୍ୟମ ଅବ୍ୟାହତ ରଖିଛନ୍ତି । ଏ କ୍ଷେତ୍ରରେ ଡକ୍ଟର ପ୍ରଭାତ ମୁଖାର୍ଜୀ ତାଙ୍କର Vaisnavism in Orissa ଗ୍ରନ୍ଥରେ ଜଗନ୍ନାଥଙ୍କୁ ଶବରମାନଙ୍କର ମୌଳିକ ଉପାସ୍ୟ ଦେବତା ରୂପେ ଗ୍ରହଣ କରିଛନ୍ତି ଏବଂ ଡକ୍ଟର ମହତାବ ତାଙ୍କ ''ଓଡ଼ିଶା ଇତିହାସ''ରେ ବୁଦ୍ଧ ଓ ବୋଧିସତ୍ତ୍ୱମାନଙ୍କର ପୂଜା ସମୟରେ ଶବର ତ୍ରିରତ୍ନକୁ ପୂଜା କରିବା କଥା କହିଛନ୍ତି । ସେହିପରି ଡକ୍ଟର ନବୀନ କୁମାର ସାହୁ ତାଙ୍କର History of Orissa ଗ୍ରନ୍ଥରେ କହିଛନ୍ତି ଯେ -

"The very origin of Jagannath proclaims Him not less than the God of Bramhins than of true caste of original race." ଏଥିରୁ ଅନୁମିତ ହୁଏ ଯେ ଜଗନ୍ନାଥଙ୍କୁ ବ୍ରାହ୍ମଣଧର୍ମର ଦେବତା କହିବା ଅପେକ୍ଷା ଆଦିମ ଶବର ଗୋଷ୍ଠୀର ଦେବତା କହିବାରେ ଅଧିକ ସମୀଚୀନତା ରହିଛି ।

ଜଗନ୍ନାଥ ପ୍ରଥମେ କୌଣସି ସ୍ଥାନୀୟ ଗୋଷ୍ଠୀର ଦେବତା ରୂପେ ପୂଜା ପାଇ ଆସୁଥିଲେ । କାଳକ୍ରମେ ବୈଷ୍ଣବୀୟ ପ୍ରଭାବରେ ତାଙ୍କୁ ବିଷ୍ଣୁଙ୍କର ଅବତାର ରୂପେ ପୂଜା କରାଗଲା । ସେହିପରି ବିଭିନ୍ନ ଐତିହାସିକ ତଥା ଗବେଷକ ଜଗନ୍ନାଥଙ୍କୁ ଶବର ଦେବତା କହିବାରେ ଅନେକ କାରଣ ମଧ୍ୟ ରହିଛି । ଅନ୍ୟ ପକ୍ଷରେ ଜୈନମାନେ ଜଗନ୍ନାଥଙ୍କ ବୌଦ୍ଧତ୍ୱକୁ ଅସ୍ୱୀକାର କରନ୍ତି । ''ମୁକ୍ତିରତ୍ନ ପ୍ରଭା ବିଜୟ'' ଗ୍ରନ୍ଥରେ ନାଥାନ୍ତ ଶବ୍ଦ ବୌଦ୍ଧମୂଳକ ନୁହଁ ବୋଲି ଉଲ୍ଲେଖ କରିଛନ୍ତି । କାରଣ ପ୍ରାଚୀନ ବୌଦ୍ଧ ଗ୍ରନ୍ଥ ଏପରିକି ବୌଦ୍ଧ ଧର୍ମ ଅନୁଶାସନର ମୂଳଗ୍ରନ୍ଥ ତ୍ରିପିଟକରେ ମଧ୍ୟ ବୁଦ୍ଧଙ୍କୁ ନାଥ ଭାବରେ ଅଭିହିତ କରାଯାଇନି । ବରଂ ତାହା ଜୈନଧର୍ମର ଏକ ବିଶେଷତ୍ୱ । କାରଣ ଜୀନଙ୍କୁ ଜୀନନାଥ କହିବାରେ ଜୈନମାନେ ପଶ୍ଚାତପଦ ହୋଇ ନାହାଁନ୍ତି । ଏହି ପରିପ୍ରେକ୍ଷୀରେ ବୌଦ୍ଧ ଓ ଜୈନ ମତବାଦ ମଧ୍ୟରେ ଏକ ସମନ୍ୱୟ ରକ୍ଷାକରି ଐତିହାସିକ କେଦାର-ନାଥ ମହାପାତ୍ର ପୂର୍ବ ପୁରାଣ ବର୍ଣ୍ଣିତ ନୀଳମାଧବ ବିଗ୍ରହଙ୍କୁ ଜୈନ କିମ୍ବା ବୌଦ୍ଧର ତ୍ରିରତ୍ନ ଭାବରେ ପ୍ରମାଣିତ କରିବାକୁ ଚେଷ୍ଟା କରିଛନ୍ତି । ତାଙ୍କ ମତରେ ଏହି ତ୍ରିରତ୍ନ ହିଁ ଶବରମାନଙ୍କ ଦ୍ୱାରା ଉପାସିତ ହେଉଥିଲା । ତେଣୁ ବୌଦ୍ଧମାନଙ୍କର ଏହି ତ୍ରିରତ୍ନ ହିଁ ପରବର୍ତ୍ତୀ କାଳରେ ଜଗନ୍ନାଥଙ୍କର ମୂର୍ତ୍ତି ପରିକଳ୍ପିତ ହୋଇଥିବାରୁ ଏମାନେ ପାଦ ପାଣିବିହୀନ । ମାତ୍ର ପଣ୍ଡିତ ନୀଳକଣ୍ଠ ଦାସଙ୍କ ମତରେ ଖ୍ରୀଷ୍ଟୀୟ ସପ୍ତମ କିମ୍ବା ଅଷ୍ଟମ ଶତାବ୍ଦୀ ସମୟକୁ ଓଡ଼ିଶାର ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ କେନ୍ଦୁଝର, ସମ୍ବଲପୁର ଓ ସୋନପୁର ପ୍ରଭୃତି ସୀମାନ୍ତ ଅଞ୍ଚଳକୁ ଉଡ୍ଡୀୟାନ କୁହାଯାଉଥିଲା । ଏହି ସବୁ ଅଞ୍ଚଳରେ ଆବହମାନ କାଳରୁ ବସତି ସ୍ଥାପନ କରିଥିବା ଶବରମାନେ ନିମ୍ବକାଠ ନିର୍ମିତ ଶବରୀ ନାରାୟଣ ମୂର୍ତ୍ତି ଉପାସନା କରୁଥିଲେ । ପରବର୍ତ୍ତୀ କାଳରେ ଉଡ୍ଡୀୟାନ ରାଜା ବୌଦ୍ଧବାଦୀ ହେଉଥିବା ତାଙ୍କୁ ସାର୍ବଜନୀନ ଅର୍ଚ୍ଚିତ ଓ ସର୍ବ ବୁଦ୍ଧମୟ କହି ବୌଦ୍ଧତ୍ୱ ପ୍ରତିପାଦନ କଲେ ।

ଏଣୁ ବୌଦ୍ଧମାନଙ୍କ ଦୃଷ୍ଟିରେ ଉଡ୍ଡୀୟାନ ପୂଜିତ ନିମ୍ବକାଠର ମୂର୍ତ୍ତି ଶବରୀନାରାୟଣ ବ୍ୟତୀତ ଅନ୍ୟ କେହି ନୁହଁନ୍ତି । କାରଣ ଚୀନ ପରିବ୍ରାଜକ ହୁଏନ୍‌ସାଂ ତାଙ୍କର ଉଡ୍ଡୀୟାନ ପୀଠ ଭ୍ରମଣ କାଳରେ ଏଠାର ଅଧିବାସୀମାନଙ୍କ ଦ୍ୱାରା ନବେ ଫୁଟ ଉଚ୍ଚତାର କାଠଖଣ୍ଡ ପୂଜା ପାଉଥିବା ପ୍ରସଙ୍ଗ ଭଣିକା ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି । ମନେହୁଏ ଏହା ଏଠାର ଅଧିବାସୀଙ୍କ ପୂଜିତ ଶବରୀ ନାରାୟଣ, ଯେ କି ନିମ୍ବକାଠ ନିର୍ମିତ ।

ପ୍ରୋକ୍ତ ଆଲୋଚନାରୁ ଏହା ସୁସ୍ପଷ୍ଟ ଯେ ଆଦିବାସୀ ସମାଜରେ ବୃକ୍ଷ ବା ଦାରୁ ପୂଜାର ପ୍ରଚଳନ ବିଧି ଅତି ପ୍ରାଚୀନ । ଶ୍ରୀ ଜଗନ୍ନାଥ ହେଉଛନ୍ତି ସେହି ଦାରୁ ଦେବତା ବା ଦାରୁବ୍ରହ୍ମ, ଯାହାଙ୍କର ସ୍ଥିତି ପ୍ରାଚୀନରୁ ପ୍ରାଚୀନତମ ଗ୍ରନ୍ଥ ଋଗ୍ ବେଦ ସଂହିତା ଠାରୁ ଆରମ୍ଭ କରି ସ୍କନ୍ଦ ପୁରାଣ, ବିଷ୍ଣୁ ପୁରାଣ ଏପରିକି ଶିଶୁକୃଷ୍ଣ ଦାସଙ୍କ ଦେଉଳ ତୋଳା ପର୍ଯ୍ୟନ୍ତ ସମସ୍ତ ଗ୍ରନ୍ଥରେ ଉଲ୍ଲେଖ ଅଛି । ଚତୁର୍ଦ୍ଧା ମୂର୍ତ୍ତି ତତ୍ତ୍ୱ ପରିକଳ୍ପନାରେ ଆଦିବାସୀ କନ୍ଧମାନଙ୍କର ପୂଜିତ ଜାକେରୀ, ପେନୁ (ତାନାପେନୁଙ୍କ ସ୍ତ୍ରୀ), ତାନାପେନୁ (ସ୍ତ୍ରୀ ଦେବତା, ମୁରବି ପେନୁ ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ ଏହି ତ୍ରିମୂର୍ତ୍ତିରେ ରୂପାନ୍ତରିତ ହୋଇଥିବା ଅନୁମାନ କରାଯାଏ । ଏପରିକି ଶବରମାନଙ୍କ ଦ୍ୱାରା ପୂଜିତ କାଠସମ ବା ସମେଶ୍ୱରୀ ସୁଭଦ୍ରା ରୂପରେ ଏବଂ ନାଗଦେବତା ବଳଭଦ୍ର ରୂପରେ ଜଗନ୍ନାଥଙ୍କ ସହିତ ପୂଜା ପାଉଥିବା ପ୍ରସଙ୍ଗ ଡକ୍ଟର କାହ୍ନୁଚରଣ ମିଶ୍ର ତାଙ୍କର The Cult of Lord Jagannath ପୁସ୍ତକରେ ଉଲ୍ଲେଖ କରିଛନ୍ତି ।

ଏ ସମସ୍ତ ଆଲୋଚନାରୁ ଏହା ସୁସ୍ପଷ୍ଟ ଯେ ଉତ୍କଳୀୟ ଇତିହାସ ବହୁଳ ଜଗନ୍ନାଥ ପୁରାଣ ଓ କିମ୍ବଦନ୍ତୀରେ ବର୍ଣ୍ଣିତ ରହସ୍ୟମୟ ନୀଳମାଧବ ପରବର୍ତ୍ତୀ କାଳରେ ଦାରୁବ୍ରହ୍ମର ସାକାର ପରିକଳ୍ପନା ମଧ୍ୟରେ ପ୍ରତିଷ୍ଠା ଲାଭ କରିଛନ୍ତି । ଧର୍ମର ବିବର୍ତ୍ତିତ ଧାରାରେ ସେ ଆର୍ଯ୍ୟ ଓ ଅନାର୍ଯ୍ୟଙ୍କ ଉପାସ୍ୟ-ଦେବତା ଭାବରେ କାଳକାଳ ଧରି ଶ୍ରୀକ୍ଷେତ୍ରରେ ବିରାଜମାନ କରୁଛନ୍ତି ।

ସେହି ଅବିନାଶୀ ଦାରୁବ୍ରହ୍ମ ବିଶ୍ୱର ଜନ ଜୀବନରେ ବହୁରୂପରେ ପ୍ରତିଫଳିତ । ସେ ପୁରୁଷୋତ୍ତମ, ସେ ମହାଶିବ, ସେ ବାମନର ଦେବତା ହେଲେ ହେଁ ଧର୍ମ ବିଚାରରେ ଶାକ୍ତମାନଙ୍କର ଭୈରବ, ଗାଣପତ୍ୟଙ୍କର ଗଣପତି, ଶୂନ୍ୟବାଦୀଙ୍କ ଧାରଣାରେ ଶୂନ୍ୟପୁରୁଷ, ନରସିଂହ ଉପାସକମାନଙ୍କର ଆଦି ନୃସିଂହ, ରାମ ଉପାସକମାନଙ୍କର ମର୍ଯ୍ୟାଦା ପୁରୁଷୋତ୍ତମ ରାମଚନ୍ଦ୍ର ଓ ବୈଷ୍ଣବୀୟ ଦର୍ଶନରେ ଶ୍ରୀ କୃଷ୍ଣ ରୂପରେ ଉପାସିତ । ତେଣୁ ଜଗନ୍ନାଥ ବିଗ୍ରହର ଚେତନା ସର୍ବଧର୍ମ ସମନ୍ୱୟର ପିଣ୍ଡଉପରେ ପ୍ରତିଷ୍ଠିତ, କାରଣ ସେ ଏକାଧାରେ ଚିନ୍ତନଚକ୍ରର ମୂଳାଧାର ।

ଭାଗବତୀ ମଠ ଲେନ୍, ପୁରୀ

• • •



# ହେ ! ମହାପ୍ରଭୁ; ତୁମେ ଏ ଜଗତର କର୍ତ୍ତା

● ଚାରଣ ବସନ୍ତ ପଣ୍ଡା

ଅପୂର୍ବ ସେ ଦୃଶ୍ୟ । ଅନୁଭବ୍ୟତାର ଭାବସମ୍ଭାରକୁ ଶୋଭା ଶ୍ରୀମଣ୍ଡିତ କରି, ଦିବ୍ୟଭାବନାର ଲଳିତ ମଧୁର ବାର୍ତ୍ତାକୁ ପ୍ରଚାର କରି, ଦିଗ୍‌ଦିଗନ୍ତରେ ଆନନ୍ଦମୟୀ ଭାବଧାରାକୁ ମନ୍ଦାକିନୀ ସମ ପ୍ରବାହିତ କରି, ତୁମର ଶୁଭାଗମନ । ପ୍ରୀତି ମୁଗ୍‌ଧ ତରଙ୍ଗମାଳାରେ ତରଙ୍ଗାୟିତ ହେଉଛି ମୂର୍ଚ୍ଛାପ୍ଳୁତ ପ୍ରତିଟି ଜୀବନ । ହୃଦୟର ପ୍ରତିଟି ତନ୍ତ୍ରୀକୁ ପରାପର ପ୍ରେମ ଅନୁଭୂତିରେ ରଞ୍ଜିତ କରି, ପିଣ୍ଡ ଠାରୁ ବ୍ରହ୍ମାଣ୍ଡ ପର୍ଯ୍ୟନ୍ତ ଆଜି ଅପୂର୍ବ ପୁଲକର ଜୁଆର । କଣ୍ଠ କୋହଭରା । ଧାରା ଶ୍ରାବଣର ବାରିଧାରା ସମ ପ୍ରବାହିତ ଆନନ୍ଦାଶ୍ରୁ ଗଣ୍ଡ ଦେଇ ବକ୍ଷ ସିକ୍ତ କରୁଥିଲେ ହେଁ, ପଦେହେ ପଲକଶୂନ୍ୟ ହୋଇ ଚାହିଁ ରହିଛି କେତେବେଳେ ତୁମେ ଅବତରଣ କରିବ । ଅପସରି ଯିବ ମାୟାର ବନ୍ଧନ, ନୀଳାଦ୍ରି କେଶରୀଙ୍କ ପଦ୍ମ ପରଶେ । "ଯେଣୁ ତୁମେ ମୁକ୍ତିର ଦେବତା, ଶକ୍ତିର ଚିରନ୍ତନ ଉତ୍ସ ।" ଚାରୁଚନ୍ଦ୍ର, ଶୁଚିବନ୍ତ, ସୁବୁଦ୍ଧ । ମଧୁସିକ୍ତ କରିବ ବଡ଼ଦାଣ୍ଡେ ପ୍ରତୀକ୍ଷିତ ଜନବାଦନକୁ । ପ୍ରସ୍ଫୁଟିତ ପ୍ରୀତିର କଦନ୍ନ ।

କେବଳ ଦେହଧାରୀମାନେ ନୁହେଁ, ସୂକ୍ଷ୍ମାତିସୂକ୍ଷ୍ମରୂପେ ଛତ୍ରେ ଛତ୍ରେ ପଦେ ପଦେ, ଅପେକ୍ଷମାଣ ଅଶରୀରୀ ଦେବଗଣ । ପାପଛଡ଼ା ପୁରେ ପଦାର୍ପି, ସେ ପଦ୍ମ ପଲାଶ ନେତ୍ରେ ସୁନେତ୍ର ପଖାଳି, ପୂତ ପବିତ୍ର ଧୂଳିକୁ ଆପାଦ ମସ୍ତକ ରଞ୍ଜିତ କରି ବର୍ଷବ୍ୟାପି ପ୍ରତୀକ୍ଷାରେ ପୂର୍ଣ୍ଣଚ୍ଛେଦ ଟାଣିବାକୁ ପ୍ରତ୍ୟେକେ ଉଦ୍‌ବିଗ୍ନ ।

ଆଜି ଆଷାଢ଼ ଶୁକ୍ଳ ଦ୍ୱିତୀୟା । ସିଂହଦ୍ୱାର ଚଉଡ଼ାରେ ଦିବ୍ୟାଭରଣରେ ମଣ୍ଡିତ ହୋଇ ଛିଡ଼ାହୋଇଛନ୍ତି ତିନିରଥ । ଆଖିର ପଲକେ ଯେପରି ଚତୁର୍ଦ୍ଦଶ ଭୁବନକୁ ଅତିକ୍ରମ କରିଯିବେ । ସେମାନେ ତଥାପି ଅପେକ୍ଷାମାଣ । ଠିକ୍ ଧ୍ୟାନମଗ୍ନ ତପସ୍ୱୀ ସମ । ପ୍ରଶାନ୍ତ ବକ୍ଷକୁ ମେଲାଇ, ସାନନ୍ଦ ଚିତ୍ତେ, ହୃଷ୍ଟ ଅନ୍ତରେ, ପରମ ପୁରୁଷ, ଯୋଗାରୂଢ଼, ଆଦିକର୍ତ୍ତାଙ୍କ ଆଗମନକୁ ।

ଏଣେ ବଡ଼ଦାଣ୍ଡରେ ଅଜସ୍ର ଆର୍ତ୍ତଙ୍କ ମୁଖରାବରୋଳ ମହୋଦଧିଙ୍କ ଉତ୍ତାଳର ଗର୍ଜନକୁ ହେୟ ମଣାଉଥିବା ବେଳେ, ତେଣେ ନୀଳାଦ୍ରି ଭିତରୁ ଶୁଭିଲାଣି ଏକତାଳି ଘଣ୍ଟନାଦ । ସୂଚନା ପ୍ରଚାର କରୁଛି ବିଜେ କରିବା, ସେ ବିଜେ ହେଉଛନ୍ତି । ସର୍ବତ୍ର ଉତ୍‌କଣ୍ଠା । ଯାହାକୁ ପାଇଲେ ସଂସାରର ସମସ୍ତ ସୁଖ ମିଳେ । ଆଲିଙ୍ଗନ କଲେ ଯୁଗ ଚତୁଷ୍ଟୟଙ୍କ ଦେବାର ପୁଣ୍ୟଫଳ ଲାଭ ହୁଏ ।

ଅପସରି ଗଲେ ବଡ଼କାଳ । ଉନ୍ମୁକ୍ତ ହେଲେ ସିଂହଦ୍ୱାର । କୋଟି ସୂର୍ଯ୍ୟସମପ୍ରଭ ସୁଦର୍ଶନ, ଜଳଦାଭବସନ-କାଦମ୍ବରୀ ପ୍ରମତ୍ତ-ବଳଦେବ, ବରକୋହଳ ହରିଦ୍ରା ବରଣି-ସୁଭଦ୍ରାଙ୍କ ପଦାଙ୍କ ଅନୁସରଣ କରି ତ୍ରୈଲୋକ୍ୟକୋଟି ତୀର୍ଥର ରାଜା ମନ୍ଦାକିନୀ ସମ ପବିତ୍ର-ପାପ-ବିକ୍ଷାଳକ, ତ୍ରୈଲୋକ୍ୟ-ଚିନ୍ତାମଣି ବିଜେ ହେଉଛନ୍ତି । ଘୁମୁଟ ମଧରୁ ଲୋଟଣୀ ପାରାସମ ଲୋଟି ପଡ଼ି "ବ୍ରହ୍ମସତ୍ୟ-ଜଗତ ମିଥ୍ୟା"ର ମହାବାକ୍ୟକୁ ଉଦ୍‌ଘୋଷଣ କରୁଥିବା, କରି-ଜମ୍ବୁରାରେ ନିର୍ମିତ ରାଘବ ଦାସ ମଠର ପ୍ରଦତ୍ତ ଟାହିଆ ଦୃଶ୍ୟ ହେଲାଣି । ଗୁହା ଛାଡ଼ି ସତେ ଅବା ଅମିତ ବିକ୍ରମେ ମାଡ଼ି ଆସୁଛି ମାତୁଆଳ କରୀନ୍ଦ୍ର । କ୍ଷଣମାତ୍ରେ ପାପରୂପକ ପଙ୍କଜ ବନକୁ ଧ୍ୱଂସ କରିଦେବ ।

ଚକ୍ରବତ୍ ଘୂର୍ଣ୍ଣାୟମାନ ଚକାନୟନର କଟାକ୍ଷପାତୁ କୋଟି ପ୍ରାଣକୁ ଆକର୍ଷିତ କଲାଣି । ଗଳାରେ ବୟଣା, ତୁଳସୀର ସମ୍ମିଶ୍ରିତ ବନମାଳକୁ ବାଘନଖିର ଅପୂର୍ବ ସଂଯୋଗ ଘଟିଛି । ଭୁରୁଭୁରୁ ଗନ୍ଧରେ ଚଉଦିଗ ମହକି ଯାଉଛି । କପାଳ ଦେଶରୁ ଗଣ୍ଡ ମଣ୍ଡଳ ଯାଏ ମଣ୍ଡିତ ହୋଇଛି ଅଗରୁ ଚନ୍ଦନ ଓ ଗୋରଚନାର ଟିପା । ସର୍ବାଙ୍ଗରେ ଗଙ୍ଗମାଟି ବୋଳି ହୋଇ ଜାମୁଡ଼ାଳ ଖୋସି " ଗୋଗୋଷ୍ଠ ଚନ୍ଦ୍ରମା କୃଷ୍ଣ ଗୋପାଙ୍ଗନ ମନୋହର" ଗାତ୍ର ଦାହ କରୁଛି । ଧନ୍ୟ ସେ ବେଶକାରୀ । "ତପସେ କରିଥିଲା କେତେ କଷ୍ଟ" । ମାଳ, ଗୁଣା, ହିରା, ଝୁମାକୁ ଝୁଲାଇ ଘଣ୍ଟ ଘଣ୍ଟା, ଭେରୀ, ତୁରୀ, ମୃଦଙ୍ଗର ତାଳେ ତାଳେ ଜାମୁଡ଼ାଳୀ ନାଚ ତୋଳି, ସର୍ବତ୍ର ପୂର୍ଣ୍ଣର ସଂକେତ ଆଙ୍କି, ଯାଚକ ପଣରେ ଯାଚି ଦେଇ ରାଶିରାଶି କଲ୍ୟାଣ, ପହଣ୍ଡି ମଣାଉ ହେଉଛନ୍ତି ନନ୍ଦିଘୋଷ ନିକଟକୁ । ଅହୋଭାଗ୍ୟ ମଣୁଛନ୍ତି ଧରଣୀ । ବ୍ରହ୍ମ ଠାରୁ କୀଟ ପର୍ଯ୍ୟନ୍ତ ସମସ୍ତେ କୃତ୍ୟ କୃତ୍ୟ ଭାବ ପ୍ରକାଶ କରୁଛନ୍ତି । ଯୋଡ଼ି ବେତ ଧରି ଖୁଣ୍ଟିଆ ଡାକୁଛି - "ମଣିମାଁ ଯେ ମଣିମାଁ, ତ୍ରିଭୁବନର ମଣିମାଁ- ଶ୍ରୀଅଙ୍ଗକୁ ସାବଧାନ ମଣିମାଁ, ବିଜେକୁ ସାବଧାନ । ରଥାରୂଢ଼ ହେଉଛନ୍ତି ନୀଳାଚଳ ଶିଖା ମଣେ । ପରିସମାପ୍ତି ଘଟିଲା ବର୍ଷବ୍ୟାପି ପ୍ରତୀକ୍ଷାର, ରଥାରୂଢ଼ ବାମନଙ୍କୁ ଦର୍ଶନକରି । ସ୍ରଷ୍ଟା ଅପଲକ ନେତ୍ରେ ଅବଲୋକନ କଲେ ତାଙ୍କର ସୁନ୍ଦର ସୃଷ୍ଟିକୁ ।

ଭୁରୁ ଟେକି ଚାହିଁ ଜଗତେ । କ୍ଷରଶୀଳ ଜଗତରୁ ଅତୀତ । ଅକ୍ଷର ଜୀବଭୂତ ଆତ୍ମା ଠାରୁ ଶ୍ରେଷ୍ଠ । ସବୁରି ଆଦି-ମଧ-ଅନ୍ତର, ପରମଧାମ ଓ ଆଧାର ମଧ ଏହି । ଏଠି ରାଜା -ପ୍ରଜା, ଧନୀ-ଦରିଦ୍ର, ଉଚ୍ଚ-ନୀଚ, ଏପରିକି ଜାତି, -ବର୍ଣ୍ଣ-ଧର୍ମ ନିର୍ବିଶେଷରେ ସମସ୍ତେ ସମାନ । ସମସ୍ତେ କୈବଲ୍ୟର ଅଧିକାରୀ । ସେହି କ୍ଷରାତୀତ ପୁରୁଷ, ଏ ଜଗତର ଏକମାତ୍ର ଆଧାର-ଆଧେୟ-ଆଧାର ଶକ୍ତି । ସମସ୍ତ ଚିନ୍ତା-ଚେତନାକୁ, ଧର୍ମ-ଧାରଣାକୁ ଏକକ ସୂତ୍ରରେ ଗ୍ରନ୍ଥିତକରି ଧଣ୍ଡାମାଳ ସମ ଗଳାରେ ଲମ୍ବାଇ ସେ ସୃଷ୍ଟି କରିଛି ଏକ ଧର୍ମୀୟ ମହୋଦଧି । ଏଥିରେ ଅବଗାହନ କର ହେ ଜଗତେ । ଗ୍ରହଣ କର ତାହାର ମହାମନ୍ତ୍ର "ବସୁଧୈବ କୁଟୁମ୍ବକମ୍" କୁ, ଅନୁସରଣ କର ତାର ପଞ୍ଚଶୀଳନୀତି । ଯାହାକି ସୃଷ୍ଟିଚକ୍ରଠାରୁ ଆରମ୍ଭ କରି ମହାମାନବୀୟ ସନାତନ ଚିନ୍ତନରେ ଏକ ସାଂସ୍କୃତିକ ପିଣ୍ଡି ସଦୃଶ ବ୍ୟାପକ କଲ୍ୟାଣକାରୀ । ଏଠି ଐତିହାସିକତାର

ଶିଳାଲିପିକୁ ପାଠ କର ନାହିଁ ହେ। ଭକତେ - ଦେଖ ମାନବବାଦର ଆଧାତ୍ମିକ ଭାବକୁ । ଯାହାକି ଶ୍ରୀ ଜଗନ୍ନାଥ ଚେତନାରେ ଉଦାରବାଦର ପ୍ରତୀକ ଅଟେ । ବହୁଧର୍ମର ଧ୍ୱଜା ଏମାଟିରେ ଉଡ଼ିଛି । ବହୁଧର୍ମ ଧାରଣା ଏ ମାଟିକୁ ପ୍ଲାବିତ କରିଛି । ବହୁଧର୍ମ ମତ ଏହାଙ୍କ ଉପର ଦେଇ ତରଙ୍ଗାୟିତ ହୋଇଛି । ତଥାପି ଏହାଙ୍କ ରୂପଗତ ବୈଚିତ୍ର୍ୟକୁ କେହି ପରିବର୍ତ୍ତନ କରିପାରିନାହିଁ । ଦାରୁକୁ ପାଷାଣରେ ପରିଣତ କରିପାରିନାହିଁ । ବରଂ ସ୍ୱସ୍ୱ ଇଷ୍ଟଙ୍କୁ ଦର୍ଶନ କରି ସେ ବିରାଟ ଭୂମାମଧ୍ୟରେ ପ୍ରତ୍ୟେକ ତାଙ୍କୁ ନିଜର କରି ନେଇଛନ୍ତି । ସ୍ୱମତରେ ମର୍ଯ୍ୟାଦା ଦେଇ, ମର୍ଯ୍ୟାଦାବଦ୍ଧ କରି, ଯାହାକୁ ଭିତ୍ତିକରି ନିର୍ମିତ ହୋଇଛି ଏକ ବିରାଟ ସାଂସ୍କୃତିକ ସୌଧ । ଯାହାକି ଦିନେ ଆର୍ଯ୍ୟ ଓ ଆଦି ପରମ୍ପରାର ଦୁଇ ବିପରୀତମୁଖୀ ଭାବଧାରା ସରସ୍ୱତୀ ସଭ୍ୟତା ଠାରୁ ସରିତ ସଭ୍ୟତା ଯାଏ ବ୍ୟାପ୍ତ ହୋଇଥିଲା । ତାହା ଏଠାରେ ପରାହତ ହୋଇ ଗ୍ରହଣ କରିନେଇଛି, ଏ ସମନ୍ୱୟ ଚେତନାକୁ । ଏପରି ପରମ୍ପରା ଅନ୍ୟତ୍ର କୁତ୍ରାପି ପରିଲକ୍ଷିତ ହୁଏ ନାହିଁ । ଏହା ଏପରି ଏକ ଚେତନା, ଯେଉଁଠାରେ ଆର୍ଯ୍ୟପୁରୋଧା ଓ ଶାବର ଦିଶାରି ସମାନ ଭାବେ ସ୍ୱସ୍ୱ ମର୍ଯ୍ୟାଦାରେ ମର୍ଯ୍ୟାଦାବଦ୍ଧ । ସମସ୍ତ ଆଚାର ବ୍ୟବହାର ସମାନ ଭାବେ ପରିଗୃହୀତ । ଯେଣୁ ଏ ଚେତନାର ମୂଳମନ୍ତ୍ର ସମନ୍ୱୟବାଦ । ସାର୍ବଜନୀନ ଯାଗ ଯଜ୍ଞ ଯେପରି ସର୍ବଲୋକ ହିତାର୍ଥାୟେ ଅଭିପ୍ରେତ-ସର୍ବ ଲୋକକଲ୍ୟାଣକାରୀ ତାଦୃଶୀ ଏହାଙ୍କ ଯଜ୍ଞ ପ୍ରତିଷ୍ଠିତ ଅଛି ସାର୍ବଜନୀନ । ଜାତି ଭେଦରହିତ । ଆର୍ଯ୍ୟ-ବ୍ରାତ୍ୟ-ଶାବରଙ୍କ ମହାମିଳନ ସ୍ଥଳ ।

ଶ୍ରୀ ବିଗ୍ରହଙ୍କ ନିର୍ମାଣ କଳାକୁ ପର୍ଯ୍ୟାଲୋଚନା କରାଯାଉ । ଗୋଲାକାର ନେତ୍ର ଦ୍ୱୟକୁ କେହି କେବେ ରମଣୀୟ ନେତ୍ର କହିପାରେ ? ଶାବର ପଦ୍ଧତିରେ ଏହା ଅଙ୍କିତ ହୋଇଥିଲେ ହେଁ ଶାସ୍ତ୍ରମାନେ ଏ ନେତ୍ରରେ ଦେଖି ପାରିଛନ୍ତି ସମଦୃ ଭାବକୁ । ଚକ୍ଷୁ ମଧ୍ୟସ୍ଥ ମୂର୍ଚ୍ଛିତ ତ୍ରାଟକ ଚୋଳା ଚତୁର୍ଦ୍ଦିଗରେ ସମଦୃଷ୍ଟିପାତ କରିଥାଏ । ଏଥିରୁ ପ୍ରମାଣିତ ହୁଏ ଦୃଷ୍ଟି ନିରପେକ୍ଷ । ଯହିଁରେ ପରାପର ଭେଦଜ୍ଞାନ ନାହିଁ । ଅଙ୍ଗୁଳିଯୁକ୍ତ ହସ୍ତ ନିର୍ଦ୍ଦିଷ୍ଟ ଦ୍ରବ୍ୟ ତଥା ବସ୍ତୁକୁ ସ୍ପର୍ଶାସ୍ପର୍ଶ ସୁଖ ପ୍ରଦାନ କରିଥାଏ । ମାତ୍ର ଅଙ୍ଗୁଳିବିହୀନ ହସ୍ତ ତାହାର ବିପରୀତାଭିମୁଖୀ ସୁଖ ପ୍ରଦାନକରେ । ତେଣୁ ଏପରି ଭାବ ସଦା ନିରପେକ୍ଷତା ଉପରେ ଅବଧାରିତ । ଯେଉଁଠାରେ ଦେଖୁଛନ୍ତି ସାଧକ ତା'ର ସାଧ୍ୟକୁ କୋଳ କରିବାର ପଥ । ଏ ଧାରା ଶୁଦ୍ଧ ପ୍ରୀତି ଉପରେ ପ୍ରତିଷ୍ଠିତ । ଯାହା ନିକଟରେ ଜାତି-ଅଜାତି, ଉଚ୍ଚ-ନୀଚ, ସ୍ପୃଶ୍ୟ-ଅସ୍ପୃଶ୍ୟ ବିଚାର ନଥାଏ । ଭେଦଜ୍ଞାନ ଅତି ନଗଣ୍ୟ । ତେଣୁ ଯେ କୌଣସି ରୀତିରେ, ଯେ କୌଣସି ଅବସ୍ଥାରେ, ଯେ କୌଣସି ସମୟରେ ତାଙ୍କୁ କୋଳକରି ସ୍ପର୍ଶ ଜନିତ ସୁଖରେ ବିଭୋର ହୋଇ ଆତ୍ମରସକୁ ଆସ୍ୱାଦନ କରିବା ବ୍ୟକ୍ତ କରେ ଶରଣାଗତିର ଭାବ । ପରିପ୍ରକାଶ କରେ ମୈତ୍ରୀଚେତନା ।

ତାହାଙ୍କ ବର୍ଣ୍ଣ (ରଙ୍ଗ) ଗତ ଭେଦକୁ ଦେଖ ଓ ଭକତେ । ଶ୍ୱେତ, ପୀତ, କୃଷ୍ଣ ବର୍ଣ୍ଣରେ ରଞ୍ଜିତ ସମଗ୍ର ଜଗତ ଏହିଠାରେ ହିଁ ସଙ୍ଗ୍ରହ । ବର୍ଣ୍ଣ ବିଦ୍ୱେଷଭାବର ଏଠାରେ ବିଲୟ । ଯେଣୁ ବର୍ଣ୍ଣ ଚେତନାର ମୂର୍ତ୍ତିମନ୍ତ ପ୍ରତୀକ ସ୍ୱୟଂ ଜଗନ୍ନାଥ ।

ଯଥାର୍ଥରେ ଶ୍ରୀ ପୁରୁଷୋତ୍ତମ ଚିନ୍ତନରେ ଧର୍ମ ନିରପେକ୍ଷତା, ଧର୍ମ ସମନ୍ୱୟ, ସମାଜବାଦୀ ଆଦର୍ଶ, ନିରହଂକାରିତା, ଶାନ୍ତି, ମୈତ୍ରୀ, ପ୍ରୀତି ପରିସ୍ଫୁଟନ ହୋଇଛି । ଏହା କୌଣସି ଶାସକର ସ୍ୱୀୟ କ୍ଷମତା ବଳରେ ଯାହିର ହୋଇ ନାହିଁ ବରଂ ଶତାବ୍ଦୀ ଶତାବ୍ଦୀ ଧରି ସ୍ୱୀୟ ସାଧନା ଓ ପରୀକ୍ଷା ନିରୀକ୍ଷା ମଧ୍ୟରେ ଗତିକରି ପରିପକ୍ୱତା ଲାଭ କରିଛି । ରୂପ ଗ୍ରହଣ କରିଛି ଏକ ଗଣଧର୍ମର । ତେଣୁ ଶ୍ରୀଜଗନ୍ନାଥ ପ୍ରାଚୀନମାନଙ୍କ ନିକଟରେ ପ୍ରାଚୀନ ବୋଲି ଗ୍ରାହ୍ୟ ହେଉଥିବା ବେଳେ ନବୀନମାନଙ୍କ ନିକଟରେ ନବୀନ ସମ ପ୍ରତିଭାତ ହେଉଛନ୍ତି । ପ୍ରତ୍ୟେକ ଅପଣାର ଯୁକ୍ତି ନିକଟରେ ସନ୍ତୋଷ ଲାଭ କରୁଛନ୍ତି । ଜଗତରେ ଚକ୍ଷୁ ସ୍ୱରୂପ ଅଂଶୁମାଳୀ ସୂର୍ଯ୍ୟଙ୍କର ଆଭା ଯେପରି ସାତ ଗୋଟି ରଙ୍ଗର ଏକ ସମାହାର, ତାଦୃଶୀ ଶ୍ରୀ ଜଗନ୍ନାଥ ସଂସ୍କୃତି । ଏହାର ଛତ୍ରେ ଛତ୍ରେ ଭରିରହିଛି ଏକିଛି ସୁସଂହତ ଭାବନା, ଆଧାତ୍ମିକ ଉଦାରତା, ମୈତ୍ରୀ ଚେତନା, ବିଶ୍ୱବନ୍ଧୁତ୍ୱ, ମହା ମାନବିକତା, ସାମ୍ୟ ତଥା ସମନ୍ୱୟବାଦ । ଏ ଚେତନା ଭାରତ ସଂସ୍କୃତିର, ଉଦାର ସଂହତିର, ଆଦର୍ଶ ମାନବିକତାର, ସୁ ସମନ୍ୱିତ ପରମ୍ପରାର ଏକ ମହୋଦଧି । ଗଣଚେତନାର ପ୍ରତୀକ । ଜାତୀୟତାର ରକ୍ଷାର ଦୃଢ଼କବଚ । ମୈତ୍ରୀ ଭାବନାର ବାର୍ତ୍ତାବହ ।

*ପଞ୍ଚରଥିଆ, ମାନପୁର, ନୟାଗଡ଼-୭୫୨୦୭୦*

• • •

# ଦଶାବତାର ଯାତ୍ରା

ଶ୍ରୀଜଗନ୍ନାଥ ରଥଯାତ୍ରା ସମୟରେ ଦଶ ଅବତାର ରୂପ ଧାରଣ କରନ୍ତି । କୁସୁମ ଲାଗିବେଳେ ମୀନାକୃତି ମୀନଅବତାର , ଦୁଳି ଲାଗି ବେଳେ କୂର୍ମ ଅବତାର, କାନ୍ଥଆଡି ଲାଗିବେଳେ ଯଜ୍ଞ ବରାହ ଅବତାର, ସେନାପଟା ବାହୁଟି ଲାଗି ହେଲାବେଳେ ନରସିଂହ ଅବତାର, ରଥାରୂଢ଼ ବେଳେ ବାମନ ଅବତାର, ଆଡ଼ପ ଡ଼ୋରି ଲାଗିବେଳେ ପରଶୁରାମ ଅବତାର, ଆଡ଼ ପରୀକ୍ଷାରେ ରାଘବେନ୍ଦ୍ର ଅବତାର, ଆଡ଼ପରାସ୍ ତଥା ହେରାପୋଚ ବେଳେ ହଳେନ୍ଦ୍ର ନନ୍ଦନ ଶ୍ରୀକୃଷ୍ଣ ଅବତାର, ଅନ୍ତର୍ବେଦୀ ମହୋତ୍ସବ ବେଳେ ବୌଦ୍ଧ ଅବତାର ଧାରଣ କରିଥାଆନ୍ତି । ତେଣୁ ଏହି ଯାତ୍ରାକୁ ମଧ ଦଶ ଅବତାର ଯାତ୍ରା କୁହାଯାଏ ।

ଜଗତ ପ୍ରକାଶ



# ଶୂନ୍ୟ ସଂହିତାରେ ଶ୍ରୀଜଗନ୍ନାଥ

● ଡକ୍ଟର ଆରତି କର

ଷୋଡ଼ଶ ଶତାବ୍ଦୀର ସନ୍ଥ, ଗ୍ରନ୍ଥକାର, ସାଧକ, ଭବିଷ୍ୟତବକ୍ତା ତଥା ଧର୍ମପ୍ରଚାରକ ଅଚ୍ୟୁତାନନ୍ଦ ଦାସଙ୍କ ରଚନା ସମୂହ କାଳଜୟୀ । ଅଚ୍ୟୁତାନନ୍ଦଙ୍କ ରଚନାବଳୀ ସମ୍ପର୍କରେ ସୂଚନା ସ୍ୱକୀୟ ଗୋପାଳଙ୍କ ସଂହିତାରୁ ମିଳେ -

ଛତିଶ ସଂହିତା, ଅଠସରୀ ଗୀତା ବଂଶାନୁ ସପତବିଂଶରେ
ଉପବଂଶାନୁ ଦ୍ୱାଦଶ ଖଣ୍ଡଦେବୀ ଭବିଷ୍ୟ ସପତଖଣ୍ଡରେ
ଗଦ୍ୟ ପଦାବଳୀ ଲକ୍ଷେକ ଯେ ଗ୍ରନ୍ଥ ସବୁ ଶ୍ରୀକୃଷ୍ଣ ମହିମା
ତୋ ଆଗେ କହିଲୁ ବରଜ କୁମର ବ୍ରହ୍ମ ସାରସ୍ୱତ ସୀମା ।"

ମହାପୁରୁଷ ଅଚ୍ୟୁତାନନ୍ଦଙ୍କଠାରେ ସର୍ବବିଧ ଶକ୍ତି ପୂର୍ଣ୍ଣମାତ୍ରାରେ ବିଦ୍ୟମାନ ଥିଲା । ସେ ଥିଲେ ଧର୍ମ ଜଗତର ଏକ ଅଭିନବ ସଂସ୍କାରକ, ପ୍ରଚାରକ, ସାଧକ, ଗାୟକ, ପରିବ୍ରାଜକ ଓ ଜଣେ ଏକନିଷ୍ଠ ଧାର୍ମିକ । ସନାତନ ଧର୍ମର ପ୍ରତିଷ୍ଠା ଓ ବୈଷ୍ଣବ ଧର୍ମର ବୈଶିଷ୍ଟ୍ୟ ପ୍ରତିପାଦନ ନିମିତ୍ତ ସେ କରିଥିଲେ ଧରାବତରଣ ।

ହରିବଂଶକୁ ଛାଡ଼ିଦେଲେ 'ଶୂନ୍ୟସଂହିତା' ମହାପୁରୁଷ ଅଚ୍ୟୁତାନନ୍ଦଙ୍କର ଅନ୍ୟତମ ଜନପ୍ରିୟ କାବ୍ୟ । କାବ୍ୟର ପ୍ରାରମ୍ଭ ଶ୍ରୀଜଗନ୍ନାଥଙ୍କଠାରୁ ଓ ପରିସମାପ୍ତି ମଧ୍ୟ ସେହି ବିଶ୍ୱ ନିୟନ୍ତା ଶ୍ରୀଜଗନ୍ନାଥଙ୍କ ପାଖରେ । ସେ ହିଁ ଏହି କାବ୍ୟର କେନ୍ଦ୍ରବିନ୍ଦୁ । କବିଙ୍କ ମତରେ ନୀଳାଚଳ ଧାମ ହିଁ ନିତ୍ୟ ଗୋଲୋକ । ଶ୍ରୀ ଜଗନ୍ନାଥ ହିଁ ନିତ୍ୟରାଧା ଓ ନିତ୍ୟକୃଷ୍ଣଙ୍କର ମିଳିତ ତନୁ । ପରଂବ୍ରହ୍ମ ଯିଏ ସେହି ଏକାକ୍ଷର । ଏକାକ୍ଷର ମଧ୍ୟରେ ମହାମନ୍ତ୍ର ଓ ମନ୍ତ୍ରରାଜ ସତେ ଯେପରି ଲୀନ ହୋଇ ରହିଥାଏ । ଜଗନ୍ନାଥ ସ୍ୱୟଂ ହେଉଛନ୍ତି ଏକାକ୍ଷର ।

"ଜଗନ୍ନାଥ ବଳଭଦ୍ର ଭଦ୍ରା ସୁଦର୍ଶନ
ମହାମନ୍ତ୍ର ମନ୍ତ୍ରରାଜ ଆପେ ଦାରୁବ୍ରହ୍ମ ।"

ଅଚ୍ୟୁତାନନ୍ଦଙ୍କର 'ଶୂନ୍ୟସଂହିତା' କୌଣସି କାହାଣୀଭିତ୍ତିକ ଗ୍ରନ୍ଥ ନୁହେଁ ବରଂ ଏହା ତତ୍ତ୍ୱଭିତ୍ତିକ । ଏଥିରେ ଜଗନ୍ନାଥ ତତ୍ତ୍ୱ ମଧ୍ୟରେ ଅବଗାହନ କରିବା ନିମିତ୍ତ ଗ୍ରନ୍ଥକାର ଦେଇଛନ୍ତି ଦିବ୍ୟ ସନ୍ଦେଶ ।

ନିର୍ମଳ ପ୍ରଭାତର ଶାଶ୍ୱତ ବେଳାରେ ଶ୍ରୀଜଗନ୍ନାଥଙ୍କ ନୀଳାଚଳ ଧାମ ମର୍ତ୍ତ୍ୟର ବୈକୁଣ୍ଠରେ ଶୁଭଶଙ୍ଖ ପ୍ରତିଧ୍ୱନିତ ହେଉଛି । ଘଣ୍ଟ ଘଣ୍ଟା, କାହାଳୀ, ମୃଦଙ୍ଗର ବିବିଧ ବାଦ୍ୟରେ ବଡ଼ଦେଉଳ ହେଉଛି ପ୍ରକମ୍ପିତ । ଗଜପତି ପ୍ରତାପରୁଦ୍ରଦେବ ଠାକୁରଙ୍କୁ ଦର୍ଶନ ପାଇଁ ବାହାରିଯିବା ଅବସରରେ ଚୈତନ୍ୟଙ୍କ ସମେତ ପଞ୍ଚସଖାଙ୍କ ନୃତ୍ୟ ଓ କୀର୍ତ୍ତନର ଧ୍ୱନିରେ ପରିବେଶ ହୋଇଉଠିଛି ଭାବବିହ୍ୱଳ । ଏହି ସମୟରେ ମହାପୁରୁଷ ଅଚ୍ୟୁତାନନ୍ଦଙ୍କୁ ତାଙ୍କର ପରମ ଶିଷ୍ୟ ରାମଦାସ ତାଙ୍କର ଜନ୍ମବୃତ୍ତାନ୍ତ, ନାମତତ୍ତ୍ୱ, ମହାମନ୍ତ୍ର, ପଞ୍ଚଭୂତ ଓ ପଞ୍ଚଆତ୍ମା - ଏହିପରି କେତେକ ତାତ୍ତ୍ୱିକ ପ୍ରଶ୍ନ ପଚାରିଛନ୍ତି । ଅଚ୍ୟୁତାନନ୍ଦ ମଧ୍ୟ ଗୋଟି ଗୋଟି କରି ସମସ୍ତ ପ୍ରଶ୍ନର ଉତ୍ତର ଦେଇଛନ୍ତି ଅତ୍ୟନ୍ତ ପ୍ରାଞ୍ଜଳ ଭାବରେ । ମହାପୁରୁଷ ଅଚ୍ୟୁତାନନ୍ଦ ନିଜେ ପ୍ରଭୁଙ୍କର କୃପାରୁ ଜନ୍ମ । ଏ ସମ୍ପର୍କରେ ସୂଚନା ଦେଇ କହିଛନ୍ତି-

"ଯେ ଜନ୍ମ ବୃତ୍ତାନ୍ତ କହୁଁ ତୋ ଅଗ୍ରତ ସିନ୍ଧୁରାନନ୍ଦ ମୋ ନାମ
ନୀଳାଞ୍ଚଳେଂ ନୀଳ ଦେଖି ମତି ଭୋଳା ଭୋଗଗଲା କେତେଦିନ
X X X X X
ଲଭ ତୁ ବାଳେକ କିନ୍ତୁ ସେ କାଳେକ ମନର ଜନ୍ମଣା ପାଅ
କାଲି ପ୍ରଭାତରେ ପଦ୍ମ ଧୂପରେ ଗରୁଡ଼ ପଛକୁ ଚାହିଁ"

ନିଜର ଇଷ୍ଟଦେବ ଶ୍ରୀଜଗନ୍ନାଥଙ୍କୁ ସେ ଶୂନ୍ୟରୁ ଆବାହନ କରି ସୃଷ୍ଟିର ଶ୍ରେଷ୍ଠତ୍ୱ ତାଙ୍କଠାରେ ହିଁ ପ୍ରତିପାଦନ କରିଛନ୍ତି । ନାମତତ୍ତ୍ୱ, ଗୁରୁତତ୍ତ୍ୱ ଓ ମହାମନ୍ତ୍ର ଭଜନ ଉପରେ ମହାପୁରୁଷ ଅଚ୍ୟୁତାନନ୍ଦ ବିଶେଷ ପ୍ରାଧାନ୍ୟ ଦେଇଛନ୍ତି । ସେ ସ୍ପଷ୍ଟଭାବେ କହିଛନ୍ତି ଯେ ପଞ୍ଚଭୂତ, ପଞ୍ଚତତ୍ତ୍ୱ, ପଞ୍ଚବୀଜ ପ୍ରଭୃତିକୁ ହୃଦୟଙ୍ଗମ କରି ନିଜ ଆତ୍ମାକୁ ଚିହ୍ନି ପାରିଲେ ତୀର୍ଥବ୍ରତର କୌଣସି ପ୍ରୟୋଜନ ନାହିଁ । ଭଗବତ୍ ଚେତନା ଉପଲବ୍ଧି କରିବା ନିମିତ୍ତ ନିଜ ଶରୀର ହିଁ ଏକମାତ୍ର ମାଧ୍ୟମ । ଅଷ୍ଟାଙ୍ଗ ଯୋଗ ସାଧନା ଦ୍ୱାରା ସାଧକ ପରମ ପଦ ଲାଭ କରିଥାଏ । ଶିଷ୍ୟ ରାମଦାସଙ୍କୁ ଶୂନ୍ୟଦର୍ଶନ ତତ୍ତ୍ୱ ସମ୍ବନ୍ଧରେ ସୂଚନା ଦେବାକୁ ଯାଇ ମହାପୁରୁଷ ଅଚ୍ୟୁତାନନ୍ଦ କହିଛନ୍ତି -

"ଭଲ ପଚାରିଲୁ ଗୁପତ ସନ୍ଧି । ଶୂନ୍ୟ ପୁରୁଷ ଶୂନ୍ୟ ପରେ ବନ୍ଦୀ ।
ଶୂନ୍ୟ ପୁରୁଷ ଉଦାସରେ ରହେ । ଶୂନ୍ୟ ସବୁ ମାୟା ଭିଆୟେ ।
ଶୂନ୍ୟ ପୁରୁଷ ଦୟାଳୁ ଅଟଇ । ଶୂନ୍ୟ ପୁରୁଷ ସର୍ବ ଘଟେ ରହି ।
ଶୂନ୍ୟ ପୁରୁଷ କରେ ନଟଘଟ । ଶୂନ୍ୟ ପୁରୁଷ ଜାଣେ ଛନ୍ଦକୂଟ ।
ଶୂନ୍ୟ ପୁରୁଷ ଶୂନ୍ୟରେ ମାରଇ । ମାରି ଶୂନ୍ୟ ପୁଣ୍ୟ ଗତି କରଇ ।"

ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ଶୂନ୍ୟ ପୁରୁଷ ଏକଗତରେ କେବଳ ଏକମାତ୍ର ସତ୍ତା, ଯାହାର ନିର୍ଦ୍ଦେଶରେ ଏ ସଂସାର ଚଳଚଞ୍ଚଳ ହୋଇଉଠେ । ଜଗତ୍‌ବ୍ୟାପାରରେ ଏକମାତ୍ର ଲୀଳାନାୟକ ସେହି ଶୂନ୍ୟପୁରୁଷ-ଶ୍ରୀଜଗନ୍ନାଥ । କବି ତାଙ୍କୁ ଅଣାକାର, ନିରାକାର, ନିରଞ୍ଜନ, ଅଚର, ଅନାଦି ଓ ଅକ୍ଷୟ ପ୍ରଭୃତି ନାମରେ ନାମିତ କରିଛନ୍ତି । ତତ୍ତ୍ୱର ପରମଜ୍ଞାନ ଲାଭ କରିବାକୁ ହେଲେ ତାଙ୍କ ସହ ଲୀନ ହୋଇ ଯିବାକୁ ପଡ଼ିବ । ମନ ଭିତରେ ଦୃଷ୍ଟିପଥରେ ପ୍ରଥମେ ବିରାଟ ସତ୍ତାକୁ ପ୍ରକଟ କରି ଧରି ପାରିଲେ ସାଧକର ସାଧନା ଆରମ୍ଭ ହୋଇପାରିବ । ଶ୍ରୀଜଗନ୍ନାଥଙ୍କୁ ରଥରେ ଦର୍ଶନ କରିଲା ପରେ ଅଚ୍ୟୁତାନନ୍ଦ ବିଶେଷ ଭାବରେ ଭାବାବିଷ୍ଟ ହୋଇ ପଡ଼ିଥିବା କଥା ସେ ନିଜେ ସ୍ୱୀକାର କରିଛନ୍ତି -

"ରଥରେ ଦର୍ଶନ କରି ଜଗନ୍ନାଥ ବଳଭଦ୍ର ଯେ ଉଠିଲି
ସୁଭଦ୍ରା ସୁଦର୍ଶନ ଆଦି କରିଣ ରଥ ପ୍ରଦକ୍ଷିଣ କଲି ।"

ଚୈତନ୍ୟଙ୍କ ଆଗମନରେ ଉତ୍କଳରେ କିପରି ହରିଧ୍ୱନିର ପ୍ରବାହ କଳକଳର ହୋଇଥିଲା ଓ ଶ୍ରୀଚୈତନ୍ୟ ନିଜକୁ ଶ୍ରୀରାଧା ସ୍ୱରୂପିଣୀ ମନେକରି ସ୍ୱୟଂ ନୀଳାଚଳ ନିବାସୀଙ୍କୁ ବୃନ୍ଦାବନଚନ୍ଦ୍ର ମନେକରି କିପରି ତାଙ୍କ ସହ ଲୀନ ହୋଇ ଯାଉଥିଲେ, ସେ ବର୍ଣ୍ଣନା ମଧ ବେଶ୍ ଭାବଗର୍ଭକ ।

"ଜଗନ୍ନାଥ ଦାସ ପିନି ପଞ୍ଚ ସାଖା ଉଦିଅ ହୋଇଲେ ତହିଁ
ଘରେ ଘରେ ହରି ଧ୍ୱନି ଉପୁଜିଲା ଚୈତନ୍ୟ ଆଗମରେ ଯହିଁ
ଚଣ୍ଡାଳ ବ୍ରାହ୍ମଣ ହରି ଧ୍ୱନି ଦେଇ ଶବଦେ ହୁଅନ୍ତି ମତ
ପ୍ରେମେ ଗଡ଼ାଗଡ଼ି ହରିନାମ ବୁଡ଼ି ପୁରି ରହିଛି ଜଗତ ।"

ଆଚାଣ୍ଡାଳ ବ୍ରାହ୍ମଣ ତା'ର ଦରବାରରେ ସମସ୍ତେ ସମାନ । ସେ ସମଦର୍ଶୀର ଦୃଷ୍ଟି ନେଇ ସମସ୍ତଙ୍କୁ ସମାନ ଭାବରେ ତା'ର କରୁଣାର ବାରି ବାଣ୍ଟି ଚାଲିଛି । ତାହାକୁ ଅତ୍ୟନ୍ତ ଆନନ୍ଦ ସହକାରେ ଗ୍ରହଣ କରୁଛନ୍ତି ମର୍ତ୍ତ୍ୟବାସୀ । ଜଗତ ସତେ ଅବା ପ୍ରେମ ରସରେ ଅବଗାହନ କରୁଛି । ଏହି ଅନନ୍ତ ଲୀଳା ମଧ୍ୟରେ ଶ୍ରୀରାଧା ସ୍ୱରୂପିଣୀ ଶ୍ରୀଚୈତନ୍ୟ ସତେ ଅବା ପ୍ରେମ ରସରେ ବୁଡ଼ିଗଲେ ।

"ଚୈତନ୍ୟ ଠାକୁର ମାହାନୃତ୍ୟ କରି ରାଧା ରାଧା ଧ୍ୱନି କଲେ
ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀ ଅଙ୍ଗେ ବିନ୍ଦୁ ପ୍ରାୟେ ମିଶିଗଲେ ।"

ଏହାକୁ ଅଚ୍ୟୁତାନନ୍ଦ ଶୂନ୍ୟ ସଙ୍ଗେ ଶୂନ୍ୟର ମେଳ ବୋଲି ବର୍ଣ୍ଣନା କରିଛନ୍ତି । ନିଆଁରେ କାଠ ଖଣ୍ଡେ ପକାଇଲେ କାଠର ଯେପରି କିଛି ଅସ୍ତିତ୍ୱ ରହେନାହିଁ, ନିମିଷକରେ ସେ ପୁଣି ସେହି ନିଆଁ ରୂପରେ ପରିଚିତ ହୁଏ, ସେହିପରି ଶ୍ରୀଚୈତନ୍ୟଙ୍କର କୌଣସି ଅସ୍ତିତ୍ୱ ରହିଲା ନାହିଁ । ଶ୍ରୀଜଗନ୍ନାଥଙ୍କଠାରେ ସେ ବିଲୀନ ହୋଇଗଲେ :

"ଶୂନ୍ୟରୁ ଶୂନ୍ୟ ପ୍ରକାଶିଥିଲେ ବ୍ରହ୍ମ ମଝେ କରିବାକୁ ଲୀଳା
ତମ ବିଧ୍ୱଂସୀ ତତ୍ତ୍ୱଜ୍ଞାନ ବୃନ୍ଦାର ମିଶିଗଲା ଅଗ୍ନି କଳା
ଅଗ୍ନିରେ ଅଗ୍ନି ମିଶିଲେ ଯେସନେକ କାରଣ ନୋହିବ ଜାଣି
ଜଳାରେ ଜଳ ସେହି ରୂପେ ମିଶିଲା ଦେଖି ନଦେଖିଲେ ପ୍ରାଣୀ ।"

ଯେ କୃଷ୍ଣ ସେ ହିଁ କଳି ଯୁଗରେ ଜଗନ୍ନାଥ ରୂପରେ ପୂଜା ପାଉଛନ୍ତି । ତେଣୁ ସେହି କୃଷ୍ଣ ନାମରେ ଡାକିଲେ ମଧ ତାହା ଶ୍ରୀଜଗନ୍ନାଥଙ୍କ ନିକଟରେ ଅବିଳମ୍ବେ ପହଞ୍ଚିଯାଏ ।

"ମହାମନ୍ତ୍ରେ କୃଷ୍ଣ ଯେହୁ ଜଗନ୍ନାଥ ସେହି
ଦ୍ୱିତୀୟ କୃଷ୍ଣର ନାମ କାମ ବୀଜ କହି
ତୃତୀୟ କୃଷ୍ଣକୁ ଦାନ ନାମ ବୋଲି ଧର
ଚତୁର୍ଥ କୃଷ୍ଣର ନାମ କାମ ଯେ ବିଚାର ।"

ଶୁଦ୍ଧ ଭକ୍ତି ବଳରେ କେବଳ ଏହି ନାମତତ୍ତ୍ୱ ବା ଜ୍ଞାନତତ୍ତ୍ୱକୁ ବୁଝିହୁଏ । ଓଁକାର ପ୍ରଣବ ଧ୍ୱନି ମଧ୍ୟରେ ପଞ୍ଚବୀଜ ଓ ପଞ୍ଚ ଆତ୍ମାକୁ ଏକାକାର କରିପାରିଲେ ପଞ୍ଚଭୂତ ବିଶିଷ୍ଟ ଆତ୍ମା ସଦାସର୍ବଦା ମର୍ତ୍ତ୍ୟ ବୈକୁଣ୍ଠରେ ବିଚରଣ କରିପାରିବ ।

"ଓଁକାର ଠାବରୁ ପଞ୍ଚବୀଜ ଆଦି କରି
ବଳଦେବ ସୁଭଦ୍ରା ଯେ ଜଗନ୍ନାଥ ସରି
ସୁଦର୍ଶନ ପରମ ଯେ ପଞ୍ଚବୀଜ ହୋଇ
ପଞ୍ଚ ଆତ୍ମା ଯେହି ବିନା ଚିହ୍ନ ହେତୁ ଦେଇ ।"

ସଦ୍‌ଗୁରୁ ସେବା ନକଲେ ଏ ତତ୍ତ୍ୱରେ ପ୍ରବେଶ କରିହେବ ନାହିଁ । ତେଣୁ ସଦ୍‌ଗୁରୁଙ୍କ ଶରଣାପନ୍ନ ହୋଇ ଅଣାକାର ଭଜନରେ ମନୋନିବେଶ କରି ସେଥିରେ ବିଲୀନ ହୋଇ ପରବ୍ରହ୍ମଙ୍କୁ ଉପଲବ୍ଧି କର ।

"ମହାମନ୍ତ୍ର ମନ୍ତ୍ରରାଜ ଚିହ୍ନି କରି ଭଜ
ଶ୍ରୀଗୁରୁଙ୍କ ଉପଦେଶ ମନ ମଧ୍ୟେ ମଜ"।

ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ଚତୁର୍ଦ୍ଧା ମୂର୍ତ୍ତିକୁ ମଧ୍ୟ ଅଚ୍ୟୁତାନନ୍ଦ ଏକାକ୍ଷର ବ୍ରହ୍ମ ଭାବରେ ବର୍ଣ୍ଣନା କରିଛନ୍ତି -

"ବ୍ରହ୍ମ ଯେକାକ୍ଷର ସେ ଯେ ଆପେ ନିରଞ୍ଜନ
ଦେହରୂପୀ ଜଗନ୍ନାଥ ଆପେ ଦାରୁବ୍ରହ୍ମ
ଜଗତ ଭାବରେ ବିଜେ ଦାରୁବ୍ରହ୍ମ ରାଶି
ଅଲେଖ ଭୁବନ୍ନ ଋଷି ଜ୍ୟୋତି ରୂପେ ଦୃଶି ।"

ଭକ୍ତର ଭାବକୁ ଗ୍ରହଣ କରି ପାରୁଥିବାରୁ ନାମ ତାଙ୍କର ଭାବଗ୍ରାହୀ । ସେହି ଭାବଗ୍ରାହୀ ନାମକୁ ସାର୍ଥକ କରି ଭକ୍ତ ନିମନ୍ତେ ତାଙ୍କର ଏ ଦାରୁବ୍ରହ୍ମ ରୂପ । ଯିଏ ତାଙ୍କୁ ଯେଉଁ ଭଳି ଭାବରେ ଚିନ୍ତା କରନ୍ତି, ସେ ତାଙ୍କୁ ସେହି ପ୍ରକାରରେ ଦେଖା ଦେଇଥାଆନ୍ତି । ବ୍ରହ୍ମ ଏକ । ନାମ କେବଳ ତାଙ୍କର ଭିନ୍ନ ଭିନ୍ନ ।

"ମଣ୍ଡର ଯେ ସପ୍ତପୁର କହିବାକୁ ଶୁଣ
ଅଯୁଧ୍ୟା ଦ୍ୱାରିକା କାଶୀ ସୌରାଷ୍ଟ୍ର ପ୍ରମାଣ
ଗୋପ ଯେ ମଥୁରା ଯାଜନଗ୍ର ସପ୍ତ ପୁର
ବିଜିଏ ସେ ଜଗନ୍ନାଥ ବ୍ରହ୍ମାଣ୍ଡ ଠାକୁର ।"

କଳିଯୁଗର ଅନ୍ତିମ ଭାଗରେ ଧର୍ମ ରକ୍ଷା କରିବାକୁ ଯାଇ ସ୍ୱୟଂ ଜଗନ୍ନାଥ କିପରି ଖଡ୍ଗ ଧାରଣ ପୂର୍ବକ ଦୁଷ୍ଟମାନଙ୍କୁ ବିନାଶ କରିବେ, ଏ ସମ୍ପର୍କରେ ମଧ ଭବିଷ୍ୟତ ବାଣୀ ଶୁଣାଇଛନ୍ତି ମହାପୁରୁଷ ଅଚ୍ୟୁତାନନ୍ଦ ।

"କଳି ଶେଷେ ବେଳେ ଘୋର ତମ ଆଚ୍ଛାଦିବ
କୃଷ୍ଣ ଭଜିବାକୁ କେହି ଜଣେ ଯେ ନଥିବ
ଯେମନ୍ତ ଦେଖିଣ ସେ ଯେ ଆପେ ଜଗନ୍ନାଥ
ବେନି ହସ୍ତେ ଧରି ଖଣ୍ଡା ନାଶିବେ ଜଗତ ।" -

ତେଣୁ ସଦ୍‌ଗୁରୁଙ୍କ ନିର୍ଦ୍ଦେଶରେ ନିରାକାର ଭଜନ କରି ହୃଦରେ ପାଷାଣକୁ ଶୁଖିଲାଭଳି କିମ୍ବା ସୂତ୍ରରେ ଉଦ୍ଧାରଣ ମହିମାରେ ଭକ୍ତ ମନସୂତ୍ରରେ ବାନ୍ଧି ପକାଇବା ଉଚିତ୍ ।

"ଅଚଳେ ନିଶ୍ଚଳେ ସୁଜନ ଧର । ଶୂନ୍ୟ ପୁରୁଷକୁ ଭଜ ଏ ନର
ଦିଶିବ ଶୂନ୍ୟେ ଦିବ୍ୟ ନୀଳକାୟା । ନିରାକାର ରୂପ ଅରୂପ ଛାୟା
ଚତୁର୍ଦ୍ଧା ରୂପେ ବିଜେ ନିରାକାର । ପଦ୍ମ ଫୁଟିବ କେଶର ଦିଗର"

ଅଚ୍ୟୁତାନନ୍ଦ ଆଲୋଚ୍ୟ ଗ୍ରନ୍ଥରେ ଜଗନ୍ନାଥଙ୍କ ସ୍ୱରୂପକୁ 'ଚତୁର୍ଦ୍ଧା' ଭାବରେ ବର୍ଣ୍ଣନା କରିଛନ୍ତି । ପ୍ରଭୁ ଭକ୍ତ ଜନଙ୍କୁ ନିଜର ଅବତାର ସମ୍ପର୍କରେ ଶୁଣାଇଛନ୍ତି ଆଶ୍ୱାସନାର ବାଣୀ । -

" ମୁହିଁ ଆଗେ ଯାଇ କଳିଯୁଗେ ରହି ଦାରୁବ୍ରହ୍ମେ ପୂଜା ହେବି
କୈବଲ୍ୟ ପସରା ନିରନ୍ତରେ ଭୁର କରି ଭୋଗ ବିକାଇବି
ପତିତ ତାରିବି ମୋ ଭକ୍ତ ପାଳିବି ଭୋଗ ବିକାଇବି ମୁହିଁ
ପାଦପାଣି ଗୋପ୍ୟ ନକହିବ ବାକ୍ୟ ନିଶ୍ଚୟରେ ଶୁଦ୍ଧ ଧାର ।"

ଉତ୍କଳ ପ୍ରସଙ୍ଗ

ସେହି ଦାରୁରୂପୀ ଶ୍ରୀଜଗନ୍ନାଥ ହସ୍ତପଦ ବିହୀନ ହୋଇ ମଧ୍ୟ ଦୁଷ୍ଟମାନଙ୍କୁ ସଂହାର କରି ସାଧୁମାନଙ୍କୁ ଉଦ୍ଧାର କରି ତାଙ୍କର ପତିତ ପାବନ ନାମର ସାର୍ଥକତା ରକ୍ଷାକରିବେ ।

"କୈବଲ୍ୟ ପସରା ପତିତ ତାରିବେ ମେଳେଚ୍ଛ କରିବେ ନାଶ
ଜଗତ ଜନ ଘେନି ଲୀଳା କରିବେ ମର୍ତ୍ତ୍ୟ ବଇକୁଣ୍ଠେ ବାସ ।"

ଏହି କୈବଲ୍ୟ ସର୍ବସାଧାରଣଙ୍କ ମଧ୍ୟରେ ସାମ୍ୟଭାବର ପ୍ରତୀକ ରୂପେ ପ୍ରତିଷ୍ଠିତ ହେବ । ସଂସାରର ବିବିଧ କଳହ ଏହି କଣିକାଏ କୈବଲ୍ୟର ପ୍ରତିଫଳରେ କେଉଁଆଡ଼େ ଦୂରୀଭୂତ ହୋଇଯିବ । ଆଚାଣ୍ଡାଳ ବ୍ରାହ୍ମଣ, ଧନୀ ଦରିଦ୍ର, ଉଚ୍ଚନୀଚ ସକଳ ବର୍ଗର ଜନତା ଏକାକାର ହୋଇଯିବେ ସେହି ନିରାକାର ଅଣାକାର ପରମ ପୁରୁଷଙ୍କ ମୁକ୍ତ ଦରବାରରେ ।

"ଶେଷ ଭୋଗ ମୋର ନିର୍ମାଲ୍ୟ ହୋଇବ କୈବଲ୍ୟ ପସରା ବିକା
ବିକାକିଣା ଲାଗିଥିବ ନିରବଧି ନଥିବ କାହାରି ଶଙ୍କା
ଚାଣ୍ଡାଳ ବ୍ରାହ୍ମଣ ଗୁରୁ ଶିଷ୍ୟ ପୁଣ ବାରଣ ନଥିବ ତହିଁ
ବିଚାର ନଥିବ ଏକାକାର ହେବ ନିରାକାର ଆଜ୍ଞା ଏହି ।"

ଦ୍ୱାପର ଯୁଗାବସାନରେ ଅର୍ଥାତ୍ ଯଦୁବଂଶ ନାଶ କରି ମହୋଦଧି କୂଳରେ 'ବଉଦ୍ଧ ରୂପରେ' ପୂଜା ପାଇବେ । ଅର୍ଥାତ୍ ତ୍ରେତାରେ ଯେ ଶ୍ରୀରାମ, ଦ୍ୱାପରରେ ଯେ ଶ୍ରୀକୃଷ୍ଣ, ସେ ହିଁ କଳିଯୁଗରେ ଶ୍ରୀଜଗନ୍ନାଥ । ପଞ୍ଚସଖାଙ୍କ ସୂଚନା ଦେଉଛନ୍ତି ତାଙ୍କର ଅଷ୍ଟପାଟବଂଶୀ, ସାଥି ସହଚରୀ, ଗୋପବାସୀ ପ୍ରତ୍ୟେକ ମଧ୍ୟ ଏଠାରେ ସ୍ଥାନ ପାଇବେ ତାଙ୍କର ପ୍ରିୟ ସଖାସଖୀ ଭାବରେ -

କେ ଦେବ ଯୋଗାଇ କେ ଦେବ ଭୁଞ୍ଜାଇ କେବା ଥିବ ଅନୁଧାନେ
ଦିବ୍ୟ ଅଳଙ୍କାର କଣ୍ଠେ ଭୂଷଣକେ କରିଦେବ ଆଣି ଯତ୍ନେ
କେବା ଚନ୍ଦନ ଶ୍ରୀ ଅଙ୍ଗେ ଲେପନ ବନମାଳା ଦେବ କେହି
କେ ଅବା ଶ୍ରୀ ଅଙ୍ଗେ ସୁବାସ ଅତର ନାଗ କରୁଥିବେ ନେଇ ।"

ତାଙ୍କରିଠାରେ ସଂପୂର୍ଣ୍ଣ ଆତ୍ମ ସମର୍ପଣ କରିବାକୁ ସେ ତାଙ୍କର ଶିଷ୍ୟମାନଙ୍କୁ ବାରମ୍ବାର ଶୁଣାଉଛନ୍ତି ଚେତନାର ବାଣୀ । ଯେ ଶୂନ୍ୟରୂପୀ, ସେ ଏଠାରେ ରୂପ ବା ଦେହ ଧାରଣ କରିଛନ୍ତି । ଯେ ନିଃଶବ୍ଦ, ସେହିଁ ଏଠାରେ ଶବ୍ଦମୟ ରୂପରେ ପ୍ରତିଭାତ ହେଉଛନ୍ତି । ତେଣୁ ସେ ଏକ ଓ ଅଭିନ୍ନ ।

"ସେଠାରେ ନିଃଶବ୍ଦ ଏଠାରେ ଯେ ଶବ୍ଦ ନାମ ରୂପରେ ପ୍ରକାଶ
ଜଗ ଯନ୍ତ୍ର ଚାନ୍ଦ ଶିରୀ ଜଗନ୍ନାଥ ବିଜୟେ ଶ୍ରୀ ନନ୍ଦିଘୋଷ
ଯନ୍ତ୍ର ମନ୍ତ୍ର ତନ୍ତ୍ର ତ୍ରିବିଧ ରୂପରେ ନୀଳାଚଳରେ ପ୍ରକାଶ
ସେହି ଯେହି ସେହି କେବେଁ ଭିନ୍ନ ନୋହେ ହେତୁକର
ରାମଦାସ ।"

ଶୂନ୍ୟରୂପୀ, ଶୂନ୍ୟଦେହୀ, ଅଣାକାର, ନିରାକାର, ନିରଞ୍ଜନ ଯେ ସ୍ୱୟଂ ଜଗନ୍ନାଥ, ଏହା ସେ ଶିଷ୍ୟମାନଙ୍କୁ ଉପଦେଶ ଛଳରେ ବୁଝାଇ ଦେଇଛନ୍ତି । ଯନ୍ତ୍ର, ମନ୍ତ୍ର,ତନ୍ତ୍ର ଏହି ତ୍ରିବିଧ ରୂପର ପରିପ୍ରକାଶ ଘଟିଛି ଶ୍ରୀଜଗନ୍ନାଥଙ୍କଠାରେ । ତେଣୁ ଚୈତନ୍ୟ ଆତ୍ମା ସ୍ୱରୂପ ହୋଇ ପରମାତ୍ମାଙ୍କଠାରେ ଲୀନ ହୋଇଗଲା ପରି ସେହି ପ୍ରକାରର ଅନୁରାଗ ପ୍ରତିଟି ହୃଦୟରେ ଫୁଟି ଉଠୁ ଓ ପ୍ରତିଟି ଆତ୍ମା ପରମାତ୍ମାଙ୍କ ସହ ଲୀନ ହେବାର ଆକାଂକ୍ଷା ବା ନିଷ୍ଠା ନେଇ ଧାବମାନ ହେଉ, ଏହା ହିଁ ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ମନର ଏକାନ୍ତ କାମନା ।

ଡି.ଏ.ଭି.ପବ୍ଲିକ୍ ସ୍କୁଲ
ୟୁନିଟ୍-୮,ଭୁବନେଶ୍ୱର-୧୨

● ● ●

# ବ୍ରହ୍ମାଣ୍ଡ ବିଚିତ୍ର ତୁମେ ଶ୍ରୀଜଗନ୍ନାଥ....!

● ଶ୍ରୀମତୀ ଅମୂଲ୍ୟବାଳା ପଟ୍ଟନାୟକ

ତୁମେ ଅନାଦି
ତୁମେ ଅବିନାଶୀ
ତୁମେ ଅବତାରୀ
ହେ ସୃଷ୍ଟିକର୍ତ୍ତା....!
ନା-ଆଦି ଅଛି ନା-ଅନ୍ତ ଅଛି ତୁମର
ନା-ଏକ ନିଶ୍ଚିତ ରୂପ ଅଛି
କେଉଁ ଆଦି କାଳରୁ
ସେଇ ଆଦିମାନବ ଆଦିବାସୀର, ବନବାସୀର,
ପୂଜ୍ୟ ପ୍ରବାହର ପ୍ରତୀକ 'ଜଗନ୍ତ' ନାମରେ ତ,
କେତେବେଳେ ଉତ୍କଳଦେଶୀୟ ନୀଳଗିରିବାସୀ
ଶବରକନ୍ୟା 'ଲଳିତା'ର 'ନୀଳମାଧବ'
ପୁଣି କେତେବେଳେ
ଆର୍ଯ୍ୟ-ଅନାର୍ଯ୍ୟର ମିଳନଭୂମି
ଉତ୍କଳର, ଆରାଧଦେବତା ପରମ ପୂଜନୀୟ
ଶ୍ରୀକ୍ଷେତ୍ରବାସୀ 'ପୁରୁଷୋତ୍ତମ' ।
ସବୁରି ଉହାଡ଼େ ସେଇ
ଅଙ୍ଗୀକାର ତୁମ, ଜଗତ କଲ୍ୟାଣ
ତୁମ ଧର୍ମର ଚାଙ୍ଗୁରେ-ଯୁଗବାର୍ତ୍ତା
ଶାନ୍ତି, ମୈତ୍ରୀ ଓ ପ୍ରୀତିର ଚମକ
ସଦା ଚମକୃତ
ସର୍ବଜନେ, ବିଶ୍ୱଭ୍ରାତୃଭାବର ଅମ୍ଳାନ ଗନ୍ଧରେ
ଏଣିକ୍ୟର ରଥ ଗଡ଼ି ଚାଲେ
ତୁମ ବଡ଼ଦାଣ୍ଡରେ
ନଥାଏ ସେଠି ଜାତି, ଧର୍ମ, ବର୍ଣ୍ଣର ଭେଦ
ନା ଉଚ୍ଚ, ନୀଚ ଛୁଆଁ ଅଛୁଆଁର ଭାବ
ଦେବସ୍ଥାନଠାରୁ ଚେତନ ଲେଉଟାଣି ଯାଏଁ
ଜଗତର ନାଥ ଜଗନ୍ନାଥ ତୁମେ,
ଲୀଳା ତୁମ ବିଶ୍ୱବିଦିତ
ପବିତ୍ର ମହାତ୍ମ୍ୟ ତୁମ ବ୍ରହ୍ମାଣ୍ଡ ବିଚିତ୍ର ॥

'ମନମହଲ', ଛିନ୍ଦ୍ରପାଟଣା, ବ୍ରହ୍ମପୁର
(ଗଞ୍ଜାମ)



# ଶ୍ରୀଜଗନ୍ନାଥ ଅଭିନ୍ନ ଶ୍ରୀନୃସିଂହନାଥ

● ଦୀପ୍ତି ମିଶ୍ର

ଭାରତର ପ୍ରାୟ ସର୍ବତ୍ର ଶ୍ରୀନୃସିଂହ ଉପାସନା ବହୁ ପ୍ରାଚୀନ କାଳରୁ ପ୍ରଚଳିତ । ଶ୍ରୀ ନୃସିଂହଙ୍କୁ ଆଦି ଆରାଧ୍ୟ ଦେବତା ରୂପେ ମାନ୍ୟତା ଦିଆଯାଇଥାଏ । ଶ୍ରୀ ନୃସିଂହ ହେଉଛନ୍ତି ବିଷ୍ଣୁଙ୍କ ଦଶାବତାର ମଧ୍ୟରୁ ନରସିଂହ ଅବତାରର ପ୍ରତିରୂପ । ଓଡ଼ିଶାରେ ବିଶେଷତଃ ଶ୍ରୀକ୍ଷେତ୍ରରେ ଶ୍ରୀ ନୃସିଂହ ଉପାସନା ବହୁକାଳରୁ ପ୍ରଚଳିତ । ଓଡ଼ିଶାରେ ନୃସିଂହ ଉପାସନା ୭ମ ଶତାବ୍ଦୀରୁ ଆରମ୍ଭ ବୋଲି ଐତିହାସିକମାନଙ୍କ ମତ । 'ଇନ୍ଦ୍ର ନୀଳମଣି' ପୁରାଣରେ ବର୍ଣ୍ଣିତ ଆଖ୍ୟାୟିକା ଅନୁଯାୟୀ ଭଗବାନ ଶ୍ରୀବିଷ୍ଣୁ ଶ୍ରୀ ନୃସିଂହ ଅବତାର ରୂପେ ସ୍ତମ୍ଭରୁ ଆବିର୍ଭୂତ ହୋଇ ହିରଣ୍ୟକଶିପୁର ବକ୍ଷ ବିଦାରଣ କରିବା ପରେ ଶ୍ରୀ କ୍ଷେତ୍ରରେ ଅବସ୍ଥାନ କରିଥିଲେ । ଓଡ଼ିଶାର ବିଭିନ୍ନ ସ୍ଥାନରେ ବହୁ ପ୍ରାଚୀନ ନୃସିଂହ ମନ୍ଦିର ଦୃଷ୍ଟିଗୋଚର ହୋଇଥାଏ କିମ୍ବା ବିଭିନ୍ନ ମନ୍ଦିରରେ ବହୁ ପୁରାକାଳରୁ ନୃସିଂହ ମୂର୍ତ୍ତି ସ୍ଥାପିତ ହୋଇ ଉପାସିତ ହୋଇ ଆସୁଛନ୍ତି ।

ଭୁବନେଶ୍ୱରର ରାମେଶ୍ୱର ମନ୍ଦିରରେ ଥିବା ଲକ୍ଷ୍ମୀନୃସିଂହ ମୂର୍ତ୍ତି ସପ୍ତମ ଶତାବ୍ଦୀର ବୋଲି ଗବେଷକମାନେ ବିଶ୍ୱାସ କରନ୍ତି । ସେହିଭଳି ମଣିଭଦ୍ରେଶ୍ୱର ମନ୍ଦିରରେ ସପ୍ତମ କିମ୍ବା ଅଷ୍ଟମ ଶତାବ୍ଦୀରେ ନୃସିଂହ ମୂର୍ତ୍ତି ସ୍ଥାପିତ ହୋଇଥିବାର ପ୍ରମାଣ ମିଳେ । ଯାଜପୁର ଅଞ୍ଚଳରୁ ମିଳିଥିବା ଦୁଇଟି ପ୍ରାଚୀନ ନରସିଂହ ମୂର୍ତ୍ତି ନବମ ଶତାବ୍ଦୀର ବୋଲି ଜଣାଯାଏ । ଭୁବନେଶ୍ୱରର ପ୍ରସିଦ୍ଧ ଲିଙ୍ଗରାଜ ମନ୍ଦିର ଗାତ୍ରରେ ଲକ୍ଷ୍ମୀ ନୃସିଂହଙ୍କ ମୂର୍ତ୍ତି ଖୋଦିତ ହୋଇଥିବା ଦେଖାଯାଏ । ଏହା ଦଶମ କିମ୍ବା ଏକାଦଶ ଶତାବ୍ଦୀର । ପଶ୍ଚିମ ଓଡ଼ିଶାରେ ମଧ ପ୍ରସିଦ୍ଧ ନୃସିଂହନାଥ ମନ୍ଦିର ବିଦ୍ୟମାନ ।

ଓଡ଼ିଶାରେ ବହୁ ପ୍ରାଚୀନ କାଳରୁ ଲକ୍ଷ୍ମୀନୃସିଂହ ପୂଜାର ପ୍ରଚଳନ ରହିଛି । ସମ୍ଭବତଃ ସେହି କାରଣରୁ ଶ୍ରୀଜଗନ୍ନାଥଙ୍କଠାରେ ନୃସିଂହତ୍ୱ ଆରୋପ କରାଯାଇଛି । ନୃସିଂହ ହେଉଛନ୍ତି ପୁରୁଷୋତ୍ତମ କ୍ଷେତ୍ରର ଆଦ୍ୟ ଆରାଧ୍ୟ ଦେବତା । ଶ୍ରୀଜଗନ୍ନାଥ ଓ ଶ୍ରୀ ନୃସିଂହଙ୍କ ଆବିର୍ଭାବ ମଧ୍ୟରେ ମୌଳିକ ସାଦୃଶ୍ୟ ଓ ସାମଞ୍ଜସ୍ୟ ରହିଛି । ପୁରାତତ୍ତ୍ୱବିତ୍‌ମାନଙ୍କ ମତରେ ଶ୍ରୀକ୍ଷେତ୍ରରେ ବା ଶ୍ରୀଜୀଉଙ୍କ ପାଠରେ ପ୍ରଥମେ ନୃସିଂହନାଥ ହିଁ ପୂଜା ପାଉଥିଲେ ବୋଲି ବାମଦେବ ସଂହିତା, ନୀଳାଦ୍ରି ମହୋଦୟ, ସ୍କନ୍ଦ ପୁରାଣ, ମତ୍ସ୍ୟ ପୁରାଣ ଓ କୂର୍ମପୁରାଣରେ ଉଲ୍ଲେଖ ରହିଛି । ସମଗ୍ର ଭାରତବର୍ଷରେ ଶ୍ରୀନୃସିଂହ ଉପାସନାର ବହୁଳ ପ୍ରଚଳନ ହେତୁ ନବମ କିମ୍ବା ଦଶମ ଶତାବ୍ଦୀରେ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ଶୃଙ୍ଗେରୀ ମଠରେ ଶ୍ରୀ ନୃସିଂହ ପୂଜା ପ୍ରଚଳନ କରାଇ ଥିଲେ ଏବଂ ସମୟକ୍ରମେ ଶ୍ରୀମନ୍ଦିରରେ ଶ୍ରୀ ଜଗନ୍ନାଥ ଉପାସନା ପଦ୍ଧତିରେ ଶ୍ରୀ ନୃସିଂହ ପୂଜାର ପ୍ରବେଶ ଘଟିଥିଲା । ଷୋଡ଼ଶ ଶତାବ୍ଦୀରେ ଓଡ଼ିଶାରେ ବୈଷ୍ଣବ ଧର୍ମର ପ୍ରାଧାନ୍ୟ ସତ୍ତ୍ୱେ ଶ୍ରୀନୃସିଂହ ଉପାସନା ପ୍ରାଧାନ୍ୟ ହରାଇନଥିଲା । ଅତିବଡ଼ି ଜଗନ୍ନାଥ ଦାସଙ୍କ ରଚିତ ଭାଗବତ ଓ ଶ୍ରୀ ଚୈତନ୍ୟଙ୍କ ସ୍ତୁତିରେ ନୃସିଂହ ଶବ୍ଦର ଉଲ୍ଲେଖ ରହିଛି । ଷୋଡ଼ଶ ଶତାବ୍ଦୀ ବେଳକୁ ଗଙ୍ଗ ବଂଶୀୟ ରାଜାମାନଙ୍କ ରାଜତ୍ୱ କାଳରେ ଶ୍ରୀ ନୃସିଂହ ଉପାସନା ବିଶେଷ ପ୍ରସାର ଲାଭ କରିଥିଲା । ସମ୍ଭବତଃ ଏହି କାରଣରୁ ସେ ସମୟର ସାତ ଜଣ ନରପତି ନିଜ ନାମ ସହିତ ଶ୍ରୀ ନୃସିଂହ ଶବ୍ଦ ସଂଯୋଗ କରିଥିଲେ ।

ଶ୍ରୀ କ୍ଷେତ୍ରର ବିଭିନ୍ନ ଦିଗରେ ନୃସିଂହ ମନ୍ଦିରମାନ ରହିଛି । ଶ୍ରୀ ଗୁଣ୍ଡିଚା ମନ୍ଦିରର ପୂର୍ବ-ଉତ୍ତର ବେଢ଼ା ନିକଟରେ ଯଜ୍ଞ ନୃସିଂହ ମନ୍ଦିର ଅବସ୍ଥିତ । ରାଜା ଇନ୍ଦ୍ରଦ୍ୟୁମ୍ନ ଏହି ନୃସିଂହଙ୍କୁ ଉପାସନା କରି ଯଜ୍ଞ ଆରମ୍ଭ କରିଥିଲେ ବୋଲି କଥିତ ଅଛି । ଗୌରବାଡ଼ ସାହିରେ ରହିଛି କଣ୍ଡୁ ନୃସିଂହ ମନ୍ଦିର । କଣ୍ଡୁ ମହର୍ଷି ପାଣ୍ଡୁ ପୂର୍ଣ୍ଣମୀରେ ଏହି ନୃସିଂହଙ୍କୁ ଆରାଧନା କରି ମୋକ୍ଷ ଲାଭ କରିଥିଲେ ବୋଲି କଥିତ ଅଛି । ଚକ୍ରତୀର୍ଥରେ ଚକ୍ର ନୃସିଂହ ମୂର୍ତ୍ତି ବିରାଜିତ । ରାଜା ଇନ୍ଦ୍ରଦ୍ୟୁମ୍ନ ଏହି ସ୍ଥାନରେ ଦାରୁରେ ଚକ୍ର ମଧ୍ୟରେ ଶ୍ରୀନୃସିଂହଙ୍କୁ ଦର୍ଶନ କରିଥିଲେ । ଏହାଛଡ଼ା ଶ୍ରୀ କ୍ଷେତ୍ରରେ ସିଙ୍ଗଡ଼ା ନୃସିଂହ, ଡାରବାଟୀ ନୃସିଂହ, ଅର୍ଦ୍ଧନୃସିଂହ, ଦୀନନାଥ ନୃସିଂହ, ଲେଉଟା ନୃସିଂହ, ଭୂତଙ୍ଗ ନୃସିଂହ, ସ୍ତମ୍ଭ ନୃସିଂହ, ଶ୍ରେଣୀ ନୃସିଂହ, ପୁରୁଷୋତ୍ତମ ନୃସିଂହ ଓ ଲକ୍ଷ୍ମୀ ନୃସିଂହ ଉପାସିତ ହେଉଛନ୍ତି ।

ଶ୍ରୀମନ୍ଦିରରେ ପାର୍ଶ୍ୱଦେବତା ରୂପେ ପଶ୍ଚିମ ଦିଗରେ ଉଗ୍ରନୃସିଂହ, ମୁକ୍ତି ମଣ୍ଡପ ପାର୍ଶ୍ୱରେ ମୁକ୍ତି ନୃସିଂହ, ମୁରଲୀ ଗୋପାଳ ମନ୍ଦିର ନିକଟରେ ଲକ୍ଷ୍ମୀ ନୃସିଂହ, ଦକ୍ଷିଣ ଦ୍ୱାର ଷଡ଼ଭୁଜ ଗୌରାଙ୍ଗ ମନ୍ଦିର ପଶ୍ଚିମରେ ଲକ୍ଷ୍ମୀ ନୃସିଂହ, ଗରୁଡ଼ ସ୍ତମ୍ଭ ସମ୍ମୁଖସ୍ଥ କାନ୍ଥରେ ନୃସିଂହ, ଲକ୍ଷ୍ମୀ ଓ [illegible] ଅଭୟ ନୃସିଂହ, ଗରୁଡ଼ ସ୍ତମ୍ଭ ସମ୍ମୁଖସ୍ଥ କାନ୍ଥରେ ପତିତପାବନଙ୍କ ପାର୍ଶ୍ୱରେ [illegible] ବିଦ୍ୟମାନ । ସିଂହଦ୍ୱାର ପ୍ରଥମ ସ୍ତମ୍ଭଟରେ ପତିତପାବନଙ୍କ ପାର୍ଶ୍ୱରେ ଉତ୍ତରାଭିମୁଖୀ ନୃସିଂହ, ହାତ ନୃସିଂହ, କାଶୀବିଶ୍ୱନାଥ ମନ୍ଦିର ପାର୍ଶ୍ୱରେ ଉତ୍ତରାଭିମୁଖୀ ନୃସିଂହ, ଭୋଗ ମଣ୍ଡପ ବା ଭଣ୍ଡ ଘର ତଳେ ନୃସିଂହ ଓ ଲକ୍ଷ୍ମୀଙ୍କ ମନ୍ଦିର ପାର୍ଶ୍ୱରେ ଲକ୍ଷ୍ମୀ ନୃସିଂହ ବିରାଜମାନ । ବୈଶାଖ ଶୁକ୍ଳ ଚତୁର୍ଦ୍ଦଶୀ ତିଥିରେ ଶ୍ରୀଜଗନ୍ନାଥ ନୃସିଂହ ରୂପରେ ଉପାସନା କରାଯାଇଥାଏ । ସେଦିନ ଶ୍ରୀମନ୍ଦିରର ଚଳନ୍ତି ପ୍ରତିମାମାନେ ଚନ୍ଦନ କେଳିକୁ ବାହାରିଯିବା ପରେ ଶ୍ରୀମନ୍ଦିରର ଆଜ୍ଞାମାଳ ନେଇ ଜଣେ ପଣ୍ଡା ସେବକ ଘଣ୍ଟା, ଛତା ଓ କାହାଳୀ ସହ ଚକ୍ରତୀର୍ଥସ୍ଥିତ ଚକ୍ର ନାରାୟଣ ମନ୍ଦିରକୁ ଯାଇ ଶ୍ରୀ ନୃସିଂହଙ୍କୁ ଆଜ୍ଞାମାଳ ପ୍ରଦାନ କରିଥାନ୍ତି । ଏହାପରେ ତିନି ବାଡ଼ରେ ମହାସ୍ନାନ କରାଯାଇ ନୂଆବୋଉରାଣୀ ଲୁଗା, ସୁବର୍ଣ୍ଣ କୁଣ୍ଡଳ, ତଡ଼ଗି ଆଦି ଅଳଙ୍କାର ଦେଇ ପୁଷ୍ପରେ ଠାକୁରମାନଙ୍କୁ 'ଜନ୍ମବେଶ' କରାଯାଏ । ସଂଧ୍ୟାଧୂପ ସମୟ ପରେ ଶ୍ରୀ ନୃସିଂହଙ୍କ ଚଳନ୍ତି ପ୍ରତିମାଙ୍କୁ ରତ୍ନ ସିଂହାସନରେ ବିଜେ କରାଯାଇ ଥାଏ । ସେଠାରେ ଆଜ୍ଞାମାଳ ପ୍ରଦାନ ପରେ ମହାଜନ ସେବକମାନେ

ଉକ୍ତ ପୃଷ୍ଠା

ସ୍ଥିତ ନୃସିଂହଙ୍କ ମୂର୍ତ୍ତି ମଣ୍ଡପରେ ବିଜେ କରାଯାଏ । ଏହାପରେ ନୃସିଂହ ମନ୍ଦିରରେ ପତିମହାପାତ୍ର ପୂଜା କରନ୍ତି ଓ ମଣ୍ଡପ ଉପରେ ବିଜେ ପ୍ରତିମାଙ୍କର ଜନ୍ମବିଧାନ ସମ୍ପାଦନ କରାଯାଇଥାଏ । ଶୀତଳ ଭୋଗ ପରେ ବିଜେ ପ୍ରତିମା ବିମାନବଡୁଙ୍କ ଦ୍ୱାରା ବିମାନରେ ବିଜେ ହୋଇ ଜଗନ୍ନାଥ ବଲ୍ଲଭ ମଠକୁ ଯାଇଥାନ୍ତି ଓ ସେଠାରେ ଭୋଗ ତଥା ବନ୍ଦାପନା ନୀତି ସମ୍ପନ୍ନ ହୋଇଥାଏ ।

'ସ୍କନ୍ଦ ପୁରାଣ' ଅନୁଯାୟୀ ରାଜା ଇନ୍ଦ୍ରଦ୍ୟୁମ୍ନ ଭାସମାନ ଦାରୁରେ ନୃସିଂହଙ୍କୁ ଦର୍ଶନ କରିଥିଲେ ଓ ବ୍ରହ୍ମା ନୃସିଂହ ମନ୍ତ୍ରରେ ଦାରୁବ୍ରହ୍ମ ଶ୍ରୀଜୀଉଙ୍କୁ ଅଭିମନ୍ତ୍ରିତ କରିଥିଲେ । ରାଜା ଇନ୍ଦ୍ରଦ୍ୟୁମ୍ନ ଇଷ୍ଟଦେବ ନୃସିଂହଙ୍କ ଉପାସନାପୂର୍ବକ ଅଶ୍ୱମେଧ ଯଜ୍ଞ କରିବା ପରେ ଦାରୁବ୍ରହ୍ମଙ୍କର ଦର୍ଶନ ଲାଭ କରିଥିଲେ ବୋଲି କୁହାଯାଏ । ଶ୍ରୀଜୀଉମାନଙ୍କର ନବକଳେବର ନୀତି ସହ ନୃସିଂହ ଦେବ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ନୂତନ ବିଗ୍ରହ ନିର୍ମାଣ ସମୟରେ ନୃସିଂହ ମନ୍ତ୍ରରାଜ ମନ୍ତ୍ରରେ ହୋମ କରାଯାଏ । ଶ୍ରୀମନ୍ଦିର ଦକ୍ଷିଣ ଭାଗରେ ଥିବା ଲକ୍ଷ୍ମୀ ନୃସିଂହଙ୍କୁ କୋଇଲି ବୈକୁଣ୍ଠରେ ବିଜେ କରାଯାଏ ଓ ଦାରୁମାନଙ୍କୁ ଶ୍ରୀ ନୃସିଂହ ମନ୍ତ୍ରରେ ପୂଜାର୍ଚ୍ଚନା କରାଯାଏ । ଦାରୁ ପ୍ରତିଷ୍ଠା ପୂର୍ବରୁ ଲକ୍ଷ୍ମୀନୃସିଂହ ମୂର୍ତ୍ତିକୁ ଦଶମୀ ଦିନ ରଥରେ ଆସୀନ କରାଯାଇ ଶ୍ରୀମନ୍ଦିରର ବେଢ଼ା ବୁଲାଯାଏ । ସୁଦର୍ଶନ ଚକ୍ର ମଧ୍ୟରେ ନୃସିଂହ ଥିବାରୁ ସୁଦର୍ଶନଙ୍କୁ ନୃସିଂହ ଭାବେ ପରିକଳ୍ପନା କରାଯାଇ ଦେବୀ ସୁଭଦ୍ରାଙ୍କ ରଥରେ ଲକ୍ଷ୍ମୀ ନୃସିଂହ ରୂପେ ରଥଯାତ୍ରା କରିଥାନ୍ତି ।

କାର୍ତ୍ତିକମାସ ଶୁକ୍ଳ ପକ୍ଷ ତ୍ରୟୋଦଶୀ ତିଥିରେ ଶ୍ରୀଜୀଉଙ୍କୁ ଆଡ଼କିଆ ବା ନୃସିଂହ ବେଶ କରାଯାଇଥାଏ । ଶଙ୍କରାନନ୍ଦ ମଠ ଏହି ବେଶର ଆୟୋଜନ କରିଥାନ୍ତି । ହଇଜା ବା ବାଡ଼ିରୋଗରୁ ରକ୍ଷା ପାଇବା ପାଇଁ ନୃସିଂହଙ୍କର ଚଳନ୍ତି ପ୍ରତିମାଙ୍କୁ ଶ୍ରାବଣ ଶୁକ୍ଳ ନବମୀ ଦିନ ଚାରି ଆଶ୍ରମ : ପଞ୍ଚୁ ଆଶ୍ରମ(ବାଲିସାହି), ଅଙ୍ଗିରା ଆଶ୍ରମ (ଦୋଳମଣ୍ଡପ ସାହି), ଭୃଗୁ ଆଶ୍ରମ (ଗୌରବାଡ଼ ସାହି) ଓ ମାର୍କଣ୍ଡେୟ ଆଶ୍ରମ (ମାର୍କଣ୍ଡ ସାହି) କୁ ବିଜେ କରାଯାଇଥାଏ । ଏହା ବାଡ଼ି ନୃସିଂହ ବିଜେ ରୂପେ କଥିତ । ପଞ୍ଚୁ ପୂର୍ଣ୍ଣିମାରେ ମଧ ଶ୍ରୀନୃସିଂହଙ୍କ ଚଳନ୍ତି ପ୍ରତିମା ଶ୍ରୀଜୀଉଙ୍କ ଆଜ୍ଞାମାଳ ପ୍ରାପ୍ତ ହୋଇ ବିମାନରେ ଚାରି ଆଶ୍ରମକୁ ବିଜେ କରିଥାନ୍ତି । ବନଯାଗ ଯାତ୍ରା ସମୟରେ ଶ୍ରୀ ନୃସିଂହଙ୍କ ପ୍ରତିନିଧି ଭାବେ ସୁଦର୍ଶନଙ୍କୁ ଦାରୁ ଅନ୍ୱେଷଣକାରୀଙ୍କ ସହ ଯାତ୍ରା କରିଥାନ୍ତି ।

ତେଣୁ ଶ୍ରୀକ୍ଷେତ୍ରର ରୀତିନୀତି ଓ ଓଡ଼ିଶାର ଧର୍ମ ଧାରଣାରେ ଶ୍ରୀନୃସିଂହଙ୍କ ପୂଜା ଉପାସନା ବହୁଳ ଭାବେ ପ୍ରଚଳିତ । ସମସ୍ତ ବୈଷ୍ଣବ, ଶୈବ ଓ ଶାକ୍ତ ପୀଠରେ ଏବେ ମଧ ଶ୍ରୀ ନୃସିଂହ ଉପାସନାର ପ୍ରାଧାନ୍ୟ ବିଦ୍ୟମାନ ରହିଛି । ଶ୍ରୀ ଜଗନ୍ନାଥ ଏବଂ ଶ୍ରୀ ନୃସିଂହଙ୍କର ଆର୍ବିଭାବରେ ଏକ ମୌଳିକ ସାଦୃଶ୍ୟ ଓ ସତ୍ୟର ଭିତ୍ତି ଦୃଢ଼ ଭାବରେ ପ୍ରତିଷ୍ଠିତ ଅଛି । ତେଣୁ ଶ୍ରୀଜଗନ୍ନାଥ ଓ ଶ୍ରୀନୃସିଂହ ଏକ ଏବଂ ଅଭିନ୍ନ ଅଟନ୍ତି ।

*ହେରାଗୋହିରୀ ସାହି, ପୁରୀ*

• • •

# ତୁ ଅଛୁ ମିଛ ଗପ ମିଛ କବିତାରେ

• ଶ୍ରୀ କୈଳାସ ତ୍ରିପାଠୀ

ତୁ ଅଛୁ
ପାପ ତାପ
ସନ୍ତ୍ରାସ ଆତଙ୍କ
ଉଗ୍ରବାଦର ହୁ ହୁ ହୁହୁ
ନିଆଁରେ, ଅହର୍ନିଶି
ଅଖଣ୍ଡ ଉଦଣ୍ଡ
ଦୁର୍ବାର୍ଣ୍ଣବ ଜଗତର
ଲୁହରେ ଲହୁରେ
ଧ୍ୱଂସର ଧ୍ୱନିରେ
ଏକାକାର
ତୋ' ଅନାହତ
ସତ୍ତା, ସତ୍ତ୍ୱ
ଅପବାଦରେ ।

ତୁ ଅଛୁ
ଶ୍ରୀକ୍ଷେତ୍ରରେ
ସିଂହାସନରେ
କଳ୍ପବଟର
ଛାଇରେ
ମାହାରୀର ମାତ୍
ନୃତ୍ୟ, କୈବଲ୍ୟ
ଦୟଣା, ମର୍ତ୍ତ୍ୟ
ବୈକୁଣ୍ଠର
ମହାଭୂତି
ମୁଠାକର ବ୍ରହ୍ମ
ମହାବ୍ରହ୍ମାଣ୍ଡରେ
ହାଁ'ରେ

ହାଲ୍ଲୋଳରେ
ହରିବୋଲ, ଘୋଷ
ନିର୍ଘୋଷରେ
ଦୀନ ପତିତର
ଯେତେଯେତେ
ନିଷ୍ପାପ ନିରୀହ
ପାଗଳ ପଣରେ ।

ତୁ କିନ୍ତୁ
ପାପୀର ଐଶ୍ୱର୍ଯ୍ୟ
ତାପୀର ପାବନ
ସନ୍ତ୍ରାସର ପ୍ରଭୋ
ଆତଙ୍କର ଆଶା

ଉଗ୍ରର ଭରସା
କାଳ କାଳ,
ଦାଣ୍ଡିଆ ବାଉରୀ
ବନ୍ଧୁ ମହାନ୍ତି
ଅତିବଡ଼ିର
ମିଛ ଗପ
ମିଛ କବିତାରେ

'କଳ୍ପନାଲୋକ'
୩/୨-୪ବି
ୟୁନିଟ୍-୩
ଖାରବେଳନଗର
ଭୁବନେଶ୍ୱର



# ଶ୍ରୀକ୍ଷେତ୍ରର ପ୍ରାଚୀନ ସଂସ୍କୃତି : ଜେଗା ଆଖଡ଼ା

● ଶ୍ରୀ ଲୋକନାଥ ପୂଜାପଣ୍ଡା

ଶ୍ରୀକ୍ଷେତ୍ର ଶଙ୍ଖକ୍ଷେତ୍ର, ପୁରୁଷୋତ୍ତମ କ୍ଷେତ୍ର, କୈବଲ୍ୟ ଧାମ, ମର୍ତ୍ତ୍ୟ ବୈକୁଣ୍ଠ, ନୀଳକନ୍ଦର, ନୀଳାଚଳ - ଏହିଭଳି ଭାବରେ ଅନେକ ନାମରେ ନାମିତ । ସାରା ଭାରତବର୍ଷର ଚାରିଦିଗରେ ଚାରୋଟି ଧାମ ସୁପ୍ରସିଦ୍ଧ । ପୂର୍ବରେ ପୁରୁଷୋତ୍ତମ ଧାମ, ପଶ୍ଚିମରେ ଦ୍ୱାରକା ଧାମ, ଉତ୍ତରରେ ବଦ୍ରୀନାଥ ଧାମ ଓ ଦକ୍ଷିଣରେ ରାମେଶ୍ୱର ଧାମ । ଏହି ଚାରି ଧାମରୁ ପୁରୁଷୋତ୍ତମ ଧାମ ଶ୍ରେଷ୍ଠ ଧାମ ବୋଲି ସ୍କନ୍ଦ ପୁରାଣ, ନୀଳାଦ୍ରି ମହୋଦୟ, ବାମଦେବ ସଂହିତା, ବ୍ରହ୍ମବୈବର୍ତ୍ତ ପୁରାଣ ଓ ବ୍ରହ୍ମାଣ୍ଡ ପୁରାଣ ପ୍ରଭୃତିରେ ବର୍ଣ୍ଣିତ ଅଛି ।

ଫର୍ଗୁସନ ସାହେବଙ୍କ ମତରେ ୧୦୯୮ରେ ଅନଙ୍ଗଭୀମଦେବ ମନ୍ଦିର ନିର୍ମାଣ କରି ମନ୍ଦିରର ଚତୁଃପାର୍ଶ୍ୱରେ ନଗର ସ୍ଥାପନ କରିଥିଲେ । କିନ୍ତୁ ଐତିହାସିକ ଉଇଲିୟମ ହଣ୍ଟର ସାହେବ ୧୧୭୪ ରୁ ୧୧୯୮ ମଧ୍ୟରେ ମନ୍ଦିର ନିର୍ମାଣ ଶେଷ ହୋଇଥିଲା ବୋଲି ଓଡ଼ିଶା ଇତିହାସରେ ଉଲ୍ଲେଖ କରିଛନ୍ତି । ପୂର୍ବରୁ କେଶରୀ ବଂଶଦ୍ୱାରା ନିର୍ମିତ ମନ୍ଦିରର ଭଗ୍ନାବଶେଷକୁ ପୁନରୁଦ୍ଧାର କରି ଚୋଡ଼ଗଙ୍ଗ ଦେବ ଏହି ମନ୍ଦିର ନିର୍ମାଣ କରାଇଥିବାର ଅନୁମାନ କରାଯାଏ । ବିଭିନ୍ନ ଐତିହାସିକ ଚୋଡ଼ଗଙ୍ଗ ଦେବ ଏକାଦଶ ଶତାବ୍ଦୀରେ ଯେଉଁ ମନ୍ଦିର ତୋଳାଇଥିଲେ, ତାହା ଏହି ମନ୍ଦିର ନୁହେଁ ବୋଲି ପ୍ରମାଣିତ କରିଛନ୍ତି । କିନ୍ତୁ ଚୋଡ଼ଗଙ୍ଗ ଦେବଙ୍କ ନାମାନୁସାରେ ବର୍ତ୍ତମାନ ଚୂଡଙ୍ଗ ସାହି ବିଦ୍ୟମାନ । ଆଉ କେହି କେହି ଐତିହାସିକ କହନ୍ତି, ମହାଲକ୍ଷ୍ମୀ ମନ୍ଦିର, ଇନ୍ଦ୍ରାୟଣୀ ମନ୍ଦିର, ଭୁବନେଶ୍ୱରୀ ମନ୍ଦିର ଚୋଡ଼ଗଙ୍ଗ ଦେବଙ୍କ ସମୟରେ ପ୍ରତିଷ୍ଠିତ । ବର୍ତ୍ତମାନର ମୁଖ୍ୟ ମନ୍ଦିରର ଶିଳ୍ପକଳା ଓ ପୂର୍ବ ଉଲ୍ଲିଖିତ ମନ୍ଦିରର ଶିଳ୍ପକଳା ମଧ୍ୟରେ ସାମଞ୍ଜସ୍ୟ ଥିବାର ପ୍ରତୀୟମାନ ହୁଏ ନାହିଁ ।

ଏହି ପ୍ରାଚୀନ ଧର୍ମ ସଂସ୍କୃତିର ପୀଠକୁ ପୂର୍ବକାଳରେ କିଭଳି ଭାବରେ ସୁରକ୍ଷା କରାଯାଉଥିଲା, ତାହା ମାଦଳାପାଞ୍ଜି ଜେଗା ଚକଡ଼ା ଓ ଇତିରିଆ ପ୍ରଭୃତିରେ ଉଲ୍ଲେଖ ରହିଛି । ସେସମୟରେ ଶ୍ରୀଧାମକୁ ବିଧର୍ମୀମାନଙ୍କ କବଳରୁ ସୁରକ୍ଷା କରିବା ପାଇଁ ଗଜପତି ମହାରାଜା ଚୋଡ଼ଗଙ୍ଗ ଦେବ ଓ ଅନଙ୍ଗଭୀମ ଦେବଙ୍କ ସମୟରୁ ଜେଗା, ଗଡ଼ ଓ କୋଟ ପ୍ରତିଷ୍ଠା ହୋଇଥିଲା । ପ୍ରାଚୀନ କବି ଜଗଦେବ ମିଶ୍ର ତାଙ୍କ ଲିଖିତ 'ସହରୀ ଚାଲନ' ବହିରେ ଉଲ୍ଲେଖ କରିଛନ୍ତି :-

ଶହେ ଜେଗିଆରେ ଗଡ଼ ତୋଳାଇ,
ପାଞ୍ଚଶ ଜେଗିଆ କୋଟକେ ଥାଇ ।
ଜେଗାରେ ଆଙ୍ଗିଲା ବାଡ଼ ନଥାଇ,
ନଗର ରକ୍ଷାକୁ ଜେଗା ଯୋଗାଇ ।

ଏହି କବିତାରୁ ଜଣାପଡ଼େ, ସେ ଯୁଗରେ ଏକଶତ ବଳଶାଳୀ ଯୁବକ ଗଡ଼ମାନଙ୍କରେ ବିଭିନ୍ନ ପ୍ରକାର ସମର କୌଶଳ ଶିକ୍ଷାଲାଭ କରୁଥିଲେ । ଠିକ୍ ସେହିଭଳି ପାଞ୍ଚଶହ ବଳଶାଳୀ ଯୁବକ କୋଟମାନଙ୍କରେ ସମର କୌଶଳ ଇତ୍ୟାଦି ଶିକ୍ଷାଲାଭ କରୁଥିଲେ । ଜେଗାମାନଙ୍କରେ ବାଧ୍ୟତା ଭାବରେ ବା ଆନୁଷ୍ଠାନିକ ତତ୍ତ୍ୱାବଧାନରେ ସେହି ଅଞ୍ଚଳର ଯୁବକମାନଙ୍କୁ ବିଭିନ୍ନ ସମର କୌଶଳ ଶିକ୍ଷା ଦିଆଯାଉଥିଲା । ଗଜପତିଙ୍କ ଆଦେଶାନୁସାରେ ପ୍ରତି ସାହିର ସାହି ନାୟକଙ୍କ ତତ୍ତ୍ୱାବଧାନରେ ଏହା ପରିଚାଳିତ ହେଉଥିଲା ।

ଗଜପତିଙ୍କ ଦ୍ୱାରା ନଗରର ବିଭିନ୍ନ ବସ୍ତି ବା ସାହି ସୃଷ୍ଟି କରାଗଲା । ପ୍ରତି ସାହିର ନାମକରଣ ସେ ସାହିର ଇଷ୍ଟ ଦେବଦେବୀ ବା କୌଣସି ସୁପ୍ରସିଦ୍ଧ ପୀଠକୁ ନେଇ କରାଗଲା । ଉଦାହରଣ ସ୍ୱରୂପ - ଦକ୍ଷିଣ କାଳିକାଙ୍କ ନାମାନୁସାରେ କାଳିକାଦେବୀ ସାହି, ହରଚଣ୍ଡୀ ଠାକୁରାଣୀଙ୍କ ନାମାନୁସାରେ ହରଚଣ୍ଡୀ ସାହି, ବାସେଳୀ ଠାକୁରାଣୀଙ୍କ ନାମାନୁସାରେ ବାସେଳୀସାହି , ମାର୍କଣ୍ଡେୟ ମହାଦେବଙ୍କ ନାମାନୁସାରେ ମାର୍କଣ୍ଡେଶ୍ୱର ସାହି, ମଣିକର୍ଣ୍ଣିକା ତୀର୍ଥାନୁସାରେ ମଣିକର୍ଣ୍ଣିକା ସାହି । ପୂର୍ବେ ବର୍ତ୍ତମାନ ବିଦ୍ୟମାନଥିବା ରାମଚଣ୍ଡୀ ଠାକୁରାଣୀଙ୍କ ନିକଟରେ ଶ୍ରୀଜୀଉଙ୍କ ବେଣ୍ଟଯାତ୍ରା (ପାରିଧି) ଅନୁଷ୍ଠିତ ହେଉଥିଲା ଓ ସମସ୍ତ ପ୍ରକାର ଶିଳ୍ପୀ ଯଥା- ଚିତ୍ରକାର, ମୂର୍ତ୍ତିକାର, ଲୌହକାର, କୁମ୍ଭକାରମାନଙ୍କର ଏହି ସାହିରେ ପ୍ରାଧାନ୍ୟ ଯୋଗୁ ଏହାକୁ ରୂପପାଟଣା ବୋଲି ଅତୀତରେ କହୁଥିଲେ । (ଯାହାକି କବି ହରିକୃତ ମଥୁରାହାଟରେ ବର୍ଣ୍ଣିତ ଅଛି ।) ରୂପ ଶବ୍ଦକୁ ଅପଭ୍ରଂଶ କରି କୁଣ୍ଢାଇ ଓ ବେଣ୍ଟ ଯାତ୍ରା ହେଉଥିବାରୁ କୁଣ୍ଢାଇ+ବେଣ୍ଟ=କୁଣ୍ଢାଇ ବେଣ୍ଟ ସାହି ହୋଇଛି । ପୂର୍ବେ ଶ୍ରୀଜଗନ୍ନାଥଙ୍କ ଦୋଳଯାତ୍ରା ଅଧୁନା ଦୋଳମଣ୍ଡପ ସାହିରେ ଥିବା ଜହ୍ନି ମୁଳିଆ ମଠ ଉପରେ ଅନୁଷ୍ଠିତ ହେଉଥିଲା । ଯାହାକି ଚତୁର୍ଦ୍ଦଶ ଶତାବ୍ଦୀର ଘଟଣା । କୌଣସି କାରଣରୁ ଦୋଳ ଛିଣ୍ଡି ପଡ଼ିବାରୁ ଶ୍ରୀ ବିଗ୍ରହ ଆଘାତପ୍ରାପ୍ତ ହେଲେ । ତତ୍ପରେ ବର୍ତ୍ତମାନର ଦୋଳବେଦୀ ମନ୍ଦିର ନିକଟରେ ନିର୍ମାଣ କରାଗଲା । ଶ୍ରୀଜଗନ୍ନାଥଙ୍କ ଦୋଳଯାତ୍ରାର ମଣ୍ଡପ ଥିବା ଯୋଗୁଁ ସେ ସାହି ଦୋଳମଣ୍ଡପ ସାହି ଭାବରେ ପରିଚିତ । କେହି କେହି ଦୋଳମୁଣ୍ଡ ସାହି ଅପଭ୍ରଂଶ ହୋଇ ଦୋଳମଣ୍ଡପ ସାହି ହୋଇଛି ବୋଲି କହନ୍ତି । ପ୍ରାଚୀନ କାଳରେ ଗଜପତି ମହାରାଜାଙ୍କର ଶ୍ୟାମାକାଳୀ ଓ ଅଷ୍ଟଶମ୍ଭୁ ଯୁକ୍ତ ଚତୁର୍ଦ୍ଦିଗରେ ନହର ଅବସ୍ଥିତ ଥିଲା । ସମ୍ଭବତଃ ତତ୍କାଳୀନ ଯୁଦ୍ଧରେ ଅଷ୍ଟଶମ୍ଭୁ ଓ ଶ୍ୟାମାକାଳୀ ନହର ମଧ୍ୟରେ ପୂଜିତ ହେଉଥିଲେ । ପ୍ରାଚୀନ ବୟୋବୃଦ୍ଧ ବ୍ୟକ୍ତିମାନେ ଏହି ନଅରର ଭଗ୍ନାବଶେଷ ନିଶ୍ଚୟ ଦେଖିଥିବେ । ଏହି ନଅରକୁ ବାଲିନଅର ବୋଲି ଓଡ଼ିଶା ଇତିହାସରେ ଲିଖିତ ଅଛି ।

ଭଳକ ପୃଷ୍ଠା

...ବୋଲି ନଥିବା ଥିବାରୁ ଏହି ସାହିର ନାମ ବାଲିସାହି ହୋଇଅଛି । ଗୌଡ଼ଦେଶର ରାଜା ଲକ୍ଷ୍ମଣ ସେନ ମୁସଲମାନମାନଙ୍କ ଦ୍ୱାରା ପରାଜିତ ହୋଇ ପ୍ରଥମ ମୁକୁନ୍ଦଦେବଙ୍କ ସହିତ ବନ୍ଧୁତା କରି ତାଙ୍କର ଶରଣାପନ୍ନ ହେଲେ । ଗଜପତି ମହାରାଜା ଗୌଡ଼ ଦେଶର ରାଜାଙ୍କୁ ଯଜ୍ଞେଶ୍ୱର ...ଦେବଙ୍କ ନିକଟରେ ଶିବ ଆରାଧନା କରି ନିଜର ଅତୀତର ଶ୍ରୀ ଫେରିପାଇବା ପାଇଁ ତାଙ୍କୁ ସେଠାରେ ଦୁଇ ମାଣ ଦୁଇଗୁଣ୍ଠ ଜମି ପ୍ରଦାନ କରିଥିଲେ । ବନ୍ଧୁତାର ନିଦର୍ଶନ ସ୍ୱରୂପ ରାଜା ମୁକୁନ୍ଦଦେବ ଉକ୍ତ ସାହିର ନାମ ଗୌଡ଼ବାଡ଼ ସାହି ଦେଇଥିଲେ । କ୍ରମେ ଏହି ସାହିମାନଙ୍କରେ ଅନେକ ଉପସାହି ସୃଷ୍ଟି ହେଲା । ଏହି ଉପସାହିର ନାମ ସଂଖ୍ୟାଗରିଷ୍ଠ ବାସିନ୍ଦା ବା ପ୍ରତିଷ୍ଠିତ ବ୍ୟକ୍ତିବିଶେଷଙ୍କୁ ନେଇ କରାଗଲା ବୋଲି ଅନୁମେୟ । ପଥର-ସୁଆର ସାହି, କରତି ସାହି, ବଢ଼େଇ ସାହି, ମିଶ୍ର ସାହି, ରଥ ସାହି, ହିମାନବନ୍ଧୁ ସାହି, ହଜୁରି ଗଳି, ବଇତାଗଳି, ବାଣୁଆଗଳି, ...ସାହି, ଅଙ୍ଗୀରୁଆ ସାହି, ତିଲକ ମାଟିଆ ସାହି, ଖୁଣ୍ଟିଆ ସାହି, ...ସାହି, ଚକ୍ରୁଣ୍ଡ ସାହି ଇତ୍ୟାଦି ।

ଏହି ସାହିମାନଙ୍କ ମଧ୍ୟରେ ସୀମା ସରହଦ ମଧ୍ୟ ଥିଲା । ଯାହାକି ...ଶା ଦସ୍ତାବିଜ୍‌ରେ ଉଲ୍ଲେଖ ଅଛି । ବର୍ତ୍ତମାନ ଥିବା ଜେଗା, ଆଖଡ଼ା ଓ ...ଗୁଡ଼ିକ ସେହି ସାହିର ସୀମା ମଧ୍ୟରେ ପ୍ରତିଷ୍ଠିତ । ଶ୍ରୀମନ୍ଦିର ବା ଶ୍ରୀକ୍ଷେତ୍ରକୁ ଆସିବାପାଇଁ ଚାରୋଟି ପ୍ରବେଶ ପଥ ବିଦ୍ୟମାନ । ସେହି ...ମଧ୍ୟରେ ଆସିଲେ ଯେ କେହି ଏକାଧିକ ଜେଗା, ଆଖଡ଼ା, କୋଟ ଦେଖିବାକୁ ପାଇବେ । ଏଥିରୁ ଅନୁମାନ କରାଯାଉଛି, ବହିଃଶତ୍ରୁ ଯେଉଁ ଦିଗରୁ ଜଗନ୍ନାଥ ମନ୍ଦିରକୁ ଆକ୍ରମଣ କରିବାକୁ ଇଚ୍ଛା କରିବ, ପ୍ରତି ଦିଗରୁ ପ୍ରତିରୋଧ ପାଇବ ।

**ଜେଗା ବା ଜାଗା-** ଜେଗାରେ ସାହି ବା ବସ୍ତିର ଯୁବକମାନେ କିଶୋର ଅବସ୍ଥାରୁ ଶାରୀରିକ ଚର୍ଚ୍ଚା ଯଥା-କୁସ୍ତି, ବୈଠକି (ବସାଉଠା) ...ନିୟମ ଝାଡ଼ିବା, ମୁଦଗର ଚାଳନା, ତରବାରୀ ଚାଳନା, ବନାଟି, ...ବନାଟି, ହୁଳାବନାଟି ଏସବୁ ବିଦ୍ୟାସାଧନା କରୁଥିଲେ । ଏଥି ସହିତ ...ସଜ୍ଜା, ବ୍ୟୂହ ରଚନା ପ୍ରଭୃତି ପାରମ୍ପରିକ ସମରକୌଶଳ ...ଗୁରୁ ବା ସମର ବିଶାରଦମାନଙ୍କଠାରୁ ଶିକ୍ଷାଲାଭ କରୁଥିଲେ । ଅବସର ସମୟରେ ପ୍ରାଚୀନ ସଙ୍ଗୀତ, ଚମ୍ପୂ, ଛାନ୍ଦ, ଚୌପଦୀ, ...ପ୍ରଭୃତି ପଖାଉଜର ତାଳେ ତାଳେ ଅଭ୍ୟାସ କରୁଥିଲେ । ...କ୍ଷେତ୍ରର ବିଭିନ୍ନ ଯାନିଯାତ୍ରା ମଧ୍ୟରେ ଗଜପତିଙ୍କ ଆଦେଶାନୁସାରେ ...ନାୟକଙ୍କ ତତ୍ତ୍ୱାବଧାନରେ ଶାନ୍ତି ଶୃଙ୍ଖଳା ରକ୍ଷାକରିବାରେ ...ପାଇକମାନଙ୍କୁ ମଧ୍ୟ ସାହାଯ୍ୟ କରୁଥିଲେ । ଦୈବୀ ଦୁର୍ଘଟଣା ସମୟରେ ଜେଗାର ଶିକ୍ଷାର୍ଥୀମାନେ ନିଃସ୍ୱାର୍ଥପର ଭାବରେ ବିପନ୍ନ ଲୋକମାନଙ୍କୁ ମଧ୍ୟ ସାହାଯ୍ୟ କରୁଥିଲେ । ଏହି ଜେଗାମାନଙ୍କରେ ...ଯାହା ଶିକ୍ଷା ଦିଆଯାଇଥାଏ, ତାହା ସାହି ଯାତ୍ରା ମାଧ୍ୟମରେ ପ୍ରଦର୍ଶିତ କରାଯାଇଥାଏ । ଏହି ସବୁ ପ୍ରଦର୍ଶନ ସମୟରେ ଜନସାଧାରଣ ...ବିଦ୍ୟାର ସାଧନା କେତେଦୂର ଫଳବତୀ ହୋଇଛି, ତାହା ଉପଭୋଗ କରିବା ସଙ୍ଗେ ସଙ୍ଗେ କଳାକାରମାନଙ୍କୁ ଉତ୍ସାହିତ କରିଥାନ୍ତି । ଫଳରେ ଏହି ବିଦ୍ୟାଶିକ୍ଷା କରୁଥିବା ଶିକ୍ଷାର୍ଥୀମାନେ ଅଧିକ ଉତ୍ସାହିତ ହୋଇ ପରବର୍ଷକୁ ଅଧିକ ସଫଳତାର ସହିତ ପ୍ରଦର୍ଶନ କରିବାକୁ ଚେଷ୍ଟା କରନ୍ତି ଏବଂ କିଶୋରମାନେ ଏଥିପ୍ରତି ଆଗ୍ରହ ପ୍ରକାଶ କରି ଏହି ବିଦ୍ୟା ଶିକ୍ଷାପାଇଁ ଆଗଭର ହୋଇଥାନ୍ତି । ଏହି ପ୍ରଦର୍ଶନରେ ଶ୍ରେଷ୍ଠ ବିବେଚିତ କଳାକାରମାନଙ୍କୁ ଗଜପତି ମହାରାଜା ବିଭିନ୍ନ ଉପହାର ମାଧ୍ୟମରେ ଉତ୍ସାହିତ କରିବାର ଦୃଷ୍ଟାନ୍ତ ଅତୀତରେ ଦେଖାଯାଉଥିଲା ।

ଏହି ଜେଗାଗୁଡ଼ିକ ବସ୍ତି ବା ସାହିର ଉପାନ୍ତରେ ଥିବା ବିସ୍ତୀର୍ଣ୍ଣ ପ୍ରାନ୍ତର ମଧ୍ୟରେ ସ୍ଥାପନ କରାଯାଉଥିଲା । ପ୍ରତି ଜାଗାରେ ହନୁମାନଙ୍କ ମୂର୍ତ୍ତି ସ୍ଥାପନ କରାଯାଉଥିଲା । ତତ୍ ସହିତ କାଳୀ, ଦୁର୍ଗା, ନୃସିଂହ, ମହାଦେବ ପ୍ରଭୃତି ଆରାଧ୍ୟ ଦେବତାମାନଙ୍କୁ ସ୍ଥାପନ କରାଯାଉଥିଲା । ଏହି ପ୍ରତିଷ୍ଠିତ ଦେବ-ଦେବୀଙ୍କୁ ଆରାଧନା କରି ଶିକ୍ଷାର୍ଥୀମାନେ ସାଧନାରେ ବ୍ରତୀ ହେଉଥିଲେ । ପ୍ରତି ଜାଗାରେ ଗୋଟିଏ ବଡ଼ ଘର ତିଆରି କରାଯାଉଥିଲା । ଏହି ଘରକୁ ଯେପରି ସ୍ୱଚ୍ଛନ୍ଦରେ ପବନ ଯାତାୟାତ କରିପାରିବ, ତାହାର ସୁବନ୍ଦୋବସ୍ତ କରାଯାଉଥିଲା । ସେହି ଗୃହ ମଧ୍ୟରେ ସମର ଶିକ୍ଷାରେ ବ୍ୟବହୃତ ବିଭିନ୍ନ ଅସ୍ତ୍ରଶସ୍ତ୍ର, ସଙ୍ଗୀତ ଉପକରଣ ଓ କଳା ଭାସ୍କର୍ଯ୍ୟର ଶିକ୍ଷାପାଇଁ ଆବଶ୍ୟକ ବିଭିନ୍ନ ସାଜସରଞ୍ଜାମ ସହିତ ହୋଇ ରହୁଥିଲା । ଏହି ଘର ନିକଟରେ ଗୋଟିଏ ବଡ଼ ଚଟାଣ ଉପରେ ଅସ୍ତ୍ରଶସ୍ତ୍ର ବିଦ୍ୟା,ନାଗା, ମେଢ଼ ରାବଣ, ପର୍ଶୁରାମ ଇତ୍ୟାଦି ନୃତ୍ୟ ଶିକ୍ଷା ଦିଆଯାଇଥାଏ । ଚଟାଣ ନିକଟରେ ଖେଳ ଜାଗାମାନ ବିଦ୍ୟମାନ । ଏହି ଖେଳଜାଗାଗୁଡ଼ିକ ସ୍ଥଳ ବିଶେଷରେ ବର୍ଗାକାର ବା ଆୟତାକାର ହୋଇଥାଏ । ଯାହାରକି ଲମ୍ବ ଓସାର ୨୪ ଫୁଟରେ ୩୦ ଫୁଟ କିମ୍ବା ୨୪ ଫୁଟରେ ୨୪ ଫୁଟ ବା ୩୦ ଫୁଟରେ ୩୦ ଫୁଟ ଓ ଗଭୀରତା ୫/୬ ଫୁଟ ହୋଇଥାଏ । ଏହି କ୍ଷେତ୍ର ମଧ୍ୟରେ (ଖେଳଜାଗା) ମାଟିକୁ କମଣ କରି ରଖାଯାଇଥାଏ । ଲିମ୍ବପତ୍ର, ଫଗୁ,ତେଲ ଓ ବିଭିନ୍ନ ଶରୀର ଉପଶମକାରୀ ଦ୍ରବ୍ୟ ଉକ୍ତ ମାଟିରେ ମିଶି ରହିଥାଏ । ତଦ୍ୱାରା ସେହି ଖେଳ ଜାଗାରେ ଯୁବକମାନେ କୁସ୍ତି, କସରତ ତଥା ବିଭିନ୍ନ ଜଟିଳ ସମର କୌଶଳ ଶିକ୍ଷାଲାଭ ସମୟରେ ଯଦି କେହି ତଳେ ପଡ଼ିଯାଏ ତେବେ ତାର ଶରୀରରେ ବିଶେଷ ଆଘାତ ଲାଗେ ନାହିଁ ଓ କମଣ ମାଟିର ପ୍ରଲେପ ଶରୀରରେ ଲାଗିବାଦ୍ୱାରା ବିଭିନ୍ନ ପ୍ରକାର ଚର୍ମରୋଗରୁ ମଧ୍ୟ ରକ୍ଷା ମିଳେ । ଜେଗାଘର ସନ୍ନିକଟରେ ଗୋଟିଏ ସୁନିର୍ମଳ ପୁଷ୍କରିଣୀ ରହିଥାଏ । ପୁଷ୍କରିଣୀରେ ଯୁବକମାନେ ଶିକ୍ଷାଲାଭ କରିବା ପରେ ବା ସମର କୌଶଳ ସାଧନା କରିବା ପରେ ସ୍ନାନ କରିଥାନ୍ତି ଓ ସନ୍ତରଣ ମଧ୍ୟ ଶିକ୍ଷା କରିଥାନ୍ତି । ଜେଗାଘର ଚତୁଃପାର୍ଶ୍ୱରେ ସୁଶୋଭିତ ପୁଷ୍ପ ଉଦ୍ୟାନ ଓ ବିଭିନ୍ନ ଆୟକାରୀ ଫଳଉଦ୍ୟାନ ମଧ୍ୟ ରହିଥାଏ ।

ପ୍ରତି ସାହିର ଜେଗାଗୁଡ଼ିକ ସେହି ସାହିର ଆଖଡ଼ା ମାଧ୍ୟମରେ ପରିଚାଳିତ ହୁଅନ୍ତି । ଏହି ଆଖଡ଼ାମାନଙ୍କର ମୁଖ୍ୟମାନଙ୍କୁ ଗଜପତି ମହାରାଜା ସାହି ନାୟକ ବୋଲି ଅଭିହିତ କରିଥିଲେ । ବର୍ତ୍ତମାନ ମଧ୍ୟ ଏହି ପରମ୍ପରା ଦୃଷ୍ଟିଗୋଚର ହେଉଅଛି । ପ୍ରାଚୀନ କାଳରେ ଶ୍ରୀକ୍ଷେତ୍ରର ସାହି ସରହଦ ମଧ୍ୟରେ ଥିବା ଜେଗାମାନଙ୍କର ନାମ ହେଲା - କାଳିକାଦେବୀ ସାହିର ରଙ୍ଗମାଳ ଜାଗା, ହରଚଣ୍ଡୀ ସାହିର ବଡ଼ ଆଖଡ଼ା ଜାଗା, ବାରବାଟୀ ଜାଗା, ତାପଙ୍ଗଗଡ଼ ଜାଗା, ନୃସିଂହ ବଲ୍ଲଭ ଜାଗା, ଜମେଇ ଖୁଣ୍ଟିଆ ଜାଗା, ଧ୍ୱଜାଗଡ଼ ଜାଗା, ଶଙ୍ଖକୋଟ, ଈଶ୍ୱର ବଲ୍ଲଭ ଜାଗା, କୃଷ୍ଣନି ଖୁଣ୍ଟିଆଜାଗା, ମୁଦୁଲିଜାଗା ଓ ଦାଣ୍ଡିତ ବଡ଼ ପୋଖରୀ ଜାଗା । ବୃଡ଼ଙ୍ଗ ସାହିର ବୃଡ଼ଙ୍ଗକୋଟ (ବଡୁ ମହାପାତ୍ର ଜାଗା) । ମାଟି

ମଣ୍ଡପ ସାହିର ଭୋଗଜାଗା ।ମାର୍କଣ୍ଡେଶ୍ୱର ସାହିର ଦୁଆରୀ ଜାଗା, ସାତବଖରା ଜାଗା, ପାଣ୍ଡଜାଗା, ଭଞ୍ଜଜାଗା, ରାହାସ ମହାନ୍ତି ଜାଗା ଓ ଗଦା ସାହାଣ ବଡ଼ ପୋଖରା ଜାଗା । କୁଣ୍ଡାଇ ବେଣ୍ଟ ସାହିର ସୁନ୍ଦରଜାଗା, ବିସ୍ତୁନି ଜାଗା, ଗୋପାଳିଜାଗା, ମରିଚିକୋଟ, ମଲ୍ଲୀଗଡ଼ ଜାଗା, ଅଲ୍ଲୀକୋଟ, ଗଣେଶ ଗୁରୁଜ ଜାଗା, ବ୍ରହ୍ମାଜାଗା, ମାଜଣା ଜାଗା, ମାଳିଜାଗା, ମକରଧ୍ୱଜ ଜାଗା, ଖାଲିକୋଟ, ଜାବୁ କୋଟ, ବଳଭଦ୍ର ବଲ୍ଲଭ ଜାଗା, ନରସିଂହ ଗଡ଼ ଜାଗା, ବଡ଼ଜାଗା, ଗୋପୀନାଥ ବଲ୍ଲଭ ଜାଗା, ଦିବ୍ୟସିଂହ କୋଟ, ବେଲଦଳ ଜାଗା ଓ ସୁଡ଼ଙ୍ଗ କୋଟ । ଦୋଳମଣ୍ଡପ ସାହିର ଯନ୍ତ୍ରିଆଡ଼ି ଜାଗା, ବଳଗଡ଼ ଅମାନ ଜାଗା, ଚମ୍ପାଗଡ଼ ଜାଗା, ଅମାନଜାଗା, ଜଗତପ୍ରତିହାରୀ ଜାଗା ଓ ନୂଆଟୋଟା ଜାଗା, ବାଲି ସାହିର ଝୁଣ୍ଟିଆ ଜାଗା, ହିଙ୍ଗୁଳଗଡ଼ ଜାଗା, ଲୁହାବନ୍ଧ ଜାଗା, ଗୁରୁଜଙ୍ଗ ଜାଗା, ଜଦୁଗଡ଼ ଜାଗା, ନାଗାକୋଟ, ପଞ୍ଚୁଆଡ଼ିଜାଗା, ଲୁବେଇ ଜାଗା ଓ କାଳିକାକୋଟ । ଗୌଡ଼ବାଡ଼ ସାହିର ଅଙ୍ଗୁଳ ଓଡ଼ିଆ ଜାଗା, ଖାସୁକୋଟ ଓ କୁଆଣି ଗଡ଼ ଜାଗା ।

ଏହି ଜାଗାମାନଙ୍କ ମଧ୍ୟରୁ କାଳର କରାଳଗତିରେ ବହୁତେଣ ଆଖଡ଼ା ଲୋପ ପାଇଗଲାଣି । ଏପରିକି କେତେକ ଜାଗାର ଚିହ୍ନ ମଧ୍ୟ ଆଉ ଦେଖିବାକୁ ମିଳେ ନାହିଁ । ସେଠାରେ ଜନବସତି ଗଢ଼ି ଉଠିଲାଣି । ସେଯୁଗରୁ ଜେଗା ଆଖଡ଼ାଗୁଡ଼ିକ ସ୍ୱନାଗରିକ ଗଢ଼ିବା ସହିତ ଶ୍ରୀକ୍ଷେତ୍ରର ସଂସ୍କୃତିକୁ କାଳକାଳ ଧରି ବହନ କରି ଆସୁଛି ।

*ସଭାପତି, ଆନ୍ତର୍ଜାତିକ ଶ୍ରୀଜଗନ୍ନାଥ ଚେତନା କେନ୍ଦ୍ର*
*ହରିଧାମ, ଦୋଳମଣ୍ଡପ ସାହି, ପୁରୀ*

• • •

# ଏକବାର ସତ

• ଡ଼ଃ ବୀଣାପାଣି ସିଂହ

ଜଗନ୍ନାଥ,
ଗଲା କାଲି ରାତିରେ
ସପନରେ ତମେ ଆସିଲ
ମୋ' ପାଖରେ
ସେଇ ବିଛଣାରେ ବସିପଡ଼ିଲ
କହିଲ-ତୁ କା'କୁ ସବୁଠୁ ବେଶୀ ଭଲ ପାଉ ?
ମୁଁ ଲାଜରେ ଝାଉଁଳି ପଡ଼ିଲି ।
ଥର ଥର କଣ୍ଠରେ କହିଲି,
ତମକୁ...ପ୍ରଭୁ ତମକୁ....
ତମେଇ ତ ମୋ' ଜୀବନ ସାହାରାର
ଏକମାତ୍ର ଓଏସିସ୍....!
ତୁମେ ଫିକ୍‌କିନେ ହସିଦେଲ
କହିଲ, ମିଛୁଆଟା
ମା' ମାନେ କ'ଣ ମିଛ କହନ୍ତି
ସତ କହ ସତ ....!
ମୁଁ ଲାଜେଇ ଗଲି
କହିଲି, ମୋ' ବାପାଙ୍କୁ
ସେ ଏବେ ସେପୁରରେ....
ତଥାପି ମୋ' ମନ ଭିତରେ
ସେ ବସାବାନ୍ଧି ରହିଛନ୍ତି ।
ଚଡ଼୍କା ଗଳାରେ ତମେ କହିଲ, ନାଁ...
ମୁଁ ଟିକେ ଥମିଗଲି
କହିଲି, ମୋ ବୋଉକୁ
ତମେ କହିଲ-
ତୁ ବାହା ହେଲା ପରେ ଆଉ
ମା' ହେଲା ପରେ
ତୋ' ବାପା, ବୋଉ ତୋ'ର
କେତେ ମନେ ପଡ଼ନ୍ତି ?
କହ....ସତ କହ ।
ମୁଁ ତମ ଚୁରନ୍ତା ଆଖିକି
ଅନେଇ ପାରିଲି ନାହିଁ ।
ତଳକୁ ଅନେଇଁ ଆସ୍ତେ କହିଲି,
ତାଙ୍କୁ...ମୋ' ସ୍ୱାମୀଙ୍କୁ ...!
ତମେ ହସି ହସି ଗଡ଼ିଗଲ
କହିଲ-ତୁ କାହିଁକି ଏତେ
ମିଛ କହୁଛୁ ?
ମୁଁ କହୁଛି ପରା
ସତ କହିବୁ ବୋଲି !
ମୁଁ ଗୋଟାପଣେ ଝାଳେଇ ଗଲି
ଆସ୍ତେ କହିଲି-
ମୋ' ପୁଅକୁ
ଏକୋଇର ବଳା ଚିଣିକେଶନକୁ ।
ତମେ ମୋ' ଦି' ହାତ ଧରି
ହଲେଇ ଦେଲ
କହିଲ-ମତେ ଚାହାଁ
ମୋ' ଦି' ଆଖିକି ଚାହାଁ
ସତ କହ ଏକବାର ସତ ....
ମୁଁ ତମ ପାଦ ଦି'ଟାକୁ
ଜାବୁଡ଼ି ଧରି କହିଲି,
ମତେ ପ୍ରଭୁ ମତେ
ମୁଁ ମତେ ହିଁ ସବୁଠୁ
ବେଶୀ ଭଲ ପାଏ...!
ତମେ ମୋ' ଦିହାତ ଧରି
ତଳୁ ଉଠେଇ ଦେଲ ।
ମୋ' ମୁଣ୍ଡକୁ ଆଉଁସି ଦେଇ
କହିଲ ...ସତ କହିଲୁ
ଏକବାର ସତ ।

*ଓଡ଼ିଶା ଆଦର୍ଶ*
*ଚୌଦ୍ୱାର ମାର୍କେଟଷ୍ଟେଟ୍*
*ଚୌଦ୍ୱାର, କଟକ*

ଛନ୍ଦ ମୁଦ୍ରଣ



# କେନ୍ଦ୍ରାପଡ଼ାର ପ୍ରସିଦ୍ଧ ରଥଯାତ୍ରା

● ଡକ୍ଟର ବାସୁଦେବ ଦାସ

କେନ୍ଦ୍ରାପଡ଼ା ତୁଳସୀକ୍ଷେତ୍ରର ନାମାନ୍ତର । ଶ୍ରୀସିଦ୍ଧ ବଳଦେବ ଏହି କ୍ଷେତ୍ରରେ ଅଧିଷ୍ଠାତ୍ରୁ ଦେବତା । ୧୩ଶ ଶତାବ୍ଦୀରେ ତୃତୀୟ ଅନଙ୍ଗଭୀମଦେବ କର୍ତ୍ତୃକ ନିର୍ମିତ ୬୦ ହାତ ଉଚ୍ଚର ରେଖ ମନ୍ଦିର ୧୬୬୦ ମସିହାରେ ମିଆଦ ମହମ୍ମଦ ଖାନଙ୍କ ଦ୍ୱାରା ଧ୍ୱସ୍ତ ହେବାପରେ, ଏହି କ୍ଷେତ୍ରର ଲିପିବଦ୍ଧ ଇତିହାସ ଲୁପ୍ତ ହୋଇଯାଇଅଛି । ତେବେ ଷୋଡ଼ଶ ଶତାବ୍ଦୀର ଭକ୍ତକବି ବିପ୍ର ମାଧବୀ ଦାସଙ୍କ 'ତୁଳସୀକ୍ଷେତ୍ର ମାହାତ୍ମ୍ୟ'ରୁ ବଳଦେବଙ୍କର ରୀତିନୀତି ସମ୍ପର୍କରେ ସାଧାରଣ ସୂଚନା ମିଳିଥାଏ । ଏଠାରେ ୧୩ ଯାତ୍ରା ହେବାର ବିଧି ପ୍ରଚଳିତ । ତଦନୁଯାୟୀ, ବିଶ୍ୱ-ବିଖ୍ୟାତ ରଥଯାତ୍ରା ଅନୁଷ୍ଠିତ ହୋଇଆସିବା କଥା ଜଣାଅଛି । 'ଦ୍ୱିତୀୟା ପୁଷ୍ୟା ଯେ ନକ୍ଷତ୍ର' ଅର୍ଥାତ୍ ଆଷାଢ଼ ଶୁକ୍ଳ ଦ୍ୱିତୀୟା ପୁଷ୍ୟା ନକ୍ଷତ୍ର ଦିନରେ ରଥଯାତ୍ରା ଅନୁଷ୍ଠିତ ହୋଇଆସୁଅଛି ।

ଐତିହ୍ୟ : ସମ୍ପ୍ରତି ଶ୍ରୀଜୀଉଙ୍କ ବିଜେସ୍ଥଳୀ ମଧ୍ୟଖଣ୍ଡା ଇଚ୍ଛାପୁର-କେନ୍ଦ୍ରାପଡ଼ା ସହର ପ୍ରାଣକେନ୍ଦ୍ରଠାରୁ ୩ କି.ମି. ଦୂର । ଇତି ପୂର୍ବରୁ କେନ୍ଦ୍ରାପଡ଼ାର କଚେରି ପଡ଼ିଆ-ଜୁମା ମସଜିଦ୍ ସଂଲଗ୍ନ ଦେଉଳରେ ସିଦ୍ଧ ବଳଦେବ ପୂଜା ପାଉଥିଲେ । ଭାଗବତକାର ଅତିବଡ଼ୀ ଜଗନ୍ନାଥ ଦାସଙ୍କ ତତ୍ତ୍ୱାବଧାନରେ ରଥଯାତ୍ରା ହେଉଥିଲା । ଆଧୁନିକ ମଢ଼ିଆଳ ବଜାର ଥିଲା ରଥ ଦାଣ୍ଡ । ଜାମରାଉତଙ୍କ କୋଠାପଛ ଅର୍ଥାତ୍ ଚମାର ସାହି ପାଖରେ ଥିଲା ଗୁଣ୍ଡିଚା ମନ୍ଦିର । ଅଦ୍ୟାବଧି ତହିଁର ଧ୍ୱଂସାବଶେଷ ରହିଅଛି । ୧୮୩୭ ମସିହା ନକସା ମୁତାବକ ପୁରାତନ ରେକାର୍ଡ଼ି ବଜାରରୁ ରଥଯାତ୍ରା ଆରମ୍ଭ ହୋଇ ଗୁଣ୍ଡିଚା ମନ୍ଦିରରେ ଶେଷ ହୁଏ । ଅନୁରୂପ ଭାବରେ ବାହୁଡ଼ା ଯାତ୍ରା ମଧ୍ୟ ଅନୁଷ୍ଠିତ ହୋଇ ଆସୁଥିଲା। ୧୬ଶ ଶତାବ୍ଦୀ ପୂର୍ବରୁ ରଥଯାତ୍ରା ପାଳନର ସମ୍ଭାବନା କ୍ଷୀଣ । କାରଣ ସେତେବେଳେ ଜଗନ୍ନାଥ ବିଗ୍ରହ ବଳଦେବଙ୍କ ପାଖରେ ପୂଜା ପାଉ ନଥିଲେ । ଅତିବଡ଼ୀ ଜଗନ୍ନାଥ ଦାସଙ୍କ ତତ୍ତ୍ୱାବଧାନରେ ଜଗନ୍ନାଥ ଶ୍ରୀ ବିଗ୍ରହ ବଳଦେବ ମନ୍ଦିରରେ ପ୍ରବେଶ କରାଯାଇଥିଲା ।

ଇଚ୍ଛାପୁରରେ ସପ୍ତଦଶ-ଶତାବ୍ଦୀଠାରୁ ରଥଯାତ୍ରା ଅନୁଷ୍ଠିତ ହୋଇଆସୁଅଛି । ୧୭୬୩ ରୁ ୧୯୨୩ ମସିହା ମଧ୍ୟରେ ୧୬୦ ଥର ରଥଯାତ୍ରା ଅନୁଷ୍ଠିତ ହୋଇଥିଲା । ପ୍ରଳୟଙ୍କରୀ ବନ୍ୟା ଓ ବାତ୍ୟା ହେତୁ ୩ଥର ରଥଯାତ୍ରା ଆନୁଷ୍ଠାନିକ ଭାବେ ହୋଇପାରି ନଥିଲା । ୧୮୬୬, ୧୮୬୭ ଓ ୧୮୮୬ ମସିହାର ପ୍ରାକୃତିକ ବିପାକ ଅନ୍ତରାୟ ହୋଇଥିଲା । ୧୯୨୩ ମସିହାଠାରୁ ମହନ୍ତେଇ ବ୍ୟବସ୍ଥା ପରେ ବଳଦେବଙ୍କର ରଥଯାତ୍ରା ପ୍ରତିବର୍ଷ ହୋଇ ଆସୁଅଛି ।

ରଥ ବିବରଣୀ : ତୁଳସୀ କ୍ଷେତ୍ରରେ ଗୋଟିଏ ବିଶାଳ ରଥ ହୁଏ । ଏହାକୁ 'ବ୍ରହ୍ମତାଳ ଧ୍ୱଜ' ରଥ କହନ୍ତି । ଏହି ବ୍ରହ୍ମ ତାଳଧ୍ୱଜ ରଥରେ ତିନିହେଁ ବିଜେ କରନ୍ତି ।

ଦୋଳପୂର୍ଣ୍ଣିମା ପରଦିନ ଚୈତ୍ର କୃଷ୍ଣ ପ୍ରତିପଦ ଦିବସରେ ରଥ ନିର୍ମାଣ ନିମିତ୍ତ ନିର୍ଦ୍ଦିଷ୍ଟ ବୃକ୍ଷରେ ଶ୍ରୀଜୀଉଙ୍କର ଆଜ୍ଞାମାଳ ବନ୍ଧାଯାଇ ପୂଜା ପୂର୍ବକ ବୃକ୍ଷ ଛେଦନ କରାଯାଏ। ଅକ୍ଷୟ ତୃତୀୟା ଦିନ ଆନୀତ କାଷ୍ଠ ଯନ୍ତ୍ରାଦି ପୂଜା ପାଇ ରଥ ନିର୍ମାଣ ଆରମ୍ଭ ହୁଏ । ଅନୁକୂଳ ଦିବସରେ ଯେଉଁ କାଷ୍ଠ ଖଣ୍ଡିକ କଟାଯାଏ ସେଥିରେ ଲଙ୍ଗଳାୟୁଧ ତିଆରି କରାଯିବାର ବିଧି ରହିଅଛି । ଏହି ହଳାୟୁଧ ରଥ ଶୀର୍ଷରେ ଖଚିତ ହୋଇଥାଏ । ଜ୍ୟେଷ୍ଠ ପୂର୍ଣ୍ଣିମା ଦିନ ଚକ ଓ ଅଖକୁ ପୂଜା କରାଯାଇ ଚକ ମଧ୍ୟରେ ଅଖ ପ୍ରବେଶ କରାଯାଏ । ଆଷାଢ଼ କୃଷ୍ଣ ଅଷ୍ଟମୀରେ ଚକ ଉପରେ 'ବରାନ୍ଧ' ବା ଦେବଦାରୁ କାଠଗଡ଼ ପଡ଼େ । ଏକାଦଶୀ ଦିନ 'ନାହାକା' ପୂଜା ପାଇ ଯୋଡ଼ା ଯାଏ । ନେତ୍ରୋତ୍ସବରେ ଦେବଗଣଙ୍କୁ ରଥର ବିଭିନ୍ନ ଅଙ୍ଗରେ ସ୍ଥାପନ କରି ରଥ ପ୍ରତିଷ୍ଠା ହୁଏ । ତାପରେ ବିବିଧ ରଙ୍ଗର କପଡ଼ାରେ ରଥ ଶ୍ରୀଅଙ୍ଗ ଆବୃତ କରାଯାଏ । ରଥର ଶୀର୍ଷଭାଗରେ ସୁବର୍ଣ୍ଣ (ପିତଳ) କଳସ ଓ ଶୁକ ପକ୍ଷୀ ସ୍ଥାପନ କରାଯାଏ । ତଦୁପରେ ଛହାତ ଉଚ୍ଚର ଉନ୍ନତି ନେତ ଫରଫର ଉଡ଼େ ।

ରଥ ଅଙ୍ଗରାଗ : ବ୍ରହ୍ମତାଳଧ୍ୱଜ ରଥର ଉଚ୍ଚତା ୪୧ ହାତ ଦଶ ଅଙ୍ଗୁଳି । କଳସ ଓ ନେତକୁ ବାଦ ଦେଲେ କେବଳ ରଥର ଉଚ୍ଚତା ୫୨ ଫୁଟ ୬ ଇଞ୍ଚ । ରଥର ବ୍ୟାସ ୩୮ ଫୁଟ । ସରଞ୍ଜାମଗୁଡ଼ିକ ମଧ୍ୟରେ ନିଦା ଚକ ୧୪ଟି, ଚତୁର୍ଦ୍ଦ ବ୍ରହ୍ମାଣ୍ଡ ସଦୃଶ । ଅଖ-୭, ମଝିଅଖର କାନ୍ଧି ଅଖ ଗୋ ୨, ଆଗପଛ ଅଖ ଗୋ ୨, ସିଦ୍ଧ ଅଖ ଗୋ ୨ଟା । ବରାନ୍ଧ ଗୋ ୯, ଖୁଣ୍ଟିଆ ଗୋ ୫୪, ପାଞ୍ଜାଗୋ ୮, ପାରିଶ ଗୋ ୧୨, କାନି ପାରିଶି ଗୋ ୧୬, ଛଦରା ଗୋ ୪, ନାହାକା ଗୋ ୪, କଡ଼ିନାହାକା ଗୋ ୧୪, ସିଂହାସନ କଡ଼ି ଗୋ ୭, ଛୋଟ କଡ଼ି ଗୋ ୯, ସିଂହାସନ ଆଉଜାଣି ଖୁଣ୍ଟ ଗୋ ୩, ଗଜପିଠି ଆଉଜାଣି କଡ଼ି ଗୋ ୧, ନିଆଳି ୨ଥାକ, ପାରାଭାଡ଼ି ୭ ଥାକ, କଳମୁଣ୍ଡେଇ ଛାତ ୧ ଥାକ, ଡବୁ ୧ ଗୋଟା, ତଥା ନଉତି ଓ ପିତଳ ଦଧିକଳସ ମୋଟ ଛୋଟ ବଡ଼ ୮୪୦ ଖଣ୍ଡ କାଠ ରଥରେ ଲାଗୁଅଛି ।

ଇଚ୍ଛାପୁର ରଥ ଯାତ୍ରାର ମହାରଣା : ପଙ୍କଜ ମହାରଣା 'ବଣ୍ଟୁରିଆ' ନାମକ ମାପ ଯନ୍ତ୍ର ନିର୍ମାଣକରି ରଥ ଗଢ଼ିବାର କୌଶଳ ଶିକ୍ଷା କରିଥିଲେ । ପୁରୀ ଶ୍ରୀକ୍ଷେତ୍ରର ପୋଲାଚକ ବା ଯୋଡ଼ା ଚକକୁ ସେ ପସନ୍ଦ କରି ନଥିଲେ। କଥିତ ଅଛି ନିଦା ଗର୍ଭ ଚକା ନହେଲେ ଏତେ ଭାର ସମ୍ଭାଳି ହେବ ନାହିଁ ଏହି ପଙ୍କଜ ମହାରଣା ଇଚ୍ଛାପୁର ରଥ ନିର୍ମାଣର ପ୍ରଥମ ବିନ୍ଧାଣି । ବର୍ତ୍ତମାନ ପଙ୍କଜଙ୍କର ୭ମ ଉତ୍ତର ପୁରୁଷ-ଶୁକଦେବ ମହାରଣା ଏହି କାର୍ଯ୍ୟ ସମ୍ପାଦନ କରି ଆସୁଛନ୍ତି । ପ୍ରତ୍ୟେକ ପୁରୁଷରେ ୪୦ ବର୍ଷ ବ୍ୟବଧାନ ବିଚାର କରାଗଲେ-୭ ପୁରୁଷର ବୟସ ୨୪୦

ବର୍ଷ(୧୯୯୦ ସୁଦ୍ଧା) ହେବ । ପଞ୍ଚକ ମହାରଣାଙ୍କୁ ପ୍ରଥମ ରଥ ନିର୍ମାଣ ବେଳେ ୨୪/୨୫ ବର୍ଷ ହୋଇଥିଲେ -ଏହି ସମ୍ଭାବନାନୁସାରେ ୧୭୫୭ ପରଠାରୁ ରଥଯାତ୍ରା ନିୟମିତ ଆରମ୍ଭ ହୋଇଅଛି । ଦ୍ୱିତୀୟତଃ ସନ୍ଥ ଗୋପାଦାସ ବା ଝଟ ଗୋପୀ ଦାସ ନାମକ ମରହଟ୍ଟା ସନ୍ନ୍ୟାସୀ ୧୭୨୮ ଠାରୁ ତୁଳସୀକ୍ଷେତ୍ରରେ ଅବସ୍ଥାନ କରିବା ପରେ ଶ୍ରୀଜୀଉଙ୍କର ପୂଜା, ମନ୍ଦିର ନିର୍ମାଣ, ଗୁଣ୍ଡିଚା ମନ୍ଦିର ନିର୍ମାଣ ଆଦି ବିକାଶମୂଳକ କାର୍ଯ୍ୟ ହୋଇଅଛି । ସୁତରାଂ ରଥଯାତ୍ରାର ପ୍ରକୃତ ସୂତ୍ରଧର ରୂପେ ସନ୍ଥ ଗୋପାଦାସ ସ୍ମରଣୀୟ ।

**ପହଣ୍ଡି ବିଜେ :** ତୁଳସୀ କ୍ଷେତ୍ରରେ ପହଣ୍ଡି ପଦ୍ଧତି ବଡ଼ ଆକର୍ଷଣୀ । ଶ୍ରୀକ୍ଷେତ୍ର ପୁରୀରେ ଜଗନ୍ନାଥଙ୍କୁ ତ୍ରିଭଙ୍ଗୀ ଠାଣିରେ ପହଣ୍ଡି କରାଇ ରଥରେ ବିଜେ କରାହୁଏ । ମାତ୍ର ଏଠାରେ ଫଣିଭୂଷଣ ବଳଦେବ ବୀର ଦର୍ପରେ ଆଗକୁ ପଛକୁ ଝୁଲି ଝୁଲି ପହଣ୍ଡି ହୋଇଥାନ୍ତି । ମନେ ହୁଏ -ଏକ ବୃହଦାକାର ଉତ୍‌ଫଣ ସର୍ପ କ୍ରୂର ଦୃଷ୍ଟିରେ ଗତିଶୀଳ । ଶ୍ରୀଜୀଉଙ୍କୁ (ତିନିଦିଅଙ୍କୁ) କପଡ଼ା ଗୁଡ଼ାଇ(ମୋଟ ଦଉଡ଼ି) ବନ୍ଧା ଯାଏ । ଏହା ବଳଦେବଙ୍କ ସେନାପାଟ ବେଶ । ସେଇ କପଡ଼ା ରଶିକୁ ଧରି ମୂର୍ତ୍ତିଙ୍କୁ ଏକ ସ୍ଥାନରୁ ଆଗକୁ ଆଗକୁ ଉଠାଇ ପୂଜକମାନେ ଆଣନ୍ତି । ଯେଉଁଠି ବିଗ୍ରହ ପାହୁଣ୍ଡ ରଖିବେ ସେଠାରେ ଏକ ଗୋଲେଇ ମାଣ୍ଡି ଫିଙ୍ଗି ଦିଆ ହୁଏ । ତାହା ଉପରେ ଦିଅଁ ରହନ୍ତି । ମନ୍ଦିର ସିଂହ ଦରଜା ଅତିକ୍ରମ କଲେ ପୋଲିସ ଘେରରେ ତାଙ୍କୁ ଉଠି ରଥ ବିଜେ କରାଯାଏ । ଏହି ଦିନ ଏ ଅଞ୍ଚଳରେ ଅମୃତ ମଣୋହି ଜମି ଭୋଗ ଦଖଲକରି ଆସୁଥିବା ଗୋପାଳ ଜାତି ତରଫରୁ ନେତ ଦାନ କରାଯାଏ । ନେତ ଚଢ଼ାଇବା ନିମିତ୍ତ ପୁରୀ ସମାଧିମଠ ମହନ୍ତ ମହାରାଜା ଭୂମି ଖଞ୍ଜା କରିଥିଲେ ।

**ରଥ ଦେବତା :** ବ୍ରହ୍ମତାଳ ଧ୍ୱଜ ରଥ ଦ୍ୱିବିନ୍ଦ ରାକ୍ଷସ ବଧ କାଳରେ ଭକ୍ତିର ବଳରେ ବଳଦେବଙ୍କୁ ବ୍ରହ୍ମା ପ୍ରଦାନ କରିଥିଲେ । ରଥର ଦେବତା ଓ ପାର୍ଶ୍ୱଦେବତା ଆଦି ପାଇଁ ସ୍ୱତନ୍ତ୍ର ଶବ୍ଦ ରହିଛି। ସେହି ପରିଚୟଗୁଡ଼ିକ ତଳେ ପ୍ରଦତ୍ତ ହେଲା :-

ରଥ-ବ୍ରହ୍ମ ତାଳଧ୍ୱଜ

ଦାତା-ବ୍ରହ୍ମା

ରଥ ରକ୍ଷକ-ବାସୁଦେବ ଭାସ୍କର

ଆୟୁଧ-ହଳ ମୁଷଳ

ଉତ୍ପାଠ-ଅଷ୍ଟମୁଷଳ

ଉତ୍ପାଠ-ଅଷ୍ଟଦଳ ପଦ୍ମ

ସାରଥି-ସୁମତି

ଉର୍ଦ୍ଧ୍ୱଦେବତା-ନାଗ

ରଥାଶ୍ୱ-ତୀବ୍ର,ଖର,ଘୋର ଓ ଦୀର୍ଘଶ୍ରମ

ନେତର ନାମ-ଉନ୍ନାନି, ରଜ୍ଜୁ-ବାସୁକି

ରଥ ମୂର୍ଦ୍ଧ-କେତୁ ଭଦ୍ରା

ରଥ ପାର୍ଶ୍ୱର ରକ୍ଷକ-ବିଷ୍ଣୁଗଣ, ରୁଦ୍ରଗଣ, ବିନାୟକଗଣ, ଦଣ୍ଡୀଗଣ(ଆବାହନ କରାଯାଏ)

ଦଣ୍ଡଦେବତା-ବ୍ରହ୍ମାଶିବ

ରଥ ଭୈରବ-କ୍ଷେତ୍ରପାଳ

ରଥ ଗନ୍ଧର୍ବ-ହୁ-ହୁ

ରଥ ଚାରଣ-ସିଦ୍ଧ ଦାସ

ଶକ୍ତି -ତୁଳସୀ, ତୁଙ୍ଗଭଦ୍ରା, ବାଣୀ, ଧାତ୍ରୀ, ବିଧାତ୍ରୀ, ନନ୍ଦୀ, ବାରଙ୍ଗୀ, ବାସେଳୀ

ଋଷିପଟାରେ -ଅଙ୍ଗିରା, ପୌଲସ୍ତ୍ୟ, ପୁଲହ, ଅଗସ୍ତି, ମୃଡ, ମୃକଣ୍ଡ, ଅତ୍ରେୟ, କାଶ୍ୟପ ଆଦି ।

ରଥ କୁମ୍ଭ : ଭୁବନ, ବ୍ରହ୍ମାଣ୍ଡ, ବିଶ୍ୱ, ପୃଥିବୀ, ହ୍ଲାଦିନ

ଦ୍ୱାରପାଳ-ନନ୍ଦି, ସୁନନ୍ଦି

ଚକ୍ରର ନାମ-ବ୍ରହ୍ମଚକ୍ର

ତତ୍ତ୍ୱର ନାମ -ଅଣାକାର

ଆବରଣ-ରକ୍ତନୀଳ-ସପ୍ତରଙ୍ଗ

ରଥ ଶିରରେ -ଅନନ୍ତ ନାଗ

**ଛେରା ପହରା -:** ପାର୍ଶ୍ୱ ରକ୍ଷକଙ୍କୁ ଆବାହନ କରାଯାଇ ଶ୍ରୀଗୁଣ୍ଡିଚା ଦିନ ରଥର ୫ଟି ରଶିକୁ ପୂଜାକରି ରଥରେ ବନ୍ଧାଯାଏ । ଶାଗୁଆ ତାର ବନ୍ଧା ହୁଏ। ସୁମତି ସାରଥିକୁ ଆମ୍ବାମାଳ, ଫୁଲ ଚନ୍ଦନ ଅର୍ପଣ କରାଯାଇ, ଆମ୍ବାମାଳ ସହକାରେ ରଥରେ ଯୋଡାଯାଏ । ଏହାପରେ ଆରମ୍ଭ ହୁଏ ଛେରା ପହରା ।

୧୭୭୩ ମସିହାରୁ ଛେଦରା ରାଜା ରଙ୍ଗାପୁର ନିର୍ମାଣ କରାଇ ପୂଜା ପାର୍ବଣ ବ୍ୟବସ୍ଥା କରିଥିଲେ । କୁଜଙ୍ଗ ରାଜା ଗୋପାଳ ଶ୍ରୀ ମଧ ସହାୟତା କରିଥିଲେ । ଛେଦରା ଆଜି ଅଧୀନସ୍ଥ ଦୁର୍ଗିକ୍ଷେତ୍ର । ଏହି ଆଜି ରାଜା ପ୍ରକୃତ ପକ୍ଷେ ଠାକୁର ରାଜା ମର୍ଯ୍ୟାଦାର ଅଧିକାରୀ । ମଧ୍ୟ ନଦ-ନଦୀ ଅତିକ୍ରମ କରି ଏହି କାର୍ଯ୍ୟ ସମ୍ପନ୍ନ କରିବା ସମ୍ଭବ ହେଉ ନଥିବାରୁ କିଲେ ଛେଦରାର ଜମିଦାର ସମ୍ପନ୍ନ କରୁଥିଲେ । ପରବର୍ତ୍ତୀ କାଳରେ ଅର୍ଥାତ୍ ଇଂରେଜ ଶାସନରେ ଛେଦରା ସ୍ୱତନ୍ତ୍ର କିମ୍ବା ପରିଣତ ହୋଇଥିଲା । ଏଣୁ ଛେଦରା ରାଜା ଛେରା ପହରା କରି ତୁଲାଉଥିଲେ । ୧୮୭୧ ସାଲରେ ଶ୍ରୀନିବାସ ନରେନ୍ଦ୍ରଙ୍କ ମୃତ୍ୟୁ ଦୁର୍ଗାପ୍ରସାଦ ନରେନ୍ଦ୍ର ମହାପାତ୍ରଙ୍କର ପରଲୋକ ହେବା ପରେ ତାଙ୍କ ମହିଷୀ ପାଟ ମହାଦେଇ ବଡ଼ କୋଠା ଜମିଦାର ବାବୁ କେଶବ ଭ୍ରମରବର ରାୟଙ୍କୁ ଜମିଦାରୀ ବିକ୍ରୟ ସହିତ ରାଜ ସ୍ୱତ୍ୱ ଅର୍ପଣ କରିଦେବାରୁ ଛେରା ପହରା କାର୍ଯ୍ୟ ବଡ଼ କୋଠା ଜମିଦାର କରୁଥିଲେ । ୧୮୭୪ରୁ ରାଧାଶ୍ୟାମ ନରେନ୍ଦ୍ର ପ୍ରାୟ ପରିଚାଳନା ଦାୟିତ୍ୱ ତୁଲାଇ ଆସୁଥିଲେ । ବିଂଶ ଶତକର ତୃତୀୟ ଦଶକ ପରେ ମାଣ୍ଡେଇ ମୁଖ୍ୟ ବା ସଭାପତି ଛେରା ପହରା କରିଥାନ୍ତି । ବୋର୍ଡ଼ ମଧ୍ୟରେ ଗୁରୁଗୋସାଇଁ କରନ୍ତି । ପୂର୍ବେ ପହଁରାରେ ସୁନାଝାଡ଼ି ଲେଖେଟି ଦିଆ ଯାଉଥିଲା, ସେହି ମାର୍ଜନା ହିଁ ଚାଲିଥାଏ । ଛେରା ପହରା ହେବେ ଶଙ୍ଖ ଝଂକୃତ ହୁଏ ଓ ତତ୍ ପରେ ରଥ ଟଣା ଚାଲେ ।

**ରଥଟଣା ଓ ଡାହୁକ :** ରଥଟଣା ଏକ ଉନ୍ମାଦନା ସୃଷ୍ଟି କରେ । ଏଥିରେ ବୀରତ୍ୱର ସ୍ଫୂର୍ତ୍ତି ଅଛି । ଉତ୍ସାହର ସହିତ ରଥ ଟାଣନ୍ତି ଏବଂ ଡାହୁକର 'ପଦ' ଶୁଣିବାକୁ ଜନବୃନ୍ଦ ଉଦ୍‌ଗ୍ରୀବ ହୋଇ ଚାହାଁନ୍ତି । ଏଥିରେ ଥାଏ ଅଶ୍ଳୀଳତାର ସ୍ପର୍ଶ । ଯୁବକ-ଯୁବତୀଙ୍କ ମଧ୍ୟରେ ଭରିଦିଏ ଅପୂର୍ବ ଉନ୍ମାଦନା । ଲାଲଲୁଗା ପରିଧାନ କରି, ଲାଲ କପଡ଼ା ମସ୍ତକରେ ବାନ୍ଧି ଲାଲ କପଡ଼ା ହଲାଇ ଡାହୁକ ଇଙ୍ଗିତ କରେ । ପଦ୍ୟରେ ଯେ କେବଳ ଅଶ୍ଳୀଳତା ରହିଛି କହିଲେ ହେବ ନାହିଁ, ସାରଥି । ବ୍ୟଙ୍ଗ ଗୀତରେ ଖାଲି ଅଶ୍ଳୀଳତା ରହିଛି କହିଲେ ହେବ ନାହିଁ.

ଭକ୍ତର ପୃଷ୍ଠ

କିଛି ତଥ୍ୟ ଓ ତଥ୍ୟ ମଧ୍ୟ ଥାଏ । ନିମ୍ନ ଉଦାହରଣରୁ ଏ ସମ୍ପର୍କରେ ଧାରଣା ପୋଷଣ କରାଯାଇପାରେ । ରଥରୁ ଡ଼ାକ ଦିଏ ଡ଼ାହୁକ-

ଘୁର ହୋ, ଭକ୍ତଗଣ -ଓ (ଭଆଓ)

ଶ୍ରୀଶ୍ରୀ ବଳଦେବଙ୍କ ନାମରେ ହରିବୋଲ

ଠାକୁର ରାଜ ଜଗନ୍ନାଥଙ୍କ ନାମରେ ହରିବୋଲ

ହୁରିବୋଲ

ହୁରିଥିବ ମୁଖରେ

ଦଉଡ଼ି ଥିବ ହସ୍ତରେ

ଧ୍ୟାନ ରଖୁଥିବ ନୀଳଚକ୍ରରେ

ବଳଭଦ୍ର ବଳଭଦ୍ର କହୁଥିବ

ତମ ଜାଣନ୍ତ ପ୍ରମାଣେ

ଯଦି କସୁର କରିବ

ତମ ହାତରେ ଅଦ୍ଧାଙ୍ଗୁଳି ହବ ।

ଅର୍ଥାତ୍ ରଥ ଟାଣିବା ଲାଗି ଆଉ କାହାରି କଣ୍ଠୁ ରହିବ ନାହିଁ । ଠେଲା ଗଞ୍ଜାରେ ଥିବା ମଣିଷଟି ମନରେ ଶଙ୍କା ଜାତ ହୁଏ । ଠାକୁରଙ୍କ କମରେ ଚଳିବ ନାହିଁ । ରଥ ଟାଣି ନେବାକୁ ପ୍ରାଣମୂର୍ଚ୍ଛା ଉଦ୍ୟମ କରିବ । ଲୋକଗୀତ ବା ଲୋକ ସଂସ୍କୃତିର ସ୍ୱଚ୍ଛ ଧାରାଟି ଏଠାରେ ପ୍ରକାଶ ପାଏ ।

ଭାଇ ହୋ,

ରଥ କହେ ମୁଁ ଦେବତା

ବଳ କହେ ମୁଁ ଦେବତା

ଏ ଗୋରା ହଳଦୀ ମୁହାଁ କହୁଛି

ମୁଁ ତା ଘରତା' ।

କେତେକ ଗୀତରେ ଏ ଅଞ୍ଚଳର ସତ୍ୟତା ନିହିତ । ପୂର୍ବରୁ ରଥ ମୁହାଁ ବନ୍ଧ ପର୍ଯ୍ୟନ୍ତ ଟଣା ହୋଇ ଯାଉଥିଲା । ଲୋକେ ଟାଣି ନପାରିଲେ ହାତୀ ଲଗାଇ ଟଣା ଯାଉଥିଲା । ଏହି ଗୀତରେ ସାସ୍କୃତିକ ଚେତନା ମଧ ପ୍ରକାଶିତ -

"ଡ଼ଗର ବଣରେ ଅଛି ଏକଇ ବ୍ରାହ୍ମଣ

ମଣିଆ ଶେଉଳର ସବୁ ସବୁ ଜାତି

ତା' ଦେହରୁ ବାହାରିଲା ମହାବଳହାତୀ

ମହାବଳ ହାତୀ ଯେ ଓଲଟ ପାଲଟ

ତା ଦେହରୁ ବାହାରିଲେ ସାତଶ' କେଉଟ ।"

ରଥ ଟାଣିବା ନିମିତ୍ତ ସାତ ଶହ କେଉଟ ନିଯୁକ୍ତ ଥିଲେ । ରଥ ସିଂହଦରଜା ନିକଟସ୍ଥ ଝୁଲଣ ପଡ଼ିଆରୁ ବାହାରି ଦୁଇ ଦିନରେ 'ମାଉସୀମା' ଘରେ ଚକଡ଼ା ଲାଗେ । ବାଟରେ ମଠ ପାଖରେ ଦିଅଁ ଭୋଗ ପାଆନ୍ତି । କେବେ କେବେ ଦିନକରେ ମଧ ଚକଡ଼ା ଲାଗିଥାଏ । ମାଉସୀ ମା' ଘରକୁ ପହଣ୍ଡି ବିଜେ କରନ୍ତି । ବାହୁଡ଼ା ଦଶମୀର ସକାଳ ଧୂପ ପର୍ଯ୍ୟନ୍ତ ରହଣି ହୁଏ । ବଡ଼ ଦେଉଳରେ ତିନିଧୂପ, ପଞ୍ଚ ଅବକାଶ ପରି ସେଠାରେ ମଧ ନୀତି ହୁଏ । ଠାକୁରଙ୍କର ପ୍ରବାସ କାଳ ହେତୁ ଏହି ସମୟରେ ଦର୍ଶନ କରିବା ପାଇଁ ଭକ୍ତଗଣ ରାତ୍ରି ଯାପନ ମଧ କରନ୍ତି । ଦେବଗଣ ଦର୍ଶନ କରିବାକୁ ଏହି ସମୟରେ ଆସନ୍ତି ବୋଲି ଭକ୍ତଙ୍କର ବିଶ୍ୱାସ ।

ବାହୁଡା-: 'ହେରା ପଞ୍ଚମୀ'ର ରାତିରେ ଲକ୍ଷ୍ମୀ ଠାକୁରାଣୀ ବଡ଼ ଦେଉଳରୁ ବିମାନରୁ ବିଜେ ହୋଇ ଆସି ମାଉସୀ ଘର ନିକଟରେ ଥିବା ଖଣ୍ଡେ କାଠ ଭାଙ୍ଗିଦେଇ ଫେରି ଯାଆନ୍ତି । ଜଗନ୍ନାଥ ଲକ୍ଷ୍ମୀଙ୍କୁ ସାଥିରେ ଆଣି ନଥିବାରୁ ଏହା ଲକ୍ଷ୍ମୀଙ୍କର ଅଭିମାନ । ବାହୁଡ଼ା ଯାତ୍ରା ଦିନ ଗୁଣ୍ଡିଚା ମନ୍ଦିରରୁ ରଥାରୋହଣ କରି ବଳଦେବ ଅଧ ବାଟରେ ରହନ୍ତି । ପରଦିନ ଏକାଦଶୀବ୍ରତ ପାଳନ କରନ୍ତି । ତତ୍‌ପରଦିନ ରଥରେ ପଣାଲାଗି ହୋଇ ମନ୍ଦିର ପ୍ରବେଶ କରନ୍ତି । ବାହୁଡ଼ା ଦଶମୀ ଦିନ ମଣ୍ଡଳାକୃତି ରଘୁନାଥ ବେଶ ସାଜନ୍ତି । ସିଦ୍ଧ ବଳଦେବ ଅଷ୍ଟାଦଶ ଶତାବ୍ଦୀର ରାମାନୁଜ ସଂପ୍ରଦାୟ ସାଧୁଙ୍କ ପ୍ରତ୍ୟକ୍ଷ ପରିଚାଳନାରେ ଥିବାରୁ ଏହି ପ୍ରଭାବ ପରିଲକ୍ଷିତ ହୁଏ ।

ବିଭିନ୍ନ ଶ୍ରେଣୀର ସେବକ ଓ କର୍ମଚାରୀ ରଥଯାତ୍ରାରେ ନିଯୁକ୍ତ ଥା'ନ୍ତି । ସେମାନେ ପାଉଣା ପାଇବା ପରେ ଦିଅଁଙ୍କୁ ମହାସ୍ନାନ କରାଯାଏ ଏବଂ ଦେଉଳ ପ୍ରବେଶ କରାନ୍ତି । ଏଠାରୁ ପାଣିଗ୍ରାହୀ ପୂଜକମାନଙ୍କର ସେବାନୀତି ବ୍ୟାହତ ହୁଏ । ପୂର୍ବ ରୀତିନୀତି ଅନୁସରଣରେ ପୁଣି ପୂଜା ଚାଲେ । ଜଗନ୍ନାଥ ସଂସ୍କୃତିର ଅବିକଳ ପ୍ରଭାବ ଓ ବ୍ୟବସ୍ଥା ପରବର୍ତ୍ତୀ କାଳରେ ଅନୁସୃତ ହୋଇଅଛି । ସାମାନ୍ୟ କେତେକ କ୍ଷେତ୍ରରେ ପାର୍ଥକ୍ୟ ଥିଲେ ସୁଦ୍ଧା ରଥଯାତ୍ରା ଶ୍ରୀକ୍ଷେତ୍ର ପରମ୍ପରାର ଅବିକଳ ରୂପାୟନ ।

ଗଡ଼ିଅଙ୍ଗ, କେନ୍ଦ୍ରାପଡ଼ା-୭୫୪୨୧୧

• • •



# ଶ୍ରୀକ୍ଷେତ୍ର ପରିକ୍ରମା

● ଶ୍ରୀ ସଦାଶିବ ମିଶ୍ର

ପୃଥିବୀ ମଧ୍ୟରେ ଭାରତ ଦେଶ, ଭାରତ ମଧ୍ୟରେ ଉତ୍କଳ ପ୍ରଦେଶ, ଉତ୍କଳ ମଧ୍ୟରେ ଶ୍ରୀକ୍ଷେତ୍ର ବା ପୁରୀ ଗୋଟିଏ ଛୋଟ ସହର । ଏହି ଛୋଟ ସହରଟି ଆଜି ଦେଶ ବିଦେଶରେ ପୁରୀ ବା ଜଗନ୍ନାଥପୁରୀ ଭାବରେ ପରିଚିତ କେବଳ ନୁହେଁ, ଐତିହାସିକ, ଦାର୍ଶନିକ, ଗବେଷକ, ପଣ୍ଡିତ, କବି, ଲେଖକ, ଭାବୁକ, ଚିତ୍ରଶିଳ୍ପୀ, ସଙ୍ଗୀତଜ୍ଞ ଏପରିକି ପ୍ରକୃତିପ୍ରିୟ ବ୍ୟକ୍ତିଙ୍କ ପାଇଁ ଏହା ମହାନ୍ ଆକର୍ଷଣ ସ୍ଥଳ । ଏକପଟେ ବଙ୍ଗୋପସାଗର । ଅନ୍ୟ ତିନିପଟେ ନଦୀ ଦ୍ୱାରା ବେଷ୍ଟିତ ଏଇ ଛୋଟ ସହରଟି ଏକ ଦ୍ୱୀପ କହିଲେ ଚଳେ । ଏହି କ୍ଷେତ୍ରଟି ବହୁ ପ୍ରାଚୀନ କାଳରୁ ସୃଷ୍ଟି ଓ ଏହା ବିଷ୍ଣୁଙ୍କର ପ୍ରିୟସ୍ଥଳ ବୋଲି ପଣ୍ଡିତମାନଙ୍କର ମତ । ବିଷ୍ଣୁଙ୍କର ପ୍ରିୟକ୍ଷେତ୍ର ହୋଇଥିବାରୁ ଏହା ଦେବ, ନର, ସ୍ଥାବର, ଜଙ୍ଗମ ସମସ୍ତଙ୍କ ପାଇଁ ଏକ ଦୁର୍ଲ୍ଲଭ କ୍ଷେତ୍ର । ଜଗତର ନାଥ ଶ୍ରୀଜଗନ୍ନାଥ ଏହି କ୍ଷେତ୍ରର ମୁଖ୍ୟ ଆରାଧ୍ୟ ଦେବତା । ତାଙ୍କରି ନିମନ୍ତେ ଏଠାରେ ନିତ୍ୟ ଗହଳ ଚହଳ, ନୃତ୍ୟ, ଗୀତ ଉତ୍ସବ ମୁଖରିତ । କବିଙ୍କ ଭାଷାରେ-

"ଅଜାମନ ଚାଲ ଯିବା
ଚକାନୟନ ଦେଖିବା
ଶଙ୍ଖନାଭି ମଣ୍ଡଳରେ
ବେନିନେତ୍ର ପଖାଳିବା ।"

ଏହି କ୍ଷେତ୍ରର ମହିମା ବର୍ଣ୍ଣନା ତନ୍ତ୍ର, ପୁରାଣ ଠାରୁ ଆରମ୍ଭ କରି ବହୁ ପ୍ରାଚୀନ ଓ ଆଧୁନିକ ଯୁଗର କବିମାନଙ୍କ ସୃଷ୍ଟିରେ ଦେଖିବାକୁ ମିଳେ ।

"ଭାରତେଚୋତ୍କଳ ଦେଶେ
ଭୂସ୍ୱର୍ଗେ ପୁରୁଷୋତ୍ତମେ ।
ଦାରୁରୂପୀ ଜଗନ୍ନାଥୋ
ଭକ୍ତା ନାମ ଭୟ ପ୍ରଦଃ ।"

-ତନ୍ତ୍ରଯାମଳ

X X X X

ସର୍ବେଷାଂ ଚୈବ କ୍ଷେତ୍ରାଣାଂ ରାଜା ପୁରୁଷୋତ୍ତମଃ ।
ସର୍ବେଷାଂ ଚୈବ ଦେବାନାଂ ରାଜା ପୁରୁଷୋତ୍ତମଃ॥

-କପିଳ ସଂହିତା ପଞ୍ଚମ ଅଧ୍ୟାୟ

X X X X

ଉତ୍କଳେଚାତ୍ର ଗାନ୍ଧେ
କ୍ଷେତ୍ରେ ଶ୍ରୀ ପୁରୁଷୋତ୍ତମେ

-ଭବିଷ୍ୟ ପୁରାଣ

ପରମବ୍ରହ୍ମ ଶ୍ରୀଜଗନ୍ନାଥ ଏହି କ୍ଷେତ୍ରର ଅଧିପତି ହୋଇଥିବାରୁ ଏହି କ୍ଷେତ୍ରର ଧୂଳି,ବାଲି ମଧ୍ୟ ମହାନ ଓ ପବିତ୍ର । ଏହାର ପବିତ୍ରତା ଓ ମହାନତାରେ ଆତ୍ମହରା ହୋଇ କବି ଗାଇ ଉଠିଛନ୍ତି -

ପ୍ରଭୁହେ ! ଧନ ମାଗୁନାହିଁ, ଜନ ମାଗୁନାହିଁ
ମାଗୁଛି ଶରଧା ବାଲିରୁ ହାତେ ।

ଶ୍ରୀକ୍ଷେତ୍ରରେ ବାରମାସରେ ତେରଯାତ୍ରା, ନାନା ଉତ୍ସବ ମୁଖରିତ। କାଳିଆର ଡ଼ୋରୀ ନହେଲେ ଶ୍ରୀକ୍ଷେତ୍ରକୁ ଯିବା ସମ୍ଭବ ନୁହେଁ ଏହି ପ୍ରବାଦ ଥିଲେ ହେଁ ଶ୍ରୀକ୍ଷେତ୍ର ଆସିବାର ମୋହ ଅନନ୍ୟ । ସମୁଦ୍ରକୂଳେ ଅବସ୍ଥିତ ହୋଇଥିବାରୁ ଓ ଏହାର ବେଳାଭୂମି ଉତ୍ତମ ହୋଇଥିବାରୁ ପର୍ଯ୍ୟଟକମାନଙ୍କୁ ମଧ୍ୟ ଏହା ଆକୃଷ୍ଟ କରିଥାଏ ।

ଓଡ଼ିଆ ଭାଗବତକାର ଅତିବଡ଼ୀ ଜଗନ୍ନାଥ ଭାଗବତ ରଚନାରେ ଓଡ଼ିଆ ଜାତି ପ୍ରାଣରେ ଏକ ଆଧ୍ୟାତ୍ମିକ ଆନ୍ଦୋଳନ ସୃଷ୍ଟି କରିଥିଲେ। ତାଙ୍କର ସାଧନାର କ୍ଷେତ୍ର ଶ୍ରୀକ୍ଷେତ୍ର ଥିଲା । ପରିବୟ ଦେଇଥିବା ଶ୍ରୀକ୍ଷେତ୍ର ବର୍ଣ୍ଣନା ଚମତ୍କାର ହୋଇଛି । ଶ୍ରୀକ୍ଷେତ୍ରକୁ ସେ ବୃନ୍ଦାବନ ସହିତ ତୁଳନା କରିଛନ୍ତି । ଅତିବଡ଼ୀ ଜଗନ୍ନାଥ ଦାସଙ୍କ ଭାଷାରେ,

ଏକ୍ଷେତ୍ର ପୁରୁଷ ଉତ୍ତମ । ଅଟଇ ନିତ୍ୟ ବୃନ୍ଦାବନ ॥
ଭାର୍ଗବୀ ନଦୀ ଯେ ଯମୁନା । ବୃନ୍ଦାବନକୁ କର ସେନା ॥
ଶଙ୍ଖର ଅଗ୍ରଭାଗ ଯହିଁ । ଗୋପୁର ବୃନ୍ଦାବନ କହି ॥
ଆଡ଼ପ ମଣ୍ଡିର ଯେ ପୁର । ବସଇ ନୀଳଗିରି ପର ॥
ତାହା ଯେ ଗୋବର୍ଦ୍ଧନ ଗିରି । ଜାଣେ ସକଳେ ଅଛି ପୂରି ॥
ଇନ୍ଦ୍ରର ଦ୍ୟୁମନ ଯେ ତୀର୍ଥ । କାଳିନ୍ଦୀ ସରଟି ବିଦିତ ॥
ମାର୍କଣ୍ଡ ଯେ ତୀର୍ଥ ସାର । ସେ ଶ୍ୟାମ କୁଣ୍ଡଟି ବିଚାର ॥
ଅଠର ନଳା ଯେଉ ଅଛି । ଗୁପତ କାଳନ୍ଦୀ ବହୁଛି ॥
ସେ ଠାବେ କଦମ୍ବର ଘାଟ । ଗୁଣ୍ଡିଚା ଦେଉଳ ନିକଟ ॥
ଗୋପ ମଥୁରା ବୋଲି କହି । ଏମାନ କୃଷ୍ଣରାଜ ବହି ॥
ତେତୟା ଯୁଗର ଏଥାନ । ଶୁଣସି ହୋଇ ସାବଧାନ ॥
ସେ ବଳଗଣ୍ଡି ଯେ ଅଯୋଧ୍ୟା । ଦ୍ୱାରକା ଘାଟ ମହାସିଦ୍ଧା ॥
ଗଙ୍ଗା ସାଗର ଯେ ସଙ୍ଗମ । ସକଳ ତୀର୍ଥ ସମାଗମ ॥
ଶ୍ୱେତ ଗଙ୍ଗାକୁ ମନେ ଭଜ । ଗଙ୍ଗାର ଧାର ବୋଲି ହେତ ॥
ଏମନ୍ତ ଗୋକୁଳର ସର୍ବ । ଗୁଣକୁ ଶୁଣ ହେ ମାଧବ ॥
ଏ ଶଙ୍ଖନାଭି ମଣ୍ଡଳରେ । ନିତ୍ୟ ରାହାସକୁ ଆଦରେ ॥
ରାଧା ଯେ ନିମ୍ନ ଅଙ୍ଗ ବହି । କୃଷ୍ଣ ଉର୍ଦ୍ଧ୍ୱରେ ଛନ୍ତି ରହି ॥

ଜଗନ୍ନାଥ ଦାସଙ୍କ ବ୍ୟତୀତ ଓଡ଼ିଶାର ଆଦିକବି ସାରଳାଦାସଙ୍କଠାରୁ ଆରମ୍ଭ କରି ବଳରାମ ଦାସ, ଅର୍ଜ୍ଜୁନ ଦାସ, ଶିଶୁଶଙ୍କର ଦାସ, ଦ୍ୱିଜ ଦୁର୍ଲ୍ଲଭ ଦାସ, ଭକ୍ତ ସାଲବେଗ, ସାରିଆ ଭିକ, ଭୀମଭୋଇ, ଚିନ୍ତା ଦାସ, ମହାଦେବ ଦାସ, ମଧ୍ୟଯୁଗୀୟ କବି ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ

କ୍ରମଶଃ ପୃଷ୍ଠା

ବଳଦେବରଥ, ଦୀନକୃଷ୍ଣ ଦାସ, ଅଭିମନ୍ୟୁ ସାମନ୍ତ ସିଂହାର, ଆଧୁନିକ ସ୍ୱଭାବ କବି ରାଧାନାଥ, ମଧୁସୂଦନଙ୍କ ଠାରୁ ଆରମ୍ଭ କରି ବର୍ତ୍ତମାନ ପର୍ଯ୍ୟନ୍ତ ବହୁ କବିଙ୍କ ସୃଷ୍ଟିରେ ପୁରୀ ହୋଇ ଉଠିଛି ଗରିମାମୟ ।

ପୁରୀ ଏଭଳି ଏକ ସ୍ଥାନ ଯାହା ବିଷୟରେ ଚିନ୍ତା କଲା ବେଳେ ଭାବନାର ଛୁଆ ସରେ ନାହିଁ, ବୁଢ଼ିଆଣୀ ଜାଲପରି ଭାବନା ସବୁ ଛନ୍ଦି ହୋଇଯାଏ ମନ ରାଜ୍ୟରେ । ଏହି କ୍ଷେତ୍ରର ମହିମା ଯେତେ ବର୍ଣ୍ଣନା କଲେ ତାହା ଅପୂର୍ଣ୍ଣ ରହିଯାଏ । ପୁରାଣରେ ଏହାକୁ ଶଙ୍ଖକ୍ଷେତ୍ର, ନୀଳାଚଳ, ପୁରୁଷୋତ୍ତମ ଓ ପୁରୀ ନାମରେ ବର୍ଣ୍ଣନା କରାଯାଇଛି । ଏହି କ୍ଷେତ୍ରର ଆକାର ଶଙ୍ଖପରି ହୋଇଥିବାରୁ ଏହା ଶଙ୍ଖକ୍ଷେତ୍ର । ପୁରୁଷୋତ୍ତମ ଏହି କ୍ଷେତ୍ରରେ ଅବସ୍ଥାନ କରୁଥିବାରୁ ବା ଏହି କ୍ଷେତ୍ରର ଅଧିପତି ହୋଇଥିବାରୁ ଏହା ପୁରୁଷୋତ୍ତମ କ୍ଷେତ୍ର ମଧ୍ୟ । ପୁରୁଷୋତ୍ତମ ପୁରୀରୁ କାଳକ୍ରମେ ଏହାର ନାମ ପୁରୀ ହୋଇଅଛି ବୋଲି ପଣ୍ଡିତ ଓ ଗବେଷକମାନଙ୍କର ମତ । ୧୮୪୦-୪୧ ମସିହା ପର୍ଯ୍ୟନ୍ତ ପୁରୁଷୋତ୍ତମ କ୍ଷେତ୍ର ନାମଟି ବ୍ୟବହାର ହେଉଥିବାର ପ୍ରମାଣ ରହିଛି । ୧୮୨୮ ମସିହା ଅକ୍ଟୋବର ୧୩ ତାରିଖରେ ଉତ୍କଳ ପ୍ରଦେଶଟି ୩ଟି ଭାଗରେ ବିଭକ୍ତ ହୋଇଥିଲା । ଯଥା-ବାଲେଶ୍ୱର, କଟକ ଓ ଜଗନ୍ନାଥ । ଜଗନ୍ନାଥ ଜିଲ୍ଲାଟି କାଳକ୍ରମେ 'ପୁରୀ' ନାମରେ ବିଦିତ ହେଲା । କବି ଦିବାକର ଦାସ ଜଗନ୍ନାଥ ଚରିତାମୃତରେ ଶ୍ରୀକ୍ଷେତ୍ରର ବର୍ଣ୍ଣନା କରିଛନ୍ତି -

ସେହି ଗୋଲୋକ ନିତ୍ୟସ୍ଥଳ । ସେହିଟି ଗିରି ନୀଳାଚଳ ॥
କୋଟିଏ ଯୁଗ ଯେବେ ଯାଇ । ଏଥିରେ ଲୀଳା ନସରଇ ॥

ଏହି କ୍ଷେତ୍ରର ଆକର୍ଷଣରେ ଯୁଗେ ଯୁଗେ ବହୁ ମନୀଷୀ, ତପସ୍ୱୀ, ସାଧକ, ଧର୍ମ ପ୍ରଚାରକ, ଦାର୍ଶନିକ, କବି , ଲେଖକ, ଶିଳ୍ପୀ, ପର୍ଯ୍ୟଟକ ଏହି ପବିତ୍ର ମହାନ୍ ସାଂସ୍କୃତିକ ଆଭିଜାତ୍ୟ ପରିପୂର୍ଣ୍ଣ ଭୂମିରେ ନିଜର ପଦଥାପି ନିଜକୁ ଧନ୍ୟ ମଣିଛନ୍ତି । ଏହି ପୁଣ୍ୟମାଟିର ଧୂଳି, ବାଲିର ମହିମାରେ ବିସ୍ମୟାଭୂତ ହୋଇଛନ୍ତି । ଏହି କ୍ଷେତ୍ରର ଦାଣ୍ଡ-ବଡ଼ଦାଣ୍ଡ,ସାଗର-ମହୋଦଧି, ବାଲି-ଶରଧା ବାଲି, ମନ୍ଦିର-ଶ୍ରୀମନ୍ଦିର, ଶ୍ମଶାନ-ସ୍ୱର୍ଗଦ୍ୱାର । ଏହି କ୍ଷେତ୍ରକୁ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ, ରାମାନୁଜ, ମାଧ୍ୱ, ନିମ୍ବାର୍କ, ନାନକ, କବୀର, ଶ୍ରୀଚୈତନ୍ୟ, ତୁଳସୀଦାସ, ଗଣପତି ଭଟ୍ଟ ଓ ଆହୁରି ଅନେକ ପଣ୍ଡିତ, ଜ୍ଞାନୀ, ଗୁଣୀ, ଭକ୍ତ, ମହାପୁରୁଷ ଆସି ଏହି କ୍ଷେତ୍ରର ଧର୍ମଭାବନା ଓ ସଂସ୍କୃତିର ଉଦାରତାରେ ବିସ୍ମୟାଭୂତ ହୋଇଛନ୍ତି । ତୀର୍ଥ କ୍ଷେତ୍ର ମାନଙ୍କ ମଧ୍ୟରେ ଏହା ଏକ ମହାନ ତୀର୍ଥକ୍ଷେତ୍ର ଓ ଅତ୍ୟନ୍ତ ଆନନ୍ଦ, ଶାନ୍ତିପ୍ରଦ ଓ ମନଲୋଭାସ୍ଥଳ । କବିଙ୍କ ଭାଷାରେ -

ଦେଖ ଏ ନିତ୍ୟ ନୀଳାଚଳ । ସକଳ ତୀର୍ଥଙ୍କର ଆଳ ॥
ଗୋପ ମଥୁରା ବୃନ୍ଦାବନ । ଦ୍ୱାରକା ଆଦି ଯେତେ ସ୍ଥାନ ॥
ସକଳ ଏହି ସ୍ଥାନେ ପାଇ । ଆବର କାଶୀ ମଧେ ହୋଇ ॥
କୋଟିଏ ତୀର୍ଥ ଯେ କ୍ଷେତ୍ରରେ । ମହିମା କହିଲେ ନସରେ ॥

ଏହିକ୍ଷେତ୍ରର ମହାନ ଆକର୍ଷଣ ହେଲା ଶ୍ରୀମନ୍ଦିର ଓ ଶ୍ରୀଜଗନ୍ନାଥ । ଅନେକଙ୍କର ଏ ସ୍ଥାନକୁ ଆସିବାର ମୂଳ ଉଦ୍ଦେଶ୍ୟ ହେଲା ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା । ଏହି ଅଧାଗଢ଼ା ଦାରୁବ୍ରହ୍ମଙ୍କ ରୂପରେ କି ଆକର୍ଷଣ ଅଛି କେଜାଣି ଚୁମ୍ବକ ଲୁହାକୁ ଟାଣିବା ପରି ପ୍ରତିଦିନ ଅନେକ ଭକ୍ତ, ଦର୍ଶନାର୍ଥୀ ଶ୍ରୀମନ୍ଦିରରେ ଭିଡ଼ କରିଥାନ୍ତି ପ୍ରଭୁଙ୍କର ଦର୍ଶନ ପାଇବାପାଇଁ ।

ଶ୍ରୀମନ୍ଦିର -୬୬୫ ଫୁଟ ୬୪୦ ଫୁଟ ପରିମିତ ଅଞ୍ଚଳ ମଧ୍ୟରେ, ସହରର କେନ୍ଦ୍ର ସ୍ଥଳରେ ଜଗନ୍ନାଥ ମନ୍ଦିର ଅବସ୍ଥିତ । ମନ୍ଦିରର ଚତୁଃପାର୍ଶ୍ୱରେ ୨୦ ଫୁଟ ଉଚ୍ଚ ବିଶିଷ୍ଟ 'ମେଘନାଦ ପାଚେରୀ' ଘେରି ରହିଛି । ମନ୍ଦିରର ଭିତର ଭାଗରେ ୪୨୦ ଫୁଟ X ୩୧୫ ଫୁଟ ପରିମିତ ଅଞ୍ଚଳର ଚାରିପାଖରେ ଆଉ ଏକ ପ୍ରାଚୀର ରହିଛି । ଯାହା 'କୂର୍ମବେଢ଼ା' ନାମରେ ପରିଚିତ । ଐତିହାସିକ ତଥ୍ୟ ଅନୁଯାୟୀ ପୁରୀର ଜଗନ୍ନାଥ ମନ୍ଦିର ଗଙ୍ଗବଂଶର ରାଜା ଚୋଡ଼ଗଙ୍ଗ ଦେବଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ସମଗ୍ର ମନ୍ଦିରଟି ପଞ୍ଚରଥ ଶୈଳୀରେ ନିର୍ମିତ । ମନ୍ଦିରଟି ଚାରିଭାଗରେ ବିଭକ୍ତ (୧) ବିମାନ ବା ମୁଖ୍ୟ ମନ୍ଦିର (୨) ଜଗମୋହନ (୩) ନାଟ୍ୟମଣ୍ଡପ (୪) ଭୋଗମଣ୍ଡପ । ମୁଖ୍ୟ ମନ୍ଦିରର ଉଚ୍ଚତା ୨୧୪.୮ ଫୁଟ । ଏହାର ଅଗ୍ରଭାଗରେ 'ନୀଳଚକ୍ର' ସ୍ଥାପିତ ହୋଇଛନ୍ତି । ଶ୍ରୀମନ୍ଦିରର ରତ୍ନସିଂହାସନରେ ମୁଖ୍ୟତଃ ପୂଜା ପାଉଛନ୍ତି ପ୍ରଭୁ ବଳଭଦ୍ର, ମା ସୁଭଦ୍ରା, ପ୍ରଭୁ ଜଗନ୍ନାଥ ଓ ପ୍ରଭୁ ସୁଦର୍ଶନ । ଏହା ବ୍ୟତୀତ ପୂଜା ପାଉଛନ୍ତି ଭୂଦେବୀ ଓ ଶ୍ରୀଦେବୀ । ଶ୍ରୀଜଗନ୍ନାଥଙ୍କର ବିଜେ ପ୍ରତିମା ହେଉଛନ୍ତି. ଶ୍ରୀମଦନ ମୋହନ ।

ଶ୍ରୀମନ୍ଦିରର ପାର୍ଶ୍ୱ ଦେବ - ଦେବୀ - ଶ୍ରୀମନ୍ଦିରର ଭିତର ବେଢ଼ାରେ ଓ ବାହାର ବେଢ଼ାରେ ଅନେକ ଦେବ ଦେବୀ ପୂଜା ପାଉଛନ୍ତି । ସେମାନଙ୍କ ମଧ୍ୟରେ ପତିତପାବନ, କାଶୀ ବିଶ୍ୱନାଥ, ମହାବୀର, ସତ୍ୟନାରାୟଣ, ସହଦେବ, ମଙ୍ଗଳା, ବଟଗଣେଶ, ଅନନ୍ତ ବାସୁଦେବ, ନୃସିଂହ, ବିମଳା, ରାଧାକୃଷ୍ଣ, ସାବିତ୍ରୀ , କମଳା, ସରସ୍ୱତୀ, ନୀଳମାଧବ, ବେଢ଼ାକାଳୀ,ମହାଲକ୍ଷ୍ମୀ, ନବଗ୍ରହ, ସୂର୍ଯ୍ୟ, ପାତାଳେଶ୍ୱର, ଈଶାନେଶ୍ୱର, ଶୀତଳା, କାଞ୍ଚି ଗଣେଶ, ରାମସୀତା, ମାର୍କଣ୍ଡେୟ, କଳ୍ପବଟ ପ୍ରଧାନ । ଏହାବ୍ୟତୀତ ଅନେକ ଦେବ ଦେବୀ ମଧ୍ୟ ପୂଜା ପାଉଛନ୍ତି ।

**ପୁରୀ ସହରର ଅନ୍ୟାନ୍ୟ ଦେବଦେବୀ ମନ୍ଦିର :** ଶ୍ରୀଜଗନ୍ନାଥ ମନ୍ଦିର ବ୍ୟତୀତ ପୁରୀ ସହରରେ ଅନେକ ଦର୍ଶନୀୟ ମନ୍ଦିର ଅଛି । ସେଥିମଧ୍ୟରୁ ଶ୍ରୀ ଲୋକନାଥ, ଯମେଶ୍ୱର, ମାର୍କଣ୍ଡେୟ, କପାଳ ମୋଚନ, ନୀଳକଣ୍ଠେଶ୍ୱର (ପଞ୍ଚମହାଦେବ) ।ଏହି ପଞ୍ଚମହାଦେବଙ୍କର ଶ୍ରୀମନ୍ଦିରର ରୀତିନୀତି ସହିତ ଅନେକ ସମ୍ପର୍କ ଅଛି । ଶ୍ରୀ ଜଗନ୍ନାଥଙ୍କ ଚନ୍ଦନ ଯାତ୍ରାରେ ଶ୍ରୀଜଗନ୍ନାଥଙ୍କ ଚଳନ୍ତି ପ୍ରତିମା ମଦନମୋହନ ସହିତ ନରେନ୍ଦ୍ର ସରୋବରରେ ଅନୁଷ୍ଠିତ ଜଳକ୍ରୀଡ଼ା (ଚାପ)କୁ ବିଜେ କରନ୍ତି । ଜ୍ୟେଷ୍ଠ ଶୁକ୍ଳ ଷଷ୍ଠୀ (ଶୀତଳଷଷ୍ଠୀ)ରେ ଏହି ପଞ୍ଚମହାଦେବ ନିଜ ନିଜ ବିଜେସ୍ଥଳୀ ଅଞ୍ଚଳରେ ନିଜର ଚଳନ୍ତି ପ୍ରତିମା ଓ ପାର୍ବତୀଙ୍କ ସହ ବୃଷଭ ବାହନରେ ବାହାରି ପଣ୍ଡିଭୋଗ ଖାଇସାରିବା ପରେ ଶ୍ରୀମନ୍ଦିରକୁ ଯାତ୍ରାକରି ଲକ୍ଷ୍ମୀଙ୍କ ଜଗମୋହନରେ ବିଜେ କରନ୍ତି । ପରଦିନ ଲକ୍ଷ୍ମୀ ନବଦମ୍ପତି (ହରପାର୍ବତୀ)ଙ୍କୁ ବନ୍ଦାପନା କରିବା ସହିତ ପଣ୍ଡିଭୋଗ ପରେ ପଞ୍ଚମହାଦେବ ସହର ପରିକ୍ରମାରେ ବାହାରନ୍ତି । ଏହି ପଞ୍ଚମହାଦେବଙ୍କ ମଧ୍ୟରୁ ଯମେଶ୍ୱର ହରଚଣ୍ଡୀ ସାହିର ଆଦ୍ୟଭାଗରେ, ମାର୍କଣ୍ଡେୟ ମାର୍କଣ୍ଡେୟ ପୁଷ୍କରିଣୀ ମାର୍କଣ୍ଡେଶ୍ୱର ସାହିରେ, ଲୋକନାଥ ଶଙ୍ଖକ୍ଷେତ୍ରର ଅଗ୍ରଭାଗରେ, କପାଳମୋଚନ ଶ୍ରୀମନ୍ଦିରର ଦକ୍ଷିଣ-ପଶ୍ଚିମ କୋଣରେ ଗାଣ୍ଠିଆଚଉରା ଛକ ନିକଟରେ ଓ ନୀଳକଣ୍ଠେଶ୍ୱର ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ, ଗୁଣ୍ଡିଚା ଘର ପଛଭାଗରେ ଅବସ୍ଥିତ । ଏହି ପଞ୍ଚ ମହାଦେବଙ୍କୁ ପଞ୍ଚପାଣ୍ଡବ ବୋଲି କୁହାଯାଏ । ଯମେଶ୍ୱରଙ୍କୁ ଯୁଧିଷ୍ଠିର ବୋଲି ଗଣ୍ୟ କରାଯାଏ । ଜନଶ୍ରୁତି ଅନୁଯାୟୀ ଜଣାଯାଏ, ରାମଚନ୍ଦ୍ର ସୀତାଙ୍କୁ ଉଦ୍ଧାର କରିବାପାଇଁ

ଲଙ୍କାଯାତ୍ରା ପଥରେ ଶ୍ରୀକ୍ଷେତ୍ରକୁ ଆସିଥିଲେ ଓ କିଛିକାଳ ଏକ ଶବର ପଲ୍ଲୀରେ ବାସ କରିଥିଲେ । ରାମଚନ୍ଦ୍ର ଶିବଙ୍କ ଉପାସନା ପାଇଁ ଶିବଲିଙ୍ଗର ସନ୍ଧାନ ଏଠାରେ ନପାଇବାରୁ ଶବର ଦ୍ୱାରା ପ୍ରଦତ୍ତ ଏକ ଲାଉକୁ ଶିବଲିଙ୍ଗଭାବେ ପୂଜା କରିଥିଲେ । କାଳକ୍ରମେ ସେହି ଲାଉନାଥ ବା ଲାଉକନାଥ ଲୋକନାଥରେ ପରିଚିତ ହେଲେ । ଶିବରାତ୍ରି, ବୈଶାଖ ମାସର ଶେଷ ସୋମବାର ଶିବଭକ୍ତମାନଙ୍କର ଏଠାରେ ବହୁଳ ସମାବେଶ ଦେଖିବାକୁ ମିଳେ । ଏତଦ୍‌ବ୍ୟତୀତ ପ୍ରତିଦିନ ଏଠାକୁ ବହୁଭକ୍ତ ଦର୍ଶନାର୍ଥୀ ଆସିଥାନ୍ତି । କାର୍ତ୍ତିକ ମାସ ଶୁକ୍ଳ ଦ୍ୱିତୀୟା ଯମଦ୍ୱିତୀୟା ବା ଭାଇ ଦ୍ୱିତୀୟାରେ ଯମେଶ୍ୱରଙ୍କୁ ଦର୍ଶନ କଲେ ଯମ ଯନ୍ତ୍ରଣା ଭୋଗିବାକୁ ହୁଏ ନାହିଁ ବୋଲି ଜନସାଧାରଣରେ ବିଶ୍ୱାସ ଅଛି । ଏହି ପଞ୍ଚ ମହାଦେବଙ୍କ ବ୍ୟତୀତ ପୁରୀ ସହରର ଅନ୍ୟାନ୍ୟ ଶୈବ ପୀଠ ମଧ୍ୟରେ ଶଙ୍କରେଶ୍ୱର (ଗିରନାରବନ୍ତ ଆଶ୍ରମ ନିକଟ), ଅକ୍ଷଶମ୍ଭୁ (ଶ୍ୟାମାକାଳୀ ମନ୍ଦିର ନିକଟ ବାଲିସାହି), ନୀଳକଣ୍ଠେଶ୍ୱର (ଷ୍ଟେସନଛକ), ଏତଦ୍ ବ୍ୟତୀତ ଅନେକ ସାହିରେ ଛୋଟ ବଡ଼ ଶିବ ମନ୍ଦିର ମାନ ଅବସ୍ଥିତ ।

**ଶ୍ରୀକ୍ଷେତ୍ରର ଶକ୍ତିପୀଠ :** ଶ୍ରୀକ୍ଷେତ୍ର ବା ପୁରୀର ଆରାଧ୍ୟ ଦେବ ଶ୍ରୀଜଗନ୍ନାଥ ହୋଇ ଥିବାରୁ ଏହା ବିଷ୍ଣୁକ୍ଷେତ୍ର ଭାବେ ପରିଚିତ । ପୁରୀ ମୁଖ୍ୟତଃ ବିଷ୍ଣୁ କ୍ଷେତ୍ର ହେଲେ ମଧ୍ୟ ଏହି କ୍ଷେତ୍ର ସର୍ବଧର୍ମ ଓ ସମ୍ପ୍ରଦାୟର ଏକ ସମନ୍ୱୟ ପୀଠ । ଏଠାକୁ ଯୁଗେ ଯୁଗେ ବିଭିନ୍ନ ଧର୍ମ, ମତବାଦ ଓ ସମ୍ପ୍ରଦାୟର ପ୍ରଚାରକମାନେ ଆସିଛନ୍ତି । ଶ୍ରୀଜଗନ୍ନାଥଙ୍କ ମଧ୍ୟରେ ନିଜର ଇଷ୍ଟଙ୍କୁ ଦର୍ଶନ କରିଛନ୍ତି । ଶ୍ରୀଜଗନ୍ନାଥ ସଂସ୍କୃତିର ମହାନତାରେ ପୁଲକିତ ଓ ଏକୀଭୂତ ହୋଇଛନ୍ତି । ସେଥିପାଇଁ ଏଠାରେ ବିଭିନ୍ନ ଧର୍ମ ଓ ସମ୍ପ୍ରଦାୟର ମନ୍ଦିର, ମଠ, ଆଶ୍ରମ ଦେଖିବାକୁ ମିଳେ ।

ଶ୍ରୀକ୍ଷେତ୍ର ମଧ୍ୟ ଏକ ମହାନ ଶକ୍ତିପୀଠ ରୂପେ ପରିଚିତ । ଶ୍ରୀଜଗନ୍ନାଥଙ୍କୁ ଭୈରବ ଭାବରେ ଗ୍ରହଣ କରାଯାଇଛି-ବିମଳା ଭୈରବୀ ,ଯସ୍ୟାତ ଜଗନ୍ନାଥ ସ୍ତୁ ଭୈରବଃ । ଶ୍ରୀଜଗନ୍ନାଥ ମନ୍ଦିରର ରୀତି ନୀତିରେ ଶାକ୍ତ ପ୍ରଭାବ ବିଶେଷ ଭାବରେ ପରିଲକ୍ଷିତ ହୁଏ । ଏପରିକି ତନ୍ତ୍ର ଶାସ୍ତ୍ରରେ ଜଗନ୍ନାଥଙ୍କୁ କାଳିକା ଭାବରେ ଉପାସନା କରାଯାଏ । ତେଣୁ କହାଯାଇଛି -"ନୀଳାଦ୍ରୌ ଶ୍ରୀ ଜଗନ୍ନାଥ ସାକ୍ଷାତ ଦକ୍ଷିଣ କାଳିକା ।" ଶ୍ରୀମନ୍ଦିରରେ ଭୋଗ ହେଉଥିବା ଅନ୍ନ ପ୍ରସାଦ ଠାକୁରମାନଙ୍କୁ ଭୋଗ ହୋଇ ବିମଳାଙ୍କୁ ଭୋଗଲାଗିପରେ ତାହା ମହାପ୍ରସାଦରେ ପରିଣତ ହୁଏ । ରତ୍ନ ସିଂହାସନରେ ପୂଜିତା ସୁଭଦ୍ରା ଦେବୀମାନଙ୍କ ମଧ୍ୟରେ ମହାଦେବୀ ଅଟନ୍ତି । ସେ ସମସ୍ତ କାର୍ଯ୍ୟ ଓ କାରଣର କାରଣ । ସେ ହେଉଛନ୍ତି ଆଦ୍ୟାଶକ୍ତି । ସେ ଲକ୍ଷ୍ମୀ ସ୍ୱରୂପା ହୋଇ ବିଷ୍ଣୁଙ୍କ ବକ୍ଷ ସ୍ଥଳରେ, ଗୌରୀ ରୂପରେ ଶିବଙ୍କ ଅର୍ଦ୍ଧାଙ୍ଗିନୀ ଭାବରେ ଓ ସରସ୍ୱତୀ ରୂପରେ ବ୍ରହ୍ମାଙ୍କ ମୁଖପଦ୍ମରେ ସଦା ବିରାଜମାନ କରିଥାନ୍ତି ବୋଲି ସ୍କନ୍ଦ ପୁରାଣରେ ଉଲ୍ଲେଖ ଅଛି ।

" ତ୍ୱଂ ସର୍ବ ଲୋକ ଜନନୀ ବିଷ୍ଣୁ ମାୟାଂ ତପସ୍ୱିନାମ୍
ସୁଭଦ୍ରାଂ ଭଦ୍ର ରୂପାଣାଂ ମୂଳଭୂତାଂ ନମାମ୍ୟହମ୍ ।"

ସେ ହେଉଛନ୍ତି ପରମ କଲ୍ୟାଣ ଦାୟିନୀ, ମଙ୍ଗଳକାରିଣୀ ଓ ସର୍ବ ଲୋକ ଜନନୀ ବୋଲି ସ୍କନ୍ଦ ପୁରାଣରେ ବର୍ଣ୍ଣନା କରାଯାଇଅଛି । ଶ୍ରୀମନ୍ଦିର ମଧ୍ୟରେ ଅବସ୍ଥିତ ବିମଳା ମନ୍ଦିର ମଧ୍ୟ ହେଉଛି ଏକ ମହାନ ଶକ୍ତିପୀଠ । ଦକ୍ଷଯଜ୍ଞ ପରେ ଦୁର୍ଗାଙ୍କର ଖଣ୍ଡବିଖଣ୍ଡିତ ଅଙ୍ଗ ମଧ୍ୟରୁ ନାଭିଦେଶ ଏହିଠାରେ ପଡ଼ିଥିଲା । ଆଶ୍ୱିନ ଶୁକ୍ଳ ଅଷ୍ଟମୀ ତଥା ମହାଷ୍ଟମୀ ଦିନ ବିମଳାଙ୍କ ନିକଟରେ ପଶୁବଳି ପଡ଼େ । ବିମଳାଙ୍କୁ ଅଧିଷ୍ଠାତ୍ରୀ, ଆଦ୍ୟାଦେବୀ ଭାବରେ ବର୍ଣ୍ଣନା କରାଯିବା ସହିତ ଶ୍ରୀକ୍ଷେତ୍ରର ଅଧିଷ୍ଠାତ୍ରୀ ବୋଲି ମଧ୍ୟ କୁହାଯାଏ । ବିମଳା ସ୍ତୁତିରେ କୁହାଯାଇଛି- "ପ୍ରଣମାମି ବିମଳେ ସଦାସୁଖକରୀ ଶ୍ରୀକ୍ଷେତ୍ର ରାଜେଶ୍ୱରୀ" । ଶ୍ରୀକ୍ଷେତ୍ରର ଅନ୍ୟାନ୍ୟ ଶକ୍ତିପୀଠଗୁଡ଼ିକ ମଧ୍ୟରେ ଶ୍ୟାମାକାଳୀ (ବାଲିସାହି), ଦକ୍ଷିଣକାଳୀ (ଦକ୍ଷିଣ ଦେବୀ ସାହି), ହରଚଣ୍ଡୀ (ହରଚଣ୍ଡୀ ସାହି), ରାମଚଣ୍ଡୀ (ରାମଚଣ୍ଡୀ ସାହି) ଭଗବତୀ (ଗଡ଼ବଡ଼ଛକ), ବାରାହୀ (ବାଲିସାହି), ମଙ୍ଗଳା (ବିମାନବଡୁ ସାହି), ବିଶ୍ୱେଶ୍ୱରୀ (ନରେନ୍ଦ୍ରକୋଣ) କାତ୍ୟାୟନୀ (ଖଡ଼ାପଟିଛକ), ଗଛକାଳୀ ଓ ବାଟକାଳୀ( ବାଲିସାହି), ସପ୍ତମାତୃକା (ମାର୍କଣ୍ଡ ସରୋବର ନିକଟ), କାମାକ୍ଷା (ଶଙ୍କରାଚାର୍ଯ୍ୟ ମଠ ନିକଟ), ଅଲୋଇ (ମିଶ୍ରସାହି), ବୁଢ଼ୀମା (ହେରାଗୋହିରୀସାହି), ଧୂମାବତୀ (ଆୟୁର୍ବେଦ କଲେଜ ପାଖ), ମଶାଣୀ ଚଣ୍ଡୀ (କଟକିପେଣ୍ଠ), ଘଣ୍ଟେଶ୍ୱରୀ (ରେଡ଼କ୍ରସ ରୋଡ଼), ମର୍ଚ୍ଚିକା (ମର୍ଚ୍ଚିକୋଟ ଛକ) ଆଦି ପ୍ରଧାନ । ଏତଦ୍ ବ୍ୟତୀତ ବିଭିନ୍ନ ସାହିରେ କେତେକ ଦେବୀ ମନ୍ଦିର ମଧ୍ୟ ଅଛନ୍ତି । ଶ୍ୟାମାକାଳୀ ପୁରୀ ଗଜପତିଙ୍କର ଇଷ୍ଟ ଦେବୀ ଭାବେ ରାଜପ୍ରାସାଦ ନିକଟରେ ପ୍ରତିଷ୍ଠିତା । ପୁରୀ ବଡ଼ଦାଣ୍ଡରେ ବଳଗଣ୍ଡି ନିକଟରେ ଶ୍ରୀକ୍ଷେତ୍ରର ଅନ୍ୟତମ ଶକ୍ତିପୀଠ ମାଉସୀମା ମନ୍ଦିର ଅବସ୍ଥିତ । ମହା ପ୍ରଳୟକାଳରେ ଅର୍ଦ୍ଧାସନରେ ଜନକଲ୍ୟାଣ ନିମନ୍ତେ ସ୍ୱୀୟ ଶକ୍ତି ବଳରେ ପାନ କରିଥିବାରୁ ଏଙ୍କୁ ଅର୍ଦ୍ଧାଶନୀ ବୋଲି କହନ୍ତି । ମାଉସୀମାଙ୍କ ମୂର୍ତ୍ତି ଦେଖିବାକୁ ଠିକ୍ ଚତୁର୍ଭୁଜ ପରି । ରଥଯାତ୍ରା ସମୟରେ ତିନିରଥ ସେଠାରେ କିଛି ସମୟ ଅଟକିଯାଏ । ମାଉସୀମା'ଙ୍କ ତରଫରୁ ରଥରେ ବିଜେ ଦେବ ଦେବୀଙ୍କୁ ପୋଡ଼ ପିଠା ଭୋଗ ଦିଆଯାଏ ।

**ପଞ୍ଚତୀର୍ଥ :** ଶ୍ରୀକ୍ଷେତ୍ର ହେଉଛି ସକଳ କ୍ଷେତ୍ର ମଧ୍ୟରେ ଶ୍ରେଷ୍ଠ କ୍ଷେତ୍ର । ଏହା ଏକ ପରମ ପାବନ କ୍ଷେତ୍ର । ଅତିବଡ଼ୀ ଜଗନ୍ନାଥ ଦାସଙ୍କ ଭାଷାରେ-

ଯେତେକ ପୁଣ୍ୟସ୍ଥାନ ମହୀ     ଏ କ୍ଷେତ୍ରରୁ ଜାତ ସେହି ।
ଯେତେକ ତୀର୍ଥ ଏ ସଂସାର     ଏ କ୍ଷେତ୍ରରୁ ସେ ବାହାର ।

ଶ୍ରୀକ୍ଷେତ୍ରର ପଞ୍ଚତୀର୍ଥ ହେଉଛି ମାର୍କଣ୍ଡେୟ ସରୋବର, ଶ୍ୱେତଗଙ୍ଗା ସରୋବର, ମଣିକର୍ଣ୍ଣିକା (କପାଳମୋଚନ ମହାଦେବଙ୍କ ମନ୍ଦିର ପ୍ରାଙ୍ଗଣରେ ଥିବା କୂପ), ଇନ୍ଦ୍ରଦ୍ୟୁମ୍ନ ସରୋବର ଓ ମହୋଦଧି । କେହି କେହି ମଣିକର୍ଣ୍ଣିକା ବଦଳରେ ଶ୍ରୀମନ୍ଦିରର ରୋହିଣୀ କୁଣ୍ଡକୁ ଏକ ତୀର୍ଥ ବୋଲି ମତ ଦେଇଥାନ୍ତି । କଥାରେ ଅଛି, ଶ୍ରୀକ୍ଷେତ୍ରର ଏହି ପଞ୍ଚତୀର୍ଥରେ ସ୍ନାନ କରି ଦାରୁବ୍ରହ୍ମ ଶ୍ରୀ ଜଗନ୍ନାଥଙ୍କୁ ଦର୍ଶନ କଲେ ଅଶେଷ ପୁଣ୍ୟ ଲାଭ ହୁଏ । କାର୍ତ୍ତିକ ମାସରେ କାର୍ତ୍ତିକ ବ୍ରତଧାରୀଙ୍କର ଏହି ତୀର୍ଥମାନଙ୍କରେ ଓ ଶ୍ରୀ ଜଗନ୍ନାଥଙ୍କର ବିଭିନ୍ନ ଯାନି ଯାତ୍ରା ସମୟରେ ଯାତ୍ରୀମାନଙ୍କର ଏଠାରେ ଭିଡ଼ ପରିଲକ୍ଷିତ ହୁଏ । ଶ୍ରୀକ୍ଷେତ୍ରର ମହିମା ବର୍ଣ୍ଣନା କରିବାକୁ ଯାଇ ଉତ୍କଳମଣି ଗୋପବନ୍ଧୁ କହିଛନ୍ତି-

"ଜଗତ ସରିଲେ ଭାରତ ଜମିନ
ତାମଧେ କେଶର ପୁଣ୍ୟ ନୀଳାଚଳ
ନାହିଁ ଜାତିଭେଦ ନାହିଁ ଧର୍ମଭେଦ
ସାମ୍ୟ ମୈତ୍ରୀ ବାଣୀ ଗାଏ ଯା'ର ବେଦ ।"

ମୁଖ୍ୟ ସମ୍ପାଦକ 'ଝଙ୍କାର'
ବିମାନବଡୁସାହି, ଚଟିଆ ପ୍ରକାଶନୀ, ପୁରୀ-୧
ଜନକ ପ୍ରକାଶ



# ଶ୍ରୀକ୍ଷେତ୍ର ଓ ବାରିପଦାର ରଥୋତ୍ସବ

• ଶ୍ରୀ ହରିହର ବାହିନୀପତି

ପୁରୀ ବା ଶ୍ରୀକ୍ଷେତ୍ର ପଛକୁ ବାରିପଦାରେ ଓଡ଼ିଶାରେ ପ୍ରାଚୀନ କାଳରୁ ମହାପ୍ରଭୁ ଜଗନ୍ନାଥଙ୍କ ମନ୍ଦିର ଓ ବିଶେଷ କରି ସେଠାରେ ଅନୁଷ୍ଠିତ ହେଉଥିବା ରଥଯାତ୍ରାର ବିଶେଷ ଗୁରୁତ୍ୱ ରହିଛି । ସେଥିପାଇଁ ବାରିପଦାକୁ କେହି କେହି ଦ୍ୱିତୀୟ ଶ୍ରୀକ୍ଷେତ୍ର କହନ୍ତି । ଅନେକଙ୍କର ବିଶ୍ୱାସ ଯେ, ଶ୍ରୀକ୍ଷେତ୍ରରୁ ମହାପ୍ରଭୁ ପ୍ରତ୍ୟହ କିଛି ସମୟ ପାଇଁ ବାରିପଦାର ମନ୍ଦିରକୁ ଆସିଥାଆନ୍ତି । ସେହି ମର୍ମରେ କେତେକ ଐତିହାସିକ ତଥ୍ୟ ଓ ପୁରାତନ ଆଖ୍ୟାୟିକା ମଧ୍ୟ ରହିଛି । ପୁରୀ ପରି ବାରିପଦାରେ କେବଳ ଯେ ତିନିଗୋଟି ରଥ ନିର୍ମିତ ହୋଇଥାଏ ତାହା ନୁହେଁ, ବର୍ଷ ୧୯୭୬ ମସିହା, ଅନ୍ତର୍ଜାତିକ ମହିଳା ବର୍ଷରୁ, ବାରିପଦାର ସୁଭଦ୍ରାଙ୍କ ଦେବଦଳନ ରଥ କେବଳ ମହିଳାମାନଙ୍କ ଦ୍ୱାରା ଟଣା ହୋଇ, ସେଠାର ମାଉସୀ ମନ୍ଦିର ବା ଗୁଣ୍ଡିଚାଘରେ ଲାଗୁଛି । ଅବଶ୍ୟ ବାରିପଦାରେ ପୁରୀ ଭଳି ଅର୍ଦ୍ଧାଶନୀ ବା ମାଉସୀମା ମନ୍ଦିର ନାହିଁ, ଯେଉଁଭଳି ଶ୍ରୀମନ୍ଦିରର ପ୍ରତିଷ୍ଠା ସମୟରେ ଯଜ୍ଞର ଯୂପ ପ୍ରୋଥିତ ହୋଇଥିଲା । ପୁରୀର ନୃସିଂହ କ୍ଷେତ୍ର ଅର୍ଥାତ ମହାପ୍ରଭୁମାନଙ୍କର ଜନ୍ମପୀଠ ଶ୍ରୀଗୁଣ୍ଡିଚା ମନ୍ଦିରସ୍ଥ ମହାବେଦୀ ବା ଅଡ଼ପମଣ୍ଡପ ଓ ଅପରପକ୍ଷରେ ଶ୍ରୀମନ୍ଦିରସ୍ଥ ବିଜେସ୍ଥଳୀ ରତ୍ନ ସିଂହାସନ ବା ଅନ୍ତର୍ବେଦୀର ଠିକ୍ ମଧ୍ୟମ ସ୍ଥଳରେ ଅବସ୍ଥିତ, ଏହି ସୁଭଦ୍ରାରୂପା, ଅର୍ଦ୍ଧାଶନୀ । ଜଗନ୍ନାଥ,ବଳଭଦ୍ରଙ୍କ ବାସସ୍ଥାନ ମଝିରେ ସୁଭଦ୍ରାଙ୍କ ସ୍ଥାନ । କେବଳ ଦ୍ୱାପର ଯୁଗର କୃଷ୍ଣ, ବଳରାମଙ୍କର ଅଳିଅଳ ଭଉଣୀ ସେ ନୁହଁନ୍ତି, ଶବର ସଂସ୍କୃତି ବା ପୂଜା ଆରାଧନାରେ ମଝିରେ ପୂଜିତା ହେଉଥିବା ଭଉଣୀ, ଡାକାପେନୁ ସେ ଓ ତାଙ୍କର ଦୁଇ ପାର୍ଶ୍ୱରେ ଦୁଇ ଭାଇ ଯଥା ଜାକେରାପେନୁ ଓ ମୁରବୀ ପେନୁ ।

ବାରିପଦାରେ ନନ୍ଦିଘୋଷ ରଥର ଉଚ୍ଚତା ୨୩ ହାତ ୧୨ ଆଙ୍ଗୁଳ ହେଉଥିବେଳେ, ତାଳଧ୍ୱଜ ରଥର ଉଚ୍ଚତା ହୁଏ ୨୩ ହାତ ୧୬ ଆଙ୍ଗୁଳ । ଦେବଦଳନ ରଥର ଉଚ୍ଚତା ୨୨ ହାତ ୧୪ ଆଙ୍ଗୁଳ । ପୁରୀରେ ସଂପୂର୍ଣ୍ଣ ଭାବରେ ନୂତନ ରଥ ନିର୍ମାଣ କାମ ଅକ୍ଷୟ ତୃତୀୟା ଠାରୁ ଆରମ୍ଭ ହୋଇଥାଏ । ବଡ଼ଦାଣ୍ଡସ୍ଥ ଶ୍ରୀନଅର ସାମନା ରଥଖଳାରୁ, ଶ୍ରୀଗୁଣ୍ଡିଚା ପୂର୍ବଦିନ ଏଗୁଡ଼ିକ ସିଂହଦ୍ୱାରକୁ ଆସିବା ପୂର୍ବରୁ ସଂପୂର୍ଣ୍ଣ ହୋଇ ସାରିଥାଏ । ସାଧାରଣତଃ ବାରିପଦାରେ, ପୁରୀ ପରି ଅଧିକ ସଂଖ୍ୟକ ରଥ ନିର୍ମାଣକାରୀ କାରିଗର ନଥିବାରୁ ଏବଂ ବାରିପଦା ରଥରେ ଅଧିକାଂଶ ସ୍ଥଳ ବିଶେଷରେ ପୁରୁଣା ଚକ ବ୍ୟବହୃତ ହେଉଥିବାରୁ ଅକ୍ଷୟ ତୃତୀୟା ଦିନ ରଥ ଆନୁକୂଳ ଆନୁଷ୍ଠାନିକ ଭାବରେ ହେଉଥିଲେ ହେଁ ସେମାନେ ବସ୍ତୁତଃ ଏହି କାମକୁ ଶ୍ରୀପଞ୍ଚମୀ ଠାରୁ ଆରମ୍ଭ କରିଥାନ୍ତି । ତେବେ ଶ୍ରୀକ୍ଷେତ୍ରରେ ରଥମାନଙ୍କର ଉଚ୍ଚତା ବାରିପଦା ତୁଳନାରେ ଅଧିକତର ହେଉଥିଲେ ହେଁ ଯଥା ନନ୍ଦିଘୋଷର ୩୩ ହାତ ୫ ଆଙ୍ଗୁଳ, ତାଳଧ୍ୱଜର ୩୨ହାତ ୧୦ ଆଙ୍ଗୁଳ ଓ ଦେବ ଦଳନର ୩୧ ହାତ ହୋଇ, ଜଗନ୍ନାଥଙ୍କ ଅର୍ଥାତ ମୁରବୀପେନୁଙ୍କ ରଥର ଉଚ୍ଚତା ସର୍ବାଧିକ, ବଡ଼ଭାଇ ବଳଭଦ୍ରଙ୍କ ରଥର ଉଚ୍ଚତା ନିମ୍ନତର ଓ ଭଉଣୀ ସୁଭଦ୍ରାଙ୍କ ରଥର ଉଚ୍ଚତା ନିମ୍ନତମ ହେବାର କ୍ରମ ପୁରୀରେ ହିଁ ରଖାଯାଇଛି ।

ପୁରୀ ଓ ବାରିପଦାର ରଥଟଣାରେ ବ୍ୟତିକ୍ରମ ହେଲା, ପ୍ରଥମୋକ୍ତ ସ୍ଥାନରେ ସାଧାରଣତଃ ପ୍ରତ୍ୟୁଷରୁ ଶ୍ରୀମନ୍ଦିରରେ ଶ୍ରୀଗୁଣ୍ଡିଚା ଦିନର ନୀତିମାନ ଅଗ୍ରୀମ ହୋଇ ସକାଳବେଳା ପହଣ୍ଡି ଏବଂ ମଧ୍ୟାହ୍ନରେ ଠାକୁର ଠାକୁରାଣୀ ରଥାରୂଢ଼ ହୋଇ ସେହିଦିନ ସନ୍ଧ୍ୟା ସୁଦ୍ଧା ଗୁଣ୍ଡିଚା ମନ୍ଦିର ପାଖରେ ପହଞ୍ଚି ଯିବାର ବିଧାନ ଥିଲାବେଳେ ଦ୍ୱିତୀୟୋକ୍ତ ସ୍ଥାନରେ ଅପରାହ୍ନରେ ପହଣ୍ଡି ହୁଏ ଏବଂ ରଥଟଣା ପରବର୍ତ୍ତୀ ଦୁଇଦିନ ଭିତରେ ଆରମ୍ଭ ହୋଇ ଶେଷ ହୁଏ । ପୁରୀରେ ଶ୍ରୀଗୁଣ୍ଡିଚା ମନ୍ଦିର ଭଳି ଯେଉଁଠି ଥିବା ମହାବେଦୀ ଗୁଣ୍ଡିଚାଯାତ୍ରା ପୂର୍ବରୁ ବର୍ଷତମାମ ଶୂନ୍ୟଥାଏ, ବାରିପଦାରେ ଦେବଦେବୀମାନେ ରାଧାମୋହନଙ୍କ ମନ୍ଦିରକୁ ଯାଆନ୍ତି । ତେଣୁ ଗୁଣ୍ଡିଚା ଯାତ୍ରା ସମୟରେ ଏହି ରାଧାମୋହନଙ୍କୁ ତାଙ୍କ ମନ୍ଦିରରେ ସ୍ଥାନାନ୍ତରିତ କରାଯାଏ ତାଙ୍କ ନିର୍ଦ୍ଦିଷ୍ଟ ଆସନରୁ । ଶ୍ରୀକ୍ଷେତ୍ରରେ ଶ୍ରୀଗୁଣ୍ଡିଚା ଦିନ ନୀଳଚକ୍ର ଉପରେ ନୂତନ ପତାକା ଲଗାଯାଇ ପତିତପାବନ ଯାତ୍ରାର ସାର୍ଥକତା ପାଇଁ, ଦୂରଦୂରାନ୍ତରୁ ଭକ୍ତମାନଙ୍କୁ ଆହ୍ୱାନ କଲାଭଳି, ବାରିପଦାରେ ବଡ଼ ଜଗନ୍ନାଥ ଦେଉଳରେ ସେଦିନ କଳସ ପ୍ରତିଷ୍ଠା ହୁଏ । କିନ୍ତୁ ବାରିପଦାର ବିଶେଷତ୍ୱ ହେଲା, କଳସ ପ୍ରତିଷ୍ଠା ପରେ, ବାରିପଦାର ଅଧିଷ୍ଠାତ୍ରୀ ଦେବୀ ଅମ୍ବିକାଙ୍କ ପାଖରେ ଅପରାହ୍ନରେ ମହାପ୍ରଭୁମାନଙ୍କର ପହଣ୍ଡି ପୂର୍ବରୁ ରଥର ସୁରକ୍ଷା ପାଇଁ, ପୂଜା, ଆରାଧନା କରାଯାଏ । ଅମ୍ବିକାଙ୍କ ଖଡ଼ଗକୁ ପାଟଦାସୀ ଧାରଣ କରି ରଥଗୁଡ଼ିକର ଚତୁର୍ଦ୍ଦିଗ ପ୍ରଦକ୍ଷିଣ କରନ୍ତି । ରଥଗୁଡ଼ିକୁ ଏଭଳି ସତର୍କତାର ସହିତ ପରୀକ୍ଷା ନିରୀକ୍ଷା କଲାପରେ, ମାତା ଅମ୍ବିକା ରଥଗୁଡ଼ିକ ଯାତ୍ରାପାଇଁ ଉପଯୁକ୍ତ ଥିବା ମତ ଦାସୀଙ୍କ ମାଧ୍ୟମରେ ପ୍ରକାଶ କଲାପରେ, ପହଣ୍ଡି ବିଜେ ଆରମ୍ଭ ହୁଏ । ଶ୍ରୀକ୍ଷେତ୍ରରେ ମନ୍ଦିରରୁ ବାହାରିଲା ବେଳେ ଧାଡ଼ି ପହଣ୍ଡି ଓ ମନ୍ଦିରକୁ ପ୍ରବେଶ କଲାବେଳେ ଗୋଟି ପହଣ୍ଡି (ଗୋଟିଏ ଠାକୁର ପହଞ୍ଚସାରିଲା ପରେ ଅନ୍ୟ ଠାକୁର ବା ଠାକୁରାଣୀଙ୍କର ପହଣ୍ଡି ସେବା) ବାରିପଦାରେ ଅନୁସୃତ ହୁଏ ନାହିଁ । ତେବେ ଶ୍ରୀମନ୍ଦିରରେ ଭୈରବ ଜଗନ୍ନାଥଙ୍କ ପାଖରେ ଭୈରବୀ ବିମଳା ଉପସ୍ଥିତ ଥିଲେ ହେଁ ଏବଂ କେତେକଙ୍କ ମତରେ ଜଗନ୍ନାଥଙ୍କ ଅଧିଷ୍ଠାନ ପୂର୍ବରୁ ଶକ୍ତି ସ୍ୱରୂପା ମାତା ବିମଳା ସେଠାରେ ବିରାଜିତା, ତାଙ୍କ ଠାରୁ ବାରିପଦାର ମାତା ଅମ୍ବିକାଙ୍କ ଠାରୁ ଅନୁମତି ଆଣିବାର ଆବଶ୍ୟକତା ପଡ଼େ ନାହିଁ । ବାରିପଦାରେ ବାରଜଣ ନିର୍ଦ୍ଦିଷ୍ଟ ପହଣ୍ଡି କରିବା ବ୍ୟକ୍ତି ଓ

ପହଣ୍ଡି ସମୟରେ ମନ୍ଦିରେ ମନ୍ଦିରେ ଠାକୁର ବିଶ୍ରାମ ନେଲାବେଳେ ପଣାଭୋଗର ବ୍ୟବସ୍ଥା ପୁରୀରେ ନାହିଁ । ପୁରୀ ରଥରେ ଅନ୍ୟ ଏକ ବିଶେଷତ୍ୱ ହେଲା, ରଥ ଉପରକୁ ଠାକୁର, ଠାକୁରାଣୀ ବା ସାଧାରଣ ଲୋକେ ଆରୋହଣ ବା ଅବତରଣ କରିବାକୁ କୌଣସି ଭ୍ରାମ୍ୟମାଣ ଶିଡ଼ି ନଥାଏ, ବାରିପଦା ଭଳି । ସାଧାରଣତଃ ନଡ଼ିଆ ବା ତାଳକାଠର ଗଡ଼କୁ କାଟି, ପଟାଗୁଡ଼ିକୁ ଛନ୍ଦା ଛନ୍ଦି କରି ଚାରମାଳ ପ୍ରସ୍ତୁତ ହୋଇଥାଏ ପୁରୀରେ, ଯାହା ଉପରେ କି କେବଳ ଠାକୁର ଠାକୁରାଣୀ ନୁହଁନ୍ତି, ସାଧାରଣ ଦର୍ଶନାର୍ଥୀ ମଧ ଦର୍ଶନ ପାଇଁ ଯାତାୟାତ କରନ୍ତି । ଆଉ ମଧ ପୁରୀରେ ଠାକୁରେ ରଥାରୂଢ଼ ହେବା ପୂର୍ବରୁ ବାରିପଦା ଭଳି ରଥର ଚତୁର୍ଦ୍ଦିଗ ପ୍ରଦକ୍ଷିଣ କରନ୍ତି ନାହିଁ । ଗଜପତି ମହାରାଜାଙ୍କ ଦ୍ୱାରା ଶ୍ରୀକ୍ଷେତ୍ରରେ ଛେରାପହଁରା ଏକ ବିଶେଷତ୍ୱ ଥିଲା ଭଳି ବାରିପଦାରେ ସ୍ୱତନ୍ତ୍ରତା ହେଉଛି ହରିପୁର ଭେଟି । ଏକଦା ମୟୂରଭଞ୍ଜର ରାଜଧାନୀ ହରିପୁରକୁ ଉଠିଯାଉଥିବାରୁ ରାଜା ସେଠାରୁ ଶ୍ରୀଗୁଣ୍ଡିଚା ଦିନ ଆସି ମହାପ୍ରଭୁ ଜଗନ୍ନାଥଙ୍କୁ ପାଟଙ୍କୋ ଭେଟି ଦେଉଥିଲେ, ଯାହାକି ହରିପୁର ଭେଟି ନାମରେ ପରିଚିତ । ଏବେ ମଧ ଭେଟି ରାଜାଙ୍କ ପକ୍ଷରୁ ପରିଛା ପରମ୍ପରା ରକ୍ଷା କରି ପାଳନ କରୁଛନ୍ତି । ମହାରାଜା ମହାପ୍ରଭୁଙ୍କ ମୁଖ୍ୟ ସେବକ ହୋଇ ଏକାନ୍ତ ଅନୁଗତ ଭାବରେ ରଥକୁ ଝାଡ଼ିବା ପାଇଁ ଶୋଭି ରହୁଥିଲେ, ଯାହାକି ଏବେ ତାହା ପ୍ରହରାଜ ଦ୍ୱାରା କରାଯାଉଛି । କାରଣ ଉତ୍କଳର ମହାନ୍ ପରମ୍ପରା ହେଲା, ଉତ୍କଳର ନେତା ସ୍ୱୟଂ ନାରାୟଣ ଏବଂ ଶାସକ ହେଉଛନ୍ତି ଛାର ରାଉତ ମାତ୍ର । ଜଗନ୍ନାଥଙ୍କ ରଥରେ ପ୍ରହରାଜଙ୍କ ଭଳି ବଳଭଦ୍ରଙ୍କ ରଥରେ ପରିଛା ଓ ସୁଭଦ୍ରାଙ୍କ ରଥରେ ପୂଜକ ଏହି କାର୍ଯ୍ୟ କରୁଛନ୍ତି । ଏତଦ୍ ବ୍ୟତୀତ ବାରିପଦାରେ ତିନି ରଥରେ ଶ୍ରୀଗୁଣ୍ଡିଚା ଠାରୁ ବାହୁଡ଼ାପର୍ଯ୍ୟନ୍ତ ଦୁଇଜଣ ଲେଖାଏଁ ରଥ ପାଇକ ରହନ୍ତି, ଯାହା ପୁରୀ ଠାରେ ହୁଏ ନାହିଁ ।

ପୁରୀ ଏବଂ ବାରିପଦାରେ ହେଉଥିବା ରଥଯାତ୍ରାରେ ଉଲ୍ଲେଖନୀୟ ପାର୍ଥକ୍ୟ ହେଲା, ପୁରୀରେ ପହଣ୍ଡି ସମେତ ଗୁଣ୍ଡିଚା ମନ୍ଦିର ନିକଟରେ ପହଞ୍ଚିବା ଓ ବାହୁଡ଼ା ଦିନ ଏକାଦିନକେ ସିଂହଦ୍ୱାରକୁ ଫେରିବାର ବିଧାନ । ଅବଶ୍ୟ ଅନେକ ସମୟରେ ଏହା କାର୍ଯ୍ୟକାରୀ ହେଉଥିଲେ ସୁଦ୍ଧା, ଯଦି କେଉଁବର୍ଷ କେଉଁ ଅସୁବିଧାରୁ ସମ୍ଭବ ନହେଲା, ତାହାହେଲେ ପରଦିନ ନିଶ୍ଚିତ ଭାବରେ ଏହା ସମ୍ପନ୍ନ ହୁଏ । କିନ୍ତୁ ବାରିପଦାରେ ଏହି ବିଧାନ ସମ୍ପୂର୍ଣ୍ଣ ପୃଥକ୍ । ଉଦାହରଣ ସ୍ୱରୂପ ଶ୍ରୀଗୁଣ୍ଡିଚା ଦିନ ରଥଟଣାର ନୀତି ବାରିପଦାରେ ଆଦୌ ନାହିଁ । ଖାଲି ସେତିକି ନୁହେଁ, ପରବର୍ତ୍ତୀ ଦିନ ବଳଭଦ୍ରଙ୍କ ରଥ, ରାଧାମୋହନଙ୍କ (ମାଉସୀମା ବା ଗୁଣ୍ଡିଚା ମନ୍ଦିର) ମନ୍ଦିର ପାଖରେ ପହଞ୍ଚୁ ଥିଲେ ହେଁ, ମାତା ସୁଭଦ୍ରାଙ୍କ ରଥ ସେଦିନ ଅଧବାଟରେ ଅଟକି ରହିବ । ପରବର୍ତ୍ତୀ ଦିନ ସୁଭଦ୍ରାଙ୍କ ରଥ ଅନ୍ୟ ଅଧିକ ବାଟ ଅତିକ୍ରମ କଲାପରେ ଜଗନ୍ନାଥଙ୍କ ରଥ ସେଠାରେ ଯାଇ ପହଞ୍ଚିବ । ଫଳରେ ପୁରୀରେ ରଥମହୋତ୍ସବ ବର୍ଷେ ବର୍ଷେ ତିନିଦିନରେ ଶେଷ ହୋଇ ଯାଉଥିଲେ ହେଁ, ବାରିପଦାରେ ତାହା ଅନ୍ତତଃ ସର୍ବନିମ୍ନ ତିନି ଦିନବ୍ୟାପୀ । ମୟୂରଭଞ୍ଜର ରାଜା ନିଜେ ଛେରାପହଁରା ନକରି, ତାଙ୍କ ପରିଛାଙ୍କ ଦ୍ୱାରା କରାଉଥିଲେ ହେଁ, ଅତୀତରେ ଏକ ସୁସଜ୍ଜିତ ହସ୍ତୀ ଉପରେ ଉପବେଶନ କରି ରଥଯାତ୍ରାକୁ ପୁରାପୁରି ପରିଚାଳନା କରୁଥିଲେ ।

ପୁରୀଠାରୁ ବାରିପଦାର ରଥଯାତ୍ରାରେ ଅନ୍ୟ କେତେକ ଭିନ୍ନତା ହେଲା, ରଥସବୁ ପହଞ୍ଚିବା ପରେ ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ଭୋଗ କରାଯାଉ ପ୍ରାୟ ଏକ କୁଇଣ୍ଟାଲ ଓଜନର ମିଠାଇ ସମବେତ ଭକ୍ତମାନଙ୍କୁ ଦୁଇଥର ଅର୍ଥାତ ଗୁଣ୍ଡିଚା ଓ ବାହୁଡ଼ା ପରେ ବଣ୍ଟନ କରାଯାଏ । ଗୁଣ୍ଡିଚା ମନ୍ଦିରରେ ଥିଲାବେଳେ ଶେଷ ଦିନ ପ୍ରାୟ ଏକ କୁଇଣ୍ଟାଲ ଚାଉଳର ଖେଚୁଡ଼ି ଭୋଗ ହୋଇ ବିନା ମୂଲ୍ୟରେ ଖଇରାତ କରାଯାଏ ।

ମୟୂରଭଞ୍ଜର ରାଜା ବୈଦ୍ୟନାଥ ଭଞ୍ଜ ୧୫୬୫ ଖ୍ରୀଷ୍ଟାବ୍ଦରେ ସିଂହାସନ ଆରୋହଣ କଲାପରେ ଯେତେବେଳେ ପୁରୀରେ ମହାପ୍ରଭୁ ଦର୍ଶନ କରିବାକୁ କିଛି ସୈନ୍ୟ ସାମନ୍ତଙ୍କୁ ସଙ୍ଗରେ ଧରି ଆସିଥିଲେ, ସେତେବେଳେ ଓଡ଼ିଶାର ଗଜପତି ମୁକୁନ୍ଦ ଦେବ, ତାଙ୍କୁ ଶ୍ରୀ ଜଗନ୍ନାଥଙ୍କୁ ଦର୍ଶନ କରିବାକୁ ଅନୁମତି ନଦେବାରୁ, ସେ କ୍ଷୁବ୍ଧ ହୋଇ ଅଠରନଳା ପାଖରେ ଦଣ୍ଡାଡ଼ିପାତ କଲେ । କିନ୍ତୁ ଭକ୍ତି-ଭାବରେ ଜଗନ୍ନାଥଙ୍କୁ ତାଙ୍କ ସାଙ୍ଗରେ ଆସିଥିବା ସମସ୍ତ ପରିଜନଙ୍କ ସହ ଦର୍ଶନ କରିବାକୁ ଏତେ ଅଧୀର ହେଲେ ଯେ, ଶେଷକୁ ଜଗନ୍ନାଥଙ୍କ ଦ୍ୱାରା ସ୍ୱପ୍ନାଦିଷ୍ଟ ହେଲେ, ତାଙ୍କ ରାଜ୍ୟରେ ଜଗନ୍ନାଥଙ୍କ ପାଇଁ ମନ୍ଦିର ନିର୍ମାଣ କରିବାକୁ । କେବଳ ସେତିକି ନୁହେଁ, ଶ୍ରୀକ୍ଷେତ୍ରରେ ଜଗନ୍ନାଥ ରହୁଥିଲେ ହେଁ, ପ୍ରତ୍ୟହ କିଛି ସମୟ ପାଇଁ ବୈଦ୍ୟନାଥଙ୍କ ନିର୍ମିତ ମନ୍ଦିରକୁ ଯିବେ ପ୍ରତିଶ୍ରୁତି ଦେଲେ । ଅବଶ୍ୟ ଅନ୍ୟ ଏକ କିମ୍ବଦନ୍ତୀ ଅଛି ଯେ, ରାଜାବୈଦ୍ୟ ଜଗନ୍ନାଥଙ୍କୁ ଦର୍ଶନ କରିବାକୁ ଅତ୍ୟନ୍ତ ବ୍ୟାକୁଳିତ ଥିଲେ । ଦର୍ଶନ ପୂର୍ବରୁ ତାଙ୍କର ଅକାଳ ଦେହାନ୍ତ ହୋଇଗଲା । ତାଙ୍କର ପୁତ୍ର ଉଦ୍ଦେଶ୍ୟରେ ବୈଦ୍ୟନାଥ ଜଗନ୍ନାଥଙ୍କ ନିର୍ଦ୍ଦେଶକ୍ରମେ ଏହି ମନ୍ଦିର ନିର୍ମାଣ କରିଥିଲେ ଓ ୧୫୭୫ ଖ୍ରୀଷ୍ଟାବ୍ଦରେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ସେଠାରେ ପ୍ରତିଷ୍ଠା କରିଥିଲେ ।

ସମ୍ଭବତଃ ସେହି ବିଶ୍ୱାସ ଅନୁଯାୟୀ ଦୈନିକ ମହାପ୍ରଭୁ ଜଗନ୍ନାଥଙ୍କ ସେହି ମନ୍ଦିରରେ ଆବିର୍ଭାବ ହେଉଥିବାର କଥନୀ ରହିଛି ଏବଂ ସେହିପରି ଗୁଣ୍ଡିଚା ବା ବାହୁଡ଼ା ଦିନ ପୁରୀରେ ରଥଟଣା ପରେ, ବାରିପଦାରେ ରଥ ଆରମ୍ଭ ହେଉଛି ଏବଂ ବାରିପଦାକୁ ଦ୍ୱିତୀୟ ଶ୍ରୀକ୍ଷେତ୍ର ବୋଲି କୁହାଯାଉଛି । ଓଡ଼ିଶାରେ ଶ୍ରୀକ୍ଷେତ୍ର ପଛକୁ ବାରିପଦାରେ ଶ୍ରୀ ଶ୍ରୀ ଜଗନ୍ନାଥଙ୍କର ରୀତିନୀତି, ପର୍ବ ପର୍ବାଣୀ, ଯାନିଯାତ୍ରା ଏପରିକି ରଥଯାତ୍ରାରେ ଜନସମାବେଶ ମଧ ଦ୍ୱିତୀୟ ହୋଇ ରହିଛି, ଯଦିବା ପୁର୍ବ କଥିତ କେତେକ ପାର୍ଥକ୍ୟ ସହିତ ବାହୁଡ଼ାରେ ଆଗେ ଜଗନ୍ନାଥ ଏବଂ ସର୍ବଶେଷରେ ବଳଭଦ୍ରଙ୍କର ରଥ ଫେରି ଆସିବାର ଚଳଣି ରହିଅଛି । ନିବେଦୋ ଯେତୁ, ପ୍ର



# ଶ୍ରୀମନ୍ଦିର-ସେବା ଓ ସେବକ

● ଶ୍ରୀ ଭାସ୍ୱର ମିଶ୍ର

ଉତ୍କଳର ପରମାରାଧ୍ୟ ଦେବ ଶ୍ରୀଜଗନ୍ନାଥ କେଉଁ ଅନାଦି କାଳରୁ ଦାରୁବ୍ରହ୍ମ ରୂପରେ ପୁରୁଷୋତ୍ତମ କ୍ଷେତ୍ରରେ ପୂଜିତ ହୋଇ ଆସୁଅଛନ୍ତି, ତାହା ଏବେ ବି ଅତ୍ୟନ୍ତ ରହସ୍ୟମୟ ହୋଇ ରହିଛି । ଏହି ବିଶାଳ ମନ୍ଦିରର ନିର୍ମାଣ, ନୀତି, ରୀତି, ଯାନି ଯାତ୍ରା, ସେବା ଓ ସେବକମାନଙ୍କ ଇତିହାସ ସମ୍ପର୍କରେ ବହୁ ଗବେଷଣାର ଆବଶ୍ୟକତା ଏବେ ମଧ୍ୟ ରହିଛି । ଦୀର୍ଘ ଆଠ ବର୍ଷର ପରମ୍ପରା, ସଂସ୍କୃତି, ରୀତି, ନୀତି, ଯାନି ଯାତ୍ରା, ଉତ୍ସବାଦିଗୁଡ଼ିକ ବର୍ତ୍ତମାନ ଶ୍ରୀମନ୍ଦିରରେ ଅନୁଷ୍ଠିତ ହେଉଥିବା ଆଶ୍ଚର୍ଯ୍ୟଜନକ ବିଷୟ ।

ଏହି ପ୍ରସିଦ୍ଧ ଜାତୀୟ କୀର୍ତ୍ତି ତଥା ମନ୍ଦିର ସମ୍ପର୍କରେ ଭାରତର ସର୍ବୋଚ୍ଚ ନ୍ୟାୟାଳୟ ୧୯୭୪ ମସିହା ମାର୍ଚ୍ଚ ୫ ତାରିଖ ଦିନ ଏକ ଐତିହାସିକ ରାୟ ଦେଇ କହିଥିଲେ, "ଓଡ଼ିଶା ରାଜ୍ୟରେ ଅବସ୍ଥିତ ଶ୍ରୀଜଗନ୍ନାଥ ମନ୍ଦିର ଅଦ୍ୱିତୀୟ ଓ ଏହାର ଜାତୀୟ ପ୍ରାଧାନ୍ୟ ରହିଛି । ଓଡ଼ିଶାର ଅନ୍ୟ କୌଣସି ମନ୍ଦିର ଏହା ସହ ତୁଳନୀୟ ନୁହେଁ । ଏହା ନିଜେହିଁ ଏକ ସ୍ୱତନ୍ତ୍ର ଶ୍ରେଣୀ । ଭାରତବର୍ଷର ବିଭିନ୍ନ ଅଞ୍ଚଳର ଭାଷାଭାଷୀ ଲୋକମାନେ ଏହି ମନ୍ଦିର ପ୍ରତି ଆକୃଷ୍ଟ ହୋଇ ପ୍ରତିବର୍ଷ ପୁରୀ ଶ୍ରୀମନ୍ଦିରକୁ ଦର୍ଶନ ଉଦ୍ଦେଶ୍ୟରେ ଆସୁଥିବାରୁ ରାଜ୍ୟ ସରକାର ଏହାର ପରିଚାଳନା ଦିଗରେ ସ୍ୱତନ୍ତ୍ର ଦୃଷ୍ଟି ଦେବା ଉଚିତ ବୋଲି ମାନ୍ୟବର ସୁପ୍ରିମ୍ କୋର୍ଟ ମତ ପ୍ରଦାନ କରିଥିଲେ ।

ଦ୍ୱାଦଶ ଶତାବ୍ଦୀରେ ନିର୍ମିତ ବର୍ତ୍ତମାନର ଏହି କାରୁକାର୍ଯ୍ୟପୂର୍ଣ୍ଣ ଶ୍ରୀମନ୍ଦିରରେ ଅଧିଷ୍ଠିତ ଦାରୁବ୍ରହ୍ମରୂପୀ ଠାକୁରମାନଙ୍କ ସେବା ଓ ସେବକଙ୍କ ସମ୍ପର୍କରେ ଏବେ ମଧ୍ୟ ଅନେକ ତଥ୍ୟ ଲୁକ୍କାୟିତ ହୋଇ ରହିଅଛି ।

ପୌରାଣିକ ମତାନୁଯାୟୀ ପୂର୍ବରୁ ଦାରୁରୂପୀ ଶ୍ରୀଜଗନ୍ନାଥ ନୀଳମାଧବ ରୂପେ ଶବର ରାଜା ବିଶ୍ୱାବସୁଙ୍କ ଦ୍ୱାରା ପୂଜିତ ହେଉଥିଲେ । ପରବର୍ତ୍ତୀ ସମୟରେ ଇନ୍ଦ୍ରଦ୍ୟୁମ୍ନ ମହାରାଜା ମାଧବ ନାମରେ ଏହାଙ୍କୁ ଆଚାର୍ଯ୍ୟ, ବ୍ରହ୍ମା, ଗୁରୁ, ହୋତା ଓ ପାତ୍ରୀ ହୋତା- ଏହିପରି ଚାରିଜଣ ପୂଜକଙ୍କ ସହାୟତାରେ ପୂଜାର୍ଚ୍ଚନା କଲେ । (ନୀଳାଦ୍ରି ମହୋଦୟ)

ମାଦଳାପାଞ୍ଜି ତଥ୍ୟ ଅନୁଯାୟୀ ଶଙ୍କରାଚାର୍ଯ୍ୟ ବିଦ୍ୱାନ ଗୋତ୍ରୀ ବ୍ରାହ୍ମଣଙ୍କ ଦ୍ୱାରା ଦେବବରର (ଏକ ବୃକ୍ଷ) ମୂଳ ଖୋଳାଇ ପରମେଶ୍ୱରଙ୍କୁ ଉଦ୍ଧାର କରି ପ୍ରଭୁଙ୍କର ଦୈନିକ ପୂଜାର ମଧ୍ୟ ବ୍ୟବସ୍ଥା କଲେ । ଆଦି ଶଙ୍କରାଚାର୍ଯ୍ୟ ଯେଉଁମାନଙ୍କ ସହାୟତାରେ ପରମବ୍ରହ୍ମଙ୍କୁ ସୋନପୁରଠାରୁ ଉଦ୍ଧାରକରି ଆଣିଥିଲେ, ସେମାନଙ୍କୁ ଆଠ ପ୍ରକାର ସେବା ପ୍ରଦାନ କଲେ । ଏତଦ୍‌ବ୍ୟତୀତ ଯେଉଁମାନେ ପରମବ୍ରହ୍ମଙ୍କୁ ପାତାଳରୁ ଉଦ୍ଧାର କଲେ, ସେମାନଙ୍କୁ ପଞ୍ଚ ପ୍ରକାର ସେବା କରିବାପାଇଁ ଆଜ୍ଞା ଦେଲେ । ବାକି ସାତଜଣଙ୍କୁ ଛଅ ପ୍ରକାର ସେବା ପ୍ରଦାନ କଲେ । ଏହିପରି ୩୦ପ୍ରକାର ସେବାରେ ୩୦ ଜଣ ସେବକଙ୍କୁ ନିଯୁକ୍ତି ଦେଲେ । (ଜଗନ୍ନାଥ ତତ୍ତ୍ୱ ଓ ତଥ୍ୟ/ ସେବକ ଦର୍ପଣ) । 'ପ୍ରାଚୀନ ଉତ୍କଳ' ପୁସ୍ତକରେ ଉଲ୍ଲେଖ ହୋଇଛି ଯେ, ସୋମବଂଶର ଶ୍ରେଷ୍ଠ ରାଜା ଯଯାତି ଉତ୍କଳରେ ରାଜୁତି କରିବା ସମୟରେ ଶ୍ରୀକ୍ଷେତ୍ରରେ ୩୮ ହାତ ଉଚ୍ଚତା ବିଶିଷ୍ଟ ଗୋଟିଏ କ୍ଷୁଦ୍ର ମନ୍ଦିର ନିର୍ମାଣ କରି ଠାକୁରଙ୍କ ନୀତିକୁ ବର୍ଦ୍ଧିତ କରି କାନ୍ୟକୁବ୍ଜରୁ ଆଣିଥିବା କେତେକ ଆର୍ଯ୍ୟ ବ୍ରାହ୍ମଣଙ୍କୁ ସେବାରେ ନିଯୁକ୍ତି ଦେଇଥିଲେ ।

ଐତିହାସିକ ବିବରଣୀ ଅନୁଯାୟୀ ୧୨୩୮ ଖ୍ରୀଷ୍ଟାବ୍ଦରେ ଅନଙ୍ଗଭୀମ ଦେବ (୩ୟ) ବର୍ତ୍ତମାନର ମନ୍ଦିର ନିର୍ମାଣ କାର୍ଯ୍ୟକୁ ସମ୍ପୂର୍ଣ୍ଣ କରିଥିଲେ । ଶ୍ରୀକ୍ଷେତ୍ରରେ କେତେକ ସାହି ସ୍ଥାପନ କରି ସେଠାରେ ଶ୍ରୀମନ୍ଦିର ସେବକମାନଙ୍କୁ ସ୍ଥାୟୀ ଭାବେ ରଖାଇ ପରମେଶ୍ୱରଙ୍କ ଦୈନିକ ସେବା ପୂଜା, ନୀତି ସୁଚାରୁ ରୂପେ ନିର୍ବାହ କରିବା ନିମନ୍ତେ ସମସ୍ତ ସେବକଙ୍କୁ ଛତିଶ ଭାଗରେ ବିଭକ୍ତ କରି ଛତିଶ ନିଯୋଗ ଗଢ଼ିଥିଲେ । (ପ୍ରାଚୀନ ଉତ୍କଳ) । କ୍ରମେ ସେବକଙ୍କ ସଂଖ୍ୟା ବୃଦ୍ଧି ପାଇ ଏହି ସେବା ଅନେକ ଭାଗରେ ବିଭକ୍ତ ହୋଇଥିଲା । ତତ୍କାଳୀନ ସମୟରେ ଶ୍ରୀମନ୍ଦିର ସେବା ଓ ନୀତିର ମୌଳିକ ମୂଳପିଣ୍ଡ ଥିଲା ଛତିଶ ପାଟକ ନିଯୋଗ । ଏହା ଏକ କର୍ମନିଷ୍ଠା, ସହଯୋଗ ଏବଂ ପରସ୍ପର ସାହାଚର୍ଯ୍ୟର ଉତ୍କୃଷ୍ଟ ନିଦର୍ଶନ । ପରବର୍ତ୍ତୀ ସମୟରେ ଅର୍ଥାତ୍ ୧୮୦୫ ଖ୍ରୀଷ୍ଟାବ୍ଦରେ ଇଂରେଜ ସରକାର ପୁରୀ ଅଧିକାର କରିବା ସଙ୍ଗେ ସଙ୍ଗେ ଶ୍ରୀମନ୍ଦିରର ପରିଚାଳନା ଭାରରେ ହସ୍ତକ୍ଷେପ କରିଥିଲେ । ସେ ସମୟରେ ଗ୍ରୁମ୍ ସାହେବ ଶ୍ରୀମନ୍ଦିର ସେବକମାନଙ୍କ ସମ୍ପର୍କରେ ଏକ ରିପୋର୍ଟ ପ୍ରସ୍ତୁତ କରିଥିଲେ । ସେହି ରିପୋର୍ଟ ଅଦ୍ୟାବଧି ରାଜ୍ୟ ଅଭିଲେଖାଗାରରେ ସଂରକ୍ଷିତ ହୋଇ ରହିଅଛି । ସେହି ରିପୋର୍ଟରେ ଥିବା ତାଲିକାରୁ ଜଣାଯାଏ ଯେ, ଶ୍ରୀମନ୍ଦିର ଭିତରେ ଓ ବାହାରେ ସେବକ ସଂଖ୍ୟା ଥିଲା ୨୫୦ । ୧୯୪୭ ମସିହାରେ ଭାରତ ଇଂରେଜ ଶାସନାଧୀନରୁ ମୁକ୍ତ ହେବା ପରେ ରାଜ୍ୟ ସରକାର ୧୯୫୨ ମସିହାରେ ଶ୍ରୀମନ୍ଦିର ନିମିତ୍ତ ଏକ ସ୍ୱତନ୍ତ୍ର ଆଇନ୍ ପ୍ରଣୟନ କରି ଶ୍ରୀମନ୍ଦିର ସେବା ପୂଜା ସହିତ ସମ୍ପୃକ୍ତ ସେବକମାନଙ୍କର ତାଲିକା ଓ ସେବା ବିବରଣୀ ପ୍ରସ୍ତୁତ କରି ତାହା "ଶ୍ରୀମନ୍ଦିର ସ୍ୱତ୍ୱଲିପି"ରେ ଲିପିବଦ୍ଧ କଲେ । ଏହି କାର୍ଯ୍ୟରେ ଜଣେ ଜିଲ୍ଲା ଜଜ୍ ପାହ୍ୟାର ଅଫିସର ଶ୍ରୀ ଲକ୍ଷ୍ମଣ ପଣ୍ଡା ନିଯୁକ୍ତ ହୋଇଥିଲେ । ଏହି ସ୍ୱତ୍ୱଲିପିରେ ୧୧୯ ପ୍ରକାର ସେବକ ଶ୍ରେଣୀ ରହିଅଛି । ତନ୍ମଧ୍ୟରେ ମଠ ଓ ବ୍ୟକ୍ତିଗତ ସେବା ଅନ୍ତର୍ଭୁକ୍ତ ଅଟେ । ନିମ୍ନରେ ଶ୍ରୀମନ୍ଦିର ସେବକମାନଙ୍କର ଏକ ତାଲିକା ପ୍ରଦତ୍ତ କରାଗଲା ।

୧- ଗଜପତି ମହାରାଜା, ୨-ପରିଛା ବା ରାଜଗୁରୁ, ୩-ଛତିଶ ନିଯୋଗ ନାୟକ ପାଟଯୋଶୀ ମହାପାତ୍ର, ୪ -ଭିତରଛ, ୫-ତଳିଚ୍ଛ, ୬- ମୁଦ୍ରାହସ୍ତ ଓ ମୁଦିରଥ, ୭-ଦେଉଳ ପୁରୋହିତ, ୮-ପୂଜାପଣ୍ଡା,

୯-ଚକ୍ରପଣ୍ଡା, ୧୦ -ପୁଷ୍ପାଳକ, ୧୧ -ମହାଜନ, ୧୨-ମୁଦ୍ରା, ୧୩-ଖୁଣ୍ଟିଆ, ୧୪ -ପଶ୍ଚାତ ମେକାପ, ୧୫ -ପାଳିଆ ମେକାପ, ୧୬ -ଅଖଣ୍ଡ ମେକାପ, ୧୭ -ଚାଙ୍ଗଡ଼ା ମେକାପ, ୧୮ -ଖଟଶେଯ ମେକାପ, ୧୯-ପ୍ରତିହାରୀ, ୨୦-ଦଇତା, ୨୧- ପତି ମହାପାତ୍ର, ୨୨-ପଟ୍ଟିବଡୁ, ୨୩-ଗରାବଡୁ, ୨୪-ସୁଆର ବଡୁ, ୨୫-ଖୁରା ନାଏକ, ୨୬-ମୁଖ ପଖାଳ, ୨୭-ଘଟୁଆରି, ୨୮ -ଗୋଛିକାର, ୨୯ -ସୁନା ଗୋସ୍ୱାମୀ, ୩୦-ମୁଦୁଲି, ୩୧-ଆଳଟ ବଳିତା ସେବକ, ୩୨-ପୁରାଣ ପଣ୍ଡା, ୩୩-ଦତ୍ତ ମହାପାତ୍ର, ୩୪-ଲୁଗାଧୁଆ ଓ ପାଣିକୁଣ୍ଡ ସେବକ, ୩୫-ବଲ୍ଲଭ ଯୋଗାଣିଆ, ୩୬-ବିମାନ ବଡୁ, ୩୭-ଅଣସର ସୁଦ ସୁଆର ଓ ସୁଦ ସୁଆର, ୩୮ -ହଡ଼ପ ନାଏକ, ୩୯ -ବିଡ଼ିଆ ଯୋଗାଣିଆ, ୪୦ -ଖଟୁଳି ସେବକ, ୪୧-ଆସ୍ଥାନ ପ୍ରତିହାରୀ, ୪୨-କୋଠ ଭୋଗ ଯୋଗାଣିଆ, ୪୩-ପ୍ରଧାନୀ, ୪୪-ପାଇକ, ୪୫-ଦେଖା, ୪୬-ସୁଆର ନିଯୋଗ ନାୟକ, ୪୭- ସୁଆର ନିଯୋଗ ଓ ମହାସୁଆର, ୪୮ -ଜଗିଆ ମହାସୁଆର, ୪୯-ବଡୁ ସୁଆର, ଥାଳି, ଦୁନା ଏବଂ ଅମାଲୁ ସୁଆ, ୫୦-ପଣ୍ଡିବଡୁ, ୫୧-ଅମାଲୁ ତୋଳା, ପୁରଖରଡ଼ା, ୫୨-ତୋଳା ବଡୁ, ୫୩-ରୋଷ ପାଇକ, ୫୪-ବାହାର ଦେଉଳି ସୁଆର, ୫୫-ବାହାର ଦେଉଳି ଯୋଗାଣିଆ, ୫୬-ରୋଷ ଧୋ ପଖାଳିଆ, ଅଙ୍ଗାରୁଆ, ଗୋବରପାଣିଆ ଏବଂ ଗରାଡ଼ିଆ, ୫୭-ହାଣ୍ଡି ଯୋଗାଣିଆ, ତୋଳାବଟି, ୫୮ -ବିରିମୁଣ୍ଡା ସାମର୍ଥୀ, ୫୯-କୋଠ ଭୋଗ ପାଣିଆ, ୬୦-ପନିକିପଟା, ୬୧-ନିକାପ ଏବଂ ଗନ୍ଧଣା ନିକାପ, ୬୨-ବିରିବୁହା, ୬୩-ଦଉଡ଼ି ତୋଳା, ୬୪ -ବୁନରା, ୬୫-ସାବତ ନିଯୋଗ, ୬୬-ପାଣିଆପଟ, ୬୭-ମଣ୍ଡଣି, ୬୮ -ଢକା ଅପସର, ୬୯-ମୁଲିଆ ସୁପକିଆ, ୭୦- ବାଗଲାଗି, ୭୧-ଦର୍ପଣିଆ, ୭୨-କୋଠ ସୁଆଁସିଆ, ୭୩-ମହାଭୋଇ, ୭୪-ଗୀତଗୋବିନ୍ଦ, ୭୫-ଭିତର ଗାଆଣୀ, ୭୬-ସମ୍ପ୍ରଦା ନିଯୋଗ, ୭୭-ଦୟଣା ମାଳି, ୭୮ -ମାଦେଳି, ୭୯-ପ୍ରସାଦବଡୁ, ବଡୁ ମହାପାତ୍ର, ୮୦-ତାଡ଼ୁଆ, ୮୧-ପତର ବିନ୍ଧା, ୮୨-ବୈଜୟନ୍ତୀ, ୮୩-ଛତାର ନିଯୋଗ, ୮୪-କାହାଳିଆ, ୮୫-ଶଙ୍ଖୁଆ, ୮୬-ପର୍ବଯାତ୍ରା ଯୋଗାଣିଆ, ୮୭-ଚିତ୍ରକାର, ୮୮-ରୂପକାର, ୮୯-ବଣିଆ, ୯୦-ତାମରା ବିଶୋଇ, ୯୧-କରଡିଆ, ୯୨-ବେଣ୍ଟ ବିନ୍ଧା ପାଇକ, ୯୩-ପାଟରା ବିଶୋଇ, ୯୪-କଳା ବେଠିଆ, ୯୫-ଦରଜୀ, ୯୬-କୁମ୍ଭାର ବିଶୋଇ, ୯୭- ରଥଭୋଇ, ୯୮-ମାଳଚୁଳ, ୯୯-ବାଣୁଆ, ୧୦୦-ବଡୁ ବିହୁତି, ୧୦୧-ଓଝା ମହାରଣା, ୧୦୨-ଘଣ୍ଟ ସେବା, ୧୦୩-ପଞ୍ଝା, ୧୦୪-ରଥ ଡାହୁକ, ୧୦୫-ବଢ଼େଇ, ୧୦୬-ବୈଦ୍ୟ, ୧୦୭-ଅମୁଣିଆ ଛତାର, ୧୦୮-ଛାମୁ ବିହୁତି, ୧୦୯-ଚାପ ବେହେରା, ୧୧୦-ଚାପ ଦଳେଇ, ୧୧୧-ମାପ ସାଇତା କରଣ, ୧୧୨-ତଡ଼ଉ କରଣ, ୧୧୩-ଦେଉଳ କରଣ, ୧୧୪-ବୈଠିକରଣ, ୧୧୫-କୋଠ କରଣ, ୧୧୬ -ଚର୍ଚ୍ଚାକରଣ, ୧୧୭-ପତ୍ର ପଢ଼ି, ୧୧୮-ବାଉଳବଛା କରଣ, ୧୧୯-ମଠ ଓ ବ୍ୟକ୍ତିଗତ ସେବା, ୧୨୦-ବେହେରା କରଣ ସେବା

ଏଠାରେ ଉଲ୍ଲେଖଯୋଗ୍ୟ ଯେ ୧୨୦ କ୍ରମିକ ନମ୍ବରେ ଥିବା ସେବା ୧୯୮୮ ମସିହାରେ ସ୍ୱତ୍ୱଲିପିରେ ଅନ୍ତର୍ଭୁକ୍ତ କରାଯାଇଅଛି ।

ଉପର ଲିଖିତ ସେବା ମଧ୍ୟରୁ ସଂପ୍ରତି କେତେକ ସେବକ ଶ୍ରେଣୀ ଲୋପ ପାଇସାରିଲାଣି । ଏପରିକି କେତେକ ସେବା ମଧ୍ୟ ହେଉ ନଥିବା ଜଣାଯାଏ । ତନ୍ମଧ୍ୟରେ ସଂପ୍ରଦା ନିଯୋଗ, ମାଦେଳି, ବାଗଲାଗି, ଭିତର ଗାଆଣୀ, ଗୀତଗୋବିନ୍ଦ ଇତ୍ୟାଦି ଅନ୍ୟତମ ।

ଶ୍ରୀମନ୍ଦିରରେ ସମସ୍ତ ସେବକ ଶ୍ରେଣୀ ଅନୁଯାୟୀ ସେମାନଙ୍କ ସଂଖ୍ୟା ପ୍ରାୟ ୧୩୦୦ ଅଟେ । ଦୈନନ୍ଦିନ ଠାକୁରମାନଙ୍କ ନୀତି, ସେବା ପୂଜାରେ ପ୍ରାୟ ୮୦ ଜଣ ସେବକଙ୍କର ଆବଶ୍ୟକତା ପଡ଼ିଥାଏ । ଶ୍ରୀମନ୍ଦିର ପ୍ରଶାସନ ତରଫରୁ ଶ୍ରୀମନ୍ଦିରସ୍ଥ ଗାରଦ ଠାରେ ଥିବା 'ଦୈନିକ ପଞ୍ଜିକା' ଫର୍ମରେ ପ୍ରତିଦିନର ନୀତି, ସମୟ ଓ ସେବକମାନଙ୍କ ନାମ ଉଲ୍ଲେଖ କରାଯାଇଥାଏ । ଏତଦ୍‌ବ୍ୟତୀତ ନୀତିମାନଙ୍କର ଦୈନିକ ନୀତି, ସେବାପୂଜା କରିବା ନିମନ୍ତେ ସେବକମାନଙ୍କ ମଧ୍ୟରେ ଯେଉଁ ଦିନ ନିର୍ଦ୍ଧାରଣ ହୋଇଥାଏ, ତାହାକୁ ବେଢ଼ କୁହାଯାଏ । ଏହି 'ବେଢ଼' ପ୍ରଥା ବହୁ ପ୍ରାଚୀନ ସମୟରୁ ପ୍ରଚଳନ ହୋଇ ଆସୁଅଛି । ମୁଖ୍ୟତଃ ଅଧିକାଂଶ ନିଯୋଗ ଏ ବେଢ଼/ପାଳିର ସୁପରିଚାଳନା ତଥା ତତ୍ତ୍ୱାବଧାନ କରିଥାନ୍ତି । ନିଯୋଗ ପ୍ରତ୍ୟହ ସେବକ ତଥା ପାଳିଆମାନଙ୍କୁ ଏହି ବେଢ଼ ପଦ୍ଧତିରେ ସେବାରେ ସୁଯୋଗ ପ୍ରଦାନ କରିଥାନ୍ତି । ତେବେ ଶ୍ରୀମନ୍ଦିର ଆଇନ, ପରମ୍ପରା ପ୍ରକାରେ ଏ ସମସ୍ତ ସେବା ବଂଶାନୁକ୍ରମିକ ଅଟେ ।

ଲୋକ ସମ୍ପର୍କ ଅଧିକାରୀ (ଶ୍ରୀମନ୍ଦିର)
ସମ୍ପାଦକ - 'ନୀଳାଦ୍ରି', ପୁରୀ

• • •



# ଶ୍ରୀ ଜଗନ୍ନାଥଙ୍କ ସେବା ପୂଜାରେ ସମନ୍ୱୟ ସଂସ୍କୃତି

● ଶ୍ରୀ ବନମାଳୀ ସୁଆର

ବିଶ୍ୱର ଆଧ୍ୟାତ୍ମିକ ଚେତନାରେ ସାମ୍ୟ, ମୈତ୍ରୀ, ଭ୍ରାତୃତ୍ୱ ଓ ସମନ୍ୱୟର ଆଦିମତମ କେନ୍ଦ୍ର ଶ୍ରୀଜଗନ୍ନାଥ । ବେଦ, ଉପନିଷଦ ଓ ପୁରାଣରେ ପୁରୁଷୋତ୍ତମଙ୍କ ବର୍ଣ୍ଣିତ ବ୍ୟାଖ୍ୟାନ ଓ ତତ୍ତ୍ୱ ପ୍ରାଚୀନତାର ପ୍ରମାଣ ଦିଏ । ଋଗ୍ ବେଦର ପ୍ରସିଦ୍ଧ ପୁରୁଷ ସୂକ୍ତରେ ବର୍ଣ୍ଣିତ :-

"ସହସ୍ର ଶୀର୍ଷା ପୁରୁଷଃ ସହସ୍ରାକ୍ଷଃ ସହସ୍ରପାତ୍,

ପୁରୁଷ ଏ ବେଦଂ ସର୍ବଂ ଯଦ୍‌ଭୂତଂ ଯଚ୍ଚଭାବ୍ୟମ୍ ।

ଏତାବାନସ୍ୟ ମହିମା ତୋ ଜ୍ୟାୟାଂଶ୍ଚ ପୁରୁଷଃ " ।

ଅର୍ଥ - ସର୍ବ ପ୍ରାଣୀସମଷ୍ଟି ରୂପକ ଏହି ବ୍ରହ୍ମାଣ୍ଡ ଦେହ ପୁରୁଷ ଅଟନ୍ତି । ସେ ଅନନ୍ତ ମସ୍ତକ, ନେତ୍ର ଓ ପାଦ ବିଶିଷ୍ଟ ।

ବର୍ତ୍ତମାନର ପରିଦୃଶ୍ୟମାନ ଜଗତ୍ ସମସ୍ତହିଁ ପୁରୁଷ ଅଟନ୍ତି । ଅତୀତ ଓ ଭବିଷ୍ୟତ ସମସ୍ତ ଜଗତ୍ ମଧ୍ୟ ପୁରୁଷ । ଏହି ବ୍ୟକ୍ତ ଜଗତ ତାଙ୍କରି ମହିମା ମାତ୍ର । ଗୀତାର ୧୫ଶ ଅଧ୍ୟାୟର ୧୬ଶ ଶ୍ଳୋକରେ ଦୁଇ ପ୍ରକାର "କ୍ଷର ଓ ଅକ୍ଷର ପୁରୁଷ" ଙ୍କର ବର୍ଣ୍ଣନା । ୧୭ଶ ଶ୍ଳୋକରେ ଉତ୍ତମ ପୁରୁଷଃ ପରମାତ୍ମାଙ୍କ ଧାରଣା । ୧୮ଶ ଶ୍ଳୋକରେ ଏକ ସଂକ୍ଷିପ୍ତ ବ୍ୟାଖ୍ୟା "ଯସ୍ମାତ୍ କ୍ଷରମତୀତୋଽହମକ୍ଷରାଦପିଚୋତ୍ତମଃ, ଅତୋଽସ୍ମି ଲୋକେ ବେଦେ ଚ ପ୍ରଥିତଃ ପୁରୁଷୋତ୍ତମଃ" । କାଳିଦାସଙ୍କ ଜ୍ୟୋତିର୍ବିଦାଭରଣ ଗ୍ରନ୍ଥ ଅନୁଯାୟୀ ମହାଭାରତ ଯୁଗ ଆଜଠାରୁ ପ୍ରାୟ ୫୦୦୦ ବର୍ଷ ପୂର୍ବରୁ ହେବାର ସିଦ୍ଧାନ୍ତ ହୋଇଅଛି । ଏହା ପ୍ରାଚୀନ ଭାରତ ଇତିହାସ ସମର୍ଥିତ ।

ପୁରୁଷୋତ୍ତମ ଚେତନାରେ ସମନ୍ୱୟ ସଂସ୍କୃତି ଜଗନ୍ନାଥଙ୍କ ଦୈନିକ ସେବାପୂଜା ବିଶେଷ କରି ରଥଯାତ୍ରାର ପୂର୍ବ ପଞ୍ଚଦଶ ଦିବସ ବ୍ୟାପି ଅଣସର ସେବାରେ ଦୃଷ୍ଟିଗୋଚର ହୁଏ । ଏହାର ପ୍ରକୃତ ନାମ ସୁଆର ବା ସୁଧ ସୁଆର ସେବା ବା ସଂସ୍କୃତି । ଶ୍ରୀମନ୍ଦିର ସ୍ୱତ୍ୱଲିପିରେ ଅଣସରରେ ସୁଆର ଓ ସୁଧସୁଆର ସେବାର ବିବରଣୀ ବର୍ଣ୍ଣିତ । ସେବା ବିବରଣରେ ଏହିମାନେ ପକ୍ୱତ ସୁଧ ସୁଆର ବଂଶ ଉଲ୍ଲେଖ ଅଛି । "ମୃତ ହେଲେ ଏହି ଶ୍ରେଣୀୟ ସେବାୟତଙ୍କ ଅଶୌଚ ନାହିଁ" ଏହା ଲିପିବଦ୍ଧ । ସ୍କନ୍ଦ ପୁରାଣ ଓ ଶ୍ରୀ ଜଗନ୍ନାଥ ମାହାତ୍ମ୍ୟ ବର୍ଣ୍ଣନା ମତେ ସୁଧ ସୁଆରମାନେ ଦୁଇ ପ୍ରକାର ଦିବ୍ୟ ଲେପ ପ୍ରଭୁଙ୍କ ପାଇଁ ପ୍ରସ୍ତୁତ କରନ୍ତି । ଏହା ପ୍ରଭୁଙ୍କର ମେଦ ମାଂସ ଶୋଣିତ ରୂପେ ବ୍ୟବହୃତ ହୁଏ । ଏହା ଶାସ୍ତ୍ର ସମର୍ଥିତ । ଗୋଟିଏ ଦିବ୍ୟ ଲେପ ଶାଳ ବୃକ୍ଷ ରସରୁ ଓ ଅପରଟି ସୁଧ ସୁଆରଙ୍କ ଘରେ ବସ୍ତ୍ର ପିଣ୍ଡ ରୂପେ ପ୍ରସ୍ତୁତ ହୋଇ ପୂଜା ହୋଇଥାଏ । ଶ୍ରୀମନ୍ଦିର ପଟୁଆର ଓ ବିଜେ କାହାଳି ସହ ଘରୁ ଶ୍ରୀମନ୍ଦିରକୁ ବିଜେ କରାଯାଏ । ସେହିଦିନ ଅଣସର ତ୍ରୟୋଦଶୀ ।

ଦ୍ୱାଦଶୀ ରାତ୍ରରେ ଘରେ ପୂଜା ଅଧିବାସ ବସେ ଓ ବିରୂପ ବିସର୍ଜନ ଏହିମାନେ କରିଥାନ୍ତି । ଅଣସର ଘରେ ପଣା ଭୋଗ ପୂଜାଠା କରିଥାଆନ୍ତି । ଅଣସରର ଗୋପନୀୟ କଥାକୁ ଶାସ୍ତ୍ରୀୟମତେ ପ୍ରକାଶ ନ କରିବାକୁ ବ୍ରହ୍ମାଙ୍କ ନିର୍ଦ୍ଦେଶ ଥିବାରୁ ତାହା ଏଠାରେ ପ୍ରକାଶ କରାଗଲା ନାହିଁ । (ନୀଳାଦ୍ରି ମହୋଦୟ) ଦ୍ରଷ୍ଟବ୍ୟ । ଏହା ବ୍ୟତୀତ ପକ୍ୱତ ସୁଧ ସୁଆରମାନେ ଆହୁରି ଅନେକ ସେବା କରିଥାଆନ୍ତି । ବିଂଶ ଶତାବ୍ଦୀର ପ୍ରଥମ ଦଶକରେ ଆଉ କେତେକ ସୁଧ ସୁଆର ସେବା ହସ୍ତାନ୍ତରିତ ହୋଇ ଦଇତା ଶ୍ରେଣୀ ସେବକଙ୍କ ଦ୍ୱାରା ସମ୍ପାଦିତ ହେଉଅଛି । ଅଣସର ପିଣ୍ଡିରେ ସର୍ପ ମଣୋହି ପାଇଁ ଫଳ ବାଢ଼ିବା, ପ୍ରତିଦିନ ବଲ୍ଲଭ ବାଢ଼ିବା, ମହାସ୍ନାନ ଆଦିରେ ଧୋପଖାଳ କରିବା, ବିଅଁ (ସୁଦର୍ଶନଙ୍କୁ) ବିଜେ କରାଇବା ଆଦି ଅନ୍ୟ କେତେକ ସେବା କେତେକ ଦଇତା କରନ୍ତି । ଏହା ସୁଧ ସୁଆର ସେବାର ଶେଷ ବିବରଣୀରେ ଉଲ୍ଲେଖ ଅଛି । ନବକଳେବର ସମୟରେ ପରମ୍ପରା ଓ ପ୍ରଥାନୁଯାୟୀ ଉଭୟେ ଦଶାହ କ୍ରିୟାଦି ପାଳନ କରନ୍ତି । ପ୍ରଶ୍ନ ଉଠେ ସୁଧ ସୁଆର ବା ଶୁଦ୍ଧ ସୁଆର କିଏ ? ତାଙ୍କ ଉତ୍ପତ୍ତି କେବେ ?

ପରିଚୟ :- କଳିଙ୍ଗ, ଓଡ୍ର, କୋଶଳ ବା ଆଧୁନିକ ଉତ୍କଳ ଇତିହାସ ସମର୍ଥିତ ପ୍ରାଚୀନତମ ଦେଶ । ମହାଭାରତରେ ବର୍ଣ୍ଣିତ କଳିଙ୍ଗ କନ୍ୟା ଚିତ୍ରାଙ୍ଗଦା ଦୁର୍ଯ୍ୟୋଧନଙ୍କୁ ବିବାହ ହୋଇଥିଲେ ଓ ଯୁଧିଷ୍ଠିର କଳିଙ୍ଗ ଦେଶ ଭ୍ରମଣରେ ଆସିଥିଲେ । ଏହି ଅଞ୍ଚଳରେ "ଅଷ୍ଟ୍ରିକ୍" ବା "ପ୍ରୋଟୋଅଷ୍ଟ୍ରାଲଏଡ୍" ଆଦିମ ବାସିନ୍ଦା ବାସ କରୁଥିଲେ । ଏହିମାନଙ୍କ ପୂଜାରେ ବୃକ୍ଷ ଓ ଦାରୁ ମୁଖ୍ୟ ସ୍ଥାନ ଥିଲା ।

ଅଷ୍ଟ୍ରିକ୍‌ମାନେ ସ୍ୱତନ୍ତ୍ର ଶ୍ରେଣୀର । ଦ୍ରାବିଡ଼ ଓ ଆର୍ଯ୍ୟମାନଙ୍କଠାରୁ ସମ୍ପୂର୍ଣ୍ଣ ପୃଥକ୍ । ସ୍କନ୍ଦ ପୁରାଣ, ନୀଳାଦ୍ରିମହୋଦୟ, ବାମଦେବ ସଂହିତା, ସାରଳା ମହାଭାରତ ଓ ଦେଉଳ ତୋଳା କାବ୍ୟ ତଥା ପ୍ରାଚୀନ ଉତ୍କଳ ଇତିହାସକୁ ଆଧାର କରି ଏତିକି କୁହାଯାଇପାରେ ଯେ ମାଳବ ରାଜା ବୈଷ୍ଣବ ବା ବିଷ୍ଣୁ ଭକ୍ତ ଥିଲେ । ଦ୍ୱାପର ଯୁଗ ଶେଷରେ ସ୍ୱପ୍ନାଭିଳାଷ ପରିପୂରଣ ନିମିତ୍ତ ନୀଳମାଧବ ମୂର୍ତ୍ତି ଅନ୍ୱେଷଣରେ ପୁରୋହିତ ବିଦ୍ୟାପତି ବ୍ରାହ୍ମଣଙ୍କୁ ଏହି ପୂର୍ବାଞ୍ଚଳକୁ ପଠାଇଥିଲେ । ସେ ନୃପଶାର୍ଦ୍ଦୁଳଙ୍କ କନିଷ୍ଠ ଭ୍ରାତା । ବିଦ୍ୟାପତି ନୀଳାଚଳ କ୍ଷେତ୍ରକୁ ମାଧବ ଅନୁସନ୍ଧାନରେ ଆସି ଗୋଟିଏ ପୁଷ୍କରିଣୀରେ କାକ ପଡ଼ି ଚତୁର୍ଭୁଜ ହେବାର ଅଲୌକିକତା ଦେଖିଲେ । ଏହି ଘୋରଜଙ୍ଗଲରେ ବିଶ୍ୱାବସୁ ଶବରରାଜ କନ୍ୟା ଲଳିତା ସହ ସାକ୍ଷାତ ଓ ବିବାହ ହେଲା । ବିଶ୍ୱାବସୁ ସ୍ୱାଗତ କରି ଗୃହକୁ ପାଛୋଟି ନେଲେ । ପରେ ସେ ମାଧବଙ୍କୁ ଦର୍ଶନ କରିବାର ସୁଯୋଗ ପାଇଥିଲେ । ପରବର୍ତ୍ତୀ ପ୍ରସଙ୍ଗରେ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଆଗମନ ହେଲା । ଦାରୁବ୍ରହ୍ମମୟ ମୂର୍ତ୍ତି ପତିଆତ ହେଲେ ଓ ମାଧବ ଅନ୍ତର୍ହିତ ହେଲେ । ମନ୍ଦିର ନିର୍ମାଣ

ହୋଇ ପୂଜା ଅର୍ଚ୍ଚନା ଚାଲିଲା । ପୌରାଣିକ ଓ ଐତିହାସିକ ତଥ୍ୟମତେ ବିଶ୍ୱାବସୁ ବା ବସୁଶବରରାଜ ଜାରା ଶବରର ବଂଶଧର । ଦାଇତୋଟି ବଂଶରେ ସେମାନେ ବିଭକ୍ତ ହୋଇଥିବାର କେତେକ ଗବେଷକ କହିଛନ୍ତି ।

ଆର୍ଯ୍ୟ ଓ ଆଦିମ ସଂସ୍କୃତିର ମହାମିଳନ ଓ ସମନ୍ୱୟ ସ୍ଥାପିତ ହେଲା ଲଳିତା ଓ ବିଦ୍ୟାପତିଙ୍କ ବିବାହରେ । ବିଦ୍ୟାପତିଙ୍କ ଔରସରୁ ଓ ଲଳିତା ଗର୍ଭରୁ ଜାତ ହେଲେ ଶୁଦ୍ଧ ସୁଆର । ବିଦ୍ୟାପତିଙ୍କ ବଂଶଧର ପତିମହାପାତ୍ରଙ୍କୁ ବୁଝାଯାଇଥାଏ । ବିଶ୍ୱାବସୁ ବା ବସୁଶବରର ବଂଶଧର ଦଇତାଶ୍ରେଣୀ ସେବକ । କିନ୍ତୁ ଶୁଦ୍ଧ ସୁଆର ଏକ ସମନ୍ୱୟ ଶ୍ରେଣୀ । ସାରଳା ମହାଭାରତ ରଚନା କାଳକୁ ଦେଉଳ ତୋଳା ନାମକ ଦୁଇଗୋଟି କାବ୍ୟ ନୀଳାମ୍ବର ଦାସ ଓ ଶିଶୁ ଦୀନକୃଷ୍ଣ ଦାସ ଲେଖି ସାରିଥିଲେ । ଦେଉଳ ତୋଳା ପ୍ରସଙ୍ଗରେ କାବ୍ୟରେ ଅଛି ଯେ :-

"ତୁମେ ଯେବେ ବର ଦେବ ମାଗୁଅଛି ମୁହିଁ
ମୋହର ବଂଶରେ କେହି ନଥିବେ ଗୋସାଇଁ
ଇନ୍ଦ୍ରଦ୍ୟୁମ୍ନ ବୋଲେ ମୋର ତେଣେ କାର୍ଯ୍ୟ ନାହିଁ,
ସବୁଦିନେ କିଏବି ମୋହର ଥିବ ରହି ।
ପୁତ୍ର ନାତି ବୋଲିବେ ଯେ ଦେଉଳ ଆମ୍ଭର
ଆମ୍ଭର ବୋଇଲେ ଧର୍ମ ଯିବ ଯେ ମୋହର
ବିଦ୍ୟାପତି ବ୍ରାହ୍ମଣ ଯେ ଦୂତ ପଣେ ଥିଲା,
ଶବର ଝିଅ ସେ ଯେ ପ୍ରବଶ ହୋଇଲା ।
ଶବରୁଣୀଠାରୁ ଯେଉଁ ପୁତ୍ର ହେବ ଜାତ
ଶୁଦ୍ଧ ସୁଆର ସେ ହେବ ବୋଲେ ଜଗନ୍ନାଥ
ଶବରର ଘରେ ଯେଉଁ ପୁତ୍ର ହେବ ଜାତ
ଦଇତା ସେବକ ହେବେ ବୋଲେ ଜଗନ୍ନାଥ
ସେ ବ୍ରାହ୍ମଣ ଘରେ ଯେଉଁ ପୁତ୍ର ହେବ ଜାତ
ପ୍ରକୃତ ସେବକ ସେ ବୋଇଲେ ଜଗନ୍ନାଥ ।"

ବାମଦେବ ସଂହିତାରେ ବର୍ଣ୍ଣିତ ଯେ :-

"ବିଶ୍ୱାବସୁ କୁଳୋଦ୍ଭୂତା ସ୍ତଥା ବିଦ୍ୟାପତେ ସୁତାଃ
ଭଜାବପି ଚ କୁର୍ଯ୍ୟାତଂ ଘଟାନଂ ପୂଜନଂ ହ୍ରମାତ୍" ।

ଦାରୁବ୍ରହ୍ମଙ୍କ ପୂଜା ଅର୍ଚ୍ଚନା ଦିନଠାରୁ ଆଦିମ ଉପଜାତି ସଂସ୍କୃତି ଆର୍ଯ୍ୟ ସଂସ୍କୃତିର ମୈତ୍ରୀ ଓ ମିଳନରେ ସାମ୍ୟ ଓ ସମନ୍ୱୟ ସୁପ୍ରତିଷ୍ଠିତ ହେଲା । ପରବର୍ତ୍ତୀ ଯୁଗରେ ବୈଷ୍ଣବ, ବ୍ରାହ୍ମଣ, ଶାକ୍ତ, ଗାଣପତ୍ୟ, ସୌର, ବୌଦ୍ଧ, ଜୈନ ଓ ଶୈବ ସମ୍ପ୍ରଦାୟ ମଧ୍ୟରେ ମହାମିଳନ ଓ ସମନ୍ୱୟ ସମ୍ଭବ ହେଲା । ଶ୍ରୀଜଗନ୍ନାଥଙ୍କ ଦୈନିକ ଓ ରଥଯାତ୍ରାର ପୂର୍ବ ଅବସର ସମୟରେ ପୂଜା ଅର୍ଚ୍ଚନାରେ ଏହି ସମନ୍ୱୟ ସଂସ୍କୃତି ଏବେ ବି ସୁସ୍ପଷ୍ଟ ଭାବେ ଉଜ୍ଜୀବିତ । ଦାରୁବ୍ରହ୍ମ ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ସାମାଜିକ ଓ ଜନଜୀବନରେ ଏତେ ଅନ୍ତରଙ୍ଗ ଭାବରେ ସଂଶ୍ଳିଷ୍ଟ ଯେ ତାହା ଅନ୍ୟତ୍ର ଦେଖାଯାଏ ନାହିଁ । ଶ୍ରୀଜଗନ୍ନାଥଙ୍କୁ ବାଦ ଦେଲେ ଓଡ଼ିଆ ଜାତିର ସାଂସ୍କୃତିକ ଓ ଆଧାତ୍ମିକ ଅସ୍ତିତ୍ୱ ନାହିଁ । ଭାଷ୍ମ ପିତାମହଙ୍କ ଭାଷାରେ, ଶ୍ରୀଜଗନ୍ନାଥ ପୁରୁଷୋତ୍ତମ ହିଁ ସର୍ବଶ୍ରେଷ୍ଠ ଧର୍ମ, ମାର୍ଗ, ପୂଜା ଅର୍ଚ୍ଚନା, ମନ୍ତ୍ର ତଥା ସ୍ତବ । ସେ ଏକ ହଜାର ରୂପରେ ପ୍ରକାଶିତ । ପବିତ୍ର ରଥଯାତ୍ରା ଅବସରରେ ପ୍ରଭୁ ଏହି ଜାତିକୁ ଓ ଦେଶକୁ ସଂହତି ଓ ସମନ୍ୱୟ ଡୋରିରେ ବାନ୍ଧି ରଖନ୍ତୁ, ଏତିକି ପ୍ରାର୍ଥନା ।

*ଦେବାୟତ, ଶ୍ରୀମନ୍ଦିର, ଦୋଳମଣ୍ଡପ ସାହି, ପୁରୀ*

• • •

# ଯାଚଞ୍ଜା

● ଡ଼ଃ କନକ ମଞ୍ଜରୀ ପଟ୍ଟନାୟକ

ଯାଚଞ୍ଜା ମୋ ନାହିଁ ଆଜି
ତୁମ ପାଖେ ନିରଞ୍ଜନ
ସାଧନାର ଚତୁର୍ଦ୍ଦଶ ସିଦ୍ଧି
ଧନଜନରତି ମୁକ୍ତି
ସାମର୍ଥ୍ୟର ଦର୍ପଣ ଉପରେ
ରଖୁ ଦିଅ ମୋ ପାର୍ଥିବ ସତ୍ତା
ଏ କାମନା ନାହିଁ ହେ ଗୋସାଇଁ !
ସମୟର ପ୍ରତି ପାହୁଣ୍ଡରେ
ତମର ତ ବିଚିତ୍ର ବିଧାଣ
ସବୁ କ୍ରୀଡ଼ାଙ୍ଗନ !

ପ୍ରତି ନିର୍ଘଣ୍ଟରେ ଏଠି
ସଂରଚିତ କ୍ରୀଡ଼ାସ୍ଥଳୀଟିଏ
ହେ ପ୍ରାଣ ପରମ !
ଏତିକି ମୋ ଯାଚଞ୍ଜା ତୁମଠି
ଏ ଖେଳରେ ତୁମେ ହୁଅ
ପ୍ରତିପକ୍ଷ ମୋର !
ଜୟ ପରାଜୟ ସବୁ
ତୁମ ପାଦେ ସମର୍ପି ସ୍ୱଚ୍ଛନ୍ଦେ
ଯାବତୀୟ କଳଙ୍କକୁ
ତୁମ ଛଡ଼ା ତୁଳସୀରେ ଧୋଇ

ସମର୍ପିବି ତୁମ ପାଖେ
ଜୀବନର ବଳକା ମୁହୂର୍ତ୍ତ ॥
ଦାତା ବୋଲି ତୁମେ ତେବେ
ହେବ ପ୍ରମାଣିତ
ଶ୍ରୀକ୍ଷେତ୍ର ମାହାତ୍ମ୍ୟ ଲାଗି
ଆଉ ପୃଷ୍ଠାଟିଏ
ହେବ ସଂଯୋଜିତ ॥

*ମହିଳା ମହାବିଦ୍ୟାଳୟ*
*ପାରଳାଖେମୁଣ୍ଡି*
*ଜିଲ୍ଲା-ଗଜପତି*

ଉତ୍କଳ ପ୍ରସ



# ଶ୍ରୀ ଜଗନ୍ନାଥ ଓ ପ୍ରାଚୀନ ଭାରତ

● ଡ: ଯଶୋବନ୍ତ ନାରାୟଣ ଧର

ପ୍ରାଚୀନ କାଳରେ ଭାରତୀୟ ଭୂଖଣ୍ଡରେ ବୈଦିକ ସଭ୍ୟତାର ବିସ୍ତୃତି ଓ କଳିଙ୍ଗର ଅବସ୍ଥିତି ମଧ୍ୟରେ କୌଣସି ସଂପର୍କ ନ ଥିଲା । ଏଣୁ ଋଗ୍ବେଦରେ ତଥା ଅନ୍ୟାନ୍ୟ ବୈଦିକ ସଂହିତାରେ କଳିଙ୍ଗ, ଉତ୍କଳ ଆଦି ରାଜ୍ୟର ନାମୋଲ୍ଲେଖ ମିଳେନାହିଁ । ମାତ୍ର ଏକଥା ସତ୍ୟ ଯେ ବୈଦିକ ସଂହିତାକାରମାନେ ଜାଣିନଥିଲେ ବି ଭାରତର ଦକ୍ଷିଣଭାଗରେ ବ୍ୟାପକ ଲୋକବସତି, ଧର୍ମାଚରଣ ଓ ସଭ୍ୟତା ପ୍ରତିଷ୍ଠିତ ହୋଇଥିଲା । କ୍ରମେ ଯେତେବେଳେ ବେଦ ପ୍ରବକ୍ତା ଆର୍ଯ୍ୟ ଋଷିଗଣ ବିନ୍ଧ୍ୟ ପର୍ବତ ଅତିକ୍ରମ କରି ଦାକ୍ଷିଣାତ୍ୟରେ ପ୍ରବେଶ କଲେ, ସେତେବେଳେ କିଛିଟା ବିରୋଧର ସମ୍ମୁଖୀନ ହେଲେହେଁ ଧୀରେ ଧୀରେ ଏକ ସମୀକରଣ ଓ ସଂହତିର ପ୍ରତିଷ୍ଠା କରିପାରିଥିଲେ । ଏହି ସମୀକୃତ ଓ ସଂହତ ସଭ୍ୟତା ଭାରତୀୟ ସଭ୍ୟତା ଓ ହିନ୍ଦୁ ଧର୍ମ ନାମରେ ନାମିତ ହୋଇ ବହୁ ବାଧାବିଘ୍ନ ଅତିକ୍ରମ କରି ସୁପ୍ରତିଷ୍ଠିତ ଓ ପ୍ରଚଳିତ ।

**ବୈଦିକ ସଭ୍ୟତାର ବିସ୍ତୃତି ଓ ପ୍ରାଚୀନ ଭାରତ**

ବେଦ ପ୍ରବକ୍ତା ଆର୍ଯ୍ୟମାନେ କାସ୍ପିୟାନ ସାଗର କୂଳରୁ ଏସିଆ ଓ ୟୁରୋପକୁ ଯାଉଥିଲେ ବୋଲି ୟୁରୋପୀୟ ବିଶେଷଜ୍ଞମାନଙ୍କର ମତ । ମାତ୍ର ବୈଦିକ ଭାରତବର୍ଷର ବିସ୍ତୃତି ଓ ବ୍ୟାପକତା ଲକ୍ଷ୍ୟ କଲେ ଏହା ଅଯୌକ୍ତିକ ବୋଲି ଜଣାପଡ଼େ । ଅଧିକନ୍ତୁ ଭାରତବର୍ଷର ବିସ୍ତୃତି କାସ୍ପିୟାନ ସାଗର ନିକଟବର୍ତ୍ତୀ ଅଞ୍ଚଳକୁ ଛୁଇଁଥିଲା ବୋଲି ପ୍ରମାଣିତ ହୁଏ ।

ବେଦର କୁରୁ, ମଦ୍ର ଆଦି ବୈଦିକ ରାଜ୍ୟ ଓ ଜନପଦ ସବୁ ଆଧୁନିକ ଆଫଗାନିସ୍ଥାନ ଓ କାଶ୍ମୀରର ଆହୁରି ଉତ୍ତରକୁ ଅବସ୍ଥିତ ଥିଲା । ବୈଦିକ ସୂକ୍ତମାନଙ୍କରେ ଉଷା (ପ୍ରଭାତର ପୂର୍ବବର୍ତ୍ତୀ ସମୟ) ର ଯେଉଁ ସ୍ପଷ୍ଟ ଓ ଆଲୋକିତ ଦୀର୍ଘତର ସମୟର ଉପସ୍ଥିତି ବର୍ଣ୍ଣନା କରାଯାଇଛି, ତାହା ଅନୁଭବ କରିବା ସୈନ୍ଧବ ଗାଙ୍ଗେୟ ସମତଳ ଭୂମିରେ ସଂଭବ ନୁହେଁ । ବୈଦିକ ଆର୍ଯ୍ୟଜାତି ହିମାଳୟ କୋଳରୁ କିମ୍ବା ପାମିର୍ ମାଳଭୂମିରେ ବସବାସ କରିବା ସମୟରେ ହିଁ ବୈଦିକ ସୂକ୍ତ ବର୍ଣ୍ଣିତ ଅନୁଭୂତିରେ ଅଭିଜ୍ଞତା ଓ ପ୍ରଜ୍ଞା ଲାଭ କରିଥିଲା । ଋଗ୍ ବେଦର କୋଡ଼ିଏଟି ସୂକ୍ତରେ ଉଷା ଦେବୀଙ୍କ ଯେଉଁ ବର୍ଣ୍ଣନା ରହିଛି, ସେଥିରୁ ଏହି ପ୍ରାକୃତିକ ଭୌଗୋଳିକ ଅବସ୍ଥିତି ସଂପର୍କରେ ସ୍ପଷ୍ଟ ଧାରଣା କରିହୁଏ । ଉଷାଙ୍କ ନାମ ଋଗ୍ବେଦରେ ପ୍ରାୟ ୩୦୦ ଥର ଉଲ୍ଲେଖିତ । ଏହା ସହିତ ସେ ସୁନରୀ, ଭଦ୍ରା, ସୁଜାତା, ଆତ୍ମନା, ବିଭାବରୀ ତଥା ବିଶ୍ୱବାରା ଆଦି ବହୁ ନାମରେ ସମ୍ମାନିତା । ଏହି କଥା ଏଠାରେ ଉଲ୍ଲେଖ କରିବାର ଉଦ୍ଦେଶ୍ୟ ହେଲା ବୈଦିକ ଭାରତ, ଆର୍ଯ୍ୟାବର୍ତ୍ତ ବା ଉତ୍ତରାପଥ ବାସ୍ତବରେ କାସ୍ପିୟାନ୍ ସାଗର କୂଳରୁ ହିମାଳୟ ପର୍ଯ୍ୟନ୍ତ ଯାଏ ବିସ୍ତୃତ ଥିଲା । ପାମିର୍ ମାଳଭୂମି ଓ କାଶ୍ମୀର ଅଞ୍ଚଳ ଥିଲା ଏହାର ମଧ୍ୟଭାଗ ।

**ଓଡ଼ିଶା ଓ ବୈଦିକ ସଭ୍ୟତା**

ପ୍ରାଚୀନ ଭାରତର ଧର୍ମାଚରଣ ଓ ଆଧ୍ୟାତ୍ମିକ ଇତିହାସ ଅନୁଧ୍ୟାନ କଲେ ଏହା ପ୍ରତୀତ ହୁଏ, ଯେପରି ଗୋଟିଏ ପଟେ ବୈଦିକ ଭାଷା ଓ ସମାନ୍ତରାଳ ଭାବେ ପାଲି ଓ ପ୍ରାକୃତ ଭାଷାର ପ୍ରଚଳନ ଏ ଦେଶରେ ହୋଇଛି । ସେହିପରି ଏଠାରେ ବୈଦିକ ଧର୍ମ ଓ ଲୋକାୟତ ଧର୍ମର ପ୍ରଚଳନ ରହିଥିଲା । ବୈଦିକ ଭାଷା କାଳକ୍ରମେ ସଂସ୍କୃତର ରୂପଧାରଣ କରିବାପରି ବୈଦିକ ଧର୍ମ କ୍ରମେ ହିନ୍ଦୁ ଧର୍ମରୂପେ ବିବର୍ତ୍ତିତ ହୋଇଛି । ସେହିପରି ଏଠାରେ ପ୍ରଚଳିତ ଥିବା ଲୋକାୟତ ଧର୍ମଧାରଣା ବୁଦ୍ଧ ଓ ମହାବୀର ଜିନଙ୍କ ଦ୍ୱାରା ବୌଦ୍ଧଧର୍ମ ଓ ଜୈନ ଧର୍ମ ରୂପେ ବିକଶିତ ହୋଇଥିଲା । ବୁଦ୍ଧଙ୍କ ପୂର୍ବରୁ ବହୁ ବୋଧିସତ୍ତ୍ୱଙ୍କର ଜନ୍ମ ତଥା ମହାବୀର ବର୍ଦ୍ଧମାନଙ୍କ ପୂର୍ବରୁ ୨୪ ଜଣ ତୀର୍ଥଙ୍କରଙ୍କ କ୍ରମାଗତ ପ୍ରୟାସର କାହାଣୀ ଉଭୟ ଗୌତମ ବୁଦ୍ଧ ଓ ମହାବୀର ଜିନଙ୍କ ପୂର୍ବରୁ ଏହି ଧର୍ମର ଅସ୍ତିତ୍ୱ ସଂପର୍କରେ ଧାରଣା ଦିଅନ୍ତି ।

ବିଶେଷ କରି ଓଡ଼ିଶାରେ (ସେହିପରି ଦକ୍ଷିଣ ଭାରତର ଅନ୍ୟାନ୍ୟ ଅଞ୍ଚଳରେ) ଆଦିମ ଅଧିବାସୀ ତଥା ସମୁଦ୍ର ଓ ଜଙ୍ଗଲଜୀବୀ ଜାତିଙ୍କ ଦ୍ୱାରା ମୂର୍ତ୍ତି ପୂଜା, ତନ୍ତ୍ର ମନ୍ତ୍ର ଓ ପ୍ରକୃତିର ଉପାସନା ଆଦି ପ୍ରଚଳିତ ଥିଲା ।

ଜାଙ୍ଗୁଲିକୀ ବିଦ୍ୟା ବା ଧର୍ମ ନାମରେ ଏକ ପ୍ରକାରର ତନ୍ତ୍ରମୂଳକ ଧର୍ମାଚରଣ ଓ ଉପାସନା ପଦ୍ଧତି ଅଶୋକଙ୍କ କଳିଙ୍ଗ ଆକ୍ରମଣ ସମୟରେ ଏଠାରେ ବ୍ୟାପକ ଭାବରେ ପ୍ରଚଳିତ ଥିବାର ପ୍ରମାଣ ଲୋକବିଶ୍ୱାସ ଓ କିମ୍ବଦନ୍ତୀ ଆଦିରୁ ଜଣାଯାଏ । ଏହା ଗାରୋଡ଼ି ନାମରେ ପରବର୍ତ୍ତୀ କାଳରେ କେଉଁଠି କେଉଁଠି ମିଳିଥାଏ । ସେହିପରି ଉଭୟ ଶୈବ ତନ୍ତ୍ର ଓ ବୌଦ୍ଧ ତନ୍ତ୍ରଭାବେ ଏହା ଏହି ଉଭୟ ଧର୍ମକୁ ପ୍ରଭାବିତ କରିଛନ୍ତି ବୋଲି ଜଣାଯାଏ ।

**ଅଶୋକ, ଖାରବେଳ ଓ କଳିଙ୍ଗ**

ସମ୍ରାଟ ଅଶୋକ ଓ ସମ୍ରାଟ ଖାରବେଳ ଉଭୟ ଖ୍ରୀଷ୍ଟପୂର୍ବ ସମୟର ରାଜା । ଉଭୟଙ୍କ ମଧ୍ୟରେ ତିନିଶହ ବର୍ଷ (ମତାନ୍ତରେ ଶହେ ତିନି ବର୍ଷ) ର ବ୍ୟବଧାନ ଥିଲା । ମୂଳତଃ, ଏହି ଦୁଇ ଦିଗ୍ବିଜୟୀ ସମ୍ରାଟଙ୍କ ଖୋଦିତ ଅଭିଲେଖରୁ ସେ ସମୟର କଳିଙ୍ଗ ସଂପର୍କରେ ଅନେକ କିଛି ତଥ୍ୟ ମିଳିଥାଏ । ମାତ୍ର ଦୁଃଖର ବିଷୟ ସେମାନଙ୍କ ପୂର୍ବରୁ ଓ ପରେ ପରେ ଏଠାକାର ଅବସ୍ଥା କିପରି ରହିଥିଲା, ସେ ସଂପର୍କୀୟ କୌଣସି ସୂଚନା ଐତିହାସିକମାନେ ଏ ପର୍ଯ୍ୟନ୍ତ ଉଦ୍ଧାର କରିପାରିନାହାନ୍ତି ।

ତେବେ, ଏତିକି ଜଣାଯାଇଛି ଯେ ଉଭୟଙ୍କ ରାଜତ୍ୱ ସମୟରେ ଏ ଦେଶର ନାମ ଥିଲା 'କଳିଙ୍ଗ' । ମଗଧ ସମ୍ରାଟ ଅଶୋକ ଖ୍ରୀଷ୍ଟପୂର୍ବ ୨୬୫/୨୬୬ରେ କଳିଙ୍ଗ ଆକ୍ରମଣ କରିଥିଲେ । ଏହାହିଁ ଥିଲା ଏହି

ପ୍ରବଳ ପ୍ରତାପୀ ରାଜାଙ୍କ ରାଜତ୍ୱର ପ୍ରଥମ ଓ ଶେଷ ସଂଗ୍ରାମ । କଳିଙ୍ଗ ଯୁଦ୍ଧରେ ଲକ୍ଷେ ଲୋକ ମଲେ ଓ ଦେଢ଼ ଲକ୍ଷ ଲୋକ ବନ୍ଦୀ ହୋଇଥିଲେ (ସେତେବେଳେ ଅର୍ଥାତ୍ ଆଜିକୁ ଦୁଇ ହଜାର ବର୍ଷ ତଳେ କଳିଙ୍ଗର ଲୋକ ସଂଖ୍ୟା କେତେ ଥିଲା ?) ଏବଂ ଏହାପରେ ସମ୍ରାଟ ଅଶୋକ ବୌଦ୍ଧ ଧର୍ମ ଗ୍ରହଣ କରିଥିଲେ । ଶସ୍ତ୍ରର ବିଜୟ ପରିବର୍ତ୍ତେ ଧର୍ମର ବିଜୟ ହୋଇଥିଲା ତାଙ୍କର ଧ୍ୟେୟ ।

କଳିଙ୍ଗ ସମ୍ରାଟ ଖାରବେଳ ନିଜର ଅଠର ବର୍ଷର ରାଜତ୍ୱ ବିବରଣୀରେ ବାତ୍ୟା ବିଧ୍ୱସ୍ତ କଳିଙ୍ଗ ନଗର (ରାଜଧାନୀ) ର ପୁନଃ ନିର୍ମାଣ, ନୃତ୍ୟଗୀତ ଅଭିନୟ ବିଦ୍ୟାରେ ତାଙ୍କର ପାରଦର୍ଶିତା ଆଦି ବର୍ଣ୍ଣନା କରିବା ସହିତ ନନ୍ଦରାଜା କଳିଙ୍ଗରୁ ନେଇ ଯାଇଥିବା "ଜିନାସନ"କୁ ସେ ପୁଣିଥରେ ଆଣି ସ୍ଥାପନା କରିଥିଲେ ବୋଲି ଉଲ୍ଲେଖ କରିଛନ୍ତି । ଏହା ସହିତ "ପୃଥୁଡ଼କଦର୍ଭ ନଙ୍ଗଲେନ କାସୟତି" ବୋଲି ଯେଉଁ ଖଣ୍ଡବାକ୍ୟ ରହିଛି, ତାହା ପୀଥୁଣ୍ଡ ନଗରୀକୁ କୁଶ ଓ ଜଳମଗ୍ନତାରୁ ରକ୍ଷା କରିବା କିମ୍ବା ଗଦର୍ଭ ଲଙ୍ଗଳରେ କର୍ଷଣ କରିବାକୁ ବୁଝାଇଥାଏ ।

ଦ୍ୱିମତରେ ଗବେଷଣା ମଧ୍ୟରେ ଅନେକେ ମନେ କରନ୍ତି ଯେ ଖାରବେଳଙ୍କ ହାତୀଗୁମ୍ଫା ଶିଳାଲେଖାବର୍ଣ୍ଣିତ ଏହି ଅଂଶ ଅର୍ଥାତ "ଜିନାସନ" ଓ ପୃଥୁଡ଼କ ନଗରୀ ଯଥାକ୍ରମେ ଶ୍ରୀଜଗନ୍ନାଥ ଓ ପୁରୀ କ୍ଷେତ୍ର ପ୍ରତି ଇଙ୍ଗିତ କରୁଛି । ମାତ୍ର, ବାସ୍ତବରେ ଏହାର ପ୍ରକୃତ ରହସ୍ୟ ଏପର୍ଯ୍ୟନ୍ତ ଉଦ୍ଘାଟିତ ହୋଇପାରନାହିଁ ।

**ବୌଦ୍ଧ ଓ ଜୈନ ଧର୍ମ ସହିତ ଶ୍ରୀଜଗନ୍ନାଥଙ୍କ ସଂପର୍କ ?**

ଉଭୟ ବୌଦ୍ଧ ଓ ଜୈନଧର୍ମର ପ୍ରାକ୍ ସ୍ୱରୂପ କିପରି ଥିଲା, ସେ ସଂପର୍କରେ ଆଜି ପର୍ଯ୍ୟନ୍ତ ବିଶେଷ କିଛି ଜଣାନାହିଁ । ତେବେ, ଏକଥା ସତ ଯେ ପୂର୍ବରୁ ଲୋକପ୍ରିୟ ଧର୍ମଧାରଣାକୁ ବିଧିବଦ୍ଧ ଭାବରେ ଏକ ଏକ ନୂତନ ରୂପ ଦେବାପାଇଁ ବୁଦ୍ଧଦେବ ଓ ମହାବୀର ପ୍ରଚେଷ୍ଟା କରି ସଫଳ ହୋଇଥିଲେ । ମାତ୍ର ଆରମ୍ଭରୁ ଏହା ହିନ୍ଦୁଧର୍ମର ବିରୋଧରେ ଏକ ସମାନ୍ତରାଳ ଧର୍ମାଚରଣକୁ ପ୍ରୋତ୍ସାହିତ କରିଥିଲେ ହେଁ ତାହା ଦ୍ୱାରା ଗଭୀର ଭାବେ ପ୍ରଭାବିତ ମଧ୍ୟ ହୋଇଥିଲେ । ଜୈନ ଧର୍ମର ଋଷଭଦେବଙ୍କ ଠାରୁ ଆରମ୍ଭ କରି ଅନେକ ତୀର୍ଥଙ୍କର ହି... ଦେବତାମାନଙ୍କର ଅବତାର ସହିତ ସାମଞ୍ଜସ୍ୟ ରକ୍ଷା କରିଥିଲା ... ସ୍ୱୟଂ ଜଗନ୍ନାଥଙ୍କୁ ବୁଦ୍ଧାବତାର ରୂପେ ମଧ୍ୟ ପ୍ରଚାର କରାଯାଉଥିଲା । ଅହିଂସାକୁ ଆଧାର କରି ପ୍ରବର୍ତ୍ତିତ ବୌଦ୍ଧ ଓ ଜୈନଧର୍ମ ପରବର୍ତ୍ତୀ ସମୟରେ ହିନ୍ଦୁଧର୍ମ ସହିତ ଅଧିକରୁ ଅଧିକ ସାମଞ୍ଜସ୍ୟ ରକ୍ଷା କରିଥିଲେ ।

ବୌଦ୍ଧଧର୍ମର ତ୍ରିରତ୍ନ ସହିତ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ତୁଳନା କରାଗଲା ବେଳେ "ଜିନାସନ" ନାମକ ... ଶ୍ରୀଜଗନ୍ନାଥ ହୋଇପାରନ୍ତି ବୋଲି ଅନେକ ବିଶ୍ୱାସ କରନ୍ତି ।

"ସଙ୍କୁଡ଼ି" ଭୋଗ (ଏକ ସ୍ଥାନରେ ବହୁ ଭକ୍ତଙ୍କର ଏକତ୍ର ପଙ୍କ୍ତି ଭୋଜନ) କୁ କୌଣସି ଏକ ସମୟରେ ଜୈନଧର୍ମ ଦ୍ୱାରା ବିରୋଧ କରାଯାଉଥିଲା ବୋଲି ପଣ୍ଡିତ ନୀଳକଣ୍ଠ ଦାସ ମତ ପ୍ରକାଶ କରିଛନ୍ତି । ମାତ୍ର ପୁରୀର ଶ୍ରୀମନ୍ଦିରରେ ଏହା ଏକ ପ୍ରମୁଖ ବ୍ୟବସ୍ଥା ଓ ଲୋକପ୍ରିୟ ।

ଯେଉଁ ସମୟରେ "ସଙ୍କୁଡ଼ି" ଭୋଗ ବ୍ୟବସ୍ଥା ଶ୍ରୀଜଗନ୍ନାଥଙ୍କ ଆରମ୍ଭ ହେଲା, ସମ୍ଭବତଃ ସେହି ସମୟରୁ ଜୈନଧର୍ମଠାରୁ ଦୂରେଇ ହେବା ଆରମ୍ଭ ହୋଇଥିଲା । ସେହିପରି ମୂଳତଃ ବୌଦ୍ଧଧର୍ମ ... ଚିନ୍ତାଧାରା କୌଣସି ଏକ ସମୟରେ ବିଚ୍ଛିନ୍ନ ହୋଇ ହିନ୍ଦୁଧର୍ମ ... ନିକଟବର୍ତ୍ତୀ ହୋଇଥିବା ଅନୁମାନ କରାଯାଇପାରେ । ... ଚିନ୍ତାଧାରାକୁ ଅନୁଧ୍ୟାନ କରାଯାଇପାରେ ଯେ ଯେତେବେଳେ ବୌଦ୍ଧ ଓ ଜୈନଧର୍ମର ସ୍ୱତନ୍ତ୍ର ରୂପ ପ୍ରକଟିତ ହୋଇନଥିଲା, ଅର୍ଥାତ୍ ... ୫ମ ଶତାବ୍ଦୀ ପୂର୍ବରୁ, ସେତେବେଳେ ସେହି ପ୍ରାଚୀନ ଧର୍ମ ... ଓଡ଼ିଶାର ଉପକୂଳ ଅଞ୍ଚଳରେ ବସବାସ କରୁଥିବା ... ଅଧିବାସୀଙ୍କ ଦ୍ୱାରା ଉପାସନା ନିମନ୍ତେ ଏକ ପ୍ରତୀକାତ୍ମକ ... କରିଥିଲା । ସେହି ପ୍ରତୀକାତ୍ମକ ସ୍ୱରୂପ ପରବର୍ତ୍ତୀ ... ଉପାସନା, ନୃସିଂହ ଉପାସନା ମଧ୍ୟରେ ଆର୍ଯ୍ୟ ... ଦ୍ୱାରା ଏକ ନୂତନ ରୂପ ପ୍ରାପ୍ତ ହେଲା ଏବଂ କାଳକ୍ରମେ ... ଆଦି ଚତୁର୍ଦ୍ଧାମୂର୍ତ୍ତିର ରୂପ ପରିଗ୍ରହ କଲେ ।

*ସହକାରୀ କେନ୍ଦ୍ର ନିର୍ଦ୍ଦେଶକ, ଆକାଶବାଣୀ, ...*

• • •

# ଗୁଣ୍ଡିଚାଯାତ୍ରା

ଗୁଣ୍ଡିଚାଘର ସହିତ ଶ୍ରୀଜଗନ୍ନାଥଙ୍କ ସମ୍ପର୍କ ଅତି ନିବିଡ଼ । ଗୁଣ୍ଡିଚା ମଣ୍ଡପ ହେଉଛି, ଶ୍ରୀଜଗନ୍ନାଥଙ୍କର ଜନକପୁରୀ ବା ଜନ୍ମଭୂମି । ଜନ୍ମଭୂମିର ଆକର୍ଷଣ କେହି କେବେ ଟାଳି ଦେଇପାରେ ତେଣୁ ଶ୍ରୀଜଗନ୍ନାଥ ନିଜ ମୁଖରେ କହିଛନ୍ତି-

"ଗୁଣ୍ଡିଚା ନାମେ ମୋ ଯାତ୍ରା ପରମ ପାବନୀ
ରଥଯାତ୍ରା ନାମେ ଖ୍ୟାତ ହେବ ଯେ ଅବନୀ ।"
(ଜଗନ୍ନାଥ ପୁରାଣ)

ଗୁର୍ଜ୍ଜରାଣ ରାଜତନୟା ଗୁଣ୍ଡିଚା ଦେବୀ ଥିଲେ ଇନ୍ଦ୍ରଦ୍ୟୁମ୍ନ ମହାରାଜାଙ୍କର ସହଧର୍ମିଣୀ । ଇନ୍ଦ୍ରଦ୍ୟୁମ୍ନ ଶ୍ରୀଜଗନ୍ନାଥଙ୍କୁ ନୀଳାଦ୍ରିର ଶ୍ରୀମନ୍ଦିରରେ ପ୍ରତିଷ୍ଠା କରି ପାରିବା ପରେ ଗୁଣ୍ଡିଚାଦେବୀ ରଥଯାତ୍ରାର ଆୟୋଜନ କରିଥିଲେ । ଗୁଣ୍ଡିଚାଦେବୀ ଏହି ଯାତ୍ରା ଆୟୋଜନ କରିଥିବାରୁ ଓ ଯେହେତୁ ଶ୍ରୀଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ଗୁଣ୍ଡିଚା ମଣ୍ଡପକୁ ବିଜେ କରୁଥିବାରୁ ଏହାକୁ ମଧ୍ୟ ଗୁଣ୍ଡିଚା ଯାତ୍ରା କୁହାଯାଏ । ବହୁ ପୁରାଣରେ ବର୍ଣ୍ଣିତ ଯେ ପୂର୍ବକାଳରେ ଇନ୍ଦ୍ରଦ୍ୟୁମ୍ନ ଶ୍ରୀଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା କରି ନିଜ ମନର ଅଭିଳାଷ ବ୍ୟକ୍ତ କରିଥିଲେ ଯେ ତାଙ୍କ ସରୋବର (ଇନ୍ଦ୍ରଦ୍ୟୁମ୍ନ ସରୋବର) ସନ୍ନିକଟରେ ସାତ ଦିନ ପର୍ଯ୍ୟନ୍ତ ଯାତ୍ରା ହେବ ଏବଂ ଏ ଯାତ୍ରା ଭକ୍ତିମୁକ୍ତି ପ୍ରଦାୟକ 'ଗୁଣ୍ଡିଚା' ନାମରେ ଖ୍ୟାତ ହେବ ।



# ଶ୍ରୀମନ୍ଦିର ସଂରକ୍ଷଣ- ଏକ ଅନୁଶୀଳନ

● ଶ୍ରୀ ଶରତଚନ୍ଦ୍ର ମହାପାତ୍ର

୧୮୭୫ ମସିହା ଜୁଲାଇମାସ ୯ ତାରିଖରେ ଗୋଟିଏ ବିରାଟ ପଥର ମନ୍ଦିରର ଭିତରପଟୁ ଶ୍ରୀଜଗନ୍ନାଥଙ୍କ ଗମ୍ଭୀରା ଭିତରେ ପଡ଼ିଥିଲା । ଏହି ପଥର କେଉଁଠାରୁ ପଡ଼ିଲା, ତାହା ଜଣାପଡ଼ିଲା ନାହିଁ । ୧୯୩୯ ମସିହା ଡ଼ିସେମ୍ବର ୧୪ ତାରିଖରେ ଆଉଏକ ବିରାଟ ପଥର ଠିକ୍ ଲକ୍ଷ୍ମୀଦେବୀ ସାମ୍ନାରେ ପଡ଼ିଲା । ପ୍ରଥମଥର ପଡ଼ିଥିବା ପଥରଟି ଏପର୍ଯ୍ୟନ୍ତ ଦକ୍ଷିଣଦ୍ୱାର ପଟେ ନୀଳାଚଳ ଉପବନକୁ ଯିବା ବାଟରେ ଥୁଆ ହୋଇଛି । ୧୯୬୧ ମସିହା ଜାନୁଆରୀ ୨୦ ତାରିଖରେ ଦେଉଳ ବାହାରପଟୁ ଏକ ଚୂନ ଅତଡ଼ା ପଡ଼ିଥିଲା । ୧୯୬୯ ମସିହା ଜାନୁଆରୀ ୨୨ ତାରିଖରେ ମନ୍ଦିରର ଦକ୍ଷିଣପୂର୍ବ କୋଣରୁ ଆଉ ଏକ ବିରାଟ ଚୂନ ପଲସ୍ତରା ପଡ଼ିବା ଫଳରେ ଆତଙ୍କ ସୃଷ୍ଟି ହୋଇଥିଲା । ୧୯୮୮ ମସିହାର ସେପ୍ଟେମ୍ବର ୧୯ ତାରିଖରେ ଦକ୍ଷିଣପଟୁ ଏକ କ୍ଷୁଦ୍ରାକୃତି ପଥର ପଡ଼ିଥିଲା । ୧୯୯୦ ମସିହା ଜୁନ୍ ୧୦ ତାରିଖରେ ଅଁଳାବେଢ଼ା ତଳପଟୁ ପ୍ରାୟ ୫ ଟନ୍ ଓଜନର ଏକ ପଥର ପଶ୍ଚିମ ଦ୍ୱାର ପଟକୁ ପଡ଼ିଥିଲା । ୧୯୯୨ ମସିହା ଜୁନ୍ ୧୩ରେ ପ୍ରାୟ ୧ଟନ୍ ଓଜନର ଦୁଇଟି ପଥର ଗର୍ଭଗୃହ ମଧ୍ୟରେ ପଡ଼ିଥିଲା ।

ମାଦଳାପାଞ୍ଜି ବର୍ଣ୍ଣନା ଅନୁଯାୟୀ ରାମଚନ୍ଦ୍ରଦେବ (୧୫୬୮-୧୬୦୦)ଙ୍କ ସମୟରେ ପ୍ରବଳ ଝଡ଼ ଫଳରେ ମନ୍ଦିର ଶିଖରରୁ ନୀଳଚକ୍ର ଉଡ଼ିଯାଇ ନିକଟସ୍ଥ ଏକ ଗଭୀର ଧାନ ବିଲରେ ପଡ଼ିଥିଲା । ଏହା ରାଜାଙ୍କ ଦ୍ୱାରା ପୁନଃ ସ୍ଥାପିତ ହୋଇଥିଲା । ଦିବ୍ୟସିଂହ ଦେବ (୧୬୮୮ରୁ ୧୭୧୬)ଙ୍କ ସମୟରେ ପୁନର୍ବାର ଏକ ପ୍ରବଳ ଝଡ଼ ଫଳରେ ନୀଳଚକ୍ର ଖଣ୍ଡଖଣ୍ଡ ହୋଇ ଗଣେଶ ମନ୍ଦିର ସାମ୍ନାରେ ପଡ଼ିଥିଲା ।

ଅନ୍ୟାନ୍ୟ ମନ୍ଦିରମାନଙ୍କର ଚୂଡ଼ରେ ଥିବା ପାଷାଣର ଚକ୍ରଗୁଡ଼ିକ ମଧ୍ୟ ଏହି ପ୍ରବଳ ଝଡ଼ ପ୍ରକୋପରେ ଖଣ୍ଡ ବିଖଣ୍ଡ ହୋଇଥିଲା । ଶ୍ରୀମନ୍ଦିର ଗର୍ଭଗୃହ ମଧ୍ୟରୁ ମିଳିଥିବା ଦୁଇଟି ଶିଳାଲେଖ ଅନୁଯାୟୀ ରାଜା ବୀର କିଶୋର ଦେବଙ୍କ (୧୭୩୯-୪୩)ସମୟରେ ମନ୍ଦିରର ବ୍ୟାପକ ମରାମତି ହୋଇଥିଲା । ଶ୍ରୀମନ୍ଦିର ଗର୍ଭ ଗୃହର ଉପର ମହଲାରୁ ମିଳିଥିବା ଏକ ଶିଳାଲେଖ ଅନୁଯାୟୀ ମହାରାଜା ବୀରକିଶୋର ଦେବଙ୍କ ୨୮ ଅଙ୍କରେ ବଡ଼ ଦେଉଳର ଚୂନ ନୀଳାଦ୍ରିପାଟ ମହାଦେଈ କଲେ । ବୀର କିଶୋର ଦେବଙ୍କ ୨୮ ଅଙ୍କ ଖ୍ରୀଷ୍ଟାବ୍ଦ ୧୭୬୮ ବୋଲି ଜଣାଯାଏ । "ଅନ୍ୟାର ବଲ୍ଲୀଲତା" ନାମକ ଶ୍ୟାମ ସୁନ୍ଦର ଦେବଙ୍କ ଦ୍ୱାରା ରଚିତ ଏକ ଅପ୍ରକାଶିତ କାବ୍ୟରୁ ଜଣାଯାଏ ଯେ, ତାଙ୍କ ମାଁ (ନୀଳାଦ୍ରି ପଟ୍ଟମହାଦେଈ) ଭଣ୍ଡାରରେ ଥିବା ସମସ୍ତ କଉଡ଼ିକୁ ପୋଡ଼ି ଶ୍ରୀମନ୍ଦିରରେ ଚୂନ କରାଇଥିଲେ । ରାଜ୍ୟ ସଂଗ୍ରହାଳୟରେ ଅପ୍ରକାଶିତ ଏହି ତାଳପତ୍ର ପାଣ୍ଡୁଲିପିରୁ ତତ୍କାଳୀନ ଐତିହାସିକ ବିବରଣୀ ସମ୍ବନ୍ଧରେ କିଛି ସୂଚନା ମିଳେ । ଏହି କାବ୍ୟର ରଚନାକାଳ ପୂର୍ବ ସୂଚିତ ସମୟ ଅର୍ଥାତ୍ ୧୭୬୮ ଖ୍ରୀଷ୍ଟାବ୍ଦ ସହ ଏବଂ ଶିଳାଲେଖ ବର୍ଣ୍ଣିତ ବୀରକିଶୋର ଦେବଙ୍କର ୨୮ ଅଙ୍କ ସହ ମିଳୁଥିବାରୁ ଏହାର ପ୍ରାମାଣିକତା ନିଃସନ୍ଦେହ ।

ଉପରୋକ୍ତ ବିବରଣୀମାନଙ୍କରୁ ଗୋଟିଏ କଥା ସ୍ପଷ୍ଟ ହୁଏ ଯେ ଷୋଡ଼ଶ ଶତାବ୍ଦୀରୁ ବିଭିନ୍ନ ସମୟରେ ଶ୍ରୀମନ୍ଦିରରୁ ପଥର ଏବଂ ଚୂନ ଅତଡ଼ା ଖସି ମନ୍ଦିରର ସ୍ଥାପତ୍ୟ ଦୃଢ଼ତା ସନ୍ଦେହ ଓ ଆଶଙ୍କା ସୃଷ୍ଟି କରିଛି । ମନ୍ଦିରର କ୍ରମାଗତ ଦୁରବସ୍ଥା ଏବଂ ବିଭିନ୍ନ ଅଂଶରୁ ପାଣିଝରିବା ଫଳରେ ଶ୍ରୀଜଗନ୍ନାଥ ମନ୍ଦିର ପରିଚାଳନା କମିଟି ଏହାର ରକ୍ଷଣାବେକ୍ଷଣ ନିମନ୍ତେ ଭାରତୀୟ ପ୍ରତ୍ନତତ୍ତ୍ୱ ବିଭାଗକୁ ୧୯୭୪ ମସିହାରେ ରକ୍ଷଣାବେକ୍ଷଣ ଦାୟିତ୍ୱ ଦେଲେ । ଡ଼ଃ ଦେଶପାଣ୍ଡେଙ୍କ ଅଧ୍ୟକ୍ଷତାରେ ଏକ ବିଶେଷଜ୍ଞ କମିଟି ଗଠିତ ହେଲା । ପରୀକ୍ଷାମୂଳକଭାବରେ ଚୂନ ଛଡ଼ାଇ ଅତି କମନୀୟ କଳାକୃତି ଏହି ଚୂନ ପଲସ୍ତରା ତଳେ ଥିବାର ପ୍ରମାଣ ପାଇଲେ । ତାପରେ ଚୂନ ଛଡ଼ାଯିବା କାର୍ଯ୍ୟ ଉକ୍ତ ବିଭାଗ ଦ୍ୱାରା ଆରମ୍ଭ କରାଗଲା ।

୧୩.୮.୧୯୯୨ ମସିହାରେ ଶ୍ରୀମନ୍ଦିର ଗର୍ଭଗୃହ ଛାତରୁ ପୁଣି ଏକ ପଥର ଖସିବା ଫଳରେ ତୁରନ୍ତ ୧୫.୮.୯୨ଦିନ ପ୍ରତ୍ନତତ୍ତ୍ୱ ବିଭାଗର ବିଶେଷଜ୍ଞମାନେ ଶ୍ରୀମନ୍ଦିର ଗର୍ଭଗୃହ ପରୀକ୍ଷା କରିଥିଲେ । ଦେଖାଗଲା :-It was Noticed that only the Projecting part of the stone slab used in Corbell Courses had Cracked almost in a straight line, As an immediate Measure necessary support to the interior of the temple were provided after erecting the scaffolding on either side of the entrance gate .

ଭାରତର ବିଭିନ୍ନ ବୈଷୟିକଜ୍ଞାନସମ୍ପନ୍ନ ଅନୁଷ୍ଠାନରୁ Structural engineering research centre, ghaziabad, Central building Research Institute, Roorkee and the National Geophysical Research Institute. ୫.୯.୧୯୯୨ରେ ଶ୍ରୀମନ୍ଦିର ଗର୍ଭଗୃହ ପରୀକ୍ଷାରୁ ଦେଖି ନିମ୍ନୋକ୍ତ ବିବରଣୀ ଦେଇଥିଲେ ।

"It was Noticed that there are Cracks in the supporting walls above the entrance on the two Sides both on the ground floor and the first floor. In the ground floor, roof four cast iron beams are provided to support the stone slabs above it. However, there is a gap and one beam is missing . A few corbelled stones in the Comer have also fallen in the past. on the first floor, the southem corbelled face of the corridor are bulging out Considerably while on the Northem face a couple of stones have bulged out slightly indicating that they are overstressed perhaps because of an Improper distribution of load. Some hair line cracks were also Noticed around all the four comers of the first floor. These May be on account of Some inherent defects in the Materials used and the very high humidity because of rituals and the presence of hundreds of devotees in the garbha-griha

Minutes of the expert Committee on shree Jagannath temple, puri 1973-78

ସେମାନେ ଦେଖିଲେ ମନ୍ଦିର ଭିତରଟି ତିନି ଭାଗରେ ବିଭକ୍ତ ତଥା ଗର୍ଭଗୃହ, ମଧ୍ୟଗୃହ ବା ପ୍ରଥମ ମହଲା ଏବଂ ଦ୍ୱିତୀୟ ମହଲା ବା ଶେଷ ଗୃହ । ଗର୍ଭଗୃହ ଉପରୁ ପ୍ରଥମ ମହଲାକୁ ଏକ ଛୋଟ ପଥର କଟା ପାହାଚ ଅଛି । ଗର୍ଭଗୃହରେ ଦକ୍ଷିଣପଟେ ଥିବା କୋଡ଼େଲ (Corbelled) ପଥର ବାହାରକୁ ବାହାରି ଆସିଛି । (Bulged Out) ଏବଂ ଉପରପଟେ ଦୁଇଟି ପଥର ସେହିଭଳି ଟିକେ ବାହାରକୁ ଆସିଛି । ପଥର ବାହାରି ଆସିବାର କାରଣ ସ୍ୱରୂପ ଅତ୍ୟଧିକ ଭାର (over-Stressed Perhaps because of an improper distribution of load) ମୁଖ୍ୟ କାରଣ ବୋଲି ସେମାନେ ସ୍ଥିର କରିଥିଲେ । ଉପର ମହଲା ବା ଶେଷ ଗୃହ ପାଇଁ କୌଣସି ପାହାଚ ନାହିଁ କିନ୍ତୁ ବାହାରପଟୁ ପବନ ଆସୁଥିବା ବାଟ (Ventilator)ରେ ପ୍ରବେଶ କରି ଶେଷ ମହଲା ଭିତରକୁ ଯାଇହେବ । ସେଥିରେ ପ୍ରବେଶ କରି ଦେଖାଗଲା ଯେ, ପ୍ରଚୁର ପରିମାଣରେ ଧାନ ଗଚ୍ଛିତ ଅଛି । ସେଠାରେ ଏକ ଶିଳାଲେଖ ମଧ୍ୟ ଅଛି । ସେଇ ଶିଳାଲେଖରୁ ଜଣାଯାଏ ଯେ ଶ୍ରୀ ବୀରକିଶୋର ଦେବଙ୍କ ୨୮ ଅଙ୍କରେ ବଡ଼ ଦେଉଳର ଚୂନ ଶ୍ରୀ ନୀଳାଦ୍ରିପାଟ ମହାଦେବୀ କଲେ । ତାପୂର୍ବରୁ ଦିଆଯାଇଥିବା ସବୁ ଚୂନ ବାହାର କରାଯାଇ ଏହି ଚୂନ ଦିଆଗଲା ।

ଉପରୋକ୍ତ ବିବରଣୀରୁ ନିଶ୍ଚିତ ଭାବରେ ଜଣାଯାଏ ଯେ, ଶ୍ରୀମନ୍ଦିର ବହୁବାର ମରାମତି ହେଉଛି ଏବଂ ଶେଷରେ ବହଳିଆ ଚୂନ ପଲସ୍ତରା ମାଧ୍ୟମରେ ମନ୍ଦିରକୁ ରକ୍ଷା କରାଯିବା ପାଇଁ ଚେଷ୍ଟା କରାଯାଇଛି । ବର୍ତ୍ତମାନ ବିଶେଷଜ୍ଞ କମିଟିର ମତାମତ ଅନୁଯାୟୀ ଦୁଇଟି ବିଷୟରେ କୌଣସି କାର୍ଯ୍ୟାନୁଷ୍ଠାନ ହୋଇ ନଥିବାର ଜଣାପଡ଼େ । ପ୍ରଥମଟି ହେଲା Ground water Survey ବା ଶ୍ରୀମନ୍ଦିର ଭୂମିତଳ ଜଳର ସର୍ବେକ୍ଷଣରୁ ଦେଖାଯାଉଛି ଯେ, ମନ୍ଦିର ମଧ୍ୟରେ ଥିବା କୂଅଗୁଡ଼ିକ ଯଥା : ବିମଳାଙ୍କ ପାଖ ଶୀତଳାଙ୍କ ସାମ୍ନା ଏବଂ ରୋଷଠାରେ ଥିବା କୂଅରେ ଜଳ ପତନ ପ୍ରାୟ ୧୫ ରୁ ୨୦ ଫୁଟ୍ ମଧ୍ୟରେ ଅଛି । ସେହି ଜଳ ସ୍ତରକୁ ବିଚାର କଲେ ଶ୍ରୀମନ୍ଦିରର ମୂଳଦୁଆର ପ୍ରାୟ ୧୫, ୨୦ ଫୁଟ ମଧ୍ୟରେ ଜଳସ୍ତର ଅଛି । ଏହା ନିଶ୍ଚିତ ଭାବରେ ମୂଳଦୁଆକୁ ପ୍ରଭାବିତ କରିବା ସମ୍ଭବ । ସେମାନଙ୍କର ଦ୍ୱିତୀୟ ଏବଂ ଗୁରୁତ୍ୱପୂର୍ଣ୍ଣ ସୁପାରିଶ୍ ହେଲା ଯେ, ଶ୍ରୀମନ୍ଦିରର ଅବସ୍ଥିତି ନିରାପଦ ଭୂମିକମ୍ପ ବଳୟ ନଂ ତିନିରେ ଥିଲେ ମଧ୍ୟ ପରିମାଣାତ୍ମକ ଭୂମିକମ୍ପ ନକ୍ସା ଅନୁଯାୟୀ ପୁରୀର ଦକ୍ଷିଣ ପୂର୍ବପଟେ ୧୦୦ରୁ ୧୫୦ କିଲୋମିଟର ଦୂରତ୍ୱରେ ଭୂମିକମ୍ପର ପ୍ରଭାବ ଅନୁଭୂତ ହୋଇଅଛି । ୧୯୭୮, ୧୯୮୨ ଏବଂ ୧୯୮୫ ମସିହାରେ ଶ୍ରୀମନ୍ଦିର ପରିପାର୍ଶ୍ୱରେ ସାମାନ୍ୟ ଭୂମିକମ୍ପ ଅନୁଭୂତ ହୋଇଥିବାରୁ ଶ୍ରୀମନ୍ଦିରକୁ ସମ୍ପୂର୍ଣ୍ଣ ଭୂମିକମ୍ପମୁକ୍ତ ଅଞ୍ଚଳ ଭାବିବା ଉଚିତ୍ ନୁହେଁ । ତେଣୁ ସେମାନଙ୍କ ମତରେ ଏକ ଭ୍ରାମ୍ୟମାଣ ଭୂମିକମ୍ପ ନିରୂପଣ କେନ୍ଦ୍ର ସ୍ଥାପନ କରାଯିବା ଉଚିତ । ଏହି ସମ୍ବନ୍ଧରେ ମଧ୍ୟ ଏ ଯାବତ୍ କୌଣସି କାର୍ଯ୍ୟାନୁଷ୍ଠାନ ହୋଇନାହିଁ ।

୨୯.୯.୯୨ରେ ଶ୍ରୀଜିଉମାନଙ୍କୁ ରତ୍ନ ସିଂହାସନରୁ ଅଣାଯାଇ ଅଣସର ପିଣ୍ଡିକୁ ଲାଗି ଏକ କାଷ୍ଠାସନରେ ଅବସ୍ଥାପିତ କରାଯାଇ ଗର୍ଭଗୃହ ୪.୬.୯୩ ସୁଦ୍ଧା ମରାମତି କରାଯାଇଥିଲା । "ଶ୍ରୀମନ୍ଦିର ସୁରକ୍ଷା" ଶୀର୍ଷକ ଏକ ଶ୍ୱେତପତ୍ର ମଧ୍ୟ ବିଧାନସଭାରେ ଉପସ୍ଥାପିତ କରାଯାଇଥିଲା । ଶ୍ରୀମନ୍ଦିରରୁ ପଲସ୍ତରା ଛଡ଼ାଯିବାପରେ ବହୁ କମନୀୟ କଳାକୃତି ସମ୍ପନ୍ନ ମୂର୍ତ୍ତିମାନ ବାହାରି ଥିଲା । କାଳୀୟଦଳନ, ଗିରିଗୋବର୍ଦ୍ଧନ, ବକାସୁର ବଧ, କଂସବଧ ଇତ୍ୟାଦି ଶ୍ରୀକୃଷ୍ଣଙ୍କର ଲୀଳା ତଥା ମଥୁରାରୁ ଦ୍ୱାରିକା ଯିବାର ଦୃଶ୍ୟ, ବିଷ୍ଣୁଙ୍କର ଦଶଅବତାର, ଅଷ୍ଟ ଦିଗ୍‌ପାଳ ଇତ୍ୟାଦି ଅନ୍ୟାନ୍ୟ ମୂର୍ତ୍ତି ମଧ୍ୟ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସବୁଠୁ ବୈଶିଷ୍ଟ୍ୟପୂର୍ଣ୍ଣ ଆବିଷ୍କାର ହେଉଛି ବରାହ ମିହିରଙ୍କ ଦ୍ୱାରା ବର୍ଣ୍ଣିତ ବିଷ୍ଣୁଙ୍କ ୨୪ ଗୋଟି ରୂପ ଶିଳାବିଗ୍ରହ ମାଧ୍ୟମରେ ମନ୍ଦିର ବାହୁରେ ଅଙ୍କିତ ହୋଇଛନ୍ତି । ସମଗ୍ର ଦକ୍ଷିଣ ଓ ପୂର୍ବ ଭାରତରେ ଏହି ଭଳି ୨୪ ପ୍ରକାର ବିଷ୍ଣୁରୂପ ଦେଖିବାକୁ ମିଳେନାହିଁ ।

ଦ୍ୱାଦଶ ଶତାବ୍ଦୀରେ ନିର୍ମିତ ଶ୍ରୀମନ୍ଦିର ସମଗ୍ର ପୂର୍ବଭାରତରେ ସର୍ବୋଚ୍ଚ ମନ୍ଦିର । ଭୂମିଠାରୁ ୩୦ ମିଟର ଉଚ୍ଚ ମଧ୍ୟଯୁଗୀୟ ଏହି ମନ୍ଦିର ଦୁଇ ପ୍ରାଚୀର ଓ ଚାରି ଦ୍ୱାର ବିଶିଷ୍ଟ ଏକ ବିରାଟ ଦୁର୍ଗଭଳି ନିର୍ମିତ । ପର୍ବ ଓ ଉତ୍ସବ ବହୁଳ ଏହି ମନ୍ଦିରର ମରାମତି କାର୍ଯ୍ୟ ପ୍ରତ୍ନତତ୍ତ୍ୱ ବିଭାଗ ପକ୍ଷେ ଏକ ଦୁଃସାଧ୍ୟ ବ୍ୟାପାର । ରଥଯାତ୍ରାରେ ମହାପ୍ରଭୁ ନଅଦିନ ବାହାରେ ଥିବା ଘରକୁ ଯିବା ବେଳ ହିଁ ମରାମତିର ଏକମାତ୍ର ସମୟ । ତଥାପି ବର୍ଷ ବର୍ଷ ବିତିଯିବା ପରେ ମଧ୍ୟ ମୁଖ୍ୟ ମନ୍ଦିର ଓ ମନ୍ଦିର ପରିସର ମଧ୍ୟସ୍ଥ ୯୬ ଗୋଟି ମନ୍ଦିରର ମରାମତି କାର୍ଯ୍ୟ ପୂର୍ଣ୍ଣାଙ୍ଗ ରୂପେ ଏବଂ ବୈଜ୍ଞାନିକ ସହିତ ନହେବା ଫଳରେ ମନ୍ଦିର ପାଣ୍ଠିରୁ ଅର୍ଥ ବ୍ୟୟ କରାଯାଇ ଅନ୍ୟ ପାର୍ଶ୍ୱମନ୍ଦିରର କାର୍ଯ୍ୟ କରାଯାଉଅଛି । କେନ୍ଦ୍ର ସରକାରଙ୍କ ଦୃଷ୍ଟି ଆକର୍ଷଣ କରି ଆଶାନୁରୂପ ବ୍ୟୟ ବରାଦ ଓ ବିଶେଷଜ୍ଞ କର୍ମଚାରୀ ନିଯୁକ୍ତି କରାଗଲେ ଏହି କାର୍ଯ୍ୟ ସରିପାରିବ ।

ଗତ ୪-୬-୯୯ ରଥଯାତ୍ରା ସମନ୍ୱୟ କମିଟି ବୈଠକରେ ପ୍ରତ୍ନତତ୍ତ୍ୱ ବିଭାଗର ପ୍ରତିନିଧି ଇଞ୍ଜିନିୟର ମହାପ୍ରଭୁ ଗୁଣ୍ଡିଚା ଯିବାସମୟରେ ଶ୍ରୀମନ୍ଦିର ଗର୍ଭଗୃହ ମରାମତି କରାଯିବ ବୋଲି ସୂଚନା ଦେଇଥିଲେ । କିନ୍ତୁ ଅତୀତରେ ଶ୍ରୀଜୀଉଙ୍କର ଦେହରେ ଜଳ ଲାଗିଯିବା ପ୍ରସଙ୍ଗ ସମସ୍ତେ ଉଣାଅଧିକ ଜାଣିଥିଲେ । ଉକ୍ତ ବୈଠକରେ ଦଇତାପତି ନିଯୋଗର ପ୍ରତିନିଧିମାନେ ଶ୍ରୀଜୀଉଙ୍କର ଅଙ୍ଗ ସଂଲଗ୍ନ ପଟା ଏବଂ ଚନ୍ଦନ ଲେପ ବା କାଗଜ ପ୍ରଭୃତି ଶସ୍ତା ଆବରଣ ଦିଆଯାଇ କରାଯିବା ତଥା ମନ୍ଦିର ଠିକ୍ ରୂପେ ମରାମତି ନହେବା ଫଳରେ ଜଳ ହେଉଛି ବୋଲି ମତପ୍ରକାଶ କରିଥିଲେ । ଶ୍ରୀଜୀଉଙ୍କର ଶ୍ରୀଅଙ୍ଗରେ ଜଳ ଲାଗିବା ଏ ଦୁର୍ଭାଗ୍ୟଜନକ ଘଟଣା ହୋଇ ଥିବାରୁ ଦଇତାପତି ନିଯୋଗର ପ୍ରତିନିଧି ଲୋକଙ୍କର ଉପସ୍ଥିତିରେ ଏହା ମରାମତି କରାଯିବା ଉଚିତ୍ ବୋଲି ଜିଲ୍ଲାପାଳଙ୍କ ସିଦ୍ଧାନ୍ତକୁ ସମସ୍ତେ ସମର୍ଥନ କରିଥିଲେ । ଏଠାରେ ମୌଳିକ ପ୍ରଶ୍ନ ହେଉଛି ପୁରୀ ମନ୍ଦିର ଦାୟିତ୍ୱରେ ରହିଥିବା ପ୍ରତ୍ନତତ୍ତ୍ୱ ବିଭାଗର ନିମ୍ନସ୍ତରୀୟ କର୍ମଚାରୀମାନେ କୌଣସି ତତ୍କାଳୀନ ନିଷ୍ପତ୍ତି କାର୍ଯ୍ୟକାରୀ କରାଇବା ସମ୍ଭବ ହେଉନି । ଦୀର୍ଘଦିନ ହେଲା ଓଡ଼ିଶା ଶାଖାର ପ୍ରତ୍ନତତ୍ତ୍ୱ ବିଭାଗ ମୁଖ୍ୟ ପଦବୀ ଖାଲି ପଡ଼ିଛି ଏବଂ ବର୍ତ୍ତମାନ ଦାୟିତ୍ୱରେ ଥିବା ଅଧିକାରୀଙ୍କର କୌଣସି ଅଧିକାର ନାହିଁ ।

କେବଳ ଶ୍ରୀମନ୍ଦିର ଗର୍ଭଗୃହ ନୁହେଁ, ରୋଷଘର, କୋଇଲି ବୈକୁଣ୍ଠ, କଳ୍ପବଟ ପ୍ରାଚୀର ତଥା ଆହୁରି କେତେକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ମରାମତି ରଥଯାତ୍ରା ଅବସରରେ ହିଁ ହୋଇପାରିବ । ସେ ଦୃଷ୍ଟିରୁ ସ୍ଥାନୀୟ ପ୍ରଶାସନ ଲୋକ ପ୍ରତିନିଧିମାନଙ୍କର ଭାରତ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବା ନୈତିକ ଦାୟିତ୍ୱ ।

ଶ୍ରୀଜଗନ୍ନାଥ ଉଚ୍ଚ ବିଦ୍ୟାଳୟ ...
ନିର୍ମାଲ୍ୟଭବନ, ସର୍ବୋଦୟ ନଗର, ପୁରୀ-୨
ଭକ୍ତ ପ୍ରଧାନ



# ଉତ୍କଳୀୟ ସଂସ୍କୃତିରେ ଶ୍ରୀବଳଦେବ ଉପାସନା

● ଶ୍ରୀ ବ୍ରଜବନ୍ଧୁ ଦାଶ

ଉତ୍କଳର ସାଂସ୍କୃତିକ ଧର୍ମଧାରାରେ ବଳଭଦ୍ର ଉପାସନା ଅତି ପ୍ରାଚୀନ । ଆମେ ସାଧାରଣତଃ ପ୍ରଭୁ ବଳଦେବଙ୍କୁ ତିନୋଟି ରୂପରେ ଆରାଧନା କରି ଆସିଛୁ । ସତ୍ୟ ଯୁଗରେ ବିଷ୍ଣୁଙ୍କର ଦଶ ଅବତାର ମଧ୍ୟରୁ ଅଷ୍ଟମ ଅବତାର ହଳଧର ରୂପେ, ଦ୍ୱାପରରେ ଶ୍ରୀକୃଷ୍ଣଙ୍କର ଅଗ୍ରଜ ବଳରାମ ରୂପରେ ଏବଂ କଳିଯୁଗରେ ଶ୍ରୀଜଗନ୍ନାଥଙ୍କ ଜ୍ୟେଷ୍ଠ ଭ୍ରାତା ଚତୁର୍ଦ୍ଧାମୂର୍ତ୍ତିର ବଳଭଦ୍ର ରୂପରେ । ଆଉ କେତେକ ରାମଧର୍ମୀ ଯୁକ୍ତି କରନ୍ତି ତ୍ରେତୟା ଯୁଗରେ ବଳଦେବ ରାମଚନ୍ଦ୍ରଙ୍କ ଅନୁଜ ଲକ୍ଷ୍ମଣ ରୂପରେ ଲୀଳା କରି ଯାଇଛନ୍ତି ।

ଶ୍ରୀମଦ୍ ଭାଗବତରେ ବିଷ୍ଣୁଙ୍କର ଅନେକ ପ୍ରକାର ଅବତାରର ବର୍ଣ୍ଣନା କରାଯାଇଥିଲେ ମଧ୍ୟ ମୁଖ୍ୟତଃ ନିମ୍ନ ଦଶଟି ଅବତାରର ପ୍ରାଧାନ୍ୟ ଅଧିକାଂଶ ସ୍ଥଳରେ ସ୍ଥାନ ପାଇ ଆସିଛି ।

"ମତ୍ସ୍ୟଃ କୂର୍ମୋ ବରାହଶ୍ଚ
ନରସିଂହୋଽଥ ବାମନଃ
ରାମୋ ରାମଶ୍ଚ ରାମଶ୍ଚ
ବୁଦ୍ଧଃ କଲ୍କୀ ଦଶୈ ବତ ।"

ଉପରଲିଖିତ ଉକ୍ତିରେ ଯେଉଁ ତିନି ରାମଙ୍କର ବର୍ଣ୍ଣନା କରାଯାଇଛି , ତନ୍ମଧ୍ୟରୁ ଜଣେ ସୀତା ପତି ରାମଚନ୍ଦ୍ର, ଜଣେ ଯମଦଗ୍ନିଙ୍କ ପୁତ୍ର ପର୍ଶୁରାମ ଏବଂ ଅନ୍ୟଜଣେ ହେଉଛନ୍ତି ବସୁଦେବ ନନ୍ଦନ ବଳରାମ । ସଂସ୍କୃତ ହରିବଂଶରେ ବଳଦେବଙ୍କର ମୁଖ୍ୟତଃ ଦୁଇଟି ରୂପ ପରିକଳ୍ପିତ । ବଳଦେବ ହେଉଛନ୍ତି ସହସ୍ର ହସ୍ତୀର ବଳଧାରଣକାରୀ ଏବଂ ବଳବାନ୍‌ମାନଙ୍କ ମଧ୍ୟରେ ଶ୍ରେଷ୍ଠ । ସେ ଯେପରି ବଳବାନ୍ ସେପରି ଭଦ୍ର ମଧ୍ୟ । ଗଦା ଯୁଦ୍ଧରେ ଧୁରୀଣ, ବାହୁଯୁଦ୍ଧରେ ନିପୁଣ ।ତାହାଙ୍କର ମୁଖ ଅତି ଗମ୍ଭୀର ଏବଂ ଅବିଚଳ । ସେ ହେଉଛନ୍ତି ଶ୍ରୀସିଦ୍ଧ ଯୋଗାଚାର୍ଯ୍ୟ, ଆହ୍ନିକ ସ୍ତୋତ୍ରର ପ୍ରବର୍ତ୍ତକ ଏବଂ ପ୍ରବକ୍ତା ।

ସେ ମଣ୍ଡଳରେ ସହସ୍ର ଫଣା ଧାରଣ କରି ଅନନ୍ତନାଗ ରୂପେ ମଧ୍ୟ ଅବିର୍ଭୂତ । ଏହି ନାଗରାଜ ଶେଷଦେବ ରୂପେ ଉପାସିତ । ଏହାଙ୍କର ସହସ୍ର ଫଣା ମଧ୍ୟରୁ ଗୋଟିଏ ଫଣାରେ ଧରଣୀକୁ ସୋରିଷବତ୍ ଧାରଣ କରିଥାନ୍ତି । ହେମଗର୍ଭା ବସୁଧା ତେଣୁ ଶେଷସ୍ୟୋପରିଶାୟିନୀ ରୂପେ ପ୍ରକାଶିତ୍ୱ ଆସନ ଶୁଦ୍ଧିରେ ସମ୍ବୋଧିତା ହୋଇଛନ୍ତି । ବଳଦେବଙ୍କ ହସ୍ତରେ କୃତାନ୍ତକ ହଳାୟୁଧ ସର୍ପ ଶରୀର ପରି ଶୋଭାପାଏ । ଅନ୍ୟ ହସ୍ତରେ ସୌନନ୍ଦ ମୂଷଳ ପ୍ରକାଶମାନ ।

ଏବଂବିଧ ବଳଦେବଙ୍କ ରୂପବର୍ଣ୍ଣନା କରାଯାଇ ବାମଦେବ ସଂହିତାର ୨୩ ଅଧ୍ୟାୟରେ କୁହାଯାଇଛି-

"ଇନ୍ଦିରାଙ୍ଗ ତ୍ରିନେତ୍ରଂ ମୂଷଳ ହଳଧରଂ ବାସୁଦେବାଗ୍ରଜାତମ୍
ଭୋଗାଙ୍ଗ ଚାରୁ ବକ୍ଷଂ ବିଷଧର ମୁକୁଟଂ ସେବିତଂ ଦେବ ବୃନ୍ଦୈଃ
ବନ୍ଦେଽହଂ ଲୋକନାଥଂ ତ୍ରିଭୁବନ ବିଜିତଂ ସର୍ବସିଦ୍ଧି ପ୍ରଦାନମ୍
ରାମଂ ରାମାଭିରାମଂ ବିକଶିତ ବଦନଂ ରେବତୀ ପ୍ରାଣନାଥମ୍"

ଏହି ଆଦ୍ୟପୁରୁଷ ବଳଦେବ ସହସ୍ରାକ୍ଷ, ସହସ୍ରବାହୁ ସମ୍ପନ୍ନ ଅଟନ୍ତି ।

ବଳଦେବଙ୍କ ପ୍ରକୋତ୍ସବ ଶ୍ରାବଣ ପୂର୍ଣ୍ଣମୀରେ ହିଁ ଅନୁଷ୍ଠିତ ହୋଇଥାଏ । "ଶ୍ରାବଣ ପୌର୍ଣ୍ଣମାସ୍ୟାନ୍ତୁ ବଳଭଦ୍ରସ୍ୟ ପୂଜନଂ" ଶାସ୍ତ୍ର ବିଧାନ ଅଟେ । ଏହି ବିଶାଳ ବିପୁଷ୍ମାନ୍ ପୁରୁଷଙ୍କର ଏକ ମୃଣ୍ମୟୀ ମୂର୍ତ୍ତି ଗଠନ କରାଯାଇ ଶାସନମାନଙ୍କରେ କାଣ୍ୱସଂହିତା ଉଦ୍ଧୃତ ଶତରୁଦ୍ର ମନ୍ତ୍ରରେ ନ୍ୟାସ କରାଯାଇ ବୈଦିକ ଶିବ ବିଧାନ ଅନୁଯାୟୀ ପୂଜାକରାଯାଇଥାଏ । ବଳଦେବଙ୍କ ପୂଜନ ସମୟ ମଧ୍ୟାହ୍ନ କାଳରେ । ବଳଦେବ ଶ୍ରାବଣ ପୂର୍ଣ୍ଣମୀର ମଧ୍ୟାହ୍ନ ସମୟରେ ଜନ୍ମଲାଭ କରିଥିଲେ ବୋଲି ପୁରାଣ ଶାସ୍ତ୍ରମାନଙ୍କରେ ବର୍ଣ୍ଣନାରୁ ପ୍ରତିପାଦିତ ହୋଇଛି ।

ଦିବସର ମଧ୍ୟଭାଗରେ ବାମନ ବଳରାମ, ପର୍ଶୁରାମ, ରାମଚନ୍ଦ୍ର, ଅପରାହ୍ନରେ ବରାହ ଓ ଆଦିତ୍ୟ, ସନ୍ଧ୍ୟା ସମୟରେ ମତ୍ସ୍ୟ କୂର୍ମ ବୁଦ୍ଧ କଲ୍କୀ ଓ ନୃସିଂହ, ରାତ୍ରିକାଳରେ ଶ୍ରୀକୃଷ୍ଣ ଜନ୍ମ ଲାଭ କରିଥିଲେ । ତେଣୁ ବଳଭଦ୍ରଙ୍କ ପ୍ରକୋତ୍ସବ ମଧ୍ୟାହ୍ନରେ ଅନୁଷ୍ଠିତ ହେବା ଶାସ୍ତ୍ରସମ୍ମତ ଅଟେ ।

ଦ୍ୱାଦଶ ଶତାବ୍ଦୀରେ ଓଡ଼ିଆ ଭକ୍ତକବି ଜୟଦେବ ତାଙ୍କ ଦଶାବତାର ବର୍ଣ୍ଣନାରେ ବିଷ୍ଣୁଙ୍କ ଅଷ୍ଟମ ଅବତାର ରୂପେ ସୁଶ୍ରାବ୍ୟ ଲଳିତ ଭାଷାରେ ଅତି ଚମତ୍କାର ଭାବେ ବର୍ଣ୍ଣନା କରି ଲେଖିଛନ୍ତି -

"ବହସି ବପୁଷି ବିଶଦେ ବସନଂ ଜଳଦାଭଂ
ହଳହତି ଭୀତିମିଳିତ ଯମୁନାଭମ୍
କେଶବଧୃତ ହଳଧର ରୂପ
ଜୟଜଗଦୀଶ ହରେ ।"

ଦ୍ୱାପର ଯୁଗରେ ସ୍ୱୟଂ ବିଷ୍ଣୁ ଦ୍ୱୈତ ରୂପରେ ଉଭୟ ଶ୍ରୀକୃଷ୍ଣ ଏବଂ ବଳରାମ ରୂପ ଧାରଣ କରି ମାନବଲୀଳା ସମ୍ବରଣ କରିଥିବା ବିଷୟ ହରିବଂଶରେ ଅତି ବିସ୍ତୃତ ଭାବରେ ବର୍ଣ୍ଣନା କରାଯାଇଛି ।-ଯଥା

ଏକ ପ୍ରମାଣୋ ଲୋକାଃ ଦେବ ବୃତ୍ତାନ୍ତ ମାନବୌ
କୃତମନସ୍ୟ ଜଗଦ୍‌ଗୋପେ ସଂବୃତୌ ଗୋପଦାରକୌ"

ଅର୍ଥାତ୍ ଲୋକଙ୍କ ଦୃଷ୍ଟିରେ ଉଭୟ ବଳରାମ ଏବଂ ଶ୍ରୀକୃଷ୍ଣ ଏକ ଥିଲେ । ସେମାନେ ମାନବ ଶରୀର ଧାରଣ କରି ଦେବତାଙ୍କ ଦୁଃଖ ଦମନ ଏବଂ ଧର୍ମ ସଂସ୍ଥାପନ ସିଦ୍ଧାନ୍ତ ଗ୍ରହଣ କରିଥିଲେ । ସେମାନେ ସମ୍ପୂର୍ଣ୍ଣ ଜଗତର ରକ୍ଷା କରିବାକୁ ଗୋପାଳ ବାଳକ ହୋଇଥିଲେ । ଏହି ଦୁଇଭ୍ରାତାଙ୍କ ମଧ୍ୟରେ ବଳରାମ ନୀଳବସ୍ତ୍ର ଏବଂ ଶ୍ରୀକୃଷ୍ଣ ପୀତବସ୍ତ୍ର ଦୁଇଭ୍ରାତାଙ୍କ ... ବଳରାମ ଏବଂ ଶ୍ରୀକୃଷ୍ଣଙ୍କ ବର୍ଣ୍ଣ ଯଥାକ୍ରମେ ଶ୍ୱେତ ପରିଧାନ କରିଥିଲେ ।

ଏବଂ ଶ୍ୟାମଳ ବର୍ଣ୍ଣ ଥିଲା । ସେ ତୁହେଁ ଶିରରେ ମୟୂର ପକ୍ଷୀ ଧାରଣ କରିଥିଲେ । ଏହି ଦୁଇ ଭାଇ ବାଛୁରୀ ଚରାଉଥିଲେ ।

ବଳରାମଙ୍କ ଜନ୍ମ ସମ୍ବନ୍ଧରେ ହରିବଂଶରେ ବର୍ଣ୍ଣନା କରି କୁହାଯାଇଛି-

ଲେଭେ ଜ୍ୟେଷ୍ଠଂ ସୁତଂରାମଂ ସାରଣଂଶଠମେବଚ

ଦୁର୍ଦ୍ଦଂ ଦମନଂ ସ୍ୱଭ୍ରଂ ପିଣ୍ଡାରକମୁଶୀନରମ୍

ଚିତ୍ରାନାମ କୁମାରୀ ଚ ରୋହିଣୀ ଜନୟାଦଶ

ଚିତ୍ରା ସୁଭଦ୍ରେତି ପୁନର୍ବିଖ୍ୟାତା କୁରୁନନ୍ଦନ''

ରୋହିଣୀଙ୍କ ଜ୍ୟେଷ୍ଠ ପୁତ୍ର ବଳରାମ । ଏହାଙ୍କଠାରୁ ଶଠ, ଦୁର୍ଦ୍ଦ, ଦମନ, ସ୍ୱଭ ପିଣ୍ଡାରକ ଉଶୀନର ପ୍ରଭୃତି ପୁତ୍ର ଏବଂ ଚିତ୍ରାନାମକ କନ୍ୟା ଜାତ ହେଲେ । କନ୍ୟା ଚିତ୍ରା ଅପ୍ସରା ତୁଲ୍ୟ ଜନ୍ମ ଲାଭ କରି ପରେ 'ସୁଭଦ୍ରା' ରୂପେ ଖ୍ୟାତ ହେଲେ । ତେଣୁ ଜ୍ୟେଷ୍ଠଭ୍ରାତ ବଳରାମ ଏକମାତ୍ର ଅଳିଅଳ ଭଉଣୀକୁ ଏକାକିନୀ କରି ଛାଡ଼ି ସହଜରେ କେଉଁଆଡ଼େ ଯାଉନଥିଲେ ।

କିନ୍ତୁ ସଂସ୍କୃତ ଶ୍ରୀମଦ୍ ଭାଗବତରେ ଉଲ୍ଲେଖ ଅଛି ଯେ ଏକଦା ମାର୍ଗଶୀର ଶୁକ୍ଳ ତ୍ରୟୋଦଶୀ ଗୁରୁବାର ରାତ୍ରିରେ ବାସୁଦେବ ପତ୍ନୀ ଦେବକୀ ସ୍ୱପ୍ନାବିଷ୍ଟ ହୋଇ ବୋଧ କଲେ ହଳମୁଷଳଧାରୀ ଏକ ଜଟାଜୁଟଧାରୀ ସୁଦିବ୍ୟ ପୁରୁଷ ବୃଷ ପୃଷ୍ଠାରୋହଣ କରି କୋଟି ଚନ୍ଦ୍ରମାର ଜ୍ୟୋତିରେ ଦୀପ୍ତିମନ୍ତ ହୋଇ ମା' ସମ୍ବୋଧନପୂର୍ବକ ତାଙ୍କ ଗର୍ଭରେ ପ୍ରବେଶ କଲେ । ପରିଣତ ସମୟରେ ଏହି ଗର୍ଭଭାରରୁ ମୁକ୍ତି ନିମିତ୍ତ ପରମ ବିଷ୍ଣୁଙ୍କୁ ପ୍ରାର୍ଥନା କରନ୍ତେ କ୍ଷୀରାର୍ଣ୍ଣବଶାୟୀ ବିଷ୍ଣୁ ଦେବକୀଙ୍କ ଗର୍ଭ ମୁକ୍ତି ନିମନ୍ତେ ଯୋଗ ମାୟାକୁ ନିର୍ଦ୍ଦେଶ ଦେଲେ -

ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତରେ ଅନୁରୂପ ଉଦ୍ଧୃତିରେ କୁହାଯାଇଛି-

ଅମ୍ବିକା ଶୁଣଗୋ ଉତ୍ତର | ବହନ ଯାଅ ମଥୁ ପୁର
ରୋହିଣୀ ନାମ ବିଦ୍ୟମାନ | ତାହାର ଗର୍ଭ ଅଛି ଶୂନ୍ୟ
ଦେବକୀ ଦେବୀ ନିଦ୍ରାବେଳେ | ଗର୍ଭ ହରିବୁ ଯୋଗବଳେ
ରୋହିଣୀ ଗର୍ଭେ ତାହା ଥୋଇ | ମିଳିବୁ ନନ୍ଦ ଘରେ ଯାଇ
ଜନ୍ମିବୁ ଯଶୋଦା ଉଦରେ | ମୁଁ ପୁଣି ଯିବି ମଥୁପୁରେ

ବଳଭଦ୍ରଙ୍କ ଜନ୍ମ ସମ୍ପର୍କରେ ଅନ୍ୟ ଏକ ପୌରାଣିକ କିମ୍ବଦନ୍ତୀ ଅଛି । ପୃଥିବୀରେ ପାପର ଭାର ବେଶୀ ହେବାରୁ ବସୁଧା ଗାଭୀ ରୂପ ଧାରଣ କରି ବ୍ରହ୍ମାଙ୍କ ନିକଟରେ ଦୁଃଖ ଜଣାଇବାରେ ରୋହିଣୀ ନାମକ ଗାଭୀ ରୂପେ ମଥୁରାକୁ ଯାଇ ଗୋପପୁରରେ ନନ୍ଦଙ୍କ ଗୋଗୋଷ୍ଠରେ ବଳରାମଙ୍କୁ ଜନ୍ମ ଦେଇଥିବାରୁ ସେ ଗୋମାତାରୂପେ ହିନ୍ଦୁ ଜଗତରେ ପୂଜନୀୟା ହେଲେ । ତେଣୁ ଗହ୍ମା ପୂର୍ଣ୍ଣମୀ ଦିନ ଗୋମାତାଙ୍କୁ ପୂଜା କରାଯାଇଥାଏ ।

ଦ୍ୱାପର ଯୁଗରେ ବଳରାମ ପ୍ରଲମ୍ବାସୁର,ଧେନୁକାସୁର ବଧ କଲେ । କଂସ ନିଧନରେ ସହାୟକ ହେଲେ । ବାଣାସୁରର ଗର୍ବଦମନ କରି ଅନିରୁଦ୍ଧଙ୍କୁ ମୁକ୍ତ କଲେ । ଯୁଦ୍ଧରେ ପ୍ରଦ୍ୟୁମ୍ନଙ୍କର ସହାୟକ ହେଲେ । ଜରାସନ୍ଧକୁ ଏବଂ ଭୀମଙ୍କୁ ଯୁଦ୍ଧରେ ପରାସ୍ତ କରିଥିଲେ । ଦ୍ୱାରିକାରେ ଲୀଳା ସମାପନ କରି ମଥୁରାକୁ ଫେରି ଯମୁନାନଦୀକୁ ଲଙ୍ଗଳରେ ବିଦାରଣ କରି ତାର ଗତିପଥ ଦୀର୍ଘତର କଲେ । ତୀର୍ଥଭ୍ରମଣ ପରେ ଶ୍ରୀବଳରାମ ଯଦୁବଂଶ ଧ୍ୱଂସ ଏବଂ ଶ୍ରୀକୃଷ୍ଣଙ୍କ ଦେହାବସାନ ପରେ ସଖାହୀନ ହୋଇ ଯୋଗଦ୍ୱାରା ନିଜର ସହସ୍ର ଶୀର୍ଷା ରୂପରେ ପାତାଳ ପ୍ରବେଶ କରିଥିଲେ ଏବଂ ଅନନ୍ତ ବାସୁକୀ ରୂପରେ ପୂଜନୀୟ ହେଲେ ।

ସେ ଅଷ୍ଟନାଗକୁଳର ଅଧିଷ୍ଠିତ ଦେବତା ହୋଇଥିବାରୁ ଗୃହନିର୍ମାଣ ସମୟରେ ଶିଳ୍ପଶାସ୍ତ୍ର ଅନୁସାରେ ନାଗ ନିର୍ଣ୍ଣୟ କରାଯାଇ ଗୃହ ଭିତିସ୍ଥାପନ କରାଯାଏ ଏବଂ ଅଷ୍ଟକୁଳ ନାଗଙ୍କର ଉପାସନା କରାଯାଏ ।

କଳି ଯୁଗରେ ବଳରାମ, ଜଗନ୍ନାଥଙ୍କ ଜ୍ୟେଷ୍ଠଭ୍ରାତା ଭାବରେ ବଳଭଦ୍ର ରୂପେ ପୁରୁଷୋତ୍ତମ କ୍ଷେତ୍ରକୁ ଲୀଳା କ୍ଷେତ୍ର ରୂପେ ନିର୍ବାଚନ କଲେ । ଜଗନ୍ନାଥ,ବଳଭଦ୍ର, ସୁଭଦ୍ରା ହେଲେ ଯଥାକ୍ରମେ ବିଷ୍ଣୁ, ଶିବ ଏବଂ ବ୍ରହ୍ମାଙ୍କ ପରିବର୍ତ୍ତିତ ଅବତାର । ପ୍ରଣବର ସ୍ୱରୂପ । ଅ+ଉ+ମ ଓଁକାର ନାଦର ରୂପ ପରିଗ୍ରହ । ସେଥି ମଧ୍ୟରୁ ବଳଭଦ୍ର 'ମ'କାର ଅକ୍ଷରର ଅଧିକାରୀ । ଅଚ୍ୟୁତାନନ୍ଦଙ୍କ ତନ୍ତ୍ରୋକ୍ତ ମତରେ ହ୍ଲୀ ବର୍ଣ୍ଣର ଅଧିକାରୀ ବଳଭଦ୍ର, ଶ୍ରୀଂ ସୁଭଦ୍ରା ଏବଂ ଜଗନ୍ନାଥ କ୍ଲୀଂ ବୀଜମନ୍ତ୍ର ଯୋଗେ ଅଛି ।

ବଳଭଦ୍ର ତୁଳସୀ କ୍ଷେତ୍ରରେ ବଳଦେବ ନାମରେ ଶଙ୍ଖକ୍ଷେତ୍ରେ 'ମଣିବ୍ରହ୍ମ' ବା ସିଦ୍ଧ ବଳଭଦ୍ରଭାବରେ, ଏକାମ୍ର ପୀଠରେ କ୍ଷେତ୍ରପାଳ 'ଶିଳାବ୍ରହ୍ମ' ବା ଅନନ୍ତ ବାସୁଦେବ ନାମରେ, ସର୍ବୋପରି ଶଙ୍ଖକ୍ଷେତ୍ରେ 'ଦାରୁବ୍ରହ୍ମ' 'ଶ୍ରୀ ବଳଭଦ୍ର ନାମରେ ବିଦିତ । ଶ୍ରୀମନ୍ଦିରର ଜ୍ୟେଷ୍ଠ ରୂପେ ସେ ସର୍ବାଗ୍ରେ ପୂଜିତ ହୁଅନ୍ତି । ତାଙ୍କଠାରୁ ସର୍ବପ୍ରଥମେ ପୂଜା ଆରମ୍ଭ କରାଯାଇ ଶ୍ରୀଜଗନ୍ନାଥଙ୍କଠାରେ ଶେଷ କରାଯାଏ । ଚୈତନ୍ୟ ଚରିତାମୃତର ବର୍ଣ୍ଣନାନୁଯାୟୀ-

''ଯେ ଦ୍ରବ୍ୟ ଅମଣୋହି ହେବ

ତା ବଳଦେବେ ସମର୍ପିବ

ସେ ଦେବେ ସୁଭଦ୍ରାଙ୍କ ମୁଖେ

ସେ ଦେବେ ଜଗନ୍ନାଥ ମୁଖେ

ରଥ ଯାତ୍ରାରେ ପ୍ରଥମେ ବଡ଼ଠାକୁରଙ୍କର ରଥ ହିଁ ଚଳିବାର ବିଧାନ ବାମଦେବ ସଂହିତାରେ ଉଲ୍ଲିଖିତ ହୋଇଛି । ପୁରାଣୋକ୍ତ କିମ୍ବଦନ୍ତୀ ଅନୁସାରେ ବ୍ରହ୍ମହତ୍ୟା ପାପ କ୍ଷୟ ନିମିତ୍ତ ବୈତରଣୀ ତୀରସ୍ଥ ଯଜ୍ଞକର୍ତ୍ତ ଯାଜପୁରରେ ସ୍ନାନତର୍ପଣାନ୍ତେ ଶ୍ରୀ ବଳଦେବ ଜନ୍ମରାମଙ୍କୁ ବଧ କରିଥିଲେ । ଅନ୍ୟ ଏକ କିମ୍ବଦନ୍ତୀରେ କେନ୍ଦ୍ରାପଡ଼ାରେ କନ୍ଦରାସୁରକୁ ବଧ କରି ବଳଦେବ ଉକ୍ତ ସ୍ଥାନରେ ତୁଳସୀ ପୀଠାଧୀଶ ହୋଇଛନ୍ତି ବୋଲି କୁହାଯାଏ ଏବଂ ତଦନୁସାରେ କେନ୍ଦ୍ରାପଡ଼ା ନାମକରଣ କରାଯାଇଛି । ଓଡ଼ିଶାରେ ଢେଙ୍କାନାଳ, କେନ୍ଦୁଝର, ବାଲିପାଟଣା, ଦାଣ୍ଡମୁକୁନ୍ଦପୁର, ବାଗଲପୁର, ଜିଜିନିପୁର ମଥୁରା, ପାଟପୁର ଏବଂ ଲହରା ପ୍ରଭୃତି ସ୍ଥାନମାନ ବଳଦେବଙ୍କ ଉପାସନା ପୀଠରୂପେ ପ୍ରାଧାନ୍ୟ ଲାଭ କରିଛି । କେତେକ ଇତିହାସ ଗବେଷକ ମତ ଦିଅନ୍ତି ଯେ ଉପନିଷଦ ଏବଂ ସଂହିତା ଯୁଗର ସମୟର ଶିବ ପରବର୍ତ୍ତୀ କାଳରେ ବଳଭଦ୍ର ରୂପେ ଉପାସିତ ହେଲେ । ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ ବସ୍ତାର ଲାଙ୍ଗୁଳୀ ଶିବ ମନ୍ଦିର ଏବଂ ଗୋପାଳ ଗଞ୍ଜାମ ଜିଲ୍ଲା ସୀମା ଛତ୍ରଗଡ଼ ନିକଟସ୍ଥ ଲଙ୍ଗେଶ୍ୱର ଶିବ ମନ୍ଦିରର ନାମକରଣ ଏହାର ଦୃଷ୍ଟାନ୍ତ ରୂପେ ନିଆଯାଇପାରେ ।

ବଳଦେବ ଉପାସନାର ପ୍ରାଚୀନତା ଶାସ୍ତ୍ରୀୟ ପ୍ରମାଣମାନ ଦୃଷ୍ଟିରୁ ଯେତିକି ତାତ୍ପର୍ଯ୍ୟପୂର୍ଣ୍ଣ, ପ୍ରତ୍ନତାତ୍ତ୍ୱିକ ଦୃଷ୍ଟିରୁ ସେତିକି ତାତ୍ପର୍ଯ୍ୟପୂର୍ଣ୍ଣ ମନେ ହୁଏ । ଆର୍ଯ୍ୟେତର ଆଦିବାସୀମାନଙ୍କ ଦ୍ୱାରା ପୂର୍ବେ ନାଗ ଉପାସନା କରାଯାଉଥିବାର ପରିଦୃଷ୍ଟ ହୁଏ । ଦକ୍ଷିଣ କୋଶଳର ବସ୍ତର ଅଞ୍ଚଳ ଅନ୍ତର୍ଗତ ଚକ୍ରକୋଟର ନାଗବଂଶୀ ଶାସକମାନଙ୍କ ଦ୍ୱାରା ପ୍ରଚଳିତ ନାଗବଂଶୀ ମୁଦ୍ରାରୁ ଏହାର ପ୍ରମାଣ ମିଳେ । ଉକ୍ତ ନାଗବଂଶୀ ମୁଦ୍ରା

[illegible]

କୋରାପୁଟ ଜିଲ୍ଲା କୋଡ଼ିଙ୍ଗା ଜଙ୍ଗଲରୁ ପ୍ରାପ୍ତ ହୋଇଥିବାରୁ କୋରାପୁଟ ଏହା ଦକ୍ଷିଣ କୋଶଳ ଶାସନାଧୀନ ଥିଲା । ବଳଭଦ୍ର ନାଗନାଥ ହୋଇଥିବାରୁ ତାଙ୍କର ଦର୍ଶନ ନିମିତ୍ତ ବସ୍ତର ଅଞ୍ଚଳରୁ ଅନେକ ଯାତ୍ରୀ ଆଜିଯାଏଁ ଆସିଥାଆନ୍ତି । (The Orissa Historical Research Journal Vol VIII April 1959 Page 75)ଏହି ନାଗୋପାସନା କ୍ରମଶଃ ବୈଦିକ ସଂସ୍କୃତିରେ ଗୃହୀତ ହୋଇ ଧର୍ମଭିତ୍ତିକ ହେଲା । ଶ୍ରାବଣ କୃଷ୍ଣନାଗପଞ୍ଚମୀ ଏବଂ କାର୍ତ୍ତିକ ଶୁକ୍ଳ ୪ର୍ଥୀ ନାଗଚତୁର୍ଥୀରେ ଉତ୍କଳରେ ଆଜି ନାଗୋପାସନା କରାଯାଉଥିବା ବିଧି ପ୍ରଚଳିତ ଅଛି । ନାଗନାଥ ବଳଭଦ୍ର ନାଥ ସଂପ୍ରଦାୟର ଇଷ୍ଟଦେବ ରୂପେ ଗୃହୀତ । ବଳଭଦ୍ର ଉପାସନାର ପ୍ରାଚୀନତା ସମ୍ବନ୍ଧରେ ଆଉ କେତେକ ପ୍ରତ୍ନତାତ୍ତ୍ୱିକ ପ୍ରମାଣ ମଧ୍ୟ ମିଳେ । ଖ୍ରୀ.ପୂ. ପ୍ରଥମ ଶତାବ୍ଦୀର ଘୋଷୁଣ୍ଡି ଶିଳାଲେଖରୁ ଜଣାଯାଏ ଯେ ସେ କାଳରେ ବାସୁଦେବ ଏବଂ ସଙ୍କର୍ଷଣ ଉଭୟେ ଏକତ୍ର ଭଗବତ୍ ନାମରେ ପୂଜିତ ଥିଲେ ଏବଂ ସେମାନଙ୍କ ପୂଜାନିମନ୍ତେ ପ୍ରସ୍ତର ନିର୍ମିତ ପ୍ରାଚୀର ଏବଂ ମଣ୍ଡପମାନ ନିର୍ମିତ ହେଉଥିଲା । [E.P. Ind.Vol XIXI P.P.27] ଓଡ଼ିଶାରେ ଷଷ୍ଠ ଶତାବ୍ଦୀ ଆରମ୍ଭରେ ଅନେକ ବିଷ୍ଣୁ ମନ୍ଦିରରେ ଦଶାବତାର ମଧ୍ୟରେ ବଳରାମଙ୍କ ମୂର୍ତ୍ତି ଅନ୍ତର୍ଭୁକ୍ତ । ବଲାଙ୍ଗୀର ଜିଲ୍ଲା ରାଣୀପୁର ଗ୍ରାମରେ ପ୍ରତିଷ୍ଠିତ ବିଷ୍ଣୁ ମନ୍ଦିର ଦ୍ୱୟରୁ ଦଶାବତାରର ପ୍ରଥମ ପ୍ରତ୍ନତାତ୍ତ୍ୱିକ ପ୍ରମାଣ ମିଳେ । କଟକ ଜିଲ୍ଲାର ଏରସମା ତୀର୍ଥମଠରୁ ତିନି ବଳରାମଙ୍କର ମୂର୍ତ୍ତି ମିଳିଛି । ଉକ୍ତ ମନ୍ଦିରଟି ସପ୍ତମ ଶତାବ୍ଦୀର ଅନ୍ତର୍ଗତ । ସରଦେଇର ନିକଟବର୍ତ୍ତୀ ବ୍ରାହ୍ମଣୀ ନଦୀଗର୍ଭରେ ଅତିକାୟ ଶେଷଶାୟୀ ମୂର୍ତ୍ତି ଏବଂ ଭୀମକାଣ୍ଡ ନାମକ ଗ୍ରାମର ବାଲୁକା ପାହାଡ଼ରେ ଅନ୍ୟ ଏକ ମୂର୍ତ୍ତି ପରିଦୃଷ୍ଟ ହୁଏ । ଏହା ନବମ ଦଶମ ଶତାବ୍ଦୀର ଅନ୍ତର୍ଗତ ବୋଲି ଚିହ୍ନଟ କରାଯାଇଛି ।

ବଳଦେବଙ୍କର ଆୟୁଧ କୃଷି କାର୍ଯ୍ୟର ପ୍ରଥମ ଆବଶ୍ୟକ ଉପକରଣ ହଳ । ପୁନଶ୍ଚ ତାଙ୍କର ପୂଜାର୍ଚ୍ଚନା ଦିବସ କୃଷିକାର୍ଯ୍ୟର ଆଦ୍ୟ ପର୍ବ ଗହ୍ମା ବେଉଷଣର ଶେଷ ଦିବସ ଶ୍ରାବଣ ପୂର୍ଣ୍ଣମୀ । କୃଷି କାର୍ଯ୍ୟର ପ୍ରଧାନ ସହାୟକ ଗୋମାତା ଏବଂ ବଳଦମାନଙ୍କର ପୂଜାର ଦିନ ଏ ପୂର୍ଣ୍ଣମୀ ତିଥି । ତେଣୁ ବଳଭଦ୍ର କୃଷି କର୍ମର ପ୍ରବର୍ତ୍ତକ ଓ ପ୍ରେରଣାଦାୟକ ଦେବତାରୂପେ ପୂଜାପାଆନ୍ତି ବୋଲି ବହୁ ଧର୍ମବିଶ୍ୱାସୀଙ୍କ ମତ । ଓଡ଼ିଶାରେ ଏକ ସମ୍ପ୍ରଦାୟ ମାଣ୍ଡି ବ୍ରାହ୍ମଣ ପଇତା ପିନ୍ଧୁଥିଲେ ମଧ ଜମିରେ ହଳ କରନ୍ତି । ତେଣୁ ସେମାନଙ୍କୁ ହଳୁଆ ବ୍ରାହ୍ମଣ ମଧ କୁହାଯାଏ । ବଳଭଦ୍ରଙ୍କ ଆୟୁଧ ଲାଙ୍ଗଳ ବ୍ୟବହାର କରୁଥିବାରୁ ସେମାନେ ବଳଭଦ୍ରଗୋତ୍ରୀ ରୂପେ ମଧ ପରିଚିତ । ସେମାନେ ଶ୍ରାବଣ ପୂର୍ଣ୍ଣମାରେ ବଳଭଦ୍ରଙ୍କର ପ୍ରତିନିଧି ରୂପେ ବଳିବର୍ଦ୍ଦ ବା ବଳଦର ପୂଜାର୍ଚ୍ଚନା କରି ଥାଆନ୍ତି । ଏକଦା ଉତ୍କଳର ଖଣ୍ଡାଏତ ପାଇକମାନେ ଜୀବିକାର୍ଜ୍ଜନ ପାଇଁ ହଳ କରୁଥିଲେ ଏବଂ ଆବଶ୍ୟକ ବେଳେ ଯୁଦ୍ଧ ଭୂମିରେ ଯୁଦ୍ଧ କରୁଥିଲେ । ତେଣୁ ଉତ୍କଳଭୂମିର ପୂଜ୍ୟ ବଡ଼ଠାକୁରଙ୍କ ହଳ ଏବଂ ବଳ ଶକ୍ତିର ଅଧିକାର ସାବ୍ୟସ୍ତ କରୁଥିଲେ । କାଞ୍ଚି ବିଜୟରେ ସ୍ୱୟଂ ଜଗନ୍ନାଥ ଏବଂ ବଳଭଦ୍ର ଉତ୍କଳ ଗଜପତି ପୁରୁଷୋତ୍ତମଙ୍କର ସହାୟକ ହୋଇଥିବାର ଐତିହାସିକ କିମ୍ବଦନ୍ତୀ ବହୁଜନବିଦିତ ।

ସର୍ବୋପରି, ଶ୍ରୀମନ୍ଦିର ରତ୍ନସିଂହାସନରେ ଶୈବଧର୍ମୀଙ୍କ ଗୃହୀତ ଦେବତା ବଳଭଦ୍ର, ବୈଷ୍ଣବମାନଙ୍କର ସର୍ବୋତ୍ତମ ନମସ୍ୟ ଶ୍ରୀଜଗନ୍ନାଥ, ଶାକ୍ତମାନଙ୍କର ସହାୟକର୍ତ୍ତୀ ସୁଭଦ୍ରା ଏବଂ ସୌରମାନଙ୍କ ପ୍ରତିନିଧିତ୍ୱ କରୁଥିବା ସୁଦର୍ଶନ ବିଜେ ହୋଇ କେବଳ ଉତ୍କଳରେ ନୁହେଁ, ସାରା ଭାରତରେ ସର୍ବଧର୍ମ ସମନ୍ୱୟର ବାର୍ତ୍ତା ଯୁଗ ଯୁଗ ପାଇଁ ପ୍ରଦାନ କରିଚାଲିଛନ୍ତି ।

*ଗ୍ରାମ-ବ୍ରାହ୍ମଣ କୁଣ୍ଡହି, ପୋ:ଆଙ୍ଗୁଲାଟଣ୍ଟ, ଜି-ଖୋର୍ଦ୍ଧା*


ଗ୍ରନ୍ଥ ସୂଚୀ-

୧. ସଂସ୍କୃତ ହରିବଂଶ-୧ମ ଓ ୨ୟଭାଗ

୨-ଶ୍ରୀମଦଭାଗବତ

୩-ବାମଦେବ ସଂହିତା(ମୁକ୍ତିମଣ୍ଡପ, ପୁରୀ ପ୍ରକାଶନ)

୪-ପଣ୍ଡିତସର୍ବସ୍ୱ(୧୧୧ପୃ)

୫-ଖଡ଼ୀରତ୍ନ ପଞ୍ଜିକା

୬-ଉତ୍କଳପ୍ରସଙ୍ଗ -ଜୁଲାଇ, ୧୯୯୪

୭-ଜଗନ୍ନାଥ ଚରିତାମୃତ

୮-ଗୁପ୍ତଗୀତା

୯-ଓଡ଼ିଆ ଭାଗବତ(୧୦ମ ସ୍କନ୍ଧ ୩ୟ ଅଧ୍ୟାୟ)

୧୦-ନିର୍ମାଲ୍ୟ-ଡ଼ିସେମ୍ବର, ଜାନୁଆରୀ ୧୯୮୮-୮୯

୧୧-ସାକ୍ଷୀଗୋପାଳ-ସାପ୍ତାହିକ-୧୯୯୭-ଅଗଷ୍ଟ(୧୧ରୁ ୧୭)

୧୨-Epigraphic Ind.Vol XIXI-27

୧୩-O.H.R.J.-Vol VIII April 1959(page 75)

୧୪-ନିତ୍ୟକର୍ମ ପ୍ରକାଶ-ମୁକ୍ତି ମଣ୍ଡପ ପୁରୀ ପ୍ରକାଶନ


• • •

# ଘୋଷଯାତ୍ରା

ରଥଯାତ୍ରାର ଅନ୍ୟନାମ ଘୋଷଯାତ୍ରା । ରଥଯାତ୍ରା ଦିନ ଯାତ୍ରାର ମଙ୍ଗଳାରୋପଣ ସମୟରେ ଶ୍ରୀମନ୍ଦିରର ସେବକ ପତି ମହାପାତ୍ର ଜଗତର ମଙ୍ଗଳ ପାଇଁ ଘୋଷଣା କରନ୍ତି– "ପ୍ରସ୍ଥାନାମ ଧେୟ ନକ୍ଷତ୍ରେ ସକଳ ଚରାଚରସ୍ୟ ତୀର୍ଥକ ପୌର୍ଣ୍ଣମାସ୍ୟା, ବିବୁଧ ଲୋକ ପର୍ଯ୍ୟନ୍ତ ଚତୁର କ୍ଷୀତି ଜୀବମାତ୍ରସ୍ୟ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡ କଲ୍ୟାଣ ନାମନାୟା ଚତୁର୍ଦ୍ଦଶ ବ୍ରହ୍ମାଣ୍ଡ ନାୟକ ପୁରୁଷୋତ୍ତମସ୍ୟ ଚତୁର୍ବର୍ଗ ଫଳପ୍ରଦ ମଙ୍ଗଳାରୋପଣ କର୍ମମହଂ କରିଷ୍ୟେ ।" ଜଗତର ମଙ୍ଗଳ ପାଇଁ ଏହି ଯାତ୍ରା ଉଦ୍ଦିଷ୍ଟ ।



# ଶ୍ରୀମନ୍ଦିରରେ ପୂଜାପଣ୍ଡା ସେବା

● ଶ୍ରୀ ବିଶ୍ୱଜିତ୍ ମିଶ୍ର

ସମଗ୍ର ଭାରତରେ ଥିବା ବିଭିନ୍ନ ଦେବା-ଦେବୀ ମନ୍ଦିରରେ ପୂଜାର୍ଚ୍ଚନାର ବିଧି ବ୍ୟବସ୍ଥାରେ ପୂଜକମାନଙ୍କର ଭୂମିକା ଉଲ୍ଲେଖନୀୟ । ସମସ୍ତ ହିନ୍ଦୁ ଦେବଦେବୀ ମନ୍ଦିର ମଧ୍ୟରୁ ଶ୍ରୀକ୍ଷେତ୍ରର ଶ୍ରୀମନ୍ଦିରରେ ପ୍ରଚଳିତ ସେବାପୂଜା ବିଧି ବିଧାନରେ ଏକ ଅନନ୍ୟ ସ୍ୱକୀୟତା ଓ ସ୍ୱାତନ୍ତ୍ର୍ୟ ବିଦ୍ୟମାନ । କୌଣସି ମନ୍ଦିରରେ ଏତେ ସଂଖ୍ୟକ ଏତେ କିସମର ସେବାୟତ ନାହାନ୍ତି, ଯାହାକି ଶ୍ରୀମନ୍ଦିର ପାଇଁ ରହିଛନ୍ତି । ଶ୍ରୀମନ୍ଦିରରେ ୧୧୯ ପ୍ରକାରର ସେବା ରହିଛି ଏବଂ ସେବାପୂଜା ପାଇଁ ବିଭିନ୍ନ ନିଯୋଗ ରହିଛି । ଶ୍ରୀଜୀଉମାନଙ୍କୁ ଅନେକ ପ୍ରକାରର ଭୋଗ ନୈବେଦ୍ୟ ସ୍ୱରୂପ ଅର୍ପଣ କରାଯାଇଥାଏ । କିମ୍ବଦନ୍ତୀ ଅନୁଯାୟୀ ଶ୍ରୀଜୀଉଙ୍କ ପୂଜାର୍ଚ୍ଚନା ପାଇଁ ବିଭିନ୍ନ ବିଧି ବ୍ୟବସ୍ଥା ଖଞ୍ଜାଯାଇଛି । ସେମାନଙ୍କ ମଧ୍ୟରୁ ଗଜପତି ମହାରାଜା ମୁଖ୍ୟ ସେବକ ରୂପେ ବିଦିତ ହେଉଥିଲେ ମଧ ବାସ୍ତବରେ ପୂଜାପଣ୍ଡାମାନେ ଶ୍ରେଷ୍ଠ ପୂଜକର ମାନ୍ୟତା ଲାଭ କରିଥାନ୍ତି । ରତ୍ନ ସିଂହାସନରେ ବସି ତ୍ରିକାଳ ପୂଜା କରି ଶେଷରେ ରାଜା ଓ ସାରା ଜଗତକୁ ସେମାନେ ଆଶୀର୍ବାଦ କରିଥାନ୍ତି । ରତ୍ନ ସିଂହାସନରେ ବସ୍ତ୍ରାସନରେ ବସି ଘଣ୍ଟି ବଜାଇ ପୂଜା କରିବା ଅଧିକାର ଅନ୍ୟ କୌଣସି ସେବାୟତଙ୍କର ନାହିଁ । ତେବେ ଭିତରଛ ମହାପାତ୍ର, ତଳୁଛ, ପଟ୍ଟଯୋଶୀ ମହାପାତ୍ର ଓ ପୁଷ୍ପାଳକମାନେ ଶ୍ରୀଜୀଉଙ୍କର ପୂଜାର୍ଚ୍ଚନା କରିବାର ବିଧି ପ୍ରଚଳନ ରହିଥିଲେ ମଧ ଷୋଡ଼ଶ ଉପଚାରରେ ଶ୍ରୀ ବିଗ୍ରହମାନଙ୍କୁ ପୂଜା କରିବାର ଅଧିକାର କେବଳ ପୂଜାପଣ୍ଡାମାନଙ୍କ ବ୍ୟତୀତ ଅନ୍ୟ କାହାର ନାହିଁ । ଅନ୍ୟ ସେବାୟତମାନେ ସିଂହାସନ ତଳେ ବସି ଅବକାଶ ପୂଜା କରନ୍ତି । ସେମାନଙ୍କର ଘଣ୍ଟି ବା ଶଙ୍ଖର ଆବଶ୍ୟକତା ପଡ଼ିନଥାଏ ।

ବିଭିନ୍ନ ପ୍ରକାରର ସେବକଙ୍କ ମଧ୍ୟରୁ ପୂଜାପଣ୍ଡାମାନଙ୍କର ନୀତି ନିଷ୍ଠା ଓ ଶୁଚିତା ସ୍ୱତନ୍ତ୍ର । ଅନ୍ୟ ସେବକମାନେ ପ୍ରସାଦ ସେବନ କରି ସେବା କରିପାରନ୍ତି, କିନ୍ତୁ ପୂଜାପଣ୍ଡାମାନେ ପୂଜା ଶେଷ ନହେବା ପର୍ଯ୍ୟନ୍ତ ଅନ୍ନ ଭୋଜନ କରି ପାରନ୍ତି ନାହିଁ କାରଣ ଏହି ଶ୍ରେଣୀର ସେବକମାନେ ରତ୍ନ ସିଂହାସନରେ ବସି ଷୋଡ଼ଶ ଉପଚାରରେ ପୂଜା କରିବାର ପଦ୍ଧତି ପ୍ରଚଳିତ ରହିଛି । ପୂଜାପଣ୍ଡାମାନେ ପୂଜାରେ ବସିବା ଆରମ୍ଭ କଲେ ପୂଜା ଶେଷ କରି ଭୋଗ ଆଳତି ଶେଷ ନକରିବା ପର୍ଯ୍ୟନ୍ତ ସିଂହାସନରୁ ଅବତରଣ କରି ପାରନ୍ତି ନାହିଁ । ଶ୍ରୀଜୀଉମାନଙ୍କୁ ବିଭିନ୍ନ ରୂପରେ ନୈବେଦ୍ୟ ସମର୍ପଣ କରିବା ପାଇଁ ପୂଜାପଣ୍ଡାମାନଙ୍କୁ ପ୍ରାୟ ଦେଢ଼ରୁ ଦୁଇଘଣ୍ଟା ସମୟ ଲାଗିଥାଏ । ସେମାନଙ୍କୁ ପୂଜାରେ ସହାୟତା କରିଥାନ୍ତି ବିଭିନ୍ନ ସହଯୋଗୀ ସେବକ ସୁଆର ବଡୁ, ପତ୍ରୀ ବଡୁ, ମହାସୁଆର, ପ୍ରତିହାରୀ, ପାଳିଆ ମେକାପ, ହଡ଼ପନାୟକ ଓ ଅନ୍ୟ ସେବକ, ସେବାୟତମାନେ । କର୍ତ୍ତବ୍ୟ ସମାପନ ପରେ ସେମାନେ ମନ୍ଦିରରୁ ବାହାରକୁ ଆସିପାରିବେ କିନ୍ତୁ ପୂଜାପଣ୍ଡାଙ୍କ ପକ୍ଷରେ ଏହା ସମ୍ଭବ ହୋଇନଥାଏ । କୌଣସି କାରଣରୁ ପୂଜାରେ ଉଠି ଆସିଲେ ଭୋଗ ମାରା ହୋଇଥାଏ ଓ ସମସ୍ତ ଭୋଗ ପୋତା ହୋଇଥାଏ । କାଷ୍ଠା ଉପବାସରେ ରହି ପୂଜାପଣ୍ଡାମାନେ ଶ୍ରୀଜୀଉମାନଙ୍କ ପୂଜାର୍ଚ୍ଚନା କରିଥାନ୍ତି । ଶ୍ରୀଜୀଉମାନଙ୍କୁ ପୂଜାର୍ଚ୍ଚନା ଲାଗି ନିଯୁକ୍ତ ରହିଥିବା କେତେକ ସେବକ କେବଳ ବ୍ରତ ହେଲେ ସେହି ସେବାରେ ନିଯୁକ୍ତ ହେବାର ପଦ୍ଧତି ପ୍ରଚଳିତ ରହିଛି କିନ୍ତୁ ପୂଜାପଣ୍ଡାମାନେ କ୍ଷେତ୍ରରେ ବ୍ରତ ହୋଇସାରିଲା ପରେ ପୂଜା କରିବାର ଅଧିକାର ମିଳି ପାରିନଥାଏ । ବିବାହ ପୂର୍ବରୁ ସେମାନେ ସେବା କରିପାରନ୍ତି ନାହିଁ । ପୂଜାର୍ଚ୍ଚନା ଲାଗି ପୂଜାପଣ୍ଡାମାନେ ସ୍ୱତନ୍ତ୍ର ତାଲିମ ପାଇଥାନ୍ତି ଏବଂ ନିଯୋଗ ଦ୍ୱାରା ସେମାନଙ୍କ ପୂଜାର୍ଚ୍ଚନା ଜ୍ଞାନ ଓ ଅଭିଜ୍ଞତାର ପରୀକ୍ଷା କରାଯାଇ ପ୍ରମାଣପତ୍ର ପ୍ରଦାନ କରାଯାଇଥାଏ । ଏହି ପ୍ରମାଣପତ୍ର ପାଇବା ପରେ ପୂଜାପଣ୍ଡାମାନେ ଶାଢ଼ୀ ବନ୍ଧାଇ ସେବା ପାଇଁ ଶ୍ରୀମନ୍ଦିର ପ୍ରଶାସକ ନିକଟରେ ଆବେଦନ କରିଥାନ୍ତି । ପୂଜାପଣ୍ଡା ନିଯୋଗ ପକ୍ଷରୁ ପୂଜାପଣ୍ଡାମାନଙ୍କୁ ପୂଜାର୍ଚ୍ଚନାର ତାଲିମ ପ୍ରଦାନ କରାଯାଇଥାଏ । ନିଯୋଗର ଜଣେ ପ୍ରତିନିଧି ଶିକ୍ଷାର୍ଥୀମାନଙ୍କୁ ପୂଜାର୍ଚ୍ଚନା ସମ୍ପର୍କରେ ଶିକ୍ଷାଦାନ କରିଥାନ୍ତି । ଅନ୍ୟାନ୍ୟ ସେବାୟତମାନେ ପୂଜାବେଶ ପରିଧାନ କରି ସେବା କରିବାକୁ ସମର୍ଥ ହୋଇଥିବା ବେଳେ ପୂଜାପଣ୍ଡାମାନଙ୍କୁ ପୂଜାରେ ବସିବା ପାଇଁ ପଟ୍ଟବସ୍ତ୍ର ବା ମୁକୁଟ ପରିଧାନ କରିବାକୁ ପଡ଼ିଥାଏ । ଏହି ବସ୍ତ୍ର ଅତ୍ୟନ୍ତ ମୂଲ୍ୟବାନ । ଶ୍ରୀଜୀଉମାନଙ୍କର ପ୍ରଥ ସମସ୍ତ ସେବା ସହ ପୂଜାପଣ୍ଡାମାନେ ସମ୍ପୃକ୍ତ ତିନି ଧୂପ ଛଡ଼ା ଭୋଗ ବଲ୍ଲଭ, ଶ୍ରୀମନ୍ଦିରର ସ୍ୱତ୍ୱଲିପି ଅନୁଯାୟୀ ପ୍ରତ୍ୟହ ଅବକାଶ ପୂର୍ବରୁ ପରେ ରାହୁହୋମ, ସୂର୍ଯ୍ୟପୂଜା ଓ ଦ୍ୱାରପାଳ ପୂଜା ପୂଜାପଣ୍ଡାମାନଙ୍କ ଦ୍ୱାରା ସମ୍ପନ୍ନ ହୋଇଥାଏ । ପାଳିଆ ପୂଜାପଣ୍ଡାମାନେ ସୂର୍ଯ୍ୟପୂଜା ସୂର୍ଯ୍ୟପୂଜା ଓ ଦ୍ୱାରପାଳ ପୂଜା କରିଥାନ୍ତି ପଞ୍ଚ ଉପଚାରରେ ଏହି ପୂଜା ସମାହିତ ହୋଇଥାଏ । ସୂର୍ଯ୍ୟପୂଜା, ଦ୍ୱାରପାଳ ପୂଜା, ଭୋଗ ଶେଷ ପରେ ଏହି ସେବା ପାଇଁ ଉଦ୍ଦିଷ୍ଟ ପାଳିଆ ପୂଜାପଣ୍ଡାଙ୍କର କର୍ତ୍ତବ୍ୟ ଶେଷ ହୋଇଥାଏ । ତେବେ ଯେଉଁମାନଙ୍କର ୪ ବାଡ଼ ଭୋଗ ନାହିଁ ଅଧ ସେ ଦିନ ଉକ୍ତ ପାଳିଆ ପୂଜାପଣ୍ଡା ଅନ୍ୟ ପାଳିଆମାନଙ୍କ ସହ ପୂଜା କରିଥାନ୍ତି । ଅଣସର ପିଣ୍ଡିରେ ଏମାନେ ଗୋପାଳ ବଲ୍ଲଭ ଭୋଗ ଶେଷ ସକାଳ ଧୂପ ପୂର୍ବରୁ ଜଣେ ପାଳିଆ ଯାଇ ଗୋଟିଏ ପଦ୍ମ ପୁଷ୍ପ ଖେଳା ବା ମୁକୁଳ ପକାଇଥାନ୍ତି । ମହାଲକ୍ଷ୍ମୀଙ୍କ ପତି ପାଇଁ ଅଭିଷେକ ପକାନ୍ତି । ପରେ ଛେକ ଆସିଲେ ତିନି ପାଳିଆ ରାଜ ଧୂପ ଭୋଗ ଶେଷ ବଡ଼ବାଡ଼ ବା ବଳଭଦ୍ରଙ୍କୁ ବାସୁଦେବ ମନ୍ତ୍ର, ମଝିବାଡ଼ ବା ଦେବୀ ସୁଭଦ୍ରାଙ୍କୁ ଭୁବନେଶ୍ୱରୀ ମନ୍ତ୍ର ଓ ମହାପ୍ରଭୁ ବା ଶ୍ରୀଜଗନ୍ନାଥଙ୍କୁ ନାରାୟଣ ମନ୍ତ୍ର

[illegible]

ପୂଜା କରାଯାଇଥାଏ । ସୁଦର୍ଶନଙ୍କୁ ଗୋପାଳମନ୍ତ୍ର, ମହାଲକ୍ଷ୍ମୀଙ୍କୁ ଲକ୍ଷ୍ମୀମନ୍ତ୍ର ଓ ଶ୍ରୀଦେବୀଙ୍କୁ ବିଶ୍ୱଧାତ୍ରୀ ମନ୍ତ୍ରରେ ପୂଜା କରାଯାଏ । ଭୋଗ ମଣ୍ଡପ ବା ... ପୂଜା ସେହି ତିନି ଜଣ ପୂଜାପଣ୍ଡାଙ୍କ ଦ୍ୱାରା ସମ୍ପନ୍ନ ହୋଇଥାଏ । ... ଧୂପରେ ପାଳି ପଡ଼ିବା ପରେ ପାଳିଆ ପୂଜାପଣ୍ଡା ପୂର୍ବଭଳି ମୁରୁଜ ... ଓ ପୂଜା ତଥା ଆଳତି କରନ୍ତି । ସନ୍ଧ୍ୟା ଧୂପରେ ଅନୁରୂପ ନୀତି ଅନୁଷ୍ଠିତ ହୋଇଥାଏ ଏବଂ ଭୋଗ ଅର୍ପଣ କରି ପାଳିଆ ପୂଜାପଣ୍ଡା ... ଆଳତି କରିଥାନ୍ତି । ବଡ଼ସିଂହାର ଧୂପରେ ପାଳିଆ ପୂଜାପଣ୍ଡାମାନେ ତଳେ ବସି ଭୋଗ ସାରିଥାନ୍ତି । ନିୟମାନୁଯାୟୀ ଭୋଗ ... କି ନାହିଁ, ସେ ସମ୍ପର୍କରେ ତଦାରଖ କରିବା ଓ ମହାସୁଆରଙ୍କଠାରୁ ବୁଝିବା ପୂଜାପଣ୍ଡାମାନଙ୍କର କର୍ତ୍ତବ୍ୟ । ଯେଉଁଦିନ ଶ୍ରୀଜୀଉମାନଙ୍କ ବାହାରେ ବିଜେ ଥାଏ, ସେ ଦିନମାନଙ୍କରେ ପାଳିଆ ପୂଜାପଣ୍ଡା ଆଜ୍ଞାମାଳ ଆଣି ବିଜେ ପ୍ରତିମାମାନଙ୍କୁ ଦେଇଥାନ୍ତି । ସେହିଭଳି ରଥ ଅନୁକୂଳ ହେବାକୁ ଥିଲେ ଶ୍ରୀ ଅଙ୍ଗରୁ ମାଳ ଆଣି ଆଜ୍ଞାମାଳ ପ୍ରଦାନ କରିଥାନ୍ତି । ବିଭିନ୍ନ ପର୍ବପର୍ବାଣୀରେ ପୂଜାପଣ୍ଡାମାନେ ଜଗନ୍ନାଥଙ୍କ ବାଡ଼ରେ ... କରନ୍ତି ଓ ମହାପ୍ରଭୁଙ୍କ ବାଡ଼ରେ ସର୍ବାଙ୍ଗ କରନ୍ତି । ଚନ୍ଦନ ଯାତ୍ରା ସମୟରେ ଏହି ସେବାୟତମାନେ ଆଲଟ ଲାଗି କରିଥାନ୍ତି ଓ କର୍ମ କରିଥାନ୍ତି । ସହସ୍ର କୁମ୍ଭ ଅଭିଷେକରେ ମଧ ସେମାନଙ୍କୁ ବରଣ କରାଯାଇଥାଏ ଏବଂ ସେହିମାନଙ୍କ ଦ୍ୱାରା ହିଁ ବିଭିନ୍ନ କର୍ମ ସମ୍ପନ୍ନ ହୋଇଥାଏ । ସ୍ନାନାଭିଷେକରେ ପୂଜାପଣ୍ଡାମାନେ ଦେଉଳ ପୁରୋହିତଙ୍କ ... ଅଭିଷେକ କରନ୍ତି, ତେବେ ସେ ସମୟରେ ଦେଉଳ ପୁରୋହିତଙ୍କ ଦ୍ୱାରା ଭୋଗ କରାଯାଇଥାଏ । ରୁକ୍ମିଣୀ ବିବାହରେ ମଧ ପୂଜାପଣ୍ଡାମାନେ ବରଣ ହୋଇ କର୍ମ କରିଥାନ୍ତି । ପୂର୍ବରୁ ଚନ୍ଦନ ଘର ପ୍ରତିଷ୍ଠା ଓ ମନ୍ଦିର ମଧ୍ୟରେ କୌଣସି ପ୍ରତିଷ୍ଠା ବିଧି ସମାପିତ ହେବାର ଥିଲେ ଦେଉଳ ପୁରୋହିତଙ୍କ ଦ୍ୱାରା ସମ୍ପନ୍ନ ହେଉଥିଲା । କିନ୍ତୁ ବର୍ତ୍ତମାନ ପୂଜାପଣ୍ଡାମାନଙ୍କ ଦ୍ୱାରା ଏହି ବିଧି ସମ୍ପନ୍ନ କରାଯାଉଛି । ଏହାଛଡ଼ା ଋଷି ପଞ୍ଚମୀ, ଅନନ୍ତ ବ୍ରତ, ବିନାୟକ ବ୍ରତ, ଦୀପାବଳୀ, ଦୋଳ ପୂର୍ଣ୍ଣିମା ଓ ଜହ୍ନି ଉତ୍ସବ, ... ଅନଙ୍ଗ ତ୍ରୟୋଦଶୀ ଆଦି ପର୍ବପର୍ବାଣୀରେ ଏମାନଙ୍କର ... କର୍ତ୍ତବ୍ୟ ରହିଛି । ପୂଜାପଣ୍ଡାମାନେ ରଥ ଉପରେ ମଧ ଶ୍ରୀଜୀଉମାନଙ୍କୁ ଭୋଗ କରିଥାନ୍ତି । ଚନ୍ଦନ ଘରେ ଦୋଳବେଦୀରେ ତଥା ଗୁଣ୍ଡିଚା ଘରେ ମଧ ପୂଜାପଣ୍ଡାମାନଙ୍କ ଦ୍ୱାରା ଶ୍ରୀଜୀଉମାନଙ୍କୁ ଭୋଗ ନୈବେଦ୍ୟ ସମର୍ପଣ କରାଯାଇଥାଏ ।

ଶ୍ରୀମନ୍ଦିରରେ ସେବାପୂଜାର ପରମ୍ପରା ପ୍ରଚଳିତ ହେବା ଠାରୁ ପ୍ରଥମେ ଚାରିଜଣ ମୁଖ୍ୟ ସେବକ ଥିଲେ । ସେମାନେ ହେଲେ ଆଚାର୍ଯ୍ୟ, ବ୍ରହ୍ମହୋତା, ପାଦ୍ୟ ହୋତା ଓ ବ୍ରହ୍ମା । ଆଚାର୍ଯ୍ୟଙ୍କୁ ଅର୍ଚ୍ଚକ ବା ପୂଜାପଣ୍ଡା, ବ୍ରହ୍ମ ହୋତାଙ୍କୁ ମହାସୁଆର, ପାଦ୍ୟ ହୋତାଙ୍କୁ ପତ୍ରୀ ବଡୁ ଓ ବ୍ରହ୍ମାଙ୍କୁ ଚରାବଡୁ କୁହାଯାଇଥାଏ । ସମସ୍ତ ପୂଜା ଉପଚାରରେ ଚରାବଡୁଙ୍କ ଦ୍ୱାରା ... ଉପଚାର କରାଯାଇଥାଏ । ପତ୍ରୀ ବଡୁଙ୍କ ମାଧ୍ୟମରେ ସମସ୍ତ ପୂଜା ଉପଚାର ସାମଗ୍ରୀ ପୂଜାପଣ୍ଡାଙ୍କୁ ଦିଆଯାଇଥାଏ । ସମସ୍ତ ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ ଆଦି ଅନ୍ନ ବ୍ୟଞ୍ଜନ ମହାସୁଆରମାନଙ୍କ ଦ୍ୱାରା ପ୍ରସ୍ତୁତ ... ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ ଓ ସୁଦର୍ଶନ ଏହି ଚାରି ବିଗ୍ରହଙ୍କୁ ଏକ ... ଧୂପ ଦୀପ ଓ ନୈବେଦ୍ୟ ନିବେଦନ କରାଯାଇଥାଏ । ପାଳିଆ ପୂଜାପଣ୍ଡା ହେବା ପାଇଁ କେତେକ ବିଶେଷ ଯୋଗ୍ୟତା ଓ ନୀତି ନିଷ୍ଠାର ଆବଶ୍ୟକତା ରହିଛି । ସେମାନଙ୍କୁ ଗୋଖୋଳ ପରିମିତ ନଖ ବା ଚୁଟି ରଖିବାକୁ ପଡ଼ିଥାଏ । କିନ୍ତୁ ଅନ୍ୟ ସେବାୟତମାନଙ୍କ ପାଇଁ ବୈବାହିକ ସମ୍ପର୍କ କେବଳ ପ୍ରତିହାରୀ, ପୁଷ୍ପାଳକ ଓ ସୁଆର ଆଦି ସହଯୋଗୀ ସେବାୟତଙ୍କ ମଧ୍ୟରେ ସୀମିତ (କିନ୍ତୁ ଶ୍ରୀଜୀଉଙ୍କ ଆଦ୍ୟ ସେବକ ରୂପେ ପରିଚିତ ଦଇତାପତି, ବ୍ରାହ୍ମଣ ପଣିଆ ଓ ଭୂଣିଆଙ୍କ ସହ ପୂଜାପଣ୍ଡାମାନଙ୍କ ବୈବାହିକ ସମ୍ପର୍କ ସ୍ଥାପନ ନିଷିଦ୍ଧ । ଯଦି କେହି ଏହି ନିୟମରେ ବ୍ୟତିକ୍ରମ କରି ସହଯୋଗୀ ସେବକଙ୍କ ଛଡ଼ା ଅନ୍ୟ କୌଣସି ଜାତିରେ ବିବାହ କରନ୍ତି, ତେବେ ପାଳି ଖଟିବାରୁ ସେମାନେ ବଞ୍ଚିତ ହୋଇଥାନ୍ତି । ଏଭଳି କଟକଣା ଅନ୍ୟ କୌଣସି ମନ୍ଦିରର ସେବାୟତଙ୍କ ମଧ୍ୟରେ ଦେଖିବାକୁ ମିଳିନଥାଏ । ସେହିଭଳି ବିବାହ ପୂର୍ବରୁ ପୂଜା ନକରିବା କେବଳ ପୂଜାପଣ୍ଡାମାନଙ୍କ କ୍ଷେତ୍ରରେ ପ୍ରଯୁଜ୍ୟ । ପାଳିଆ ପୂଜାପଣ୍ଡା ସେବା ପାଇଁ ଶାଢ଼ୀ ବାନ୍ଧିବା ନିମନ୍ତେ ସେମାନଙ୍କୁ ଆଚାର୍ଯ୍ୟ ମନ୍ଦିରରେ ଅନ୍ୟୂନ ଦୁଇବର୍ଷ ଶିକ୍ଷା ଲାଭ କରିବାକୁ ପଡ଼ିଥାଏ । ଶ୍ରୀଜୀଉମାନଙ୍କ ପୂଜାର୍ଚ୍ଚନା ବ୍ୟତୀତ ବର୍ଷ ସାରା ଅନୁଷ୍ଠିତ ହେଉଥିବା ବିଭିନ୍ନ ଯାନିଯାତ୍ରାରେ କରାଯାଉଥିବା ସ୍ୱତନ୍ତ୍ର ପୂଜାର୍ଚ୍ଚନା ସମ୍ପର୍କରେ ମଧ ସେମାନେ ତାଲିମ ପାଇଥାନ୍ତି । ପ୍ରଥମେ ଶ୍ରୀକ୍ଷେତ୍ରରେ ୧୦ ଘର ପୂଜାପଣ୍ଡା ଥିଲେ । ମାତ୍ର ସମୟର ପ୍ରବାହରେ ସେମାନଙ୍କ ସଂଖ୍ୟା ବହୁଗୁଣିତ ହୋଇଛି । ବର୍ତ୍ତମାନ ସେମାନଙ୍କ ସଂଖ୍ୟା ପ୍ରାୟ ୪ ଶହ ମଧ୍ୟରେ । ସେମାନଙ୍କ ମଧ୍ୟରୁ ପୂଜା କରୁଥିବା ପାଳିଆମାନଙ୍କ ସଂଖ୍ୟା ୩୫ ଜଣଙ୍କ ମଧ୍ୟରେ ସୀମିତ । ଏମାନେ ପାଳିଆ ବା କର୍ମନେତା ପୂଜାପଣ୍ଡା । ପ୍ରତି ୭/୯/୧୦ ଦିନରେ ଏମାନଙ୍କ ପାଳି ପଡ଼ିଥାଏ । କେଉଁ ପୂଜାପଣ୍ଡା କେଉଁ ପାଳି ଖଟିବେ, ତାହା ପୂଜାପଣ୍ଡା ନିଯୋଗ ଦ୍ୱାରା ସ୍ଥିରୀକୃତ ହୋଇଥାଏ । ଯେଉଁମାନେ ଆଦୌ ପୂଜା କରିନାହାନ୍ତି, ସେମାନଙ୍କୁ "ଭାଇପୂଜା" କୁହାଯାଏ । ସେମାନେ ଯାତ୍ରୀ ବୃତ୍ତି ବା ଧୂଳିଆ କରି ଚଳନ୍ତି । ସେମାନଙ୍କ ଆର୍ଥିକ ଅବସ୍ଥା ସେତେ ସ୍ୱଚ୍ଛଳ ନୁହେଁ । ପ୍ରସଙ୍ଗତଃ ଉଲ୍ଲେଖଯୋଗ୍ୟ ଯେ, ସେବାୟତ ନିଯୋଗର କର୍ମକର୍ତ୍ତା କେବଳ ଏହି ୩୫ ଜଣ ପୂଜାପଣ୍ଡାଙ୍କ ଭୋଟରେ ନିର୍ବାଚିତ ହୋଇଥାନ୍ତି । ଭଗାରୀ କିମ୍ବା ଭାଇ ପୂଅମାନେ ପୂଜାପଣ୍ଡା ସମ୍ପ୍ରଦାୟର ଅନ୍ତର୍ଭୁକ୍ତ ହୋଇଥିଲେ ମଧ ସେମାନଙ୍କର ଭୋଟ୍ ଦାନ ଅଧିକାର ନାହିଁ । ଶ୍ରୀମନ୍ଦିର ସ୍ୱତ୍ୱଲିପି ଅନୁଯାୟୀ ପାଳିଆ ପୂଜାପଣ୍ଡାମାନଙ୍କୁ ପାରିଶ୍ରମିକ ସ୍ୱରୂପ ଖେଇ ମିଳିବାର ବିଧି ରହିଛି । ତେବେ ସମୟର ପରିବର୍ତ୍ତନକ୍ରମେ ଶ୍ରୀମନ୍ଦିର ପ୍ରଶାସନ ପକ୍ଷରୁ ସେମାନଙ୍କୁ ପୁରସ୍କାର ହିସାବରେ ପାରିଶ୍ରମିକ ପ୍ରଦାନ କରାଯାଉଛି । ଏହାର ପରିମାଣ ୧୦୩ ଟଙ୍କା । ୩ ଜଣ ପାଳିଆ ଏହି ପ୍ରାପ୍ୟ ପାଉଥାନ୍ତି । ଏହାଛଡ଼ା ଭୋଗ ପରେ ଯେଉଁ ଚଣ୍ଡ ଦକ୍ଷିଣା ପୂଜାପଣ୍ଡାମାନଙ୍କୁ ମିଳିଥାଏ, ତାହା ୮ ଭାଗରେ ବିଭକ୍ତ ହୁଏ । ମନ୍ଦିର କର୍ତ୍ତୃପକ୍ଷ, ସୁଆର, ମହାସୁଆର, ନିଯୋଗ ଏଥିରୁ ସେମାନଙ୍କ ଭାଗ ପାଇଥାନ୍ତି । ପୂଜାପରେ ପରିମାଣିକ ଟିକେଟ୍‌ରେ ଯାତ୍ରୀମାନେ ଦର୍ଶନକୁ ଗଲେ ପିଣ୍ଡିକାରେ ଯେଉଁ ଦକ୍ଷିଣା ଦାନ କରନ୍ତି, ସେହି ଅର୍ଥରୁ ପାଳିଆ ପୂଜାପଣ୍ଡାମାନେ ଟଙ୍କାକେ ଚାରି ଅଣା ପାଇଥାନ୍ତି । ପରେ ପୂଜାପଣ୍ଡାମାନେ ଆଉ ପୂଜା କରି ପାରିବା କଥା ନୁହେଁ । କିନ୍ତୁ ପାଳିଆ ପୂଜାପଣ୍ଡାଙ୍କ ସୀମିତ ସଂଖ୍ୟା ଦୃଷ୍ଟିରୁ ବାଧ ହୋଇ ୬୦ ବର୍ଷ ଅତିକ୍ରମ କରିଯାଇଥିବା କେତେକ ପୂଜାପଣ୍ଡା ମଧ ପୂଜା କରୁଛନ୍ତି ।

ହରିନିଧି 'ଅର୍ଚ୍ଚିତା', ପୁରୀ

ଭକ୍ତଙ୍କ ପ୍ରସଙ୍ଗ



# ଗଞ୍ଜାମ ଜିଲ୍ଲାରେ ରଥଯାତ୍ରା

● ଶ୍ରୀ ମାରୁତି [illegible]

ପୁରୀର ପ୍ରସିଦ୍ଧ ରଥଯାତ୍ରା ଏକ ଧାର୍ମିକ ଓ ସାଂସ୍କୃତିକ ପରମ୍ପରା ଭାବରେ ପାଳିତ ହୋଇ ଆସୁଅଛି । ଶ୍ରୀକ୍ଷେତ୍ରର ରଥଯାତ୍ରା ହେଉଛି ପୃଥିବୀପ୍ରସିଦ୍ଧ । ପୁରୀର ରଥ ଯାତ୍ରା ସମୟରେ ଭାରତ ଓ ଭାରତ ବାହାରେ ମଧ୍ୟ ସେହି ସମୟରେ ରଥଯାତ୍ରା ଅନୁଷ୍ଠିତ ହୋଇଥାଏ । ଆକାର-ପ୍ରକାର, ଆୟୋଜନ, ଆଡ଼ମ୍ବର, ବିଧିବିଧାନ ଏସବୁ ଦୃଷ୍ଟିରୁ ଦେଖିଲେ ପୁରୀର ରଥଯାତ୍ରା ହେଉଛି ବୃହତ୍ତମ । ଅତୀତରେ କୋଣାର୍କରେ ରଥଯାତ୍ରା ଅନୁଷ୍ଠିତ ହେଉଥିଲା । ପ୍ରତିବର୍ଷ ଭୁବନେଶ୍ୱରରେ ଅଶୋକାଷ୍ଟମୀ ଦିନ ଲିଙ୍ଗରାଜ ମହାପ୍ରଭୁଙ୍କର ରଥଯାତ୍ରା ଅନୁଷ୍ଠିତ ହେଉଅଛି । କିନ୍ତୁ ରଥଯାତ୍ରା କହିଲେ ପୁରୀର ଶ୍ରୀଗୁଣ୍ଡିଚା ରଥଯାତ୍ରାକୁ ବୁଝାଇଥାଏ ।

ଅବିଭକ୍ତ ଗଞ୍ଜାମ ଜିଲ୍ଲାର ପାରଳାଖେମୁଣ୍ଡି ରଥଯାତ୍ରା ଓଡ଼ିଶାର ଦ୍ୱିତୀୟ ସ୍ଥାନ ଅଧିକାର କରିଅଛି । ପାରଳାଖେମୁଣ୍ଡିରେ ପୁରୀ ଗଜପତି ମହାରାଜାଙ୍କର ବଂଶଧରମାନେ ରାଜତ୍ୱ କରୁଥିବାରୁ ସେଠାରେ ରଥଯାତ୍ରା ବିଶେଷ ଆଡ଼ମ୍ବର ସହକାରେ ଅନୁଷ୍ଠିତ ହୋଇଥାଏ ।

ଖ୍ରୀଷ୍ଟାବ୍ଦ ଅଷ୍ଟାଦଶ ଶତାବ୍ଦୀ ଆରମ୍ଭରେ ପୁରୀରେ ମୁସଲମାନମାନଙ୍କର ବାରମ୍ବାର ଆକ୍ରମଣ ଯୋଗୁଁ ଶ୍ରୀଗୁଣ୍ଡିଚା ରଥଯାତ୍ରା ହୋଇ ପାରିନଥିଲା । ବଙ୍ଗ ସୁବାଦାର ସୁଜାଉଦ୍ଦିନଙ୍କ ରକ୍ଷିତା ପୁତ୍ର ତକିଖାଁ ସେତେବେଳେ ଓଡ଼ିଶାର ନା-ଏବ ପଦରେ ନିଯୁକ୍ତ ହୋଇ ଖୋର୍ଦ୍ଧାରେ ଥିବା ଦ୍ୱିତୀୟ ରାମଚନ୍ଦ୍ରଦେବଙ୍କୁ(୧୭୨୭-୧୭୩୬) ବନ୍ଦୀ କରି କଟକରେ ନେଇ ରଖିଲେ । ମାଦଳା ପାଞ୍ଜିର ବିବରଣୀ ଅନୁସାରେ ରାମଚନ୍ଦ୍ରଦେବ ନବାବଙ୍କର କନ୍ୟା ପ୍ରତି ଆସକ୍ତ ହୋଇ ଇସଲାମ ଧର୍ମ ଗ୍ରହଣ କରିଥିଲେ । "ଏ ରାଜା ନବାବଙ୍କ ଝିଅକୁ ହରିଲେ ଜାତି ଭ୍ରଷ୍ଟ ହେଲେ । ପଠାଣମାନଙ୍କ ସଙ୍ଗେ ଆତଜାତ ହେଲେ ।"

ସେଥିପାଇଁ ରାମଚନ୍ଦ୍ରଦେବ ବଡ଼ଦେଉଳକୁ ଦର୍ଶନ କରିବା ପାଇଁ ଯାଇପାରିଲେ ନାହିଁ । ତାଙ୍କର ଦର୍ଶନପାଇଁ ମନ୍ଦିର ପ୍ରବେଶ ଦ୍ୱାରରେ ପତିତପାବନ ମୂର୍ତ୍ତି ରଖାଗଲା । ରାଜା ସେଠାରେ ଜଗନ୍ନାଥଙ୍କୁ ଦର୍ଶନ କଲେ ।

ତକିଖାଁ ଅତ୍ୟାଚାର ହେତୁ ଶ୍ରୀମନ୍ଦିର ରୀତି-ନୀତିରେ ଘୋର ବିଶୃଙ୍ଖଳା ସୃଷ୍ଟି ହେଲା । ଠାକୁରମାନଙ୍କୁ ଚିଲିକା ପାରି କରି ଆଠଗଡ଼ ମାର୍ଦ୍ଦା ଓ ଟେକାଲିରେ କିଛି କାଳ ଲୁଚାଇ ରଖାଗଲା । ସେତେବେଳେ ଟେକାଲି ପାରଳାଖେମୁଣ୍ଡି କର୍ତ୍ତୃତ୍ୱାଧୀନ ହୋଇ ରହି ଥିବାରୁ ତତ୍କାଳୀନ ପାରଳାଖେମୁଣ୍ଡି ରାଜା ନରହରି ନାରାୟଣ ଦେବଙ୍କ ପୁତ୍ର ପଦ୍ମନାଭ ନାରାୟଣ ଦେବଙ୍କ ଉଦ୍ୟମକ୍ରମେ ପୁରୀ ରଥଯାତ୍ରାର ପ୍ରତୀକ ଉତ୍ସବ ଟିକାଲି ଓ ପାରଳାଖେମୁଣ୍ଡିରେ ଅନୁଷ୍ଠିତ ହୋଇଥିଲା । ପାରଳାଖେମୁଣ୍ଡିରେ ତଦ୍‌ବିଧି ପୁରୀପରି ତିନି ଗୋଟି ରଥ ତିଆରି ହୋଇ ଯଥାବିଧି ଆଡ଼ମ୍ବର ସହକାରେ ମହାପ୍ରଭୁଙ୍କର ରଥଯାତ୍ରା ସମ୍ପନ୍ନ ହେଲା । କାଳକ୍ରମେ ତାହା ମଧ୍ୟ ସମ୍ଭବ ହେଲା ନାହିଁ ।

ପ୍ରାୟ ଦୁଇ ଶହ ବର୍ଷ ପରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ମହାପ୍ରଭୁଙ୍କର ରଥଯାତ୍ରା ନିମନ୍ତେ ତିନୋଟି ସୁନ୍ଦର କାରୁକାର୍ଯ୍ୟ ଖଚିତ ସ୍ଥାୟୀ ରଥ ନିର୍ମାଣ କରାଇ ମନ୍ଦିର ନିକଟରେ ରଖାଇଲେ । ମହାଆଡ଼ମ୍ବର ସହକାରେ ରଥଯାତ୍ରା ଉତ୍ସବ ମହାରାଜାଙ୍କ ତତ୍ତ୍ୱାବଧାନରେ ଅନୁଷ୍ଠିତ ହେଲା ।

କାଳକ୍ରମେ ତିନିରଥ ପରିବର୍ତ୍ତେ ବର୍ତ୍ତମାନ ଗୋଟିଏ ଛୋଟ ରଥରେ ତିନିଠାକୁରଙ୍କୁ ଟାଣିନେଇ ଗୁଣ୍ଡିଚା ଘରେ ଠାକୁରମାନଙ୍କର ବିଧିନୀତି କୌଣସି ମତେ କରାଯାଉଅଛି । ଏହି ଯାତ୍ରାରେ ବହୁ ଅତିଥି ଯୋଗ ଦେଇଥାନ୍ତି । ଗଞ୍ଜାମରେ ରଥଯାତ୍ରା ଅନୁଷ୍ଠିତ କରିବାରେ ପାରଳାଖେମୁଣ୍ଡି ଅଗ୍ରଣୀ । ପାରଳାଖେମୁଣ୍ଡି ଦେଖାଦେଖି ଗଞ୍ଜାମର ଅନ୍ୟାନ୍ୟ ଜମିଦାର ରାଜାମାନେ ଘୁମୁସର, ଧରାକୋଟ, ଖଲିକୋଟ, ଆଠଗଡ଼, ଶେରଗଡ଼, ବଡ଼ଖେମୁଣ୍ଡି, ସାନଖେମୁଣ୍ଡି, ଚିକିଟି ପ୍ରଭୃତି ଜମିଦାମାନେ ରଥଯାତ୍ରାକୁ ପରମ୍ପରାକ୍ରମେ ଅନୁଷ୍ଠିତ କରୁଥିବା ଇତିହାସରୁ ଜଣାଯାଏ । ଜମିଦାରମାନଙ୍କର ଶାସନ, କ୍ଷମତା, ପ୍ରତିପତ୍ତି ଚାଲିଯାଇଥିଲେ ମଧ୍ୟ ପର୍ଯ୍ୟନ୍ତ ବିଧିରକ୍ଷା କରି ରଥଯାତ୍ରା ଅନୁଷ୍ଠିତ ହେଉ ଅଛି ।

ଗଞ୍ଜାମର ଜମିଦାରୀମାନଙ୍କ ମଧ୍ୟରେ ଘୁମୁସର ହେଉଛି ସବୁଠାରୁ ବଡ଼ ଜମିଦାରୀ । ଏହାର ଆୟତନ ତିନିଶହ ବର୍ଗମାଇଲ । ରାଜା ଧନଞ୍ଜୟ ଭଞ୍ଜ ଷୋଡ଼ଶ ଶତାବ୍ଦୀରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ତିନିମୂର୍ତ୍ତି ସ୍ଥାପନ କରିଥିଲେ । କିନ୍ତୁ ରାଜା କୃଷ୍ଣଭଞ୍ଜ ୧୭୬୪ ମସିହାରେ ଘୁମୁସରରେ ରାଜା ହେବା ପରେ କୁଳାଡ଼ ଗଡ଼ରେ ନଅଗଡ଼କୁ ଲାଗିଥିବା କାରୁକାର୍ଯ୍ୟ ଖଚିତ ମନ୍ଦିର ନିର୍ମାଣ କରାଇ ସେଥିରେ ତିନିଠାକୁରଙ୍କୁ ପ୍ରତିଷ୍ଠା କଲେ । ପୁରୀ ଜଗନ୍ନାଥ ମନ୍ଦିର ଢାଞ୍ଚାରେ କୁଳାଡ଼ ମନ୍ଦିରରେ ପାବଚ୍ଛ ନିର୍ମାଣ କରାଇଥିଲେ । କୁଳାଡ଼ରେ ନିର୍ମାଣ ହୋଇଥିବା ଜଗନ୍ନାଥ ମନ୍ଦିରରେ ଗୋଟିଏ ନୂଆ କଥା ଦେଖିବାକୁ ମିଳେ । ସାଧାରଣତଃ ମନ୍ଦିର ଚୂଡ଼ାରେ ଗୋଟିଏ ଅଁଳାଶ୍ରୀ ରହି ଥାଉଥିବେଳେ ଏଠାରେ ଚୂଡ଼ାରେ ଦୁଇଟି ଅଁଳାଶ୍ରୀ ରହିଥିବା ଦେଖାଯାଏ । ଶୁଣାଯାଏ କୃଷ୍ଣଭଞ୍ଜଙ୍କ ଭବିଷ୍ୟତ୍ ବଂଶଧରମାନେ ଯେପରି ରାଜ୍ୟ କରିବେ ସେଥିପାଇଁ ଏହା କରିଛନ୍ତି । ଶିଳ୍ପଶାସ୍ତ୍ର ଅନୁସାରେ ଏହା ଏକ ବର୍ଜ୍ଜିତ ଏହା ହେବା ଦ୍ୱାରା ବଂଶଲୋପ ହୁଏ ବୋଲି କଥିତ ଅଛି ।

କୁଳାଡ଼ରେ ଗୋଟିଏ ରଥରେ ତିନି ଠାକୁରଙ୍କୁ ବସାଇ ଗଡ଼ର ପଶ୍ଚିମ ଦାଣ୍ଡରେ ରଥଟାଣି ନେଇ ଗୁଣ୍ଡିଚା ମଣ୍ଡପରେ ...

ଶେଷ ପୃଷ୍ଠା

ଯାଏ । ସେଠାରେ ସମସ୍ତ ବିଧିବିଧାନ କରାଯାଏ । ସୁମୁସର ରାଜା ନିଜର ତିନିପୁତ୍ର ଜଗନ୍ନାଥ ଭଞ୍ଜଙ୍କୁ ଜଗନ୍ନାଥ ପ୍ରସାଦ ମୁଠା, ଙ୍କୁ ବୁଢ଼ୀ ମୁଠା ଏବଂ ସଦାଶିବ ଛୋଟରାୟଙ୍କୁ ବାଲିପଦର ମୁଠା ପ୍ରଦାନକରି ଥଇଥାନ କରାଇଥିଲେ । ଜଗନ୍ନାଥ ଭଞ୍ଜ ରେ ଚତୁର୍ଦ୍ଧାମନଙ୍କୁ ପ୍ରତିଷ୍ଠା କରି ଗୋଟିଏ କାରୁକାର୍ଯ୍ୟ ନିର୍ମିତ ମଣ୍ଡପରେ ତିନିଦିଅଁଙ୍କୁ ସ୍ଥାପନା କରି ଥିଲେ । ସେଠାରେ ଚିରାଚରିତ ପ୍ରଥା ପ୍ରକାରେ ରଥଯାତ୍ରା ଅନୁଷ୍ଠିତ ହୋଇଥାଏ । ରେ ମଧ ହରିଶରଣ ଭଞ୍ଜ ଗୋଟିଏ ମନ୍ଦିର ନିର୍ମାଣ କରି ଜଗନ୍ନାଥ, ଭଦ୍ର,ସୁଭଦ୍ରା, ତିନିମୂର୍ତ୍ତିଙ୍କୁ ସ୍ଥାପନା କରି ପ୍ରତିବର୍ଷ ରଥଯାତ୍ରା ସମାରୋହରେ କରାଉଥିଲେ । ଏବେ ମଧ ସେହି ପ୍ରଥା ପ୍ରଚଳିତ । ବାଲିପଦରରେ ମଧ ରାଜା ସଦାଶିବ ଛୋଟରାୟ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା କରି ତିନିଦିଅଁଙ୍କୁ ସ୍ଥାପନା କରି ନିୟମିତ ରଥଯାତ୍ରା ସମ୍ପନ୍ନ କରିଥିଲେ । ପୁରୁଣା ସୁମୁସର ଗଡ଼ରେ ବାସୁଦେବଙ୍କ ମନ୍ଦିର ଅବସ୍ଥିତ । ରାଜା ଲକ୍ଷ୍ମଣ ଭଞ୍ଜ ବାସୁଦେବଙ୍କୁ ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ଅନ୍ୟ ଏକ ମନ୍ଦିର ନିର୍ମାଣ କରାଇ ସେଥିରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ମୂର୍ତ୍ତି ସ୍ଥାପନ କରି ପ୍ରତିବର୍ଷ ରଥଯାତ୍ରାର ବ୍ୟବସ୍ଥା କରି ଦେଇଥିଲେ । ସେହି ପ୍ରକାରେ ସେଠାରେ ରଥଯାତ୍ରା ଅନୁଷ୍ଠିତ ହୋଇଥାଏ ।

ଗାଳ୍ପଡ଼ା ସ୍ଥାନ ଛଡ଼ା ସୁମୁସର ରାଜ୍ୟରେ ବେଲଗୁଣ୍ଠା, ଭଞ୍ଜନଗର, ବଡ଼ କୋଦଣ୍ଡା, ପାଇଲିପଡ଼ା, ନେଟେଙ୍ଗା,ପଞ୍ଚକୂଟି ପ୍ରଭୃତି ଗ୍ରାମରେ ଧର୍ମପ୍ରାଣ ବ୍ୟକ୍ତିମାନଙ୍କ ଦ୍ୱାରା ମନ୍ଦିର ପ୍ରତିଷ୍ଠା ହୋଇ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର ତିନି ମୂର୍ତ୍ତି ସ୍ଥାପନା କରାଯାଇଛି ଏବଂ ଚିରାଚରିତ ପ୍ରକାରେ ରଥଯାତ୍ରା ଅନୁଷ୍ଠିତ ହୋଇ ଆସୁଛି ।

ଏହାଛଡ଼ା ଗଞ୍ଜାମ ଜିଲ୍ଲାର କୋଦଳା, ପୋଲସରା, କବିସୂର୍ଯ୍ୟନଗର, ପୁରୁଷୋତ୍ତମପୁର, ଗଞ୍ଜାମ, ହୁମା, ଛତ୍ରପୁର, ବ୍ରହ୍ମପୁର, ହିଞ୍ଜିଳିକାଟୁ, ଆସ୍କା ପ୍ରଭୃତି ବଡ଼ ବଡ଼ ଗ୍ରାମ ଓ ସହରରେ ଧର୍ମପ୍ରାଣ ବ୍ୟକ୍ତିମାନଙ୍କ ସହାୟତାରେ ରଥଯାତ୍ରା ଅନୁଷ୍ଠିତ ହୋଇଥାଏ ।

*ସ୍ୱାଧୀନତା ସଂଗ୍ରାମୀ,ଚଉଦ୍ୱାର, କଟକ*

• • •

# ସ୍ୱର୍ଗଦ୍ୱାରର ସ୍ୱପ୍ନ

• ଶ୍ରୀ ସନ୍ତୋଷ ତ୍ରିପାଠୀ

ଏ ପୁଣ୍ୟ ଶ୍ରୀକ୍ଷେତ୍ର ପରେ ...
କେତେବେଳେ ତୁ ନନ୍ଦ କେତେବେଳେ ଛାଇ
କେତେବେଳେ ନନ୍ଦଦୁମ, କେତେବେଳେ ଶୂନ୍ୟବ୍ରହ୍ମ,
ନିର୍ଗୁଣ ପୁରୁଷ-ହସକାନ୍ଦ କିଛି ନାହିଁ
ସଗୁଣ ରୂପରେ ଆସିବୁ ବୋହିଥା ହଲାଇ....
ତୋ ବେଳାଭୂମିରେ......
ଜୀବନ ସାରାଟି ଆସି, ଯାଇ ମୁଁ ମେଲିଛି
ସୂତର ଜାଲ ଦେଇ, ମଲା ଶାମୁକା ଭରିଛି,
ହସକୁ ମନରଖି କେତେ
କୋହକୁ ପଡ଼ାଇଛି ସ୍ରୋତେ
ବିଶ୍ୱାସର ବିଷ ପିଇଦିଇ
ଭରିଛି ତୋ ବାଲିବନ୍ଧ ଦେଇ
ଅନ୍ଧାର ଅନାର ସବୁ ପଛରେ ପକାଇ
ଗୋଟିଏ କାମନା ତୁହାଇ ଧରିଛି
କେତେବେଳେ କୂଅଁତାରା ମଥାନ ଲୁଚିବ
ଅବାଶ ପବନର ବାତିଯିବ ନାହିଁ....
ତୋ ଶରଧାବାଲିରେ.......

ହଜାର ଅନେକ ରାତି ପାଇଛି ବି କେତେ
ରାତି
ଦେଖୁଛି ତୋ ଅଭିନୟ, ଲୋଡ଼ିଛି ତୋ
ପରିଚୟ
ତୋତେ ଦେଖି ବି ଦେଖୁନି
ପାଖେ ପାଇ ବି ଚିହ୍ନୁନି
ବଲାପଥ ଧାରେ ଯାଏ ସରିସରି କାହିଁ !
ତୋ କଳ୍ପବଟ ତଳେ.....
ଯୁଗଯୁଗ ଧରି ଲେଖନୀ ଲେଖୁଛି
ତୁ ପରା ଭରିଛୁ ଫୁଲରେ ଫଳରେ
ମଳୟର ମଧୁ ପ୍ରତିଶ୍ରୁତି,
ଜହ୍ନକୁ ରଖୁଛୁ ତାରାଙ୍କ ମେଳରେ
ଗୀତା ବଖାଣିଛୁ ରଣନଦୀ କୂଳେ
ଢେଉକୁ ଥାପିଛୁ ସାଗର ବକ୍ଷରେ
ଖେଳାଇ ଦେଉଛୁ ଦୁନିଆଁ ହାଟରେ
ଷୋଳକଳାରଙ୍କ ନିଷ୍କାମଭାବର ପ୍ରୀତି
ନିଃଶ୍ୱାସକୁ ମୋର ବନ୍ଧକ ଦେଇ
ଡୋରି ବାନ୍ଧିଲି ମୁଁ ହସଟିକେ ପାଇଁ

ହେଲେ ମୋହରି ହସକୁ
ଉପହାସ କରି
ଜୀବନ ନଈକୁ ସୁଖେଇ ଦେଉଛୁ
ଅଣପରେ ଗଲୁ ଶୋଇ...
ତଥାପି ତୋ ସିଂହଦ୍ୱାରେ....
ଖେଳନା ମୁଁ ତୋର ହାତେ
ବୁଝିବି ବୁଝିନି ତୋତେ
ମିଛ ଆଉ ସତ କେତେ
ଜୀବନ ସଉଦା ସତେ
ଜାଣିବି ପାରୁନି କେବେ
ତୋ କୈବଲ୍ୟ ଠିକଣା ଦେଇ,
ସପନର ବିଦାମାଖି
ଫୁଲ ଅବା କଣ୍ଟା ଶେଯେ
ଯିବି ତୋ ସ୍ୱର୍ଗଦ୍ୱାରକୁ,
ପାଛୋଟି ନେବୁତୁ ମୋତେ
ଖିଭ କରଙ୍କ ତଂଚ ଆଉ
ରାମନାମ ଗାଇ.....!

*ଅଧ୍ୟାପକ ଓଡ଼ିଆ ବିଭାଗ*
*ଡ଼ି.ଡ଼ି.ଈ.ଇ., ବାଣୀବିହାର, ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର*



# ଜଗନ୍ନାଥେ ହେ।

ଶ୍ରୀ ନିତ୍ୟାନନ୍ଦ ମହାପାତ୍ର

ଆଉ କିଛି ମାଗୁନାହିଁ । କେବଳ ଶରଧା ବାଲିରୁ ହାତେ ମାଗୁଛି । ଅର୍ଥାତ ଶରଧା-ଶ୍ରଦ୍ଧା ବା ସ୍ନେହ ହିଁ ମାଗୁଛି । ଜଗନ୍ନାଥଙ୍କ ତତ୍ତ୍ୱ ବୟାନ କରି ବହୁ ବହୁଜ୍ଞାନୀ ଅନେକ ତଥ୍ୟ ଉପସ୍ଥାପନ କରିଛନ୍ତି । ସେଥିରୁ ଅଳ୍ପ କେତେକ ମୋର ଦୃଷ୍ଟିଗୋଚର ହୋଇଛି । ମାତ୍ର ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର ଏଭଳି ରୂପକୁ ଅମାନୁଷିକ ନ କରି ଅତିମାନୁଷିକ କହିବା ଠିକ। କିନ୍ତୁ ଏ ରୂପ ପ୍ରାକୃତିକ ନୁହେଁ ବୋଲି ନିଶ୍ଚିତରେ କହିହେବ । ଅରୂପକୁ ରୂପ ଦେବାର ଏକ ପ୍ରକ୍ରିୟାକୁ ପ୍ରତିଷ୍ଠିତ କରିବା ଯେ ସହଜସାଧ୍ୟ ନୁହେଁ, ଏକଥା ସମସ୍ତେ ସ୍ୱୀକାର କରିବେ ।

ଜଗନ୍ନାଥ ଚକ୍ରଧାରୀ ପୁରୁଷୋତ୍ତମ ହୁଅନ୍ତୁ ଅଥବା ବଳଭଦ୍ର ସଙ୍କର୍ଷଣ ହୁଅନ୍ତୁ ସେସବୁ ତଥ୍ୟ ନିର୍ଣ୍ଣୟ କରିବା ଗବେଷକମାନଙ୍କର କାର୍ଯ୍ୟ । କିନ୍ତୁ ମୋ ଭଳି ଜଣେ ଅତି ସାଧାରଣ ବ୍ୟକ୍ତି ଆଖିରେ ଦୁଇ ଭାଇ ସେମାନଙ୍କ ଭଉଣୀଙ୍କ ସହ ପୂଜା ପାଇବାର ବିଧି ସନାତନ ଧର୍ମ ଯେଉଁଠାରେ କେଉଁଠି ହେଲେ ପ୍ରଚଳିତ ଥିବାର ଦେଖାଯାଏ ନାହିଁ ।

ଜଗନ୍ନାଥ ଯେ ଜୀବନ୍ତ ଠାକୁର, ଏକଥା ଜନଶ୍ରୁତିରେ କେବଳ ନୁହେଁ ବହୁ ପୌରାଣିକ ଆଖ୍ୟାୟିକା ରୂପେ ମାନି ନିଆଯାଇଛି । ସେସବୁ ମୂଳରେ କେବଳ ଭକ୍ତିକୁ ହିଁ ମୁଖ୍ୟ ଆଧାର ରୂପେ ବୟାନ କରାଯାଇଛି ବୋଲି କୁହାଯିବ ।

ଜଗନ୍ନାଥ ଯେ ନିଜେ ଶ୍ରୀକୃଷ୍ଣ, ଏ କଥାର ପ୍ରମାଣ ତାଙ୍କର ବଡ଼ଭାଇ ବଳଭଦ୍ର ଓ ସାନ ଭଉଣୀ ସୁଭଦ୍ରାଙ୍କ ସହ ତାଙ୍କର ଦୈନନ୍ଦିନ ପୂଜା ପାଉଥିବା ବିଧିବିଧାନରୁ ମିଳିଯିବ । କିନ୍ତୁ ଭକ୍ତ ଚକ୍ଷୁରେ ସେ ଯେ ନିଜକୁ ଗଣେଶ ମୂର୍ତ୍ତିରେ ପରିଣତ କରିଦେଇଛନ୍ତି ଏହା ପ୍ରମାଣସିଦ୍ଧ ଏବଂ ପୂଜା ପଦ୍ଧତିର ଅନ୍ତର୍ଭୁକ୍ତ ।

ଚନ୍ଦନ ଯାତ୍ରାରେ ବିଜେ କରାଯିବାବେଳେ ଯେଉଁ ମଦନମୋହନ ମୂର୍ତ୍ତି ବିମାନରେ ବିଜେ କରିଥାନ୍ତି, ସେ ତ ନିଜେ ସ୍ୱୟଂ ଜଗନ୍ନାଥଙ୍କର ବିଜେ ପ୍ରତିମା । ଜଗନ୍ନାଥଙ୍କ ମୂର୍ତ୍ତି ମଧ୍ୟରେ ରାଧାକୃଷ୍ଣଙ୍କର ସ୍ୱରୂପକୁ ମଧ୍ୟ ଚିନ୍ତା କରାଯାଇଛି ।

ରଥଯାତ୍ରାରେ ଜଗନ୍ନାଥ ବୃନ୍ଦାବନ ଗମନ କରନ୍ତି ବୋଲି କତିପୟ ବୈଷ୍ଣବଙ୍କ ମତ । ସେଥିପାଇଁ ବାହୁଡ଼ାରେ ଶ୍ରୀ ମନ୍ଦିରକୁ ଫେରିଲା ବେଳେ ଲକ୍ଷ୍ମୀ ଠାକୁରାଣୀ କଳହ କରିଥାନ୍ତି ।

ମହାପ୍ରଭୁ ଚୈତନ୍ୟ ଶ୍ରୀଜଗନ୍ନାଥଙ୍କୁ ଶ୍ରୀକୃଷ୍ଣଙ୍କର ସ୍ୱରୂପ ଜ୍ଞାନ କରୁଥିଲେ ।

ଜଗନ୍ନାଥଙ୍କର ବିଶେଷତ୍ୱ ହେଉଛି ଜାତି ବର୍ଣ୍ଣ ନିର୍ବିଶେଷରେ ସେ କେବଳ ଉପାସ୍ୟ ନୁହନ୍ତି । ବିଶ୍ୱସ୍ତ ମଧ୍ୟ ।

ସମ୍ପୂର୍ଣ୍ଣ 'ଦାସ୍ୟଭାବକୁ' ଜଗନ୍ନାଥଙ୍କ ପ୍ରତି ଭକ୍ତିଭାବରେ ପରିପୂର୍ଣ୍ଣ ଆଖ୍ୟାୟିକା ବହନ କରିଛି। ଜାତି ବର୍ଣ୍ଣ ନିର୍ବିଶେଷରେ ଜଗନ୍ନାଥ ଯେ ସମସ୍ତଙ୍କର ଉପାସ୍ୟ, ଏକଥା ପ୍ରଚଳିତ ଆଖ୍ୟାୟିକାମାନଙ୍କରେ ପ୍ରମାଣିତ ।

ଦାସିଆ ବାଉରୀ ଜଣେ ଅନ୍ତ୍ୟଜ ଜାତିର ଲୋକ ହୋଇ ଯେପରି ଭାବରେ ଜଗନ୍ନାଥଙ୍କର ଅତି ଆପଣାର ହୋଇପାରିଥିଲେ ସେଥିରୁ ବୁଝାଯାଏ ଯେ ଜଗନ୍ନାଥ ଧର୍ମରେ ସ୍ପୃଶ୍ୟ ଅସ୍ପୃଶ୍ୟ ବୋଲି କୌଣସି ପାର୍ଥକ୍ୟ ବୋଧ କରାଯାଏ ନାହିଁ ।

ଲକ୍ଷ୍ମୀପୁରାଣରେ ବର୍ଣ୍ଣନାରୁ ଏହା ବିଶେଷଭାବେ ପ୍ରମାଣିତ । ଯେଉଁଠାରେ ଶ୍ରୀକୃଷ୍ଣଙ୍କର ବଡ଼ଭାଇ ବଳଭଦ୍ରଙ୍କର ବଚ୍ ... ଥିବା ହେତୁ କିପରି ଲକ୍ଷ୍ମୀଙ୍କୁ ହତାଦର କରି ଦାରୁଣ ଦାରିଦ୍ର୍ୟର ସମ୍ମୁଖୀନ ହେଲେ, ସେଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ ଜଗନ୍ନାଥ ଧର୍ମରେ ସ୍ପୃଶ୍ୟ ଅସ୍ପୃଶ୍ୟ ଭେଦ ଆଦୌ ନାହିଁ ।

ଚୈତନ୍ୟ ମହାପ୍ରଭୁଙ୍କର ପରମ ଭକ୍ତ ଠାକୁର ହରିଦାସ ନିଜକୁ ଯବନ କୁଳ ସମ୍ଭୂତ ବୋଲି କହି ଜଗନ୍ନାଥ ମନ୍ଦିର ମଧ୍ୟରେ ପ୍ରବେଶ କରୁନଥିଲେ। କିନ୍ତୁ ତାଙ୍କର ନାମ ପ୍ରତି ପ୍ରୀତି ସର୍ବଜନ ବିଦିତ । ମହାପ୍ରଭୁ ନିଜେ ତାଙ୍କ ଜୀବନ୍ତ ଶରୀରକୁ ସମାଧି ଦେଇଥିଲେ । ସେ ମଧ୍ୟ ମହାପ୍ରଭୁଙ୍କ ନାମ ଉଚ୍ଚାରଣ କରି ଜ୍ଞାନ ସାଗରରେ ଶେଷ ଶ୍ୱାସ ତ୍ୟାଗ କରିଥିଲେ।

ସାଲବେଗ ଜଣେ ପଠାଣ ବାର୍ଯ୍ୟଜାତ ହୋଇ ମଧ୍ୟ ଜଗନ୍ନାଥଙ୍କ ପ୍ରତି ପୂର୍ଣ୍ଣାପ୍ଲୁତ ସଙ୍ଗୀତ ସବୁ ରଚନା କରିଯାଇଛନ୍ତି । ତାହା ଅପୂର୍ବ ବୋଲି କହିଲେ ବୋଧେ ଯଥେଷ୍ଟ ହେବ ନି ।

ଆଦ୍ୟରୁ ଯେଉଁ ଭାବ ମୋ ମନ ମଧ୍ୟରେ ଜାଗି ଉଠିଥିଲା ତାକୁ ଏହି ଲେଖାରେ ପ୍ରକାଶ କରିଛି, ତାର ସମାଧାନ ମୁଁ ପାଇଲି ଶ୍ରୀ ରାଧାରମଣ ଚରଣ ଦାସଙ୍କ ଜୀବନ ଚରିତରେ । ଅର୍ଥାତ୍ ଜଗନ୍ନାଥଙ୍କ ପୂଜା ବେଦୀରେ ସୁଭଦ୍ରାଙ୍କ ମଧ୍ୟରେ ସମ୍ମିତ ରହିଲା କାହିଁକି ? ଏ ପ୍ରଶ୍ନର ଉତ୍ତର ମିଳିଗଲା।

ଶ୍ରୀ ରାଧାରମଣ କହିଛନ୍ତି, ଦିନେ ଦ୍ୱାରକାରେ କୃଷ୍ଣ ବଳରାମ ଏକ ସିଂହାସନରେ ବସିଥିଲେ । ଏତିକି ବେଳେ ରୁକ୍ମିଣୀ ତାଙ୍କ ଶାଶୁ ରୋହିଣୀଙ୍କୁ ପ୍ରଶ୍ନ କଲେ, ଶ୍ରୀକୃଷ୍ଣ ନିଦ୍ରାବସ୍ଥାରେ ଯେଉଁ ରାଧା ରାଧା ବୋଲି ଶବ୍ଦ ଉଚ୍ଚାରଣ କଲେ ସେ କିଏ ?

ରୋହିଣୀ ଶ୍ରୀକୃଷ୍ଣଙ୍କ ଉପସ୍ଥିତିରେ ସେ କଥା ବୟାନ କରିପାରିବେ ନାହିଁ ବୋଲି କହିବାରୁ ସୁଭଦ୍ରାଙ୍କୁ ଦ୍ୱାରଦେଶରେ ଜଗାଇ ଦେଇ ବୃନ୍ଦାବନରେ ରାଧାକୃଷ୍ଣଙ୍କ ଲୀଳା ବର୍ଣ୍ଣନା କରିବାକୁ ଲାଗିଲେ । ସେ ଲୀଳା ଶ୍ରବଣ କରୁ କରୁ ଦ୍ୱାରଦେଶରେ ସୁଭଦ୍ରାଙ୍କର ହାତଗୋଡ଼ ସଙ୍କୁଚିତ ହୋଇଗଲା ଏବଂ ଏକ ଅଦ୍ଭୁତ ରୂପ ଧାରଣ କଲେ । ଏହି ସମୟରେ ଜଗନ୍ନାଥ, ବଳରାମ ରାଜକାର୍ଯ୍ୟ ସମାପନାନ୍ତେ ଗୃହାଭିମୁଖେ ପ୍ରତ୍ୟାବର୍ତ୍ତନ କରନ୍ତେ ସୁଭଦ୍ରାଙ୍କ ଅବସ୍ଥା ଦେଖି ଆଚମ୍ବିତ ହୋଇଗଲେ । ସଙ୍ଗେ ସଙ୍ଗେ ରୋହିଣୀଙ୍କ ଲୀଳା ଶ୍ରବଣ କଲାମାତ୍ରେ ସେଥିରୁ ତାଙ୍କ କର୍ଣ୍ଣରେ ପ୍ରବେଶ କଲା । ସେ ଲୀଳା ଶ୍ରବଣ କଲାମାତ୍ରେ ସେମାନଙ୍କ ରୂପ ମଧ୍ୟ ଅତି-ପ୍ରାକୃତିକ ଆକାର ଧାରଣ କଲା ।

ଏତିକିବେଳେ ଭକ୍ତ ନାରଦ ସେଠାରେ ଉପସ୍ଥିତ ହୋଇ ଏକ ବର ମାଗିଲେ ଯେ ତିନି ଠାକୁର ଏହି ରୂପ ଧାରଣ କରି କଳି କାଳରେ ଜୀବମାନଙ୍କୁ ଦର୍ଶନ ଦେଇ ମୁକ୍ତି ପ୍ରଦାନ କରିବେ । 'ତଥାସ୍ତୁ' ବୋଲି କହିଦେଲେ ଶ୍ରୀକୃଷ୍ଣ ଓ ଶ୍ରୀରାମ ।

ଏ ଯୁଗରେ ଏହାକୁ ଏକ ଆଖ୍ୟାୟିକା ବୋଲି କହି ହେଲାଭଳି ହେବନି । କାରଣ କଳି ଯୁଗରେ ଶ୍ରୀକୃଷ୍ଣ ଓ ଶ୍ରୀରାଧାଙ୍କର ଯୁଗଳ ମୂର୍ତ୍ତି ଶ୍ରୀ ଚୈତନ୍ୟଙ୍କର ଶରୀର ସଙ୍କୁଚିତ ଓ ପ୍ରସାରିତ ହୋଇଥିବାର ପ୍ରମାଣ ତାଙ୍କର ଜୀବନଚରିତମାନଙ୍କରେ ଦେଖିବାକୁ ମିଳେ ।

ଜୀବନ କୁଟୀର, ଡି-୪, ରେଡ଼ିଓ କଲୋନୀ,
ଖାରବେଳ ନଗର, ଭୁବନେଶ୍ୱର-୧

ଉତ୍କଳ ପ୍ରସଙ୍ଗ



# ରଥଯାତ୍ରା-୯୮ ଏକ ଅବଲୋକନ

● ଶ୍ରୀ ପ୍ରଦୀପ୍ତ କୁମାର ମହାପାତ୍ର

ଜଗନ୍ନାଥଙ୍କ ଦ୍ୱାଦଶ ଯାତ୍ରା (ଅକ୍ଷୟ ତୃତୀୟା, ସ୍ନାନଯାତ୍ରା, ଗୁଣ୍ଡିଚା, ଦକ୍ଷିଣ ସଂକ୍ରାନ୍ତି, ଶୟନ ଯାତ୍ରା, ପାର୍ଶ୍ୱପରିବର୍ତ୍ତନ, ଦେବୋତ୍ଥାପନ, ପ୍ରାବରଣ ଷଷ୍ଠୀ, ପୁଷ୍ୟାଭିଷେକ, ମକରସଂକ୍ରାନ୍ତି, ଦୋଳଯାତ୍ରା, ଦମନକ ଚତୁର୍ଦ୍ଦଶୀ) ମଧ୍ୟରେ ରଥଯାତ୍ରା ସର୍ବଶ୍ରେଷ୍ଠ । ଆଷାଢ଼ମାସର ଶୁକ୍ଳ ଦ୍ୱିତୀୟା ତିଥିରେ ରଥଯାତ୍ରା ପ୍ରତିବର୍ଷ ପାଳିତ ହୋଇଥାଏ । ଭାରତର ବିଭିନ୍ନ ସ୍ଥାନରେ ଓ ଭାରତ ବାହାରେ ରଥଯାତ୍ରା ଅନୁଷ୍ଠିତ ହେଉଥିଲେ ମଧ୍ୟ ପୁରୀର ରଥଯାତ୍ରା ବିଶ୍ୱବିଦିତ । ଜଗନ୍ନାଥ ଧର୍ମ ଓ ଦର୍ଶନର ଅନେକ ଅଂଶ ରହସ୍ୟାବୃତ ରହିବା ପରି ରଥଯାତ୍ରା ଆରମ୍ଭର ଇତିହାସ ଏବେ ମଧ୍ୟ ଅବୋଧ୍ୟ ହୋଇ ରହିଛି । ବୈଦିକ ଗ୍ରନ୍ଥମାନଙ୍କରେ ରଥର ଉଲ୍ଲେଖ ରହିଛି । ମହାଯାନୀ ବୌଦ୍ଧ ସମ୍ପ୍ରଦାୟରେ ରଥଯାତ୍ରା ପ୍ରଚଳନର ପ୍ରମାଣ ମିଳେ । ଜଗନ୍ନାଥଙ୍କ ରଥଯାତ୍ରା ବୌଦ୍ଧ ଦନ୍ତଯାତ୍ରା ଦ୍ୱାରା ପ୍ରଭାବିତ ବୋଲି ଉଇଲିୟମ ହଣ୍ଟର ମତ ପ୍ରକାଶ କରିଛନ୍ତି । ଫର୍ଗୁସନ ସାହେବ, ଡକ୍ଟର ରାଜେନ୍ଦ୍ର ଲାଲ ମିତ୍ର ପ୍ରମୁଖ ପୁରୀର ରଥଯାତ୍ରା ବୌଦ୍ଧ ଧର୍ମରୁ ଉତ୍ପନ୍ନ ବୋଲି ମତ ଦିଅନ୍ତି । ସେ ଯାହା ହେଉ ନା କାହିଁକି ଶାନ୍ତି, ମୈତ୍ରୀ, ପ୍ରୀତି ଓ ଭ୍ରାତୃତ୍ୱର ବାର୍ତ୍ତା ବହନ କରି ରଥଯାତ୍ରା ପ୍ରତିବର୍ଷ ପାଳିତ ହୋଇ ଆସୁଛି ।

ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ରତ୍ନବେଦୀରୁ ଓହ୍ଲାଇ ଆସନ୍ତି, ସାଧାରଣ ଜନତାଙ୍କ ଗହଣକୁ । ଅପୂର୍ବ ଉତ୍ସାହ ଉଦ୍ଦୀପନା ମଧ୍ୟରେ ରଥରୂପ ଠାକୁର ଭକ୍ତମାନଙ୍କ ଦ୍ୱାରା ଟଣା ହୋଇଯାଆନ୍ତି ।

ଏହି ରଥଯାତ୍ରା ଦେଖିବାକୁ ବହୁ ଯାତ୍ରୀଙ୍କର ସମାଗମ ହୁଏ । ପ୍ରତ୍ୟେକ ଦର୍ଶନାର୍ଥୀ ଯାତ୍ରୀ ଜିଲ୍ଲା ପ୍ରଶାସନର ଅତିଥି । ପ୍ରତ୍ୟେକ ଯାତ୍ରୀ ଯେପରି ସୁବିଧାରେ ଦର୍ଶନ କରିପାରିବେ ସେଥିପାଇଁ ଜିଲ୍ଲା ପ୍ରଶାସନ ପକ୍ଷରୁ ବ୍ୟାପକ ବ୍ୟବସ୍ଥା ଗ୍ରହଣ କରାଯାଇଥାଏ । ଗତବର୍ଷ ରଥଯାତ୍ରା ଜୁନମାସ ୨୫ ତାରିଖରେ ଅନୁଷ୍ଠିତ ହୋଇଥିଲା । ଏଥିପାଇଁ ବହୁ ପୂର୍ବରୁ ପ୍ରସ୍ତୁତି ପ୍ରକ୍ରିୟା ଆରମ୍ଭ ହୋଇଥିଲା । କେନ୍ଦ୍ରାଞ୍ଚଳ ରାଜସ୍ୱ କମିଶନର ଶ୍ରୀ ତରୁଣକାନ୍ତି ମିଶ୍ରଙ୍କ ଅଧ୍ୟକ୍ଷତାରେ ତା ୧୩.୪.୯୮ରେ ଏବଂ ଶ୍ରୀ ଅଶୋକ କୁମାର ତ୍ରିପାଠୀଙ୍କ ଅଧ୍ୟକ୍ଷତାରେ ତା ୧୧.୫.୯୮ ରିଖ ଓ ତା ୧୨.୬.୯୮ ରିଖରେ ସରକାରୀ ଓ ବେସରକାରୀ ସଭ୍ୟଙ୍କ ସମନ୍ୱୟ କମିଟି ସଭା ଅନୁଷ୍ଠିତ ହୋଇଥିଲା । ଏହା ବ୍ୟତୀତ ତା ୨-୫-୯୮, ତା ୬-୫-୯୮, ତା୩୦-୫-୯୮, ତା ୮-୬-୯୮ ଓ ତା ୨୦-୬-୯୮ ରିଖରେ ବିଭାଗୀୟ ଅଧିକାରୀଙ୍କ ବୈଠକ ଅନୁଷ୍ଠିତ ହୋଇ ରଥଯାତ୍ରା ପାଇଁ ବିଭିନ୍ନ ବିଭାଗୀୟ ବ୍ୟବସ୍ଥାର ରୂପରେଖ ପ୍ରସ୍ତୁତ ହୋଇଥିଲା ।

ରଥଯାତ୍ରାର ସଫଳ ପରିଚାଳନାରେ ବିଭିନ୍ନ ବିଭାଗ ପ୍ରମୁଖ ଭୂମିକା ଗ୍ରହଣ କରିଥାନ୍ତି । ସେମାନଙ୍କ ମଧ୍ୟରେ ସମନ୍ୱୟ ସ୍ଥାପନ ଓ ସମନ୍ୱିତ କାର୍ଯ୍ୟପନ୍ଥା ନିର୍ଦ୍ଧାରଣ ମାଧ୍ୟମରେ ପ୍ରସ୍ତୁତି ପର୍ବ ଆରମ୍ଭ ହୁଏ । ଗତବର୍ଷ ମହାପ୍ରଭୁଙ୍କ ଅପାର କରୁଣାରୁ ଓ ବିଭିନ୍ନ ସରକାରୀ ବିଭାଗର ଆନ୍ତରିକ ଉଦ୍ୟମ ଫଳରେ ରଥଯାତ୍ରା ସୁରୁଖୁରୁରେ ସମ୍ପନ୍ନ ହୋଇଥିଲା ।

ରଥଯାତ୍ରା ପାଇଁ ରଥ ନିର୍ମାଣ କାର୍ଯ୍ୟ ପରମ୍ପରାକ୍ରମେ ଅକ୍ଷୟ ତୃତୀୟା ତିଥିରୁ ଆରମ୍ଭ ହୋଇଥିଲା । ରଥ ଗୁଡ଼ିକ ନିର୍ମାଣ ପାଇଁ ଆବଶ୍ୟକ ୭୯୦ ଖଣ୍ଡ ଧଉରା ଓ ଅସନକାଠ ଓ ୩ ଗୋଟି ଶିମିଳିକାଠ ନୟାଗଡ଼ ବନମଣ୍ଡଳରେ ଫାଶି କାଠର ସ୍ୱଳ୍ପତା ହେତୁ ୨୨ଟି ଫାଶିକାଠ ବୌଦ୍ଧ ବନମଣ୍ଡଳରୁ ଓ ୨୭୪ଖଣ୍ଡ କଣ୍ଟାକାଠ ଖୋର୍ଦ୍ଧା ବନମଣ୍ଡଳରୁ ସଂଗୃହୀତ ହୋଇଥିଲା । ପୂର୍ତ୍ତ ବିଭାଗର ନିର୍ବାହୀଯନ୍ତ୍ରୀ, ଶ୍ରୀମନ୍ଦିର ପ୍ରଶାସକ, ବିଶ୍ୱକର୍ମା ଓ ପ୍ରତ୍ୟେକ ରଥର ମୁଖ୍ୟ ମହାରଣାଙ୍କୁ ନେଇ ଗଠିତ ଯାଞ୍ଚକାରୀ ଦଳ ନିର୍ମାଣ ତଦାରଖ କରିଥିଲେ । ରଥ ଚକର ଦୃଢ଼ୀକରଣ ନିମନ୍ତେ ଧୁରର ଉଭୟ ପାର୍ଶ୍ୱରେ ଲୁହାର ବଳୟ ଲଗାଯିବା ସହିତ ପଉ ଓ ଅଖର ସଂଯୋଗ ସ୍ଥଳରେ ଲୁହାର କ୍ଲାମ୍ପ ଦିଆଯାଇଥିଲା । ରଥର କନକମୁଣ୍ଡିକୁ ମୋଟା ପଲିଥିନ୍ ଦ୍ୱାରା ଆବୃତ କରାଯାଇଥିଲା ।

ରଥଯାତ୍ରା ପରିପ୍ରେକ୍ଷୀରେ ଶ୍ରୀଜୀଉମାନଙ୍କର ବିଭିନ୍ନ ନୀତି ଠିକ ସମୟରେ ସମ୍ପନ୍ନ ହେବା ପାଇଁ ସଂପୃକ୍ତ ସେବାୟତ ନିଯୋଗଙ୍କ ସହଯୋଗରେ ବୃତ୍ତାନ୍ତ ନୀତି ନିର୍ଘଣ୍ଟ ପ୍ରସ୍ତୁତ ହୋଇଥିଲା । ମଙ୍ଗଳାର୍ପଣ ସମୟରେ ସଂପୃକ୍ତ ସେବାୟତ ଓ କର୍ତ୍ତବ୍ୟରତ କର୍ମଚାରୀଙ୍କ ବ୍ୟତୀତ ଅନ୍ୟ କାହାରିକୁ ଶ୍ରୀମନ୍ଦିର ଗର୍ଭଗୃହକୁ ନ ଛାଡ଼ିବା , ନୀତି ସହ ସଂପୃକ୍ତ ସେବାୟତମାନଙ୍କୁ ନିର୍ଦ୍ଧାରିତ ସମୟରେ ଯଥା ସ୍ଥାନରେ ପହଞ୍ଚାଇବା ଓ ପ୍ରଶାସନ ଓ ସେବାୟତମାନଙ୍କ ମଧ୍ୟରେ ଉତ୍ତମ ସମନ୍ୱୟ ସ୍ଥାପନ କରିବା ନିମନ୍ତେ ପଦକ୍ଷେପ ମାଧ୍ୟମରେ ଗତବର୍ଷର ବିଭିନ୍ନ ନୀତିମାନ ସୁରୁଖୁରୁରେ ସମ୍ପାଦିତ ହୋଇଥିଲା । ଗତବର୍ଷ ଠାକୁରମାନଙ୍କ ନୀତି ଅତ୍ୟନ୍ତ ଶୃଙ୍ଖଳାର ସହ ହୋଇଥିବାରୁ ଏବଂ ସେବକମାନଙ୍କ ଅକୁଣ୍ଠ ସହଯୋଗ ହେତୁ ପୂର୍ବ ଧାର୍ଯ୍ୟ ସମୟ ସକାଳ ୯.୨୦ ଥିଲାବେଳେ ତାହା ସକାଳ ୮.୫୫ ସମୟରେ ଆରମ୍ଭ ହୋଇପାରିଥିଲା ଏବଂ ନିର୍ଦ୍ଧାରିତ ସମୟର ୪୫ ମିନିଟ ପୂର୍ବରୁ ପହଣ୍ଡି କାର୍ଯ୍ୟଶେଷ ହୋଇପାରିଥିଲା ।

ଶ୍ରୀଜୀଉମାନଙ୍କର ରଥମାନଙ୍କୁ ନିୟନ୍ତ୍ରିତ ଭାବରେ ଟଣାଯିବା ନିମନ୍ତେ ବ୍ୟାପକ ବ୍ୟବସ୍ଥା ଗ୍ରହଣ କରାଯାଇ ପ୍ରତ୍ୟେକ ରଥ ପାଇଁ ଜଣେ ବରିଷ୍ଠ ଅଧିକାରୀଙ୍କୁ ଦାୟିତ୍ୱ ଦିଆଯାଇଥିଲା । ପ୍ରତି ରଥ ନିମନ୍ତେ ଅଭିଜ୍ଞ ଅଧିକାରୀ ଓ ଭୋଇମାନଙ୍କୁ ନେଇ ଗଠିତ ନିର୍ଦ୍ଦେଶକ ଦଳର ପରାମର୍ଶ ଅନୁସାରେ ରଥଟଣା ହୋଇଥିଲା । ଯେ କୌଣସି ପ୍ରକାର ଦୁର୍ଘଟଣା ନିମନ୍ତେ ତୁରନ୍ତ

ପଦକ୍ଷେପ ନେବାକୁ ଆଗୁଆ ବ୍ୟବସ୍ଥା ଓ ସାମଗ୍ରୀ ରଖାଯାଇଥିଲା । ରଥଯାତ୍ରାର ଅନ୍ୟତମ ଆକର୍ଷଣ ରଥଟଣା ଗତବର୍ଷ ସୁରୁଖୁରୁରେ ଶେଷ ହୋଇଥିଲା ।

ରଥଯାତ୍ରା ପାଇଁ ପୁରୀ ସହରକୁ ଯେତିକି ଯାତ୍ରୀ ଆସନ୍ତି, ପୁରୀରେ ଉପଲବ୍ଧ ସ୍ଥାୟୀ ବ୍ୟବସ୍ଥା ଅକୁଳାନ ହୁଏ । ସେଥିପାଇଁ କେତେକ ଅସ୍ଥାୟୀ ବ୍ୟବସ୍ଥା ଗ୍ରହଣ କରାଯାଏ । ଗତବର୍ଷ ରଥଯାତ୍ରା ସମୟରେ ଯାତ୍ରୀମାନଙ୍କୁ ତଥା ପୁରୀସହର ଓ ଆଖପାଖ ଅଞ୍ଚଳ ଜନସାଧାରଣଙ୍କୁ ସ୍ୱାସ୍ଥ୍ୟସେବା ଯୋଗାଇ ଦେବା ପାଇଁ ବିଶେଷ ଦୃଷ୍ଟି ଦିଆଯାଇଥିଲା । ମହାମାରୀ ନିରାକରଣ ପାଇଁ ସହରରେ ୩ ଗୋଟି ନିୟନ୍ତ୍ରଣ କକ୍ଷ ଖୋଲାଯାଇଥିଲା ଓ ସୂଚନା ପାଇବାମାତ୍ରେ ମହାମାରୀ ନିରାକରଣ ଦଳ ଯୁଦ୍ଧକାଳୀନ ଭିତ୍ତିରେ ଚିକିତ୍ସା ଓ ପ୍ରତିଷେଧକ ବ୍ୟବସ୍ଥା ଦେବାକୁ ପ୍ରସ୍ତୁତ ରହିଥିଲେ । ରଥଯାତ୍ରା ସମୟରେ ପୁରୀ ଓ ଆଖପାଖର ଚିକିତ୍ସାଳୟମାନଙ୍କରେ ୭୩ଟି ଅତିରିକ୍ତ ଶଯ୍ୟାର ବ୍ୟବସ୍ଥା, କୋଣାର୍କ,ଗୋପ, ନିମାପଡ଼ା,ପିପିଲି, ସାକ୍ଷୀଗୋପାଳ ସମେତ ୭ଟି ଚିକିତ୍ସାଳୟରେ ସ୍ୱତନ୍ତ୍ର ଆମ୍ବୁଲାନସ ସହ ୩ଟି ଭ୍ରାମ୍ୟମାଣ ଆମ୍ବୁଲାନସ ସେବା ବ୍ୟବସ୍ଥା, ରକ୍ତଭଣ୍ଡାରରେ ବିଭିନ୍ନ ଗ୍ରୁପର ୩୦ ବୋତଲ ରକ୍ତ ମହଜୁଦ ସହ ଯଥେଷ୍ଟ ସଂଖ୍ୟକ ସ୍ୱେଚ୍ଛାସେବକଙ୍କୁ ରକ୍ତଦାନ ପାଇଁ ପ୍ରସ୍ତୁତ ରଖାଯିବା ଓ ପର୍ଯ୍ୟାପ୍ତ ଔଷଧପତ୍ର ମହଜୁଦ ରଖିବା ଆଦି କାର୍ଯ୍ୟକ୍ରମ ଗ୍ରହଣ କରାଯାଇଥିଲା । ପୁରୀ ପୌରସଂସ୍ଥା ପକ୍ଷରୁ ସହରରେ ୧୦ଟି ଯାଗାରେ ଓ ମୁଖ୍ୟ ଚିକିତ୍ସାଧିକାରୀଙ୍କ ଦ୍ୱାରା ସହରର ପାଖାପାଖି ଅଞ୍ଚଳର ନଅଟି ସ୍ଥାନରେ ଅସ୍ଥାୟୀ ପ୍ରାଥମିକ ଚିକିତ୍ସାକେନ୍ଦ୍ର ଖୋଲାଯାଇ ଆଶୁଚିକିତ୍ସା ସେବା ଉପଲବ୍ଧ କରାଯାଇଥିଲା । ଭୁବନେଶ୍ୱର ପୌରନିଗମ ସାମନ୍ତରାପୁର ଛକରେ ଓ ଭୁବନେଶ୍ୱର ମୁଖ୍ୟଚିକିତ୍ସାଧିକାରୀ ଉତ୍ତରାଛକଠାରେ ଆଶୁ ଚିକିତ୍ସା କେନ୍ଦ୍ର ସ୍ଥାପନ କରିଥିଲେ । ଖାଦ୍ୟ ଅପମିଶ୍ରଣ ନିରାକରଣ ନିମନ୍ତେ ଗୋଟିଏ ଭ୍ରାମ୍ୟମାଣ ଅଦାଲତ କାର୍ଯ୍ୟ କରୁଥିଲା ।

ପୁରୀ ସହରର ପରିମଳ ସୁରକ୍ଷା ପାଇଁ ପୌରସଂସ୍ଥା ପକ୍ଷରୁ ସହରକୁ ୩ ଗୋଟି ବିଭାଗରେ ବିଭକ୍ତ କରାଯାଇ ପ୍ରତ୍ୟେକ ବିଭାଗକୁ ଜଣେ ବରିଷ୍ଠ ଅଧିକାରୀଙ୍କ ତତ୍ତ୍ୱାବଧାନରେ ରଖାଯାଇ ଯାତ୍ରା ସମୟରେ ରାସ୍ତାଘାଟ ପରିଷ୍କାର ରଖିବା, ନାଳ ନର୍ଦ୍ଦମା ଓ ଆବର୍ଜନାମୟ ସ୍ଥାନମାନଙ୍କରେ କୀଟନାଶକ ଔଷଧ ବାରମ୍ବାର ପକାଇ ମଶା ଓ ମାଛିର ବୃଦ୍ଧିକୁ ରୋକିବା ପାଇଁ ପଦକ୍ଷେପ ନିଆଯାଇଥିଲା । ସହରରେ ଥିବା ୬୧ଟି ସ୍ଥାୟୀ ସୁଲଭ ଶୌଚାଳୟକୁ ଯାତ୍ରୀମାନଙ୍କୁ ମାଗଣାରେ ବ୍ୟବହାରର ସୁଯୋଗ ଦେବା ସହ ବିଭିନ୍ନ ସ୍ଥାନରେ ୨୦୦ଟି ଅସ୍ଥାୟୀ ବରପାଲି ପାଇଖାନା ଏବଂ ୨୦ଟି ଅସ୍ଥାୟୀ ପରିସ୍ରାଗାରର ବ୍ୟବସ୍ଥା ହୋଇଥିଲା । ସହରରେ ଥିବା ୩୦୧୫ଟି ଘରୋଇକୂପ, ୨୦୯ଟି ସର୍ବସାଧାରଣ କୂପର ଜଳକୁ ରଥଯାତ୍ରା ପୂର୍ବରୁ ବାରମ୍ବାର ବିଶୋଧନ କରାଯାଇଥିଲା । ତୀର୍ଥ ପୁଷ୍କରଣୀର ଘାଟଗୁଡ଼ିକରେ ବ୍ଲିଚିଂ ପାଉଡ଼ର ପକାଇବାର ବ୍ୟବସ୍ଥା ହୋଇଥିଲା । ପୁରୀ ଆୟୁର୍ବେଦିକ ମହାବିଦ୍ୟାଳୟଠାରେ ଏକ ଜଳ ବିଶ୍ଳେଷଣାଗାର ଖୋଲାଯାଇ ଜଳ ବିଶୋଧନ କାର୍ଯ୍ୟରେ ସହାୟତା ପ୍ରଦାନ କରାଯାଇଥିଲା ।

ରଥଯାତ୍ରା ସମୟରେ ପାନୀୟ ଜଳ ଯୋଗାଣ ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଯାଇଥିଲା । ସ୍ଥାୟୀ ବ୍ୟବସ୍ଥାର ପୂର୍ଣ୍ଣ ବିନିଯୋଗ ସହ କେତେକ ଅସ୍ଥାୟୀ ବ୍ୟବସ୍ଥା ମଧ ସଂଯୋଜିତ ହୋଇଥିଲା । ଶ୍ରୀମ... ଚତୁଃପାର୍ଶ୍ୱରେ ୧୬ଗୋଟି, ବଡ଼ଦାଣ୍ଡର ଉଭୟ ପାର୍ଶ୍ୱରେ ୧୧୨ଟି ... ସହରର ଅନ୍ୟାନ୍ୟ ସ୍ଥାନରେ ୨୨ଟି ମୋଟ ୧୫୦ଟି ଅସ୍ଥାୟୀ ... ଜଳ ଟ୍ୟାପ ସହ ସହରର ବିଭିନ୍ନ ସ୍ଥାନରେ ମୋଟ ୭୫ଟି ଅସ୍ଥା... ନଳକୂପର ବ୍ୟବସ୍ଥା କରାଯାଇଥିଲା । ପୁରୀ ସହର ଓ ସହରକୁ ସଂଯୋ... କରୁଥିବା ରାସ୍ତା ପାର୍ଶ୍ୱରେ ଥିବା ସମସ୍ତ ନଳକୂପକୁ କାର୍ଯ୍ୟକ୍ଷ... କରାଯାଇଥିଲା । ରଥଯାତ୍ରା ସମୟରେ ସହରକୁ ଅବ୍ୟାହତ ଭାବରେ ଜଳ ଯୋଗାଣ ନିମନ୍ତେ ବିଜୁଳି ବିଭ୍ରାଟ ସମୟ... ତୋଟାଗୋପୀନାଥଠାରେ ଡ଼ିଜେଲ ପମ୍ପ ଓ ଦକ୍ଷିଣଦ୍ୱାରଠାରେ ଡ଼ିଜେ... ଜେନେରେଟର ଦ୍ୱାରା ଜଳଯୋଗାଣ ଅବ୍ୟାହତ ରଖିବାର ବ୍ୟବସ୍ଥା ହୋଇଥିଲା । ସହରର ବିଭିନ୍ନ ସ୍ଥାନରେ ୩୫୧ଟି ହସ୍ତପମ୍ପଚାଳିତ ... ନଳକୂପ, ୧୨୨ଟି ହସ୍ତପମ୍ପଚାଳିତ ଅଗଭୀର ନଳକୂପ ଏବଂ ୪୧... ଗୋଟି କୂଅରେ ହସ୍ତଚାଳିତ ପମ୍ପ ଲଗାଯାଇଥିଲା । ରାସ୍ତାରେ ... ଉଷ୍ମପ୍ରବାହ ଓ ବିଦ୍ୟୁତ ସରବରାହରେ ବିଭ୍ରାଟରେ ଆଶଙ୍କାକୁ ... ରଖି ସହରର ବିଭିନ୍ନ ସ୍ଥାନରେ ୨୦ଟି ପାଣି ଟ୍ୟାଙ୍କର ... ପାନୀୟ ଜଳ ବଣ୍ଟନ ବ୍ୟବସ୍ଥା ହୋଇଥିଲା । ପୁରୀ ସହରକୁ ... କି.ମି. ଗ୍ରାମାଞ୍ଚଳରେ ନଳକୂପ ଦ୍ୱାରା ଜଳ ଯୋଗାଣର ବ୍ୟବସ୍ଥା ... ଗ୍ରାମ୍ୟ ଜଳ ଯୋଗାଣ ଓ ପରିମଳ ବିଭାଗ କରିଥିଲେ । ଗତ ରଥଯାତ୍ରା... ଏହି ସବୁ ବ୍ୟବସ୍ଥା ଫଳରେ ପାନୀୟ ଜଳର ଅଭାବ ଆଦୌ ଅନୁଭୂତ ହୋଇନଥିଲା ।

ବିଦ୍ୟୁତ୍‌ଶକ୍ତି ଉପରେ ଆଜିର ସଭ୍ୟତା ନିର୍ଭରଶୀଳ ... ରଥଯାତ୍ରା ସମୟରେ ନିରବଚ୍ଛିନ୍ନ ବିଦ୍ୟୁତ୍ ଯୋଗାଣ ପାଇଁ ... ବିକଳ୍ପ ବ୍ୟବସ୍ଥା ଗ୍ରହଣ କରାଯାଇଥିଲା । ରଥଯାତ୍ରା ସମୟରେ ... ସହରକୁ ୩୫ ଏମ୍.ଭି.ଏ. ବିଦ୍ୟୁତ୍ ଶକ୍ତି ଆବଶ୍ୟକ ହୁଏ । ୧୩୨କେ... ସିଙ୍ଗଲ ସର୍କିଟ ଦ୍ୱାରା ଖୋର୍ଦ୍ଧାରୁ ପୁରୀସହରକୁ ବିଦ୍ୟୁତ୍‌ଶକ୍ତି ଯୋଗା... ଦେବାର ବ୍ୟବସ୍ଥା ଅଛି । ବିଜୁଳି ବିଭ୍ରାଟ ଘଟିଲେ ପ୍ରଥମ ... ଅନୁସାରେ ୩୩ କେ.ଭି. ଲାଇନ ଖୋର୍ଦ୍ଧା ଗ୍ରିଡ଼ସବଷ୍ଟେସନରୁ ... ଚନ୍ଦନପୁର ଦେଇ ଆଣିବାର ବ୍ୟବସ୍ଥା ହୋଇଥିଲା ଓ ଦ୍ୱିତୀୟ ... ଯାହାକି ଏବେ ସ୍ଥାୟୀ ବ୍ୟବସ୍ଥା ଭାବରେ କାର୍ଯ୍ୟ କରୁଛି, ସେ ... ନିମାପଡ଼ାରୁ ପିପିଲି, ସାକ୍ଷୀଗୋପାଳ ଦେଇ ୩୩ କେ.ଭି. ଲାଇନ ଦ୍ୱା... ପୁରୀକୁ ବିଦ୍ୟୁତ୍ ଯୋଗାଣ ହୋଇଥିଲା । ଅବଶ୍ୟ ଗତ ରଥଯାତ୍ରା ... ସମୟରେ ସାମାନ୍ୟ ବିଭ୍ରାଟ ଘଟିଥିଲେ ମଧ ଏହା ବିଶେଷ ... ସୃଷ୍ଟି କରିନଥିଲା । ୫ କିଲୋୱାଟର ୪୦ଟି ଡ଼ିଜେଲ ଜେନେରେଟର ଦ୍ୱାରା ବଡ଼ଦାଣ୍ଡର ଉଭୟ ପାର୍ଶ୍ୱ, ଶ୍ରୀମନ୍ଦିରର ଚତୁଃପାର୍ଶ୍ୱ ଓ ... ମୁଖ୍ୟସ୍ଥାନମାନଙ୍କରେ ଅଧିକ ଆଲୋକର ବ୍ୟବସ୍ଥା ସହ ... ସମସ୍ତ ତୀର୍ଥ ପୁଷ୍କରଣୀ ଚାରିପଟେ ଉଜ୍ଜ୍ୱଳ ଆଲୋକ ବ୍ୟବସ୍ଥା କରାଯାଇଥିଲା । ଶ୍ରୀମନ୍ଦିର ପାଇଁ ଦୁଇଟି ୫୦ କିଲୋୱାଟ ... ଗୁଣ୍ଡିଚାମନ୍ଦିର ପାଇଁ ଗୋଟିଏ ୩୦ କିଲୋୱାଟ ଜେନେରେଟର ବ୍ୟବସ୍ଥା ହୋଇଥିଲା । ଠାକୁରଙ୍କ ନୀତି ଚାଲିଥିବା ବେଳେ ବିଦ୍ୟୁତ୍ ... ମଧ ଜେନେରେଟର ଚାଳିତ ଅବସ୍ଥାରେ ରଖାଯାଇଥିଲା । ... ବିଦ୍ୟୁତ ବିଭାଗ ଓ ଜି.ଇ.ଡ଼ି. ତରଫରୁ ବହୁ ପୂର୍ବରୁ ଅନ୍ୟାନ୍ୟ ... ପ୍ରସ୍ତୁତି ଓ ସତର୍କତାମୂଳକ ପଦକ୍ଷେପ ଗ୍ରହଣ କରାଯାଇଥିଲା ।

ଲେଖକ ...

ରଥଯାତ୍ରା ସମୟରେ ପୁରୀକୁ ତିନିଗୋଟି ସଡ଼କ ପଥ ଯଥା - ଭୁବନେଶ୍ୱର-ପୁରୀ, କୋଣାର୍କ-ପୁରୀ ଓ ନୂଆ ଜଗନ୍ନାଥ ସଡ଼କ ଦେଇ ବସ ଯାତାୟତ କରେ । ଯାତ୍ରୀମାନଙ୍କ ସୁବିଧା ପାଇଁ ଅଧିକ ବସ ଚଳାଚଳ ଓ ଅଧିକ ଟ୍ରିପ୍ କରିବାକୁ ଅନୁମତି ପ୍ରଦାନ, ବାଟପାସେଞ୍ଜରଙ୍କ ପାଇଁ ବିଶେଷ ବ୍ୟବସ୍ଥା, ଭଡ଼ା ନିର୍ଦ୍ଧାରଣ ଓ କଡ଼ାକଡ଼ି ତଦାରଖ, ଗତି ନିୟନ୍ତ୍ରଣ ପାଇଁ ଓ ଅନ୍ୟାନ୍ୟ ଆଇନ ଭଙ୍ଗ ରୋକିବା ପାଇଁ ଫ୍ଲାଇଙ୍ଗ ସ୍କ୍ୱାର୍ଡ ମୁତୟନ, ଦୁର୍ଘଟଣାଗ୍ରସ୍ତ ଗାଡ଼ିକୁ ତୁରନ୍ତ ରାସ୍ତାରୁ ହଟେଇବା ପାଇଁ ଦୁଇଟି କ୍ରେନ୍ ଓ ୩ଟି ଟ୍ରାକ୍ଟର ରଖାଯିବା ଆଦି ବିଭିନ୍ନ ବ୍ୟବସ୍ଥା ଫଳପ୍ରଦ ଭାବରେ କାର୍ଯ୍ୟକାରୀ ହୋଇଥିଲା । ସେହିପରି ରେଳ ଚଳାଚଳ ବ୍ୟବସ୍ଥାରେ ସ୍ୱତନ୍ତ୍ର ଟ୍ରେନ ପ୍ରଚଳନ, ରେଳଷ୍ଟେସନରେ ଅଧିକ ଆଲୋକ ଓ ପାନୀୟ ଜଳ ଯୋଗାଣ, ବଗଲା ଧର୍ମଶାଳାରେ ଅସ୍ଥାୟୀ ସିଟି ବୁକିଂ ଅଫିସ ଖୋଲାଯିବା ଆଦି ବିଭିନ୍ନ ବ୍ୟବସ୍ଥା ହୋଇଥିଲା ।

ଯାତ୍ରା ସମୟରେ ଯାତ୍ରୀମାନଙ୍କର ରହଣି ପାଇଁ ପୁରୀ ଜିଲ୍ଲା ସ୍କୁଲଠାରେ ପୁରୀ ପୌରପାଳିକା ପକ୍ଷରୁ ଅସ୍ଥାୟୀ ବାସ ବ୍ୟବସ୍ଥା ହୋଇଥିଲା । ରଥଯାତ୍ରା ସମୟରେ ଯାତ୍ରୀ, ପର୍ଯ୍ୟଟକ ଓ ସହରବାସୀଙ୍କର ବାଞ୍ଛିବା ଅନୁଯାୟୀ ପୋଷ୍ଟକାର୍ଡ଼, ଅନ୍ତର୍ଦ୍ଦେଶୀୟ ପତ୍ର ଓ ଷ୍ଟାମ୍ପ ଆଦି ଯୋଗାଇ ଦେବାକୁ ବିଭିନ୍ନ ଡ଼ାକଘରମାନଙ୍କରେ ବହୁଳ ପରିମାଣରେ ମହଜୁଦ କରିବା ସହ ଟେଲିଫୋନ ସେବାକୁ ନିରବଚ୍ଛିନ୍ନ କରିବାକୁ ବିଭାଗୀୟ ପଦକ୍ଷେପ ନିଆଯାଇଥିଲା ।

ଯାତ୍ରା ଦିନମାନଙ୍କରେ ଅଧିକ ଯାତ୍ରୀ ସମାଗମ ହେବାର ସମ୍ଭାବନା ଦୃଷ୍ଟିରୁ ଅତ୍ୟାବଶ୍ୟକ ଖାଦ୍ୟଦ୍ରବ୍ୟ ଯୋଗାଣ ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଯାଇଥିଲା । ସହରର ବିଭିନ୍ନ ସ୍ଥାନରେ ୧୫ଟି ସୁଲଭ ମୂଲ୍ୟଦୋକାନ ଖୋଲିବା, ପନିପରିବା ଓ ଅନ୍ୟାନ୍ୟ ଅତ୍ୟାବଶ୍ୟକ ଦ୍ରବ୍ୟ ମହଜୁଦ ପାଇଁ ଜିଲ୍ଲା ସ୍କୁଲଠାରେ ଅସ୍ଥାୟୀ ଗୋଦାମ ଘର ଓ ୧୫ଟି ଦୋକାନ ଖୋଲିବା, ଅସ୍ଥାୟୀ କାଠଗୋଲାରେ ପର୍ଯ୍ୟାପ୍ତ କାଠ ମହଜୁଦ, ଅଧିକ ରନ୍ଧନ ଗ୍ୟାସ ସିଲିଣ୍ଡର ଯୋଗାଣ ଓ କୃତ୍ରିମ ଅଭାବ ଓ ଦରଦାମ ବୃଦ୍ଧି ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଆଦି ବ୍ୟବସ୍ଥା ଫଳରେ ଗତ ରଥଯାତ୍ରା ସମୟରେ କୌଣସି ବିଶୃଙ୍ଖଳା ପରିଲକ୍ଷିତ ହୋଇନଥିଲା ।

ସୂଚନା ଓ ଲୋକସମ୍ପର୍କ ବିଭାଗ ତରଫରୁ ୭ଟି ସ୍ଥାନରେ ସୂଚନାକେନ୍ଦ୍ର ସ୍ଥାପନ ଓ ଗୋଟିଏ ଭ୍ରାମ୍ୟମାଣ ସୂଚନାକେନ୍ଦ୍ର ଜରିଆରେ ଯାତ୍ରୀମାନଙ୍କୁ ସହାୟତା ପ୍ରଦାନ ସହ ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ, ପ୍ରବଚନ, ବାଡ଼ଦାଣ୍ଡରେ ଧାରାବିବରଣୀ ପ୍ରଦାନ, ପ୍ରଦର୍ଶନୀ ଆଦରି ବ୍ୟବସ୍ଥା ହୋଇଥିଲା ।

ବଡ଼ଦାଣ୍ଡର ଉଭୟ ପାର୍ଶ୍ୱରେ ଥିବା ସମସ୍ତ କୋଠାଘରକୁ ତନଖି କରାଯାଇ କେଉଁସ୍ଥାନରେ କେତେ ସଂଖ୍ୟକ ବ୍ୟକ୍ତି ସମାଗମ ହେଲେ, ତାହା ବିପଦମୁକ୍ତ ରହିବ, ତାର ତାଲିକା ପ୍ରସ୍ତୁତ ହୋଇ କଡ଼ାକଡ଼ି ଭାବରେ କାର୍ଯ୍ୟକାରୀ ହୋଇଥିଲା ।

ରଥଯାତ୍ରା ସମୟରେ ଜିଲ୍ଲାପ୍ରଶାସନ ଓ ଅନ୍ୟାନ୍ୟ ବିଭାଗ ପକ୍ଷରୁ ଗ୍ରାମଶ୍ରୀମେଳା ଆୟୋଜନ, ଶ୍ରୀଗୁଣ୍ଡିଚାଦିନ ପୁରୀ ଓ ଆଖପାଖ ଅଞ୍ଚଳରେ ମଦ ଓ ନିଶାଦ୍ରବ୍ୟ ବିକ୍ରି ନିଷେଧ, ସମୁଦ୍ରରେ ନିରାପଦ ସ୍ନାନ ପାଇଁ ଅଭିଜ୍ଞ ନୋଳିଆ ଓ ଜୀବନରକ୍ଷକ ନୌକାର ବ୍ୟବସ୍ଥା ଆଦି କରାଯାଇ ଯାତ୍ରୀମାନଙ୍କୁ ସହାୟତା ପ୍ରଦାନ କରାଯାଇଥିଲା ।

ରଥଯାତ୍ରା ସମୟରେ ବହୁ ଯାତ୍ରୀ ପୁରୀକୁ ଆସୁଥିବାରୁ ଶାନ୍ତିଶୃଙ୍ଖଳା ଓ ଆରକ୍ଷୀ ବ୍ୟବସ୍ଥା, ଯାନବାହନ ନିୟନ୍ତ୍ରଣ ପାଇଁ ବ୍ୟାପକ ବନ୍ଦୋବସ୍ତ ହୋଇଥିଲା ଓ ଗତବର୍ଷ ରଥଯାତ୍ରା ଶୃଙ୍ଖଳିତ ଭାବରେ ସମାହିତ ହୋଇଥିଲା ।

ରଥଯାତ୍ରାର ଆୟୋଜନରେ ସରକାରଙ୍କର ପ୍ରାୟ ସମସ୍ତ ବିଭାଗ କିଛି କିଛି କାର୍ଯ୍ୟ କରିଥାଆନ୍ତି । ଏହା ବ୍ୟତୀତ ଗତବର୍ଷ ପ୍ରାୟ ୧୭ଟି ସ୍ୱେଚ୍ଛାସେବୀ ଅନୁଷ୍ଠାନର ସହାୟତା ନିଆଯାଇଥିଲା ଓ ପୂର୍ବରୁ ସେମାନଙ୍କ ମଧ୍ୟରେ ସ୍ଥାନ ଓ କାର୍ଯ୍ୟ ବଣ୍ଟନ କରାଯାଇଥିଲା ।

ଜିଲ୍ଲାପ୍ରଶାସନ ପକ୍ଷରୁ ଯେତେ ବ୍ୟବସ୍ଥା ଗ୍ରହଣ କରାଗଲେ ମଧ ଏହାର ସଫଳ ରୂପାୟନ ପାଇଁ ଆମେ ମହାପ୍ରଭୁଙ୍କ କରୁଣା ଉପରେ ନିର୍ଭର କରୁ । ସୌଭାଗ୍ୟକୁ ଗତବର୍ଷ ପ୍ରଶାସନର ଆନ୍ତରିକ ଉଦ୍ୟମ, ସୁଚିନ୍ତିତ ପ୍ରସ୍ତୁତି ଓ କର୍ମଚାରୀମାନଙ୍କ ର କର୍ମକୁଶଳତା ସହ ମହାପ୍ରଭୁଙ୍କର କରୁଣାରୁ ରଥଯାତ୍ରା ସୁରୁଖୁରୁରେ ସମ୍ପାଦିତ ହୋଇଥିଲା ।

ପ୍ରତ୍ୟେକ ବିଭାଗ ନିଜର ନିୟନ୍ତ୍ରଣ କକ୍ଷ ମଧ୍ୟରେ ବିଭାଗୀୟ କାର୍ଯ୍ୟ ତଦାରଖ କରିବାସହ ଯେକୌଣସି ଅସୁବିଧାର ମୁକାବିଲା ପାଇଁ ସଜାଗ ରହିଥିଲେ । ଏହା ବ୍ୟତୀତ ଜିଲ୍ଲାପ୍ରଶାସନ ପକ୍ଷରୁ ସ୍ଥାପିତ କେନ୍ଦ୍ରୀୟ ନିୟନ୍ତ୍ରଣ କକ୍ଷରେ ସଂପୃକ୍ତ ବିଭାଗର ଜଣେ ଅଧିକାରୀ ଉପସ୍ଥିତ ରହି ଅନ୍ୟାନ୍ୟ ବିଭାଗୀୟ ବ୍ୟବସ୍ଥା ସମୂହରେ ସମନ୍ୱୟ ସ୍ଥାପନ କରିଥିଲେ । ଯେ କୌଣସି ଅସୁବିଧାର ସମ୍ମୁଖୀନ ହେଲେ ତୁରନ୍ତ ପ୍ରତିକାର ଓ ସାହାଯ୍ୟ ପାଇଁ ଏହି ନିୟନ୍ତ୍ରଣ କକ୍ଷ ସହ ଟେଲିଫୋନ ଯୋଗେ ସୂଚନା ଦେବାକୁ ସମସ୍ତଙ୍କୁ ଅନୁରୋଧ କରାଯାଇଥିଲା ଓ ଏହି ବ୍ୟବସ୍ଥା ଖୁବ୍ ଫଳପ୍ରଦ ହୋଇଥିଲା ।

ମହାପ୍ରଭୁଙ୍କ ଆଶୀର୍ବାଦ, ସମସ୍ତ କର୍ମଚାରୀ ଓ ସେବାୟତମାନଙ୍କ ସକ୍ରିୟ ସହଯୋଗରେ ଏ ବର୍ଷର ରଥଯାତ୍ରା ସର୍ବଶୁଭରେ ସମାହିତ ହେବ ବୋଲି ଆଶା ।

*ଜିଲ୍ଲାପାଳ, ପୁରୀ*

# ବୁଦ୍ଧାବତାର ଜଗନ୍ନାଥ

● ପ୍ରଫେସର ଗୋପୀନାଥ ମହାପାତ୍ର

ଅନେକ ଗବେଷକ ଜଗନ୍ନାଥଙ୍କୁ ବୌଦ୍ଧ ଦେବତା ବୋଲି ପ୍ରତିପାଦନ କରିଛନ୍ତି । ମାତ୍ର ସେ ବୌଦ୍ଧଙ୍କ ଦେବତା ନୁହଁନ୍ତି ବୋଲି ଅନେକ ଗବେଷକ ପ୍ରମାଣ କରିଛନ୍ତି । ଏପରି ଅବସ୍ଥାରେ ସାଧାରଣ ପାଠକେ ବଡ଼ ଅଡୁଆ ପରିସ୍ଥିତିରେ ପଡୁଛନ୍ତି । କେଉଁ କଥାଟା ବିଶ୍ୱାସ କରିବେ; ଏଇ ହେଲା ପ୍ରଶ୍ନ । ଶ୍ରୀଜଗନ୍ନାଥତତ୍ତ୍ୱ ପ୍ରସଙ୍ଗରେ ସବୁ ବିଚାର ଆଲୋଚନା ପରେ ସାର କଥା କୁହାଗଲା:-

ନାସୌ ଦେବୋ ବିରଚିତବପୁଃ ଶାବର ଶ୍ରୀନିବାସୋ
ବୌଦ୍ଧୋମୂଳୋ ନ ଖଳୁ ଭବତି ଜୈନମୂଳୋ ନ ଚୈବ ।
ମୂଳଶ୍ଚାସୌ ପ୍ରକୃତି ପୁରୁଷେ ସାଂଖ୍ୟତତ୍ତ୍ୱାଭିଧାନେ
ବେଦାନ୍ତେଷୁ ପ୍ରଥିତ ପୁରୁଷୋ ବ୍ରହ୍ମତତ୍ତ୍ୱାତ୍ମରୂପଃ ।

ଶ୍ରୀ ଜଗନ୍ନାଥ ମୂଳତଃ ବୌଦ୍ଧ ନୁହନ୍ତି; ଏ କଥା ସତ । ତଥାପି ତାଙ୍କୁ ବିଭିନ୍ନ ପ୍ରକାରରେ ବୌଦ୍ଧାବତାର ବୋଲି କୁହାଯାଉଛି । ବୌଦ୍ଧମାନେ ତାଙ୍କୁ ବୁଦ୍ଧ ବୋଲି ଗ୍ରହଣ କରି ଏହାକୁ ସେମାନଙ୍କର ପୁଣ୍ୟପୀଠ ବୋଲି ଗ୍ରହଣ କରି ନେଉଛନ୍ତି । ଫଳରେ ବିଷ୍ଣୁ ବୁଦ୍ଧ ଅବତାର ହୋଇଛନ୍ତି । ଜଗନ୍ନାଥ ମହାବିଷ୍ଣୁ ଥିବାରୁ ସେ ମଧ୍ୟ ବୁଦ୍ଧଅବତାର ଭାବରେ ଗୃହୀତ ହୋଇଛନ୍ତି । ସେଥିପାଇଁ ଭୋଗମଣ୍ଡପର କାନ୍ଥରେ ନାଟମଣ୍ଡପରେ ଜଗନ୍ନାଥଙ୍କ ଦଶାବତାର ମଧ୍ୟରେ ବୌଦ୍ଧାବତାର ସ୍ଥାନରେ ଜଗନ୍ନାଥଙ୍କୁ ବସାଇ ଦିଆଯାଇଛି । ସେଠାରେ ବୁଦ୍ଧଙ୍କ ମୂର୍ତ୍ତି ରହିବାର କଥା; ମାତ୍ର ରହିଲା ଜଗନ୍ନାଥଙ୍କ ମୂର୍ତ୍ତି । ଏହା ଏକ ପରବର୍ତ୍ତୀ ପର୍ଯ୍ୟାୟ । ପ୍ରଥମ ପର୍ଯ୍ୟାୟରେ ବିଷ୍ଣୁଙ୍କୁ ବୁଦ୍ଧ ବୋଲି ବିଚାର କରାଗଲା; ନବମ ଅବତାରରେ ବୁଦ୍ଧଦେବଙ୍କୁ ରଖାଗଲା । ମାତ୍ର ଓଡ଼ିଶାରେ ବୁଦ୍ଧଙ୍କ ସ୍ଥାନରେ ଜଗନ୍ନାଥଙ୍କୁ ରଖାଗଲା । ବୌଦ୍ଧମାନେ ଏହାକୁ ଗ୍ରହଣ କରିଥିଲେ ବୋଲି କୌଣସି ପ୍ରମାଣ ନାହିଁ । ଏହାକୁ ଦେଖି ଜଗନ୍ନାଥଙ୍କୁ ବୌଦ୍ଧ ବୋଲି ଧରିନେବା ସେପରି ବଳିଷ୍ଠ ତଥ୍ୟ ନୁହେଁ । ବୌଦ୍ଧମାନେ ମଧ୍ୟ ସେମାନଙ୍କ ଗ୍ରନ୍ଥରେ କେଉଁଠି ହେଲେ ଜଗନ୍ନାଥଙ୍କୁ ସେମାନଙ୍କ ଦେବତା ଭାବରେ ସ୍ୱୀକାର କରି ନାହାନ୍ତି । ଆମରି ହିନ୍ଦୁମାନେ ହିଁ ଏପରି କହୁଛନ୍ତି । ନାଟମଣ୍ଡପର ଭୋଗମଣ୍ଡପ କାନ୍ଥରେ ଥିବା ଏହି ଜଗନ୍ନାଥ- ବୌଦ୍ଧାବତାର ଓ ସିଂହଦ୍ୱାର ଆଗର ଦ୍ୱାରବନ୍ଧରେ ଥିବା ନବମ ଅବତାର ଜଗନ୍ନାଥ ହେଉଛନ୍ତି ପ୍ରାୟ ପାଞ୍ଚଶହ ବର୍ଷର ପୁରୁଣା ସ୍ଥାପତ୍ୟ । ସୂର୍ଯ୍ୟବଂଶୀ ରାଜା କପିଳେନ୍ଦ୍ରଦେବ ଓ ତାଙ୍କ ପରବର୍ତ୍ତୀ ରାଜାଙ୍କ ସମୟରେ ଏହି ଦଶାବତାର ଗଢ଼ା ଯାଇଥିଲା । ସେହି ପଞ୍ଚଦଶ ଶତାବ୍ଦୀରେ ଜଗନ୍ନାଥ ବୁଦ୍ଧ ବୋଲି ପାରମ୍ପରିକ ଧାରଣା ଲୋକଙ୍କ ମଧ୍ୟରେ ବିଶେଷଭାବରେ ବଦ୍ଧମୂଳ ହୋଇଥିଲା । ସେଥିପାଇଁ ସେହି ସମୟରେ ସାରଳା ଦାସ ତାଙ୍କ ମହାଭାରତରେ ଏହି କଥା ବାରମ୍ବାର ଲେଖିଥିଲେ । ପରେ ଅବଶ୍ୟ ଦେଉଳତୋଳା ଆଦି ଗ୍ରନ୍ଥରେ ଏହି ଭାବନାକୁ ପ୍ରାଧାନ୍ୟ ଦିଆଯାଉନଥିଲା । ଶେଷରେ ବିଂଶ ଶତାବ୍ଦୀରେ ଆଲୋଚକମାନେ ଜଗନ୍ନାଥଙ୍କୁ ବୌଦ୍ଧ ଦେବତା ବୋଲି କହିଲେ । ଢେଙ୍କାନାଳ କର୍ଣ୍ଣେଲଙ୍କ ଠାରୁ ଆରମ୍ଭ କରି ଡଃ ହରେକୃଷ୍ଣ ମହତାବଙ୍କ ପର୍ଯ୍ୟନ୍ତ ବଡ଼ ବଡ଼ ଲୋକ ଏହି ସ୍ୱର ଉଠାଇଥିବାରୁ ସମାଜର ସାଧାରଣ ଲୋକେ ଏ ମତକୁ ବିନା ଦ୍ୱିଧାରେ ଗ୍ରହଣ କରିଗଲେ । ପରେ ଯେତେବେଳେ ୧୯୮୦ରେ ଏହାକୁ ଖଣ୍ଡନ କରି ପୁସ୍ତକମାନ ପ୍ରଣୟନ ହେଲା, ଗବେଷକମାନେ ତାହାକୁ ଦେଖିଲେ ନାହିଁ । ତଥାପି ସତ୍ୟ ଲୁଚି ରହିବ ନାହିଁ । ଏବେ ଜଗନ୍ନାଥଙ୍କୁ ବୌଦ୍ଧ କହୁଥିବା ଗବେଷକଙ୍କ ସଂଖ୍ୟା ହ୍ରାସ ହେବାକୁ ବସିଲାଣି । ଲୋକେ ଆମର ମତବାଦକୁ ଗ୍ରହଣ କଲେଣି ।

ପଞ୍ଚଦଶ ଶତାବ୍ଦୀରେ ସାରଳାଦାସ ଯେତେବେଳେ ଜଗନ୍ନାଥଙ୍କୁ ବୌଦ୍ଧ ବୋଲି କହିଲେ, ତାଙ୍କର ତିନିଶହ ବର୍ଷ ପୂର୍ବରୁ ଓଡ଼ିଶାର କବି ଜୟଦେବ ଗୀତଗୋବିନ୍ଦରେ ଲେଖିଥିଲେ:

"କେଶବ, ଧୃତବୁଦ୍ଧଶରୀର, ଜୟଜଗଦୀଶ ହରେ ।

ସେହି ପଥରେ ପଥିକ ହୋଇ ସାରଳାଦାସ ଲେଖିଲେ ଜଗନ୍ନାଥ ହେଉଛନ୍ତି ବୌଦ୍ଧମୂର୍ତ୍ତି ।

"ସଂସାର ଜନଙ୍କୁ ତାରିବା ନିମନ୍ତେ
ବଉଧ ରୂପରେ ବିଜେ ଜଗନ୍ନାଥେ" ।

ଆଲୋଚନାରୁ ଦେଖାଯାଏ, ପ୍ରଥମେ କେଶବ ବା ଶ୍ରୀକୃଷ୍ଣ ବୁଦ୍ଧ ହେଲେ । ତା'ପରେ ଜଗନ୍ନାଥ ବୁଦ୍ଧାବତାର ହେଲେ । ସାରଳାଙ୍କ ବିଶ୍ୱାସ ଥିଲା, ଏହା କଳିଯୁଗରେ ଶ୍ରୀକୃଷ୍ଣଙ୍କ ସ୍ୱରୂପ ।

"କଳିଯୁଗେ କେଶବ ହୋଇବେ ବଉଧ ପ୍ରତିମା
ମୁହିଁ ହୋଇବି ନୀଳସୁନ୍ଦର ମହାତମା" (ମ.ଭା.ବନ-୨/୧୧୩)

ତାଙ୍କ ବିଶ୍ୱାସ ଅନୁସାରେ ଏକମୂର୍ତ୍ତି ଜଗନ୍ନାଥ (ପତିତପାବନ) କେବଳ ବୌଦ୍ଧମୂର୍ତ୍ତି ନୁହଁନ୍ତି, ଚତୁର୍ଦ୍ଧାମୂର୍ତ୍ତି ସମସ୍ତେ ବୌଦ୍ଧରୂପ ।

ବଉଧ ରୂପେ ବିଜେ ଶ୍ରୀ ନୀଳକନ୍ଦରେ
ଏକ ମୂର୍ତ୍ତି ଚତୁର୍ଦ୍ଧା ରୂପ ଧରିଛନ୍ତି ଦାମୋଦରେ ।
ମ.ଭା.ମଧ-୨/୫୮

ଏହି ଦାମୋଦର ଆଉ କେହି ନୁହଁନ୍ତି; ସଏ ହେଉଛନ୍ତି ଶ୍ରୀକୃଷ୍ଣ । ଅର୍ଥାତ୍ ଶ୍ରୀକୃଷ୍ଣ କଳିଯୁଗରେ ଆଉ ଦୃଶ୍ୟମାନ ହେବେ ନାହିଁ । ସେ ବଳଭଦ୍ର, ସୁଭଦ୍ରା, ସୁଦର୍ଶନ ଭାବରେ ଅବତୀର୍ଣ୍ଣ ହୋଇ ଜଗନ୍ନାଥଙ୍କ ସମ୍ମିଳିତ ଚତୁର୍ଦ୍ଧା ମୂର୍ତ୍ତି ରୂପରେ ନୀଳକନ୍ଦର ପର୍ବତରେ ବୌଦ୍ଧ ରୂପରେ ବିଜେ କରିବେ । ଏହା ଥିଲା ସାରଳା ଦାସଙ୍କର ଭକ୍ତି ଭାବନା । ସେ ଲେଖିଥିଲେ-

ଲେଖା ପରେ

ଥିଲେ ତହିଁ ବିଜେ କରିବୁ ବରାଧ ରୂପ ଧରି ମ.ଭା. ସଭାପର୍ବ-୨/
୧୬୮)

ଜୟଦେବଙ୍କ ଗୀତଗୋବିନ୍ଦର କୃଷ୍ଣ ହେଉଛନ୍ତି ଜଗନ୍ନାଥ । ଏହି ମତକୁ ପ୍ରତିପାଦନ କରିବା ପାଇଁ ଆମର ଏକ ପ୍ରବନ୍ଧ "Jagannath the Krishna of Gitagovindam" All Orissa History Congress ରେ ପଠିତ ହୋଇ ପ୍ରକାଶିତ ହୋଇଥିଲା । ସାରଳା ଦାସ ମଧ ଏହି ତତ୍ତ୍ୱର ପୋଷକ । ଷୋଳକଳା ବିଷ୍ଣୁ ହେଉଛନ୍ତି ଜଗନ୍ନାଥ । ସେ ଅବତାରୀ । ସବୁ ଅବତାର ତାଙ୍କ'ଠାରୁ ଉଦ୍ଭବ । ଏପରିକି କୃଷ୍ଣ ବା କାହ୍ନୁ ହେଉଛନ୍ତି ତାଙ୍କରି ଅବତାର । ଏହା ହେଉଛି ଏକ ଉଲ୍ଲେଖନୀୟ ପରମ୍ପରାର ଭାବନା । ତାଙ୍କ ଭାଷାରେ:

ମତ୍ସ କୂର୍ମ ବରାହା ନରସିଂହ ବାମନ
ପରଶୁଧର ଶ୍ରୀରାମ କାହ୍ନୁ ସଙ୍କର୍ଷଣ ।
ବଉଧ କଳଙ୍କୀ ଯେ ଦଶ ଅବତାର
ସେ ପ୍ରଣବ ଶରୀରୁ ଯେ ହୋଇଅଛି ବାହାର ।( ମ.ଭା.୨ ୬୭)

ସାରଳା ଦାସଙ୍କ ବିଚାରରେ ଜଗନ୍ନାଥ ହେଉଛନ୍ତି ସ୍ୱାମୀ ବା ଶ୍ରେଷ୍ଠ । ସେହି ଷୋଳକଳା ବିଷ୍ଣୁ । କୃଷ୍ଣ ଓ ବଳରାମ ଉଭୟ ଏକ । ଉଭୟ ହେଉଛନ୍ତି ଏକ ଅଭିନ୍ନରୂପ । ସ୍କନ୍ଦପୁରାଣରେ ମଧ କୁହାଯାଇଛି; କୃଷ୍ଣ ଓ ବଳରାମ ଏକ ଓ ଅଭେଦ । "ନ ଭେଦୋଽସ୍ତି ହ ଭୋ ବିପ୍ରାଃ କୃଷ୍ଣସ୍ୟ ଚ ବଳସ୍ୟ ଚ ।" ସେହି କଥାକୁ ଗ୍ରହଣ କରି ସାରଳା ଦାସ ହରି ବା କୃଷ୍ଣ-ଜଗନ୍ନାଥଙ୍କୁ ବୌଦ୍ଧ ବୋଲି କହିଥିବା ବେଳେ ଅନ୍ୟତ୍ର ବଳଭଦ୍ର ବା ବଳରାମଙ୍କୁ ମଧ ବୌଦ୍ଧମୂର୍ତ୍ତି ବୋଲି ଅଭିହିତ କରିଛନ୍ତି । ତାଙ୍କ ଭାଷାରେ;

ଜଗନ୍ନାଥ ରୂପେ ହରି ତହିଁ ବିଜେ କରି
ବଳରାମ ହିଁ ବଉଧ ରୂପେ ଅବତରି । (ମ.ଭା. ବନ-୨/୧୧୦)

ସାରଳା ଦାସଙ୍କର ପରେ ଜଗନ୍ନାଥ ଯେ ବୌଦ୍ଧ, ଏହି ଭାବନା ଅନେକଙ୍କ ମନରେ ଦୃଢ଼ ହୋଇ ରହିଛି ।

ବିଷ୍ଣୁଙ୍କର ଅବତାର ବିଷୟରେ ରାମାୟଣରେ ଉଲ୍ଲେଖ ଅଛି । ସ୍ୱୟଂ ରାମ ହେଉଛନ୍ତି ବିଷ୍ଣୁଙ୍କର ଏକ ଅବତାର । ମାତ୍ର ଏଥିରେ ବୌଦ୍ଧ ଅବତାର କଥା ନାହିଁ । ମହାଭାରତରେ ବିଷ୍ଣୁଙ୍କର ଦଶାବତାର କଥା ଅଛି; ମାତ୍ର ବୌଦ୍ଧ ଅବତାର କଥା ନାହିଁ । ମହାଭାରତର ଶାନ୍ତି ପର୍ବରେ ଯେଉଁ ଅବତାରଙ୍କ କଥା ଅଛି, ସେମାନେ ଯଥାକ୍ରମେ ହେଉଛନ୍ତି– ହଂସ, କୂର୍ମ, ମତ୍ସ୍ୟ, ବରାହ, ନରସିଂହ, ବାମନ, ରାମ, ଦାଶରଥି, ରାମ, କୃଷ୍ଣ ଓ କଳ୍କୀ (ମ.ଭା-ଶାନ୍ତି-୩୩୯/୧୦୩ -୧୦୪) ଶ୍ରୀମଦ୍ ଭଗବଦ୍ ଗୀତା ଓ ମହାଭାରତ– ଏହି ଉଭୟ ଗ୍ରନ୍ଥରେ ବିଷ୍ଣୁଙ୍କର ବୌଦ୍ଧାବତାର ଦେଖାଯାଏ ନାହିଁ । ଗୀତାରେ ତ କେବଳ କୁହାଗଲା, ଧର୍ମସଙ୍କଟ ପଡ଼ିଲେ ଭଗବାନ୍ ଅବତାର ଗ୍ରହଣ କରିଥାନ୍ତି । ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ"

ପୁରାଣ ଯୁଗବେଳକୁ ପରବର୍ତ୍ତୀ କାଳରେ ବୁଦ୍ଧଙ୍କୁ ବିଷ୍ଣୁଙ୍କ ଅବତାର ଭାବରେ ଗ୍ରହଣ କରାଗଲା । ସେତେବେଳକୁ ଯଜ୍ଞରେ ଅନେକ ଅନାଚାର ପଶିଯାଇଥିଲା । ବୁଦ୍ଧ ଯଜ୍ଞ ବିଧାନକୁ ନିନ୍ଦା କରି ନିଜର ଅହିଂସା ଧର୍ମ ପ୍ରଚାର କଲେ । ତାଙ୍କର ଏପରି ପ୍ରଭାବ ଓ ଶକ୍ତି ଥିଲା ଯେ, ଲୋକେ ଦଳେ ଦଳେ ସେ ଧର୍ମ ଗ୍ରହଣ କରିଗଲେ । ସେଥିପାଇଁ ଜୟଦେବ ଲେଖିଲେ;- "ନିନ୍ଦସି ଯଜ୍ଞବିଧେରହହ ଶ୍ରୁତି ଜାତଂ, ସଦୟ ହୃଦୟ ଦର୍ଶିତ ପଶୁଘାତମ୍" । ତେଣୁ ଏଥିରେ ସନ୍ଦେହ ନାହିଁ ଯେ ବୁଦ୍ଧ ହେଉଛନ୍ତି ପରମ କରୁଣା ପରାୟଣ ମହାମହିମ ପୁରୁଷ । ତାଙ୍କ ପ୍ରଭାବରେ ଅନେକ ହିନ୍ଦୁ ବୌଦ୍ଧ ହୋଇଗଲେ । ସେଥିପାଇଁ ପୁରାଣମାନେ ଏହି ପ୍ରଭାବଶାଳୀ ପୁରୁଷଙ୍କୁ ବିଷ୍ଣୁଙ୍କର ଅବତାର ଭାବରେ ଗ୍ରହଣ କରିଗଲେ । ନବମ ଅବତାରରେ ତାଙ୍କର ସ୍ଥାନ ରହିଲା । ଏଣେ ମହାଭାରତରେ ଥିବା ପ୍ରଥମ ଅବତାର 'ହଂସ' ତାଲିକାରୁ ବାଦ୍ ପଡ଼ିଗଲେ । ଏହାରି ଉପରେ ଭିତ୍ତି କରି ପ୍ରଥମେ ଏକାଦଶ ଶତାବ୍ଦୀରେ କ୍ଷେମେନ୍ଦ୍ର ବିଷ୍ଣୁଙ୍କର ଦଶାବତାର ସ୍ତୋତ୍ର ଲେଖିବା ପରେ ଶ୍ରୀହର୍ଷ ଓ ଜୟଦେବ ବିଷ୍ଣୁଙ୍କର ଦଶାବତାର ବର୍ଣ୍ଣନା କରି ହଂସାବତାରକୁ ବାଦ୍ ଦେଇ ବୁଦ୍ଧାବତାରକୁ ବର୍ଣ୍ଣନା କଲେ ।

ବୁଦ୍ଧ ବା ଗୌତମ ବୁଦ୍ଧଙ୍କର ଜୀବିତାବସ୍ଥାରେ ତାଙ୍କୁ ଭଗବାନ୍ ବିଷ୍ଣୁଙ୍କର ଅବତାର ଭାବରେ ଗ୍ରହଣ କରାଯାଇ ନଥିଲା । ଯେତେବେଳେ ଗ୍ରହଣ କରାଗଲା, ସେତେବେଳକୁ ବହୁବର୍ଷ ବିତି ଯାଇଥିଲା । ମହାଜନମାନେ ବୁଦ୍ଧ ମୂର୍ତ୍ତି ପୂଜା କରୁଥିଲେ । ବୁଦ୍ଧ କେବଳ ଜ୍ଞାନୀ ଭାବରେ ଗଣାଯାଉନଥିଲେ । ସେ ଜଣେ ଅତିମାନୁଷ ବା ଦେବତା ଭାବରେ ପୂଜ୍ୟ ହୋଇ ସାରିଥିଲେ । ତାଙ୍କୁ ଭଗବାନ୍ ବୁଦ୍ଧ ବୋଲି କୁହାଯାଉଥିଲା । ବୌଦ୍ଧ ଧର୍ମ ହିନ୍ଦୁ ଧର୍ମକୁ ଦବାଇ ଦେଇ ସାରାଭାରତରେ ଲୋକପ୍ରିୟ ହୋଇ ସାରିଥିଲା । ତେଣୁ ଆମର ପୁରାଣମାନଙ୍କର ଅନେକ ସ୍ଥଳରେ ତାଙ୍କୁ ପ୍ରଶଂସା କରାଯାଇଥିଲା ଓ ପରିଶେଷରେ ସେ ବିଷ୍ଣୁଙ୍କର ଦଶାବତାର ମଧରେ ସ୍ଥାନ ପାଇଲେ । ସେତେବେଳକୁ କୃଷ୍ଣଙ୍କୁ ଅବତାରୀ ରୂପେ ଗ୍ରହଣ କରି ସେହି ନବମ ଅବତାରରେ ବୁଦ୍ଧଙ୍କୁ ପୂଜା କଲେ । ବରାହପୁରାଣ ବିଷ୍ଣୁଙ୍କର ବରାହ ଅବତାରର ମହିମା କୀର୍ତ୍ତନ ଉପରେ ପର୍ଯ୍ୟବସିତ । ଏଥିରେ ବୁଦ୍ଧଙ୍କୁ ବିଷ୍ଣୁଙ୍କର ଅବତାର ଭାବରେ ଗ୍ରହଣ କରାଯାଇଛି । (ପୁରାଣ ବିମର୍ଶ– ଉପାଧ୍ୟାୟ- ପୃ-୫୫୯) ଭାଗବତରେ ମଧ ବୌଦ୍ଧାବତାରର ବର୍ଣ୍ଣନା ଥିବାର ଅଧ୍ୟାପକ ବଳଦେବ ଉପାଧ୍ୟାୟ ପ୍ରକାଶ କରିଛନ୍ତି । (ପୁରାଣ ବିମର୍ଶ ପୃ:୧୭୩) ଅଗ୍ନିପୁରାଣ ଓ ଗରୁଡ଼ ପୁରାଣରେ (୨/୨୦/୩୧; ୧/ ୧୪୫/୪୦) ମଧ ଏହି ଅବତାର ସୂଚିତ ହୋଇଛି । ବୁଦ୍ଧ ବିଷ୍ଣୁଙ୍କର ଅବତାର ରୂପେ ଗୃହୀତ ହେବା ବେଳକୁ ପ୍ରାୟ ଷଷ୍ଠ ଶତାବ୍ଦୀରୁ ଅଷ୍ଟମ ଶତାବ୍ଦୀ ମଧରେ ଘଟିଥିବା ଧର୍ମ ବିପ୍ଳବର ସମୟ ବୋଲି ଅବଧାରଣା କରାଯାଇପାରେ । ସେହି ସମୟରେ ଉପରୋକ୍ତ ପୁରାଣମାନେ ହିନ୍ଦୁଧର୍ମକୁ ବୌଦ୍ଧଙ୍କ କବଳରୁ ରକ୍ଷା କରିବା ପାଇଁ ବୁଦ୍ଧଙ୍କୁ ବିଷ୍ଣୁଙ୍କ ଅବତାର ବୋଲି ମାନି ନେଇଛନ୍ତି । ଏହି ସମୟରେ ଶଙ୍କର ଓ କୁମାରିଲ୍ଲ ହିନ୍ଦୁଧର୍ମ ରକ୍ଷଣରେ ବ୍ରତୀ ହୋଇଛନ୍ତି । ପୁରୁଷୋତ୍ତମ କ୍ଷେତ୍ରରେ ପୁରୁଷୋତ୍ତମ- ବିଷ୍ଣୁ ଅଧିଷ୍ଠିତ ଥିବାରୁ ଶଙ୍କରାଚାର୍ଯ୍ୟ ପୁରୀକୁ ଆସି ମଠ ସ୍ଥାପନ କରି ରହିଥିଲେ । କୃଷ୍ଣ ବିଷ୍ଣୁଙ୍କ ସ୍ଥାନରେ ବୁଦ୍ଧଙ୍କୁ ବିଷ୍ଣୁଙ୍କର ଅବତାର ଭାବରେ ପୂଜା କରାଯାଉଥିବା ସେତେ ସୁନ୍ଦର ଦେଖା ଯାଉନଥିଲା । ଏଣେ ପୁରାଣମାନେ ତାହାକୁ ସ୍ୱୀକାର କରିଥିବାରୁ ଦଶାବତାର ତାଲିକାରୁ ବୁଦ୍ଧଙ୍କୁ ଉଠାଇ ଦିଆଯାଇ ପାରୁନଥିଲା । ମାତ୍ର ବୌଦ୍ଧମାନେ ଏହି କଥାକୁ ଗ୍ରହଣ କରି ବୁଦ୍ଧଙ୍କୁ ବିଷ୍ଣୁ ଭାବରେ ଉପାସନା କରୁନଥିଲେ । ଏହା କେବଳ ହିନ୍ଦୁମାନେ ମାନୁଥିଲେ । ଶଙ୍କରାଚାର୍ଯ୍ୟ ସାରା ଭାରତ ବୁଲି ବୁଲି ବୌଦ୍ଧ ପଣ୍ଡିତମାନଙ୍କୁ ପରାସ୍ତ କଲେ । ବୌଦ୍ଧ ଧର୍ମର ପତନ ଭାରତରେ ସଂଘଟିତ ହେଲା । ପରିଶେଷରେ ବୁଦ୍ଧଙ୍କ ମୂର୍ତ୍ତି ବଦଳରେ ସେହି ସ୍ଥାନରେ ଜଗନ୍ନାଥଙ୍କ ମୂର୍ତ୍ତି ଓଡ଼ିଶାରେ ସ୍ଥାପିତ ଓ ଗୃହୀତ ହୋଇଥିଲା । ସେଥିପାଇଁ ଜୟଦେବ ଲେଖିଲେ–

"କେଶବ, ଧୃତ ବୁଦ୍ଧ ଶରୀର, ଜୟଜଗଦୀଶ ହରେ !"

ଫଳରେ ସେ ସ୍ଥାନରେ ଆଉ ବୁଦ୍ଧମୂର୍ତ୍ତିକୁ ପୂଜା କରିବାର ଅବକାଶ ରହିଲା ନାହିଁ ।

ନୀଳଚକ୍ର, ସାତ୍ତବାପୁର ରୋଡ଼, ପୁରୁଣା ଭୁବନେଶ୍ୱର, ଭୁବନେଶ୍ୱର-୨



# ରଥ ତ୍ରୟର ଚିତ୍ର, ଚିତ୍ରକାର ଓ ଚିତ୍ରକଳା

● ପଣ୍ଡିତ ଚାରଣ ରାମଦାସ

ବିଚିତ୍ର ପ୍ରଭୁ ଜଗନ୍ନାଥ । ବିଚିତ୍ର ତାଙ୍କର ଲୀଳା କୈବଲ୍ୟ । ବିଚିତ୍ର ତାଙ୍କର ଯାତ୍ରା ଓ ଅତି ବିଚିତ୍ର ତାଙ୍କର ମହନୀୟ ମହିମାମୟ ସଂସ୍କୃତି । ନାନା ବୈଚିତ୍ର୍ୟ, ନାନା ବୈଭବ, ନାନା ବୈଷମ୍ୟ ଓ ନାନା ବିବିଧତା ମଧ୍ୟରେ ଅଭିନ୍ନତା ସ୍ଥାପନ କରି ନାନାବିଧ ଐଶ୍ୱର୍ଯ୍ୟ, ମାଧୁର୍ଯ୍ୟ, ଗାମ୍ଭିର୍ଯ୍ୟ, ଶୌର୍ଯ୍ୟ, ବୀର୍ଯ୍ୟ, ଔଦାର୍ଯ୍ୟାଦି ଷଟ୍-ସୁଷମାକୁ ସୁସଂସ୍କାର କରି ଏ ମହାନ ସଂସ୍କୃତି ହୋଇଛି ମଧୁମୟ ଓ ମନୋଜ୍ଞ । ପ୍ରତି ଛନ୍ଦେ ଛନ୍ଦେ, ପଦେ ପଦେ, ନାନା କଥା, ନାନା ଗାଥା, ନାନା ତତ୍ତ୍ୱ, ନାନା ତଥ୍ୟରେ ପରିପୁଷ୍ଟ ଏହି ବିଚିତ୍ର-ବିସ୍ମୟ ସଂସ୍କୃତି ଜନ-ଗଣ -ମନରେ ନିର୍ମାଣ କରେ ଏକ ପବିତ୍ର-ପୁଣ୍ୟ ବେଦୀ । ବିପୁଳ ବେଳାଭୂମିରୁ ବାଲୁକାକଣା ସାଉଁଟିଲାପରି, ସିନ୍ଧୁରୁ ବିନ୍ଦୁଟିଏ ଆହରଣ କଲାପରି ଏହି ବିଶାଳ ରସାଳ ସଂସ୍କୃତିର ମହାନ ମହନୀୟ ରଥପର୍ବର, ଭୁବନ ବିଦିତ ଦିବ୍ୟରଥ ତ୍ରୟର ଚିତ୍ର, ଚିତ୍ରକର ଓ ଚିତ୍ରକଳା ସଂପର୍କରେ ତତ୍ତ୍ୱଭିତ୍ତିକ ଓ ତଥ୍ୟଗର୍ଭକ ଆଲୋଚନାରୁ ଉପଲବ୍ଧ ହୁଏ ଏ କଳାତୀର୍ଥ-ଉତ୍କଳର କାଳିଆ- କଳାଠାକୁରର କଳାକାରି ଓ ଚାରୁକୃତି କେତେ କମନୀୟ ଓ ଗରିମାମୟ ।

ଚିତ୍ରକରମାନଙ୍କର ଏକ ଅଙ୍କିତ ପଦ୍ଧତିକୁ ଲେପ ସଂସ୍କାର ବିଧି ବୋଲି କୁହାଯାଏ । ଏହା ମୁଖ୍ୟତଃ ଦୁଇଭାବରେ ଦୁଇଟି ପ୍ରକ୍ରିୟାରେ କରାଯାଏ । ପ୍ରଥମତଃ ଶ୍ରୀଅଙ୍ଗ ଲେପ, ଦ୍ୱିତୀୟତଃ ରଥ ଚିତ୍ର । ଏହି ଶ୍ରୀଅଙ୍ଗ ଲେପ ସଂସ୍କାର ପଦ୍ଧତି ମଧ୍ୟ ଦୁଇ ଭାଗରେ ବିଭକ୍ତ । ତାହା ହେଲା ବହିଲେପ ବା ବାହ୍ୟଲେପ, ଦ୍ୱିତୀୟତଃ ବ୍ରହ୍ମଲେପ । ସ୍କନ୍ଦ ପୁରାଣାଦି ମତରେ ବିଶ୍ୱାବସୁ କୁଳୋଦ୍ଭବ ଶାବର କଳାକାରମାନେ ଆଦିମ ସାଂକେତ ବିଦ୍ୟାର ଅବଲମ୍ବନରେ ବହୁ ଲେପ ଓ ରଂଗଦ୍ୱାରା ଜଗନ୍ନାଥାଦି ବିଗ୍ରହମାନଙ୍କର ରୂପ ଦେଲେ । ବିଷ୍ଣୁ ଧର୍ମୋତ୍ତର ପୁରାଣ, ଅଗ୍ନିପୁରାଣ ତଥା ସମରାଙ୍ଗଣ ସୂତ୍ରଧାର ଆଦି ଗ୍ରନ୍ଥରେ ବହିଲେପର ବର୍ଣ୍ଣନା କରାଯାଇଅଛି । ଯଥା :- (୧) ସୁଗନ୍ଧି ତୈଳ (୨) ପଟ୍ଟବସ୍ତ୍ର (୩) ଶାଳଦ୍ରବ (ଚୂଣ ଓ ତୈଳଯୁକ୍ତ ବହିଲେପ) (୪) ପଞ୍ଚକାଳିକ (ଘଣା) (୫) ଚେହେଲି ଛିନବସ୍ତ୍ର (୬) ଅବଲେହ ବା ଖଳି (୭) ଶ୍ରୀମୁଖ ଓଡ଼ା ବସ୍ତ୍ରାବରଣ ଏବଂ ଚିତ୍ରକର୍ମ । ଏହା ଅତ୍ୟନ୍ତ ଆଦିମ ଗଠନର ପଦ୍ଧତି ।

ଦ୍ୱିତୀୟଟି ହେଲା ବ୍ରହ୍ମଲେପ । ଏହା ଅନ୍ତର୍ଲେପ ଓ ଚିରନ୍ତନ ଲେପ । ଶ୍ରୀଖଣ୍ଡ ଚନ୍ଦନ, କସ୍ତୁରୀ, କର୍ପୂର, କୃଷ୍ଣାଗୁରୁ ଆଦି । ଏହା ଗୁପ୍ତ ବା ଶାଶ୍ୱତ ବସ୍ତୁ । ବ୍ରହ୍ମଦ୍ରବ୍ୟାବରଣ ।

ଏତଦ୍ ବ୍ୟତୀତ ଚିତ୍ରକାର ନିଯୋଗମାନେ (ଭାଗାରୀ) ରଥତ୍ରୟର ସାଂକେତ ଚିତ୍ରାଙ୍କନ ପାଇଁ ବ୍ୟବହାର କରିଥାନ୍ତି । ହିଙ୍ଗୁଳ, ଗେରୁ, ହରିତାଳ, ଶଙ୍ଖ, ଖଡ଼ିର କଳା, ପଚା, ତୁତିଆ, ମୃତ୍ତିକ ତୁଳିକା ଇତ୍ୟାଦି । ରଂଗ କ୍ରିୟାର ଏ ସବୁ ହେଲେ ଉପାଦାନ । କିନ୍ତୁ ରଙ୍ଗ ଓ ରୂପକାରମାନେ ମଧ୍ୟ ବିଭିନ୍ନ ଶ୍ରେଣୀଭୁକ୍ତ ଅଟନ୍ତି । ସେମାନେ ହେଲେ-(୧) ରୂପକାର ନିଯୋଗ- ଯେଉଁମାନେ ମୂର୍ତ୍ତି-ସାରଥୀ ଓ ପାର୍ଶ୍ୱଦେବତା କରନ୍ତି ।

(୨) ଚିତ୍ରକାର ମହାରଣା - ଯେଉଁମାନେ ରଥଚିତ୍ରାଦି କରନ୍ତି ।

(୩) ପଟି ଚିତ୍ରକାର - ଯେଉଁମାନେ ଅଣସର ପଟିଚିତ୍ର କରନ୍ତି ।

(୪) ବିଶ୍ୱାବସୁ କୁଳ ନାୟକ - ଏମାନେ ଶ୍ରୀଅଙ୍ଗ ରକ୍ଷଣାଦି ସଂସ୍କାରାଦି କର୍ମ କରନ୍ତି । ବିଦ୍ୟାପତି ବଂଶଜ ପତିମହାପାତ୍ର ଓ ବସୁ ବଂଶଜ ଦାସ ମହାପାତ୍ର ।

(୫) ଶୁଦ୍ଧ ସୁଆର ନିଯୋଗ - ଚନ୍ଦନ ବା ପ୍ରଭୃତି ଗନ୍ଧ ଲେପ ଅଧିକାରୀ ।

**ଚିତ୍ରାନୁକୂଳ** :- ଅଣସର ଏକାଦଶୀ ଅର୍ଥାତ୍ ଚନ୍ଦନ ଏକାଦଶୀର ପବିତ୍ର କ୍ଷଣରେ ଚିତ୍ରକରମାନେ ଶ୍ରୀ ଜିଉଙ୍କ ରଥଚିତ୍ର ଆରମ୍ଭ କରିଥାନ୍ତି । ଏପଟେ ଭିତରେ ଶ୍ରୀଜିଉମାନଙ୍କର ଶ୍ରୀ ଅଙ୍ଗରେ ଖଡ଼ି ଲେପ କରିଥାନ୍ତି । ଚିତ୍ରକରମାନେ ରଥରେ ଚିତ୍ରଲେଖନ ସଂସ୍କାର ଚାଲିଥିବା ବେଳେ ରଥ ଚିତ୍ରକରମାନେ ରଥର ଚିତ୍ରଲେଖନ କରିଥାନ୍ତି । ଚିତ୍ରକରମାନେ ମୁଖ୍ୟତଃ ତିନି ପ୍ରକାର ହୋଇ ଚିତ୍ର କରିଥାନ୍ତି । ଯେଉଁମାନେ ଅଭିଜ୍ଞ, ଯେଉଁମାନେ ତୁଳିକାରେ ନିପୁଣ ଥିଅନ୍ତି । ଯେଉଁମାନେ ଅଭିଜ୍ଞ, ଯେଉଁମାନେ ତୁଳିକାରେ ନିପୁଣ, ସେମାନେ ରଥର ନାଟଖଣ୍ଡ ଓ ସିଂହାସନ ତିଆରି କରନ୍ତି । ଯେଉଁମାନେ ମଧ୍ୟମ ପନ୍ଥ ବା ଦ୍ୱିତୀୟ ରୋହ୍ଟର, ସେମାନେ ଅରଣ୍ଡୁର ଓ ଯେଉଁମାନେ ନୂତନ ବା ତୁଳୀ ଚାଳନାରେ ବିଚକ୍ଷଣ ନୁହଁନ୍ତି, ସେମାନେ ରଙ୍ଗ ଦେବା କାର୍ଯ୍ୟ କରିଥାନ୍ତି । ଏହି ତ୍ରିବର୍ଗ ଚକ୍ରଷୋଡ଼ଶରେ ଦ୍ୱାଦଶ ଦଳ ପଦ୍ମ ଓ ଅଷ୍ଟଦଳ ପଦ୍ମ ସଂସ୍ଥାପନ କରନ୍ତି । କୁମ୍ଭାରରେ କେଶର ସୂଚିତ କରିଥିଛି । ପରିଧିର ଦୂରଧାରମାନଙ୍କରେ ପାଣ୍ଡୁରା ବେଢ଼ା ଚିତ୍ର କରିଥିଛି । ଏହି ପରିଧିର ଦୁଇଧାରମାନଙ୍କରେ ପାଖୁଡ଼ା ବେଢ଼ା ଚିତ୍ର କରିଥିଛି ।

**ମେଘାଡ଼ମ୍ବର** : ରଥମାନଙ୍କର ପରିଦଣ୍ଡା ଥାଏ । ଏହି ପରିଦଣ୍ଡାମାନଙ୍କରେ ବିଭିନ୍ନ ପ୍ରକାରର ଲତା ଚିତ୍ର ଅଙ୍କନ ହୋଇଥାଏ ଏବଂ ଦଣ୍ଡର ଶେଷ ଭାଗମାନଙ୍କର ଫଗୁଆ ଭୁଞ୍ଜି ଚିତ୍ର ଆଙ୍କିଥିଛି । ଏହି ଚିତ୍ରସମୂହକୁ ଚିତ୍ରକରମାନେ ଚିତ୍ରଶିଳ୍ପ ପଦ୍ଧତି ଅନୁସାରେ ନାମିତ କରିଥାନ୍ତି ମେଘାଡ଼ମ୍ବର ବୋଲି । ଗବେଷକ ଓ ତତ୍ତ୍ୱଜ୍ଞମାନଙ୍କ ମତରେ ମେଘାଡ଼ମ୍ବର ହେଲା ବେଦମୟ ଦେବଯାନର ଆକାଶଗାମୀ ସୂଚନା । ବଲ୍ଲିଭା ହେଉଛି ମେଘର ତରଙ୍ଗ । ଷୋଡ଼ଶ ଚକ ହେଉଛି ଷୋଡ଼ଶ କଳା (ଚନ୍ଦ୍ର) 'ଦ୍ରୁମ' ମାନେ ହେଲେ ନକ୍ଷତ୍ରମାଳା । ଏହି ଦେବଯାନର କେବଳ ଆକାଶ ପଥ ହିଁ ଯାତାୟତର ମାର୍ଗ ।

**ବିରାଳ ଚିତ୍ର** :- ଦଣ୍ଡାପାଠର ଉଦ୍ଧାକାର ଆସନମାନଙ୍କରେ ୩/୪ ଆଙ୍ଗୁଳ ବିଶିଷ୍ଟ ରଥପାଠ ଚିତ୍ୟମାନ । ଏହି ସମସ୍ତ ପାଠ ବିଭିନ୍ନ ଭରଣୀର କୋଣ ପ୍ରଦେଶରେ ବିଭିନ୍ନ ବିରାଳ ମୂର୍ତ୍ତି ଚିତ୍ର ଅଙ୍କିତ ହୋଇଥାଏ । କୋଣ ଚତୁଷ୍ଟୟ ଅର୍ଥାତ୍ ଚାରିପଟ କୋଣମାନଙ୍କରେ ରଙ୍ଗ ତୁଳି

ବିରାଳ (ବିଡ଼ାଳ), ଉଦ୍ରମୋଡ଼ମାନଙ୍କରେ ସିଂହ ବିରାଳ ତଥା ନରବିରାଳ (ବିଡ଼ାଳ) ଚିତ୍ରମାନ ଚିତ୍ରିତ ହୋଇଥାଏ । ତଳେ ଫୁଲ ଚିହ୍ନିତ ପାଠ, ତାହାଉପରେ ଫୁଲ ଚିହ୍ନିତ ମଣ୍ଡନୀ ରହି ବିରାଳ ଚିତ୍ର ଚିତ୍ରିତ ହୋଇଥାନ୍ତି । ଏହି ଚିତ୍ରଗୁଡ଼ିକ ମିଶ୍ରଯୋନୀ ସଂପନ୍ନ । ଦେଖିବାକୁ ଖୁବ୍ ଉଗ୍ର ଓ ସମ୍ମୁଖ ମୁହଁ ସମ୍ପନ୍ନ । ଗବେଷକମାନଙ୍କ ଶାସ୍ତ୍ରୀୟ ନାମ ହେଲା - ବ୍ୟାଳ । କେତେବେଳେ କେତେବେଳେ ନର ଓ ଦେବ ଲୋକ କିମ୍ବା ନର-କିନ୍ନର ଏକର ସମନ୍ୱୟଙ୍କ ସ୍ୱରୂପ ଏହି ବିରାଳ ମୂର୍ତ୍ତିମାନ ରହିଥାନ୍ତି । କଥିତ ଅଛି - ଏ ବିରାଳଗୁଡ଼ିକ ଦେବଯାନର ରକ୍ଷକ ଅଟନ୍ତି ।

**ପାଠ ମଣ୍ଡନା :-** ନାନା ପୁଷ୍ପମାଳିକା ଦ୍ୱାରା ରଥପାଠକୁ ଅଳଂକୃତ କରିଥାଏ ଯେଉଁ ଚିତ୍ରରାଜି, ତାହାର ନାମ ପାଠମଣ୍ଡନା । ବିରାଳ ଚିତ୍ରାଦି ଉପରକୁ ନୀଳଭୂମି ଉପରେ ଶୁକ୍ଳବର୍ଣ୍ଣର ହଂସପଟି ତଥା ଉତ୍ତାକାର ଯୋଗର ମୋଡ଼ ଛାଟ (ଛନ୍ଦ) ମଝିରେ ଫୁଲ ଓ ଆଡ଼ ରେଖା ଥାଇ ଚିତ୍ରିକ ରଙ୍ଗର ଛାଟ ଖନ୍ଦ ଯୋଗ କରାଯାଏ- ଯାହାକୁ ଶିଳ୍ପୀ ବା ଚିତ୍ରକରମାନେ ପାଠମଣ୍ଡନା ନାମରେ ନାମିତ କରିଥାନ୍ତି ।

**ହଂସମାଳିକା :-** ହଂସପଟିରେ ଏହି ଅସଂଖ୍ୟ ହଂସପଂକ୍ତି ବିରାଜିତ ହେତୁ ଚିତ୍ରଶିଳ୍ପୀମାନଙ୍କ ଭାଷାରେ ହଂସମାଳିକା । ହଂସପଟି ସମ୍ମୁଖ ପାର୍ଶ୍ୱଠାରୁ ମୁହାଁଣ ପର୍ଯ୍ୟନ୍ତ ପ୍ରତ୍ୟେକ ହଂସ ଏକ ଦିଗବର୍ତ୍ତୀ ଓ ମୁଖାଗ୍ରଭାଗରେ ଏକ ଏକ ପର୍ଣ୍ଣ (ପତ୍ର) ଧାରଣ କରିଥାନ୍ତି । ହଂସ ପକ୍ଷୀମାନେ ରଥର ମଙ୍ଗଳ ପ୍ରଦାୟିନୀ ଜୀବ ସମୂହ ଅଟନ୍ତି । ପୁନଶ୍ଚ ଯୋଗତତ୍ତ୍ୱର ହଂସତତ୍ତ୍ୱ- ସୋଽହଂବାଦର ଏକ ଚରମ ନିଷ୍କର୍ଷ ବା ପରିଣତି ବିଶ୍ୱଯୋଗେଶ୍ୱର ଜଗନ୍ନାଥ ଏହି ହଂସ ତତ୍ତ୍ୱକୁ ଡେଇଁ କରି ପହଣ୍ଡିରେ ଅତିକ୍ରମ କରିଗଲେ ପାଠ ମଣ୍ଡନ ବା ସିଂହାସନାରୂଢ଼ ହୋଇଥାନ୍ତି ଓ ପହଣ୍ଡି ସରିଲେ ବୋଲି ଉଦ୍‌ଘୋଷିତ ହୋଇଥାଏ ।

**ଦାରଧାରିଣୀ :-** ରଥର ସମ୍ମୁଖରେ ମୁହାଁଣୀ ବା ପାଠଭାଗର ୪ଗୋଟି ସ୍ତମ୍ଭାକାର କ୍ଷୁଦ୍ରଧାରିଣୀ ଚିତ୍ର ହିଁ ଦାରଧାରିଣୀ । ଧର୍ମ, ଅର୍ଥ, କାମ, ମୋକ୍ଷପ୍ରଦାୟକ ରଥର ଏହି ଦାରଧାରିଣୀରେ ଶଙ୍ଖ, ବଳାହକ, ଚିତ୍ରାଶ୍ୱାଦି ଅଶ୍ୱମାନେ ପୁଷ୍ପ ନିବେଶନ କରି ରଥାକର୍ଷଣ କରନ୍ତି । ଏହି ୪ ଗୋଟି ସ୍ତମ୍ଭଧାରିଣୀକୁ ସଂଯୋଗ କଲେ ରମଣୀୟ ଚିତ୍ର ଚିତ୍ରିତ ହୁଏ । ଏଠାରେ ଅଶ୍ୱମାନେ ମନ । ଏହି ଦଣ୍ଡ ମନକୁ ନିୟନ୍ତ୍ରଣ କରିବାର ଶୃଙ୍ଖଳା ।

**ଚାରିନାହାକା ଓ ଦ୍ୱାରପାଳ :-** ତାପରେ ପଡ଼େ ସ୍ତମ୍ଭ ଶ୍ରେଣୀ ବା ନାହାକାଭାଗ । ମୁଖ୍ୟତଃ ଯେଉଁ ଚାରି ନାହାକା ରହିଲେ - ତାହା ଚାରି ବେଦର ପ୍ରତୀକ ବୋଲି ଅଭିହିତ କରାଯାଏ । ଏହାର ଦୁଇପାର୍ଶ୍ୱରେ ଆଠନାହାକା । ଯୋଗୀମାନେ ଦେହ ରଥର ଅଷ୍ଟାଙ୍ଗ ଯୋଗ ବୋଲି ମାନ୍ୟତା ଦିଅନ୍ତି । (ଅଷ୍ଟସିଦ୍ଧି ନୌ ନିଧିକେ ଦାତା) । ଦୁଆର ଯେତକୁ ଧରି ରଖିଥିବା ନାହାକା ନାଟଖୋଇ ହିଁ ଏ ନାଟୁଆସଂସାରର ଚିତ୍ରମୟଦୃଶ୍ୟ । ଏହାମଧ୍ୟରେ ଏକ ମୁଣ୍ଡ ଚିତ୍ରିତ ହୋଇ ସଂକୀର୍ଣ୍ଣ ଭୂମିରେ ଧନୁର୍ବାଣଧାରୀ ଯୋଦ୍ଧାଙ୍କର ଛବିକୁ ଏପରି ଜୀବନ୍ତ ଓ ମୂର୍ତ୍ତିମନ୍ତ କରି ସୃଷ୍ଟି କରିଥାନ୍ତି ଚିତ୍ର ଶିଳ୍ପୀମାନେ - ଯଦ୍ୱାରା ଜଗନ୍ନାଥ ମହାପ୍ରଭୁ ଯେପରି ସର୍ବତନ୍ତ୍ର ସ୍ୱତନ୍ତ୍ର, ତାଙ୍କ ବିଚିତ୍ର ଚିତ୍ରକରମାନଙ୍କର ବିଚିତ୍ର ଚିତ୍ରାବଳୀ ମଧ୍ୟ ସର୍ବସ୍ୱତନ୍ତ୍ର ପରି ପ୍ରତିହାର ପୁରୁଷ ରୂପେ ଦଣ୍ଡାୟମାନ ହୋଇଥାନ୍ତି ଯୁଦ୍ଧ ବାଜମାନେ । ପିନ୍ଧିଥାନ୍ତି ପୀତାମ୍ବର, ନୀଳ ଓ ଲୋହିତ ରଙ୍ଗର ପୋଷାକ । ଜଗନ୍ନାଥ ମହାପ୍ରଭୁଙ୍କ ରଥରେ ଜୟ ବିଜୟ, ବଳଭଦ୍ରଙ୍କ ତାଳଧ୍ୱଜ ରଥରେ କୁମୁଦ କୁମୁଦାକ୍ଷ ଓ ସୁଭଦ୍ରାଙ୍କ ଦର୍ପଦଳନ ରଥରେ ଗଙ୍ଗା ଯମୁନା ରୂପରେ ରହିଥାନ୍ତି ।

**ସିଂହାସନ :** ତାପରେ ରଥର ଆଭ୍ୟନ୍ତର ଚିତ୍ର । ସିଂହାସନ । ସର୍ବୋପରି କଳସ । କଳସର ଠିକ୍ ତଳକୁ ରାହୁମୁଣ୍ଡ, ରାହୁମୁଣ୍ଡରୁ ଲତାଯୁକ୍ତ ବାଙ୍କପଟି । ଦୁଇପଟେ ଦୁଇଗୋଟି ମକର ଚିତ୍ର, ତୋରଣ । ତୋରଣ ମଝିରେ ସହସ୍ରଦଳ କମଳ ଦୁଇ ପଟରେ ପତ୍ରଡିମିୟ ଦୁଇଟି ତାଳିପତ୍ର । ତାହା ଉପରେ ଆଶ୍ରୟ ନିଅନ୍ତି ବ୍ରହ୍ମାଣ୍ଡ ଗୋସାଇଁ । ବ୍ରହ୍ମ ସଦନ ବୋଲି ବ୍ରହ୍ମପୁରାଣ ଏହାକୁ କହନ୍ତି । ଏହି ବ୍ରହ୍ମ ସଦନର ଦୁଇପାର୍ଶ୍ୱରେ ଚିତ୍ରକର ଦୁଇଜଣ ପ୍ରମୁଖ ଉପାସକଙ୍କ ମୂର୍ତ୍ତି ରଖିଥାନ୍ତି ଯଥା- ବଳଭଦ୍ରଙ୍କ ରଥରେ ଯୋଡ଼ହସ୍ତରେ ଶଙ୍କର ଭଗବାନ ଓ ଦେବର୍ଷି ନାରଦ, ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ରଥରେ ବ୍ରହ୍ମା ଓ ଇନ୍ଦ୍ରଦ୍ୟୁମ୍ନ (ଅନେକଙ୍କ ମତରେ ଇନ୍ଦ୍ର) ଓ ସୁଭଦ୍ରାଙ୍କ ରଥରେ ଜୟା ଓ ବିଜୟା । ଶ୍ରୀ ଜଗନ୍ନାଥଙ୍କ ରଥରେ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଅପେକ୍ଷା ଇନ୍ଦ୍ର ହିଁ ଉପାସକ ରୂପରେ ଦଣ୍ଡାୟମାନ ହେବା ଅଧିକ ଯୁକ୍ତିଯୁକ୍ତ ମନେହୁଏ । କାରଣ ଗର୍ଭଗୃହ ପଛପଟେ ଭୋଗମଣ୍ଡପ ଗୃହର ସମ୍ମୁଖ ଭାଗରେ ମଧ୍ୟ ଇନ୍ଦ୍ର ବଦ୍ଧାଞ୍ଜଳୀମୁଦ୍ରାରେ ରହିଛନ୍ତି । ଏହି ଚିତ୍ର କଲାବେଳେ ଚିତ୍ରଶିଳ୍ପୀମାନେ ହରିଷ ପୂର୍ବକ ନିଷ୍ଠାବାନ ହୋଇ ମୂର୍ତ୍ତି ଆଙ୍କିଥାନ୍ତି । କାରଣ ରଥର ମୂର୍ଦ୍ଧାରେ ଏହି ରଥଦେବତା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାନ୍ତି ।

**ପାର୍ଶ୍ୱଦେବତା ଓ ଦ୍ୱାରଘୋଡ଼ା :** ଏହାପରେ ଦ୍ୱାରଘୋଡ଼ାର ଚିତ୍ର । ଏହା ସମୁଦାୟ ୧୬ଗୋଟି । ବଡ଼ ଠାକୁରଙ୍କ ଦ୍ୱାର ଘୋଡ଼ାର ଉପରି ଭାଗରେ ରାହୁମୁଣ୍ଡ । ତାହା ତଳକୁ କ୍ଷୁଦ୍ର ଆଡ଼ଦଣ୍ଡାରେ ଆଠଟି ଫୁଲ ଚିତ୍ର- ଯାହାକୁ ଅପାମାର୍ଗସୁମନା ବୋଲି କୁହାଯାଏ । ବେଦରେ ପ୍ରଥିତ ଅଛି- ଅପାମାର୍ଗପୁଷ୍ପ ବିଜୟର ପ୍ରତୀକ । ତାହା ତଳକୁ ତୋରଣ ଭାଗର ଦୁଇପଟେ ସମ୍ମୁଖରେ ଇନ୍ଦ୍ର ଓ ଗୋବିନ୍ଦ ଗଜ ତଥା ଐରାବତରେ ବସିଥିବାର ଦୃଶ୍ୟ, ପାର୍ଶ୍ୱରେ ନନ୍ଦାସୁନନ୍ଦା ନାମକ ଅପସରା । ଉତ୍ତର ପାର୍ଶ୍ୱରେ ନନ୍ଦା ଓ ତିଲୋତ୍ତମା, ପୃଷ୍ଠ ଭାଗରେ ଚଣ୍ଡରୂପା ଓ ଚଣ୍ଡାଙ୍କର ଚିତ୍ର କରାଯାଏ । ପ୍ରତ୍ୟେକ ଧ୍ୱଜ ପଦ୍ମହସ୍ତା ଓ ବୀରାସନା ସଂସ୍ଥିତା ଅଟନ୍ତି । ତାହାଙ୍କର ପାଦପାଖରେ କଳ୍ପବୃକ୍ଷର ଶାଖା ଚିତ୍ରିତ ହୋଇଅଛି, ଊର୍ଦ୍ଧ୍ୱରେ ୪ଗୋଟି ଶୁକ୍ଳ ଚାମରର ଚିତ୍ର ଓ ୪ଗୋଟି ମୁକ୍ତାପୁଞ୍ଜର ଚିତ୍ର । ଏହି ୩ଗୋଟି ଚିତ୍ର ପ୍ରାୟ ସବୁ ରଥରେ ରହିଥାଏ । ଦ୍ୱାର ଓ ପ୍ରତିହାରିଣୀ କିଛୁ ବଦଳିଥାନ୍ତି । ମା' କଂପଲ୍ୟ ବାସିନୀ ସୁଭଦ୍ରିକାଙ୍କର ପୂର୍ବପଟେ ତୋରଣରେ ଭଦ୍ରା, ପ୍ରଭଦ୍ରା, ଦକ୍ଷିଣ ତୋରଣରେ କାତ୍ୟାୟିନୀ, ଇଳା, ଉତ୍ତର ତୋରଣରେ ନନ୍ଦା ସୁନନ୍ଦା, ପଶ୍ଚିମ ତୋରଣରେ ମିତ୍ରା ସୁମିତ୍ରା । ଚିତ୍ରକରମାନେ ପ୍ରତ୍ୟେକଙ୍କୁ ସଙ୍ଗିତକାମରା ରମଣୀ ରୂପ ଦେଇଥାନ୍ତି । ନାକରେ ନୋଥ, ଦେଶୀ ଅଳଙ୍କାର ମଣ୍ଡିତା, ଧ୍ୱଜ ଓ ମାଳାଧାରିଣୀ ଅଟନ୍ତି । ପ୍ରଭୁ ଦେବାଧିଦେବରାଜ ଜଗନ୍ନାଥ ମହାପ୍ରଭୁଙ୍କ ରଥରେ ଗରୁଡ଼ ଗୋବିନ୍ଦ ଦ୍ୱାରପାଳଙ୍କର ଶୋଭଚିତ୍ରା, ପୂର୍ବ ତୋରଣରେ ଅନଙ୍ଗ ମଞ୍ଜରୀ, ଭ୍ରମର ମଞ୍ଜରୀ ଦକ୍ଷିଣ ଦିଗରେ ରତିମଞ୍ଜରୀ ପ୍ରୀତିମଞ୍ଜରୀ, ଉତ୍ତରରେ କନକମଞ୍ଜରୀ, କାମମଞ୍ଜରୀ, ପଶ୍ଚିମରେ ପ୍ରେମମଞ୍ଜରୀ, ଧର୍ମମଞ୍ଜରୀ ।

ବମତେ ରମଣୀୟ କାନ୍ତିଯୁକ୍ତା ଓ ସୁନ୍ଦରବସନ ପରିହିତା । ଆଗରେ ଦୁଇଟି ପୂର୍ଣ୍ଣ କୁମ୍ଭ, ମଧ୍ୟରେ କଳ୍ପବୃକ୍ଷର ଚିତ୍ର ଡେଙ୍ଗୁକଳାରେ କରାଯାଇଥାଏ । ଏହି ତୋରଣରେ ରଥଯାତ୍ରାର ଉଦୟ ମଧ୍ୟ ଚିତ୍ରିତ ହୋଇଥାଏ । ବଳଭଦ୍ରଙ୍କ ରଥରେ ପଞ୍ଚପତ୍ର ଥିବା ତାଳଗଛ । ସୁଭଦ୍ରାଙ୍କ ରଥରେ କଳ୍ପଲତିକା ଓ ଜଗନ୍ନାଥଙ୍କ ରଥରେ କଳ୍ପବୃକ୍ଷର ଦୁଇଟିପତ୍ର । ଏହି ସାଙ୍କେତତ୍ରୟର ଅର୍ଥ ହେଲା- ବଳଭଦ୍ରଙ୍କ ରଥର ତାଳ-ବୃକ୍ଷତାର ପ୍ରତୀକ । ସୁଭଦ୍ରାଙ୍କ ରଥର ସୋମଲତା ବା ଆର୍ଯ୍ୟଜୀବନର ପ୍ରତୀକ । ପ୍ରଭୁ ଜଗନ୍ନାଥଙ୍କର ଊର୍ଦ୍ଧ୍ୱମୂଳ ମଧ୍ୟଶାଖ ଅଶ୍ୱତ୍ଥ ପ୍ରାହୁରବ୍ୟୟମ୍- ସ୍ୱୟଂ ଅବ୍ୟୟ, ଶାଶ୍ୱତ ବୃକ୍ଷ ।

**ଋଷିପଟା:** ଦ୍ୱାର ଘୋଡ଼ା ଚିତ୍ରପରେ ଦୃଷ୍ଟିକୁ ଆସେ ଛନ୍ଦ ଠାରୁ ପୋଟଳ ମଧ୍ୟରେ ଥିବା ଦକ୍ଷପାଢ଼ ଉପରକୁ । ଏହାକୁ ଋଷିପଟା କୁହାଯାଏ । ଏଥିରେ ଅଷ୍ଟଋଷିଙ୍କର ଚିତ୍ର ଚିତ୍ରକର ଅଙ୍କନ କରିଥାନ୍ତି । ପ୍ରତ୍ୟେକ ଋଷି ବଦ୍ଧାଞ୍ଜଳିମୁଦ୍ରାରେ ଦଣ୍ଡାୟମାନ । ଶ୍ରୀ ଜଗନ୍ନାଥ ଧର୍ମ ବା ପୁରୁଷୋତ୍ତମବାଦର ପ୍ରତିଷ୍ଠାପକ ଏମାନେ ଅଟନ୍ତି । ରଥତ୍ରୟରେ ୨୪ ଜଣ ପ୍ରସିଦ୍ଧ ବୈଦିକ ଋଷି ରହିଥାଆନ୍ତି । ବଳଭଦ୍ର ରଥଙ୍କର ପ୍ରବର୍ତ୍ତକ ହେଲେ ଅଙ୍ଗୀରବର୍ଗ । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ରଥର ପ୍ରବର୍ତ୍ତକ ହେଲେ ଅତ୍ରିବର୍ଗଙ୍କ ରଚନାକାରୀ ଓ ସୁଭଦ୍ରାଙ୍କର ରଥର ଋଷିମାନେ ହେଲେ ଭୃଗୁବର୍ଗ । ଏମାନେ ଆଦିବୈଦିକ ପ୍ରବର୍ତ୍ତକ ।

**କପୋତାଳୀ:** କପୋତାଳୀର ଅନ୍ୟନାମ ହେଲା ପାରାଭାଡ଼ି । ଦୁଇନବା ପୋଟଳ ଉପାକୃତି ପାଢ଼ତାଳ ମଧ୍ୟରେ ଥିବା କ୍ଷୁଦ୍ର ଛିଦ୍ରଯୁକ୍ତ ପଟିପରି ସ୍ଥଳର ନାମ ପାରାଭାଡ଼ି । ସେଠାରେ ଅଙ୍କିତ ହୁଏ ଶାନ୍ତି କପୋତ । ପ୍ରତ୍ୟେକ ରଥରେ ୬ଗୋଟି କରି କପୋତ ଅଙ୍କନ କରନ୍ତି ଚିତ୍ରକରମାନେ । ଦର୍ଶନତତ୍ତ୍ୱ ଦୃଷ୍ଟିରୁ ବହୁତ ଅର୍ଥ ଅଛି । ଦୂରଦୃଷ୍ଟି ସମ୍ପନ୍ନ କପୋତର ଚିତ୍ର ରଥର ଯାତ୍ରୀଙ୍କୁ ଦୂରରେ ପହଞ୍ଚିବା ଉତ୍ପାତ ବିପ୍ଳାତ ଜଣାଇଦିଏ । ଶାନ୍ତିକାମୀ କପୋତ ଶାନ୍ତିର ବାର୍ତ୍ତାବହ । ପୁନଶ୍ଚ ଯୋଗବାଦୀମାନେ କହନ୍ତି- କପୋତହିଁ ପ୍ରାଣ । ପ୍ରାଣମୟ କୋଷର ପ୍ରତୀକ ଏମାନେ । ରଥ- ଯେଉଁ ରଥ, ତନ୍ମୟରଥ ତାହାର ଶୀର୍ଷରେ ଏମାନେ ବିରାଜିତ । ତାପରେ ଦଧିନଉତି ।

**ଦଧିନଉତି:** ଏହା ଦୁଇଫାଳଯୁକ୍ତ ହୋଇ କାଷ୍ଠ ଓ କନାରେ ତିଆରି ହୋଇଥାଏ । ଉଙ୍ଗରେ ଅଷ୍ଟଦଳ ପଦ୍ମ ଊର୍ଦ୍ଧ୍ୱମୁଖୀ ତାହା ଉପରେ ନିମ୍ନମୁଖୀ ହୋଇ ପୁନଶ୍ଚ ଅଷ୍ଟଦଳପଦ୍ମ ରଚିତ ହୋଇଥାଏ । ତାପରେ ସୁନେଲି ରଙ୍ଗର ବିଚିତ୍ର ବୃନ୍ତଯୁକ୍ତ କଣିଫୁଲ । ତେବେ ଏ ଦଧିନଉତି କ'ଣ ? ଆମ ମସ୍ତିଷ୍କରେ ଦଧିଥାଏ । ଦଧି ଏଠି ଅନ୍ୟ ଅର୍ଥରେ ବୁଦ୍ଧି ବୋଲି ଧରିଲେ ଠିକ୍ । ନଉତିର ଅର୍ଥ ଗଣଣା ବା ପାହୁର ହିସାବ ପରିମାପକ ଯନ୍ତ୍ର । ତେଣୁ ମଣିଷର ବୁଦ୍ଧି ମସ୍ତିଷ୍କରେ ଥିବା ପରି ରଥର ମସ୍ତିଷ୍କକୁ ଏହି ଦଧିନଉତି ମଣ୍ଡନ କରୁଛି ଅଷ୍ଟଦଳ ପଦ୍ମପାଖୁଡ଼ା ମଧ୍ୟରେ । ଯୋଗୀଜନମାନେ ସହସ୍ରାର ଚକ୍ର ସ୍ଥିତ ଚେତନାତତ୍ତ୍ୱ ବୋଲି ଅଭିହିତ କରିଥାନ୍ତି, ଚେତନେତ୍ୟ ବିଧ୍ୟତେ ନ୍ୟାୟରେ ।

**ଐଁକାଶ୍ରୀ:** ଛୋଟ କାଠରେ ନିର୍ମିତ । ୧୪ଗୋଟି ବର୍ତ୍ତୁଳିକା ଗୋଲାକାର ବସ୍ତୁ । ପ୍ରତ୍ୟେକ ବର୍ତ୍ତୁଳିକାର ରଙ୍ଗ ପୃଥକ୍ । ସପ୍ତରଙ୍ଗର ସମାହାରଯୁକ୍ତ ଯାହା ହିରଣ୍ମୟ ରଥର ସମ୍ମୁଖସ୍ଥ ଉପାଦାନ । ଅମଳକା ପରି ବୋଲି ଐଁକାଶ୍ରୀ ନାମ । ହିରଣ୍ମୟେନ ସବିତା ରଥେନ ଦେବୋଯାତି ଭୁବନାନି ପଶ୍ୟନ ନ୍ୟାୟରେ ହିରଣ୍ମୟ ରଥ ବା ସୂର୍ଯ୍ୟରଥର ସମ୍ମୁଖାଂଶପରେ ଆଉ କିଛି ନଥିଲାପରି, ଐଁକାଶ୍ରୀ ପରେ ରଥର ଶଗ ବେଢ଼ଙ୍କ କରିବା ପାଇଁ ଆଉ କିଛି ପ୍ରାୟ ନଥାଏ ।

**ରଥଶୁକ:** ଚିତ୍ରକର ନିଯୋଗ ରଥର ଶେଷରେ ଦୁଇଟି ଲେଖାଏଁ ଓଲଟ ଶୁଆର ଚିତ୍ର କରିଥାନ୍ତି । ପ୍ରତି ନବକଳେବର ବେଳେ ନୂଆ ତିଆରି ହୁଅନ୍ତି ଓ ପ୍ରାଚୀନ ଶୁକ ସବୁ ପାତାଳୀ ହୁଅନ୍ତି । ... ଘନିଷ୍ଠ ଭାବରେ ବସିଥିଲେ ମଧ୍ୟ ବିପରୀତ ଦିଗକୁ ମୁହଁ କରି ବସିଥାନ୍ତି । ... ତତ୍ତ୍ୱ ମଧ୍ୟ ବହୁ ଗହନ । ବାମଦେବ ସଂହିତାରେ ଶଙ୍କର ... ଗୋପନୀୟଂ ଗୋପନୀୟଂ ଗୋପନୀୟଂ ପ୍ରଯତ୍ନତଃ । ... ନାମରେ ମଧ୍ୟ ଏହିପରି ଉକ୍ତି ପାର୍ବତୀଙ୍କୁ ଶଙ୍କର କହିଛନ୍ତି । ... ମହାପ୍ରଭୁଙ୍କ ଦୁଇ ଓଲଟ ଶୁକଙ୍କର ନାମ ଜୀବ ଓ ପରମ । ... ଶ୍ରଦ୍ଧା ଓ ବିଶ୍ୱାସ, ସୁଭଦ୍ରାଙ୍କର ଶ୍ରୁତି ଓ ସ୍ମୃତି । ଏହି ଶୁଆମାନଙ୍କୁ ... ରଥର ସଂପୃକ୍ତ ଚିତ୍ରକରମାନେ କରନ୍ତି । ଏତଦ୍ ବ୍ୟତୀତ ପାର୍ଶ୍ୱ... ମଣ୍ଡଳ ଚିତ୍ର, ଦାରୁକ, ମାତଳୀ ଓ ଅର୍ଜୁନଙ୍କ ଚିତ୍ରପାଇଁ ପୃଥକ୍ ... ଗୃହର ବନ୍ଦୋବସ୍ତ ହୋଇଥାଏ । ହରଚଣ୍ଡୀ ସାହି ଚିତ୍ରକାର ... ବଳଭଦ୍ରଙ୍କ ରଥର, ଦୋଳମଣ୍ଡପ ସାହିବାଲା ଜଗନ୍ନାଥଙ୍କ ରଥ ... ବାଲିସାହିବାଲା ମଟିବାଢ଼ର ଚିତ୍ର କାର୍ଯ୍ୟ କରିଥାନ୍ତି । ଚିତ୍ରକ... ସାହିବାଲା ଅଣସର ପଟି ଇତ୍ୟାଦି କରିଥାନ୍ତି ।

ଏହିସବୁ ସାଙ୍କେତିକ ଚିତ୍ରର ଚିତ୍ରଣ ପାଇଁ ତିନି ଜଣ ପ୍ରଧାନ ସେବକ ନିଯୁକ୍ତ ଅଛନ୍ତି । ଯାହାଙ୍କୁ ନେଇ ଏକ ସାହି ସୁପ୍ରତିଷ୍ଠିତ- ଚିତ୍ରକର ସାହି । ବିଚିତ୍ର ପ୍ରଭୁ ଜଗନ୍ନାଥ, ବିଚିତ୍ର ତାଙ୍କର ପରମ୍ପରା । ଶ୍ରୀମନ୍ଦିର ସ୍ଥାପନ ସମୟରେ ବାଲି ଯେଉଁଠି ମିଳୁଥିଲା ତା'ର ନାମ ହେଲା ବାଲିସାହି । ଦେଉଳମୁଣ୍ଡରେ ଯେଉଁ ସାହି ରହିଲା ତା'ର ନାମ ରଖାଗଲା ଦୋଳମଣ୍ଡପ ସାହି । ପଥର କାଟୁଥିବା ପଥୁରିଆଙ୍କ ପାଇଁ ପଥୁରିଆ ସାହି ଓ ପଣା ପାଇଁ ପଣାପ୍ରିୟା ସାହି, ବଢ଼େଇମାନଙ୍କ ପାଇଁ ବଢ଼େଇ ସାହି ଇତ୍ୟାଦି । ସେ ଯାହାହେଉନା କାହିଁକି ଶ୍ରୀଜଗନ୍ନାଥଙ୍କ ଯେପରି ସର୍ବତନ୍ତ୍ର ସ୍ୱତନ୍ତ୍ର; ତାଙ୍କର ସବୁ ପର୍ବପର୍ବାଣି, ଯାନିଯାତ୍ରା, ସେବା ଓ ସେବକମାନଙ୍କର ଭାବ ମଧ୍ୟ ସେହିପରି ସର୍ବ ସ୍ୱତନ୍ତ୍ର । ଏଣୁ ରଥ ଚିତ୍ରକଳା ସଂପର୍କରେ ଆଲୋଚନା କଲେ ଜଣାପଡ଼େ ସାଙ୍କେତିକ ତତ୍ତ୍ୱ ଓ ତଥ୍ୟ ଅନେକ । ଦର୍ଶନଭିତ୍ତିକ ଅଧ୍ୟାତ୍ମ ତତ୍ତ୍ୱରେ ପରିପୂର୍ଣ୍ଣ ... ଅଙ୍ଗର ଚିତ୍ର ପୁଣି ବିଚିତ୍ର ପରମ୍ପରା କ୍ରମେ ନିର୍ଦ୍ଧାରିତ ତଥା ... ହୁଏ । ସେଇଥିପାଇଁ ଯୁଗେ ଯୁଗେ କବିବୃନ୍ଦେ ବହୁ କାବ୍ୟ ... ପ୍ଲାବନ ଛୁଟିଛି- କିଏ କହିଲେଣି-

ଚକରେ ମଣ୍ଡିବୁ ବାବୁ ବିଚିତ୍ର ମଣ୍ଡଣୀ
ଷୋଳକଳା ଷୋଳଚକ୍ରେ ପଦ୍ମପ୍ରାୟ ମଣି
ଉଦ୍ଧ ଅଂଶେ ଥିବ ତହିଁ ମରାଳ ଧାଡ଼ି
ଅରଖୁଣ୍ଟେ ମଣ୍ଡିବ ଯେ ଚିରାଳର ଧାଡ଼ି । ଇତ୍ୟାଦି
ପୁଣି କିଏ କହୁଛି-
ଅଙ୍ଗରେ ଚିତ୍ରିତ ନେତ୍ର ଦୁଇଟିର ସୁଷମା ପରକୁ ଉଇଁ
ଅଛି କେ ସଂସାରେ ଏପରି ଦେବତା ମୋହନ ମନୋଲୋଭା ।
ସେଇଥିପାଇଁ ବିଦଗ୍ଧ କବି ବିଲ୍ୱମଙ୍ଗଳାଚାର୍ଯ୍ୟ "ଶ୍ରୀକୃଷ୍ଣ କର୍ଣ୍ଣାମୃତ"

ଗ୍ରନ୍ଥରେ ବର୍ଣ୍ଣନା କଲେ

ଚିତ୍ରଂ ତଦେତଚ୍ଚରଣାର ବିନ୍ଦଂ
ଚିତ୍ରଂ ତଦେତନ୍ନୟନାରବିନ୍ଦମ୍
ଚିତ୍ରଂ ତଦେତଦ୍ବଦନାରବିନ୍ଦମ
ଚିତ୍ରଂ ତଦେତଦ୍ ବପୁରସ୍ୟ ଚିତ୍ରମ୍ ।"
ଜୟଜଗନ୍ନାଥ

[illegible]



# ଶ୍ରୀ ଜଗନ୍ନାଥ, ଜୟଦେବ ଓ ଗୁରୁନାନକ

● ଶ୍ରୀ ପ୍ରଫୁଲ୍ଲ କୁମାର ମିଶ୍ର

ଶ୍ରୀକ୍ଷେତ୍ର ପବିତ୍ର ଧୂଳି ବର୍ଣ୍ଣକରେ ଥରେ ମହାପ୍ରଭୁଙ୍କ ଅଙ୍ଗସଙ୍ଗରେ ଧନ୍ୟ ହେବା ସଙ୍ଗେ ସଙ୍ଗେ ସ୍ମରଣାତୀତ କାଳରୁ ଅସଂଖ୍ୟ ସାଧୁ ସନ୍ଥ ଓ ମହାତ୍ମାଙ୍କର ପାଦସ୍ପର୍ଶ ପାଇ ଆହୁରି ଗରୀୟାନ୍ ହୋଇ ଉଠିଛି । ଶିଖ ଧର୍ମର ଗୁରୁ ନାନକ ପୁରୀ ଆସି ତାଙ୍କର ସ୍ମୃତି ମଙ୍ଗୁମଠାଦି ସ୍ଥାନରେ କେବଳ ଛାଡ଼ିଯାଇ ନାହାନ୍ତି, ଜଗନ୍ନାଥଙ୍କୁ ଦେଖି ସେ କହିଛନ୍ତି ଯେ ଯଦି ଗଗନ ମଣ୍ଡଳ ଗୋଟିଏ ଥାଳୀ ହୁଏ ଓ ସେଥିରେ ତାରାଗଣ ଗୋଟିଏ ଗୋଟିଏ ଦୀପ ହୁଅନ୍ତି, ମୁଁ ସେଥିରେ ଜଗନ୍ନାଥଙ୍କୁ ଆରତୀ କରନ୍ତି । ଯେ ଜଗତର ନାଥ ତାଙ୍କୁ କ'ଣ ସାଧାରଣ ଫୁଲ ଚନ୍ଦନାଦି ସାଧାରଣ ପାର୍ଥିବ ଦ୍ରବ୍ୟରେ ଅର୍ଚ୍ଚନା କରାଯାଇ ପାରେ ? ଜଗତର ପୂଜାରୀ ଗୁରୁନାନକ ଓଡ଼ିଶାରେ ତାଙ୍କର ପ୍ରଭାବ ଛାଡ଼ିଯାଇଥିଲେ । ୧୬୯୯ରେ ଗୁରୁଗୋବିନ୍ଦ ସିଂ ଆନନ୍ଦପୁର ସାହିବ୍‌ଠାରେ ପାଞ୍ଚଜଣଙ୍କୁ ବଳୀଦାନ ନିମିତ୍ତ ଆହ୍ୱାନ କରିଥିଲେ ।ସେଥିରେ ଥିଲେ ଲାହୋରର ଭାଇ ଦୟାରାମଜୀ, ପୁରୀର ଭାଇ ହିମ୍ମତ ସିଂ ଜୀ, ହସ୍ତିନାପୁରର ଭାଇ ଧରମରାୟଜୀ, ଦ୍ୱାରୀକାର ଭାଇ ମୋହକମଜୀ ଓ ବିଦର୍‌ର ଭାଇ ସାହିବ୍ ଚାନ୍ଦଜୀ ।

ଭାଇ ହିମ୍ମତ ସିଂ ଜୀ ପୁରୀର ସେତେବେଳର ଧର୍ମପ୍ରାଣ ବୀର ବ୍ୟକ୍ତି । ପୁରୀର କେଉଁ ଅଞ୍ଚଳରୁ ସେ ଯାଇଥିଲେ, ତାହା ଆଜିଯାଏଁ ଅଜଣା ଅଛି । ଯାହାହେଉ ଏମଧ୍ୟରେ ୩୦୦ ବର୍ଷ ବିତିଗଲାଣି । ପୁରୀର ସାହିଯାତରେ ନାଗା ଓ ସଟରା ପ୍ରଭୃତିଙ୍କ ଗୀତରେ ବୋଲାଯାଏ ଯେ ସେମାନେ ଲାହୋରରୁ ଆସିଥିଲେ ଓ ସେମାନେ ହେଉଛନ୍ତି ନାନକ ସାଇଁ । ଉତ୍କଳର ଲୋକର ତାମସାରେ ମଧ୍ୟ ନବାବଙ୍କ ଆଗରେ ଶିଖ ସାଧୁମାନେ ଆବିର୍ଭୂତ ହୋଇ ନିଜକୁ ନାନକ ସାଇଁ ବୋଲି କହିବା ଶୁଣାଯାଏ । ନାଗା ଓ ମେଢ଼ର ସନ୍ୟାସୀମାନେ ବୋଲିବାର ଶୁଣାଯାଏ ଯେ,

ଯୁବରେ ଡେରା କାହାଁସେ ଆୟା
ଲାହୋର ମେରା ଢ଼େରା ହୈ
ହମ୍‌ସବ୍ ନାନକ ସାଇଁ ହେଁ ।

ସୁଦୂର ଲାହୋର (ଲବପୁର)ରୁ ଆସି ସାଧୁ ସନ୍ଥମାନେ ଯଦି ଗୁରୁନାନକଙ୍କ ବାର୍ତ୍ତା ଏଠାରେ ପ୍ରସାର କରିନଥା'ନ୍ତେ, ତେବେ ପୁରୀବାସୀଙ୍କ ମଧ୍ୟରୁ ଭାଇ ହିମ୍ମତ ସିଂ ପୁରୀରୁ ଯାଇପାରିନଥାନ୍ତେ । ତେଣୁ ପୁରୀ ଧାମରେ ନାନକଙ୍କ ପ୍ରଭାବ ଏଥିରୁ ସ୍ପଷ୍ଟ ଅନୁଭୂତ ହୁଏ । ଶୁଣାଯାଏ ଜଣେ ପଣ୍ଡିତ ଓ ଜଣେ ରଜକ ମଧ୍ୟ ଓଡ଼ିଶାରୁ ଯାଇ ଆନନ୍ଦପୁର ସାହିବର ସେହି ଐତିହାସିକ ଖାଲସା ପନ୍ଥର ସାକ୍ଷୀ ହୋଇଥିଲେ । କାରଣ ତାହା ସେତେବେଳେ ଧର୍ମରକ୍ଷା ନିମିତ୍ତ ଉଦ୍ଦିଷ୍ଟ ଥିଲା ।

ଜୟଦେବ :

ପୁରୁଷୋତ୍ତମ କ୍ଷେତ୍ରରେ ଅନେକ ପୂର୍ବରୁ ଦ୍ୱାଦଶ ଶତକରେ ଆବିର୍ଭୂତ ହୋଇଥିଲେ ମହାକବି ଜୟଦେବ ।

କବି ଜୟଦେବ ଶ୍ରୀଜଗନ୍ନାଥଙ୍କ ଦିବ୍ୟ ପ୍ରେମରେ ଉଦ୍‌ବୁଦ୍ଧ ହୋଇ, ଯେତେବେଳେ ଦଶାବତାର ମଠସ୍ଥିତ ଶରଧା ନଈକୂଳରେ ଦୂର ଦିଗ୍‌ବଳୟରେ , ଜଗନ୍ନାଥ ମନ୍ଦିରର ଚୂଡ଼ାରେ ଫରଫର ଉଡୁଥିବା ଅଭୟ କେତନକୁ ଦେଖି ପାରିଥିଲେ, ସେତେବେଳେ ସେ ପ୍ରଭୁଙ୍କୁ ଗୋପଲୀଳାର ମହାନାୟକ କୃଷ୍ଣଭାବରେ ଅନୁଭବ କରି ଦର୍ଶନ ପାଇଁ ବିକଳ ହେଉଥିଲେ । ଏଣେ ଦଶାବତାର ଚିହ୍ନିତ ମଠ ଓ ଯଜ୍ଞ ମଣ୍ଡପ ଟାପୁଟିଏ ଏବଂ ଚାରି ପାଖରେ ଶରଧା ନଈର ଅକାତ କାତ ପାଣି । ଅନତି ଦୂରରେ ନଈ ଆର ପାରିରେ ବଣୁଆ ପରିବେଶରେ ଦେଖାଯାଉଛି ତାଳ ତମାଳ ବଣ । ନଦୀପାରହୋଇ କିପରି ପ୍ରଭୁଙ୍କୁ ଦେଖିବେ ? ଶରଧାନଈର, କୂଳଯାକ କଦମ୍ବବଣ । ବର୍ଷାଋତୁରେ ଫୁଲଫୁଟି ସେଥିରୁ ଝଡ଼ି ନଈରେ ପଡୁଥିବା ହେତୁ ନଈ ଯେପରି ନାନା ଅଳଙ୍କାର ବିମଣ୍ଡିତ ସେହିଭଳି ଜଣାପଡୁଛି । ସାଙ୍ଗରେ ଏକାକିନୀ ପଦ୍ମାବତୀ ତାଙ୍କୁ ଛାଡ଼ି ଯିବେ କୁଆଡ଼େ । ସେଥିପାଇଁ ରଚନା କଲେ "ମେଘୈର୍ମେଦୁର ମମ୍ବରଂ ବନଭୁବଃ ଶ୍ୟାମାସ୍ତମାଳ ଦ୍ରୁମୈଃ ।।" ମେଘଦ୍ୱାରା ଆକାଶ ଆଚ୍ଛନ୍ନ । ବନଭୂମି ତମାଳଦ୍ରୁମମାନଙ୍କ ଦ୍ୱାରା କୃଷ୍ଣବର୍ଣ୍ଣ ଧାରଣ କରିଛି । ସେ ସମୟରେ ରାତି ଆଗତପ୍ରାୟ । କୃଷ୍ଣ ଭୀରୁ, ବନଭୂମି କୃଷ୍ଣବର୍ଣ୍ଣ ଓ ଆକାଶ ମଧ୍ୟ ଅନ୍ଧକାର । ସହଜେ କୃଷ୍ଣ ଭୀରୁ । ତେଣୁ ଏହି ଭଳି ଅବସ୍ଥାରେ ବିରିଟୋକେଇରେ କଳାବଟିକା ଭଳି କୃଷ୍ଣ କୁଆଡ଼େ ହଜିଯିବେ । ତେଣୁ ରାଧାଙ୍କୁ ନନ୍ଦ ନିର୍ଦ୍ଦେଶ ଦେଉଛନ୍ତି ତାଙ୍କୁ ଘରେ ପହଞ୍ଚାଇ ଦେବାପାଇଁ ।

ଏହିଭଳି ଏକ ମାନସିକତାରେ ଆରମ୍ଭ ହୋଇଛି ଗୀତଗୋବିନ୍ଦ । ଶୃଙ୍ଗାର ରସରେ ଥିବା ଏହି ଭାବକୁ ମାଧ୍ୟମ କରି ମନୁଷ୍ୟ ତାର ଚରମଲକ୍ଷ୍ୟ ଓ ପରମ ପୁରୁଷାର୍ଥ ଧର୍ମ, ଅର୍ଥ, କାମ ଓ ମୋକ୍ଷ ପାଇବାକୁ କିପରି ସମର୍ଥ ହେବ, ସେ ବିଷୟରେ ଏକ ଅଭିନବ ପନ୍ଥା ଯୋଡ଼ିଛନ୍ତି କବି ଜୟଦେବ । ତାଙ୍କ ନିଜ ଶବ୍ଦରେ -

ଯଦି ହରି ସ୍ମରଣେ ସରସଂ ମନୋ
ଯଦି ବିଳାସ କଳାସୁ କୁତୁହଳମ୍ ।
ମଧୁର କୋମଳ କାନ୍ତ ପଦାବଳୀ
ଶୃଣୁ ତଦା ଜୟଦେବ ସରସ୍ୱତୀମ୍ ।।

ସାହିତ୍ୟକମାନଙ୍କର କାନ୍ତା ସମ୍ମିତ ବାକ୍ୟ ମାଧ୍ୟମରେ ହରି ସ୍ମରଣ ଏକ ମଧୁର ମାଧ୍ୟମ । ସେଥିନିମିତ୍ତ ମନୁଷ୍ୟ ବିଳାସକଳାରେ ଥିବା କୌତୁହଳ ମାଧ୍ୟମରେ ତାକୁ ଆକର୍ଷିତ କରି ମହାନାୟକ କୃଷ୍ଣ ଓ

ରାସେଶ୍ୱରୀ ରାଧାଙ୍କ କଥା ଏକାକାର କରିବାର ସଫଳ ପ୍ରୟାସ କରିବା ସହିତ ଲୀଳାମୟ ପରମ ପୁରୁଷ ଶ୍ରୀକୃଷ୍ଣଙ୍କୁ ବାଳୁତ ପରାଏ ମଣି ନନ୍ଦ ରାଧାଙ୍କ ସହିତ ଅତି ବିଶ୍ୱାସରେ ପଠାଇଦେଲେ ଘରକୁ । କିନ୍ତୁ ବାଟରେ ତାଙ୍କ ଦୁହିଁଙ୍କ ମଧ୍ୟରେ କ'ଣ ଘଟିଲା ? ସେହି କଥାର ସ୍ଥାଅଟାଏ ଧରି ଆଗେଇ ଯାଇଛନ୍ତି । ମଣିଷ ମନର ଆଦିମ ପ୍ରବୃତ୍ତି କାମ । ତେଣୁ ଭରତ ନାଟ୍ୟ ଶାସ୍ତ୍ରରେ ଆଠୋଟି ସ୍ଥାୟୀ ଭାବ ବର୍ଣ୍ଣନା କରନ୍ତି । ସେଥିରୁ ମୂଳ ହୁଏ ରତି । ରତିଭାବ ପରିପାକ ହେଲେ ହୁଏ ଶୃଙ୍ଗାର । ଏହାକୁ ଉଜ୍ଜ୍ୱଳ ବା ମଧୁର ବୋଲି କହିବାକୁ ବୈଷ୍ଣବ ଆଳଙ୍କାରିକ ରୂପ ଗୋସ୍ୱାମୀ ପ୍ରଭୃତି ବେଶୀ ପସନ୍ଦ କରିଛନ୍ତି । ମଣିଷ ମନର ସକଳ ଦୁଃଖ, ଶୋକ, ସନ୍ତାପକୁ ଅତିକ୍ରାନ୍ତ କରିବା ନିମିତ୍ତ ଆବଶ୍ୟକ ହୁଏ ଅନ୍ୟ ଏକ ରାଜ୍ୟରେ ଆତ୍ମ ବିସ୍ମୃତି । ଏପଟେ ମଣିଷକୁ ସବୁଠାରୁ ସୁଖ ଦିଏ ଶୃଙ୍ଗାର ରସ । ମଣିଷ ମନ ଭିତରେ ଥିବା ଯାବତୀୟ କୁତ୍ସିତ କଦାକାର ଭାବନାକୁ ବହିଷ୍କାର କରିବା ସଙ୍ଗେ ସଙ୍ଗେ ସୁକୁମାର ପ୍ରଣୟ ପ୍ରସଙ୍ଗ ସହିତ ପ୍ରାଣେଶ୍ୱର କୃଷ୍ଣଙ୍କ ସ୍ମରଣ କରାଇବାର ପ୍ରଯତ୍ନ କରିଥିବାରୁ ପ୍ରସିଦ୍ଧ ଆଳଙ୍କାରିକ ବିଶ୍ୱନାଥ କବିରାଜ ତାଙ୍କର ସାହିତ୍ୟ ଦର୍ପଣରେ ସେଥିପାଇଁ ଉଲ୍ଲେଖ କରିଛନ୍ତି ଯେ, ସମାଜର ସାଧାରଣ ବ୍ୟକ୍ତିମାନେ ଓ ସୁକୁମାରମତି ସମ୍ପନ୍ନ ପୁରୁଷମାନେ ତ ସହଜରେ ବେଦ ଶାସ୍ତ୍ରାଦି ପଢ଼ି ସତ୍ୟକୁ ଉପଲବ୍ଧ କରି ପାରିବେନି । ସେଥିପାଇଁ ଲଳିତ ପଦବିନ୍ୟାସ ମାଧ୍ୟମରେ କବିତା ରସ ମାଧୁରୀ ପାନ କରିଥିବା ଅବସ୍ଥାରେ ସତ୍ୟକୁ ଅନ୍ୱେଷଣ କରିବେ । ଯେପରି କଡ଼ା ଓ ପିତା ଔଷଧରେ ଉପଶମ ହେଉଥିବା ରୋଗକୁ ଯଦି ମିଠା ମିଠା ଔଷଧ ଦ୍ୱାରା ଉପଶମ ମାର୍ଗ ମିଳିଯିବ, ତେବେ କିଏ କାହିଁକି ସେ କଡ଼ା ଔଷଧକୁ ପିଇବାକୁ ଚାହିଁବ ? ସମସ୍ତେ ସେଇ ମିଠା ମିଠା ହୋଇ ମିଠା ଔଷଧରେ ମନବଳାଇବେ । ସଂସାର ରୋଗ ପାଇଁ ଗୀତଗୋବିନ୍ଦର ପଦାବଳୀ ଏକ ଅଭିନବ ମହୋଷଧୀ । ମନସ୍ତାତ୍ତ୍ୱିକ ବିଚାରର ଏକ ନୂତନ ପ୍ରୟୋଗ ।

**ଗୁରୁଗ୍ରନ୍ଥ ସାହେବର ସନ୍ଥବାଣୀ**

ଭାରତୀୟ ଧର୍ମୀୟ ପରମ୍ପରାରେ ଅସଂଖ୍ୟ ସାଧୁସମାଜ ସନ୍ଥଗଣ ତାଙ୍କର ଅମୀୟ ବାଣୀ ଦ୍ୱାରା ନାରଦ ଶାଣ୍ଡିଲ୍ୟ ପ୍ରଭୃତିଙ୍କ ଭକ୍ତି ପରମ୍ପରାକୁ ସମୃଦ୍ଧିତ କରିଛନ୍ତି । ଶିଖ୍ ପନ୍ଥର ପ୍ରତିଷ୍ଠାତା ଗୁରୁନାନକ ମହୋଦୟ ସମଗ୍ର ସନ୍ଥ ପରମ୍ପରାକୁ ଆଧାରକରି ଗୁରୁଗ୍ରନ୍ଥ ସାହେବରେ ଥିବା ସନ୍ଥବାଣୀ ପ୍ରଣୟନ କରିଛନ୍ତି । ସେଥିରେ ପ୍ରାଚୀ ମହାତ୍ମ୍ୟର ପ୍ରଣେତା ଦ୍ୱିଜ ତ୍ରିଲୋଚନ ଓ ଜୟଦେବ କବିଙ୍କ ସମେତ ଅନେକ ପ୍ରାତଃସ୍ମରଣୀୟ ସନ୍ଥମାନଙ୍କ ବିଚାରର ସାରାଂଶ ପ୍ରଦାନ କରିଛନ୍ତି । ତା'ର ଐତିହାସିକତା ସମ୍ପର୍କରେ ଅନୁଧାନ କରିବା ଅପେକ୍ଷା ବୈଚାରିକ ଦିଗ ଅଧିକ ଆକର୍ଷଣୀୟ ।

ଜୟଦେବଙ୍କ ପ୍ରିୟ ଗୁଜରୀ ରାଗରେ ଗୁରୁଗ୍ରନ୍ଥ ସାହେବରେ ରହି ହୋଇଛି ଜୟଦେବଙ୍କ ବାଣୀ -

ଗୁଜରୀ । ଶ୍ରୀ ଜୟଦେବ । ଜାୟୋ । କା । ପଦା । ଦୋଷ ।। ଓଁକାର । ସତ୍‌ଗୁରୁ । ପ୍ରସାଦ । ପ୍ରମାଦ । ପୁରୁଖ । ମନୋଦୟ । ଆଦି । ଭାବରତଂ । ॥

ପରମଦଭୁତଂ । ପରକାରତ । ପରଂ । ଜତ ଚିନ୍ତ । ସର୍ବ... କେବଳ । ରାମନାମ । ମନୋରମଂ । ବଦ । ଅମୃତ । ତତ୍ ମୟ... ଦନୋଦ ଯସମରଣେନ । ଜନ୍ମ ଜରାଦ । ମରଣ ଭୟମ୍ । ... ଜମାଦ । ପ୍ରାପସ୍ଯ । ଜଶ । ସବାସ୍ଥ ସୁକୃତ କୃତମ୍ । ଭବଭୂତ । ... ସମବ୍ୟୟଂ । ପରମଂ । ପ୍ରସନ୍ନ ବିଦ୍ମମ୍ । ଲଭାବ୍ ଦୁଷ୍ଟ । ପରସ୍ଥଂ । ... ଆଚରଣମ୍ । ତାଜ ସକଳ । ଦୁଷ୍କୃତ । ଦୁର୍ମତି । ଭାବଦହାରା । ... ହର ଭଗତ । ନିଜ ନିହ । କେବଲା । ହୃତ କର୍ମଣା । ... ଯୋଗେନା କିଂ । ଜଗେନ । କିଂ । ଦାନେନ । କିଂ । ତପସା । ... ଗୋବିନ୍ଦେନ ଜୟ । ନର । ସକଳ । ସିଦ୍ଧ ପଦମ୍ । ଜୟଦେବ । ... ତସ । ସଫୁଟଂ । ଭବଭୂତ । ସର୍ବଗତମ୍ ।

ଯେଉଁଥିରେ ପରମାତ୍ମାଙ୍କ କୃପାରୁ ସୁନ୍ଦର ସ୍ୱାସ୍ଥ୍ୟଲାଭ ... ମନୋରମ ବାକ୍, ସତ୍ ଚିନ୍ତା ପ୍ରାପ୍ତ ହୁଏ, ଯେ ସେହି ଦଇତାରି ପ୍ରଭୁଙ୍କ ପାଖରେ ସମର୍ପିତ ହୁଏ, ତା'ର ଦୁଃଖ ଶୋକ ବିନାଶ ହୁଏ । ... ଭକ୍ତକୁ କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟ ସ୍ପର୍ଶ କରିପାରେ ନାହିଁ ସେ ଏ ସବୁଠାରୁ ଊର୍ଦ୍ଧ୍ୱରେ । ଯୋଗଦାନ ଓ ତପସ୍ୟା ... ଗୋବିନ୍ଦଙ୍କର ଭଜନ ହିଁ ସର୍ବଶ୍ରେଷ୍ଠ । ସକଳ ସିଦ୍ଧିଦାୟକ ସେ ... ଏହି କଥା ସଷ୍ଟ ଭାବରେ ଜୟଦେବ ପ୍ରତିପାଦିତ କରିଛନ୍ତି । ଗୁରୁଗ୍ରନ୍ଥ ସାହେବର ୫୨୬ ପୃଷ୍ଠାରେ ପାଞ୍ଚପଦ ବିଶିଷ୍ଟ ଏହି ଗୀତର ମର୍ମ ... ଗୀତଗୋବିନ୍ଦରେ କୁହାଯାଇଥିବା ପୂର୍ବୋକ୍ତ ପଦଠାରୁ ସେତେ ଭିନ୍ନ ... ଗୀତଗୋବିନ୍ଦରେ ହରିସ୍ମରଣ ଗୁରୁ ଗ୍ରନ୍ଥ ସାହେବର ଗୋବିନ୍ଦ ସ୍ମରଣ ... ପଞ୍ଜାବୀମାନଙ୍କ ଉକ୍ତି ହେଲା-

ଜୟଦେବ ନାମା ବିପ୍ର ସୁଦାମା ।
ତନକୋ କୃପା ଭଇ ହୈ ଅପାର ॥

ଗୁରୁବାଣୀର ପ୍ରସିଦ୍ଧ ଜୟଦେବ ସନ୍ଥବାଣୀ ଓ ଗୀତ ଗୋବିନ୍ଦ ... ଅମୀୟବାଣୀ କେବଳ ଜଗନ୍ନାଥ ମନ୍ଦିରରେ ନୁହେଁ କି ... ଆଦରଣୀୟ ବାଣୀ ନୁହେଁ, ସମଗ୍ର ଭାରତୀୟ ବୈଷ୍ଣବମାନଙ୍କ ... କାବ୍ୟ ହୋଇ ରହିଛି ।

ପ୍ରାଧ୍ୟାପକ
ସଂସ୍କୃତ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର

• • •



# ଆଦିବାସୀ ସଂସ୍କୃତିରେ ଶ୍ରୀଜଗନ୍ନାଥ

● ଡକ୍ଟର ବାସୁଦେବ ସାହୁ

ଜଗନ୍ନାଥ- ଉପାସନା କେବେ କେଉଁଠାରୁ ହେଲା ଓ 'ଜଗନ୍ନାଥ' ନାମକରଣ କେବେ କାହିଁକି ହେଲା, ସେ ବିଷୟ ଏବେ ନିର୍ବିବାଦରେ ନିଶ୍ଚିତ ହୋଇପାରି ନାହିଁ । ଜଗନ୍ନାଥଙ୍କ ସହିତ ବିଭିନ୍ନ ଧର୍ମ ସଂଶ୍ଳିଷ୍ଟ ହେଲାପରି 'ଜଗନ୍ନାଥ' ଶବ୍ଦ ସହିତ ବିଭିନ୍ନ ଧର୍ମ ଜଡ଼ିତ ହୋଇ ରହିଛି । ଯୁଗ ଯୁଗ ଧରି ଜଗନ୍ନାଥ ରହସ୍ୟମୟ ଦେବତା ହୋଇ ରହିଛନ୍ତି ।

'ଜଗନ୍ନାଥ'ଙ୍କ ସହିତ ଶବର ଭାଷା ଓ ସଂସ୍କୃତି ଜଡ଼ିତ । ଡକ୍ଟର ବେଣୀମାଧବ ପାଢ଼ୀଙ୍କ ମତରେ, 'ଜଗନ୍ନାଥ' ଶବ୍ଦଟି ଯେପରି ପାଲି-ମୂଳ ନୁହେଁ, ସେହିପରି ସଂସ୍କୃତ-ମୂଳ ବି ନୁହେଁ । ମନେହୁଏ ଏହା ଶବର ଭାଷାରେ ବ୍ୟବହୃତ 'ଜଗନ୍ତ' ଶବ୍ଦର ସଂସ୍କୃତ ରୂପ । 'ଜଗନ୍ତ' ଶବ୍ଦର ଅର୍ଥ ଶବର ଭାଷାର ଅଭିଧାନରେ 'ଜଗତର ଦେବତା' ବୋଲି ଗୃହୀତ ହୋଇଛି ।ଶବର ବା ସୋରା ଭାଷାରେ 'କିତୁଙ୍ଗ' ଶବ୍ଦର ଅର୍ଥ ଦେବତା । ଶବରମାନଙ୍କର ବିଶ୍ୱାସ, 'କିତୁଙ୍ଗ'ଙ୍କର ଦଶଟି ରୂପ ଅଛି ଏବଂ ଏମାନେ ହେଉଛନ୍ତି ଦଶ ଭାଇ ।ଏହି ଦଶରୂପ ହେଉଛି– ଜଗନ୍ତ, ତୋଢ଼, ଦୁମନ୍, ଘମ୍, ରଙ୍ଗ ଗର୍ସିଙ୍ଗ, ଗମନ୍, ଯୋଜେପଲ,ମଉ ଓ ତିତି । କେତେକ ଉତ୍ସବରେ ଶବରମାନେ ଘର କାନ୍ଥରେ ଏହି ଦଶ ରୂପର ଚିତ୍ର ଆଙ୍କି ଏକାପରି ପୂଜା କରିଥାନ୍ତି ।ଜଗନ୍ନାଥଙ୍କ ଦଶ ଅବତାର କଳ୍ପନା ମୂଳରେ ଶବର 'କିତୁଙ୍ଗ' ଙ୍କର ଏହି ଦଶରୂପ ଥାଇପାରେ ।ଶବରମାନେ ଏକ ବୃକ୍ଷକୁ 'ଜଗନ୍ତ' ଭାବରେ ପୂଜା କରିଥାନ୍ତି ଓ ସେହି ବୃକ୍ଷକୁ ଏପରିକି ସେହି ବୃକ୍ଷଥିବା ଉଦ୍ୟାନର କୌଣସି ବୃକ୍ଷକୁ ଛେଦନ କରନ୍ତି ନାହିଁ ।

'ଜଗନ୍ତ' ବ୍ୟତୀତ ଶବରମାନେ ସେମାନଙ୍କର ପ୍ରସିଦ୍ଧ ଦେବତାଙ୍କୁ 'ଜଗାବୋଇ' ବୋଲି ଶ୍ରଦ୍ଧାରେ ଡାକିଥାନ୍ତି । 'ବୋଇ' ଶବ୍ଦର ଅର୍ଥ ଦେବତା । ତେଣୁ 'ଜଗାବୋଇ' ଅର୍ଥ 'ଜଗା ଦେବତା' ବା 'ଜଗାଠାକୁର' । ଓଡ଼ିଆମାନେ ମଧ୍ୟ ଜଗନ୍ନାଥଙ୍କୁ 'ଜଗା ଠାକୁର', 'ଜଗାଦେବତା' ବୋଲି ଶ୍ରଦ୍ଧାରେ ଡାକିଥାନ୍ତି । ଶବରମାନଙ୍କ ମଧ୍ୟରେ ଜଗନ୍ନାଥଙ୍କର ଆଉ ଏକ ପ୍ରାଚୀନ ନାମ ପ୍ରଚଳିତ 'ଜଗନାଏଲୋ' । 'ଜଗନାଏଲୋ' ହେଉଛନ୍ତି ଦାରୁମୂର୍ତ୍ତି ଏବଂ ଶବରମାନେ ସେମାନଙ୍କର ସମସ୍ତ 'କିତୁଙ୍ଗ'ମାନଙ୍କ ମଧ୍ୟରେ ଏହାଙ୍କୁ ଶ୍ରେଷ୍ଠ ବୋଲି ମାନିଥାନ୍ତି ଏବଂ ଏ ଦେବତା ସମଗ୍ର ଜଗତର ଦେବତା ବୋଲି ସେମାନେ ବିଶ୍ୱାସ କରିଥାନ୍ତି ।

ଅଷ୍ଟ୍ରିକ୍ (ଆଦିବାସୀ) ଗୋଷ୍ଠୀର ସଂକେତବାଦ (Totemism)ରୁ ଜଣାଯାଏ ସେମାନେ ମୁଖ୍ୟତଃ ବୃକ୍ଷକୁ ଦେବତା ରୂପେ ପୂଜା କରୁଥିଲେ । ଉତ୍ତର ଅଷ୍ଟ୍ରେଲିଆର ଆଦିମ ଅଧିବାସୀମାନଙ୍କ ମଧ୍ୟରେ ବୃକ୍ଷଲତା ଏବେ ମଧ୍ୟ ଟୋଟେମ୍ ରୂପେ ପ୍ରଚଳିତ । ଭାରତବର୍ଷରେ ପ୍ରଥମେ ପ୍ରବେଶ କରିଥିବା ଅଷ୍ଟ୍ରିକ୍ ନିଗ୍ରିଟୋମାନଙ୍କ ମଧ୍ୟରେ 'ପିପ୍ପଳ ବୃକ୍ଷ ଉପାସନା' ପ୍ରଚଳିତ ଥିଲା ।ପ୍ରୋଟୋଅଷ୍ଟ୍ରେଲିଅଡ୍ (ଶବର) ଏବଂ ମହେଞ୍ଜୋଦାରୋ ସଂସ୍କୃତିରେ ତା'ର ପ୍ରଭାବ ପରିଲକ୍ଷିତ ହୁଏ । ଜଗନ୍ନାଥ ଦାରୁ ଦେବତା ହୋଇଥିବାରୁ ସେ ହେଉଛନ୍ତି ଶବର ଦେବତା ।

ଆର୍ଯ୍ୟମାନଙ୍କର ଆଦି ପବିତ୍ରତମ ଗ୍ରନ୍ଥ ବେଦରେ ସମୁଦ୍ର କୂଳରେ ଏକ ଅପୁରୁଷ ଦାରୁ ଭାସୁଥିବାର ଉଲ୍ଲେଖ ଅଛି ।

''ଅଦୋ ଯଦ୍ଦାରୁ ପ୍ଲବତେ ସିନ୍ଧୋଃପାରେ ଅପୁରୁଷମ୍
ତଦା ରଭସ୍ୱ ଦୁର୍ହଣୋ ତେନଯାହି ପରସ୍ଥଳମ୍ ।''

ପଣ୍ଡିତ ନୀଳକଣ୍ଠ ଏହାର ଅର୍ଥ କରିଛନ୍ତି– 'ଜଣେ ବୈଦିକ ଋଷି ଦୁର୍ହଣ (ଯାହାର ଅର୍ଥ ଦୁର୍ବଚନ, କୁଭାଷୀ)ଙ୍କୁ ସମ୍ବୋଧନ କରି କହୁଛନ୍ତି, ସିନ୍ଧୁ ତୀରରେ ଭାସମାନ ଏହି ଅପୁରୁଷ ଦାରୁକୁ ଛେଦନ କରି ପରମପଦ ଲାଭ କର ।' ଏଠାରେ ଦାରୁକୁ 'ଅପୁରୁଷ' କୁହାଯିବା ଦ୍ୱାରା ଏହାକୁ ଅନାର୍ଯ୍ୟ ଦେବତା (ଘୃଣାସୂଚକ ଅର୍ଥରେ) ବା ଶବର ଦେବତା ଭାବରେ ଗ୍ରହଣ କରାଯାଇଅଛି । ଏଥିରୁ ସମୁଦ୍ର ତୀରବର୍ତ୍ତୀ ଆଦିବାସୀ ଦାରୁ ଦେବତା ପ୍ରତି ବୈଦିକ ଋଷିଙ୍କର ଘୃଣାଭାବ ହିଁ ସୂଚିତ ହେଉଅଛି ।

ପାଶ୍ଚାତ୍ୟ ସମାଲୋଚକ ଓ୍ୱିଲ୍ କିନ୍‌ସଙ୍କର ମତରେ, ଜଗନ୍ନାଥ ସମ୍ଭବତଃ ପ୍ରଥମେ କୌଣସି ଏକ ସ୍ଥାନୀୟ ଉପଜାତି (ଆଦିବାସୀ ଗୋଷ୍ଠୀ) ଦ୍ୱାରା ଉପାସିତ ହୋଇ ଆସୁଥିଲେ ।କାଳକ୍ରମେ ତାଙ୍କୁ ହିନ୍ଦୁ ଧର୍ମ ଭିତରେ ଭର୍ତ୍ତି କରାଯାଇ 'ବିଷ୍ଣୁ'ଙ୍କର ଅବତାର ଭାବରେ କଳ୍ପନା କରାଗଲା । ଗୁରୁଦାସ ସରକାର, ଐତିହାସିକ କେଦାରନାଥ ମହାପାତ୍ର, ଡକ୍ଟର ବଂଶୀଧର ମହାନ୍ତି ଓ ଡକ୍ଟର ନବୀନ କୁମାର ସାହୁ ଜଗନ୍ନାଥ ଚେତନା ଭିତରେ ଶବର ସଂସ୍କୃତିର ପ୍ରଭାବ ସ୍ୱୀକାର କରିଛନ୍ତି । ପ୍ରଭାତ ମୁଖାର୍ଜୀ ଜଗନ୍ନାଥଙ୍କୁ ବ୍ରାହ୍ମଣ୍ୟ ଦେବତା ରୂପେ ପ୍ରମାଣ କରିବାକୁ ପ୍ରୟାସ କରିଥିଲେ ମଧ୍ୟ ପ୍ରାଚୀନ କାଳରୁ ଶବରକର୍ତ୍ତୃକ ଦାରୁ ଦେବତାଙ୍କର ଉପାସନା ପରମ୍ପରାକୁ ଅସ୍ୱୀକାର କରିପାରି ନାହାନ୍ତି । ଡକ୍ଟର ହରେକୃଷ୍ଣ ମହତାବ ଓ ଐତିହାସିକ ମନମୋହନ ଗାଙ୍ଗୁଲି ଜଗନ୍ନାଥଙ୍କୁ ପ୍ରାକ୍ ବୌଦ୍ଧକାଳୀନ ଦେବତା କହି ଜଗନ୍ନାଥଙ୍କ ସହିତ ଶବର ସଂସ୍କୃତିର ସମ୍ପର୍କ ସମ୍ବନ୍ଧରେ ମତବ୍ୟକ୍ତ କରିଛନ୍ତି ।

ପୁରୀର ଦେବତା (ଦୈତ୍ୟ) ମାନେ ଜଗନ୍ନାଥଙ୍କର ଜ୍ଞାତିରୂପେ ପରିଚିତ ।ଦଇତାମାନେ ଶବର ବଂଶଧର ।ସ୍ନାନ ପୂର୍ଣ୍ଣିମାଠାରୁ ରଥଯାତ୍ରା ପର୍ଯ୍ୟନ୍ତ ଜଗନ୍ନାଥଙ୍କର ସମସ୍ତ ପୂଜା-ବିଧି-ବିଧାନ ଦଇତାମାନେ ହିଁ ସଂପାଦନ କରିଥାନ୍ତି ।ଜଗନ୍ନାଥଙ୍କ ନବକଳେବର (ଦେହତ୍ୟାଗ ଓ ନବ ଦେହ ଧାରଣ) ବେଳେ ଏମାନେ ଶୁଦ୍ଧିକ୍ରିୟା ସଂପାଦନ କରିଥାନ୍ତି ।ତେଣୁ ଜଗନ୍ନାଥଙ୍କ ସହିତ ଶବର ସଂସ୍କୃତିର ସମ୍ପର୍କ ଅବଶ୍ୟ ସ୍ୱୀକାର୍ଯ୍ୟ ।

ଜଗନ୍ନାଥଙ୍କୁ କୁହାଯାଏ ମାଦଳା । ମାଦଳା ଶବ୍ଦର ଅର୍ଥ ହସ୍ତପଦବିହୀନ ଗଣ୍ଡି । ଏବେ ମଧ୍ୟ ଶବରମାନଙ୍କ ମାଦଳା ପୂଜା ପ୍ରଚଳିତ ଅଛି । ଏମାନେ ହସ୍ତପଦବିହୀନ, କେବଳ ମୁଖ-ଚକ୍ଷୁ ବିଶିଷ୍ଟ କାଷ୍ଠଖଣ୍ଡ (Wooden poles) ପୂଜା କରିଥାନ୍ତି । ଜଗନ୍ନାଥ-ବଳଭଦ୍ର- ସୁଭଦ୍ରା ମୂର୍ତ୍ତିଗୁଡ଼ିକ ମଧ୍ୟ ଭଲ ଭାବରେ ପରିଷ୍କୃତ ବା କୁନ୍ଦାହୋଇ ନଥିବା ବୃକ୍ଷଗଣ୍ଡିର ଅଂଶ ପରି ଦେଖାଯାଇଥାନ୍ତି । ଶବର ଦେବତା 'ଜାମୋହୁଦିଆ' ମାଟିରେ ତିଆରି ଅଣ୍ଡା ବା ମାଦଳ ଭଳି ଦେଖାଯାନ୍ତି । ସମୁଦ୍ର ତୀରରେ ନୌକା ସଦୃଶ କ୍ଷେତ୍ର (ପୁରୀ)ରେ ଯୂପଭଳି ମହାନ୍ ନ୍ୟଗ୍ରୋଧ ଦାରୁ ପୂଜା ପାଉଥିବାର ସୂଚନା ସ୍କନ୍ଦ ପୁରାଣରେ ମଧ୍ୟ ମିଳିଥାଏ ।

ବୋଧହୁଏ ଏହି ମାଦଳ ମୂର୍ତ୍ତି କାଳକ୍ରମେ ଶବର ଦ୍ୱାରା 'ନୀଳମାଧବ' ଭାବରେ ରୂପାନ୍ତରିତ ହୋଇଅଛି । ଏହି ମୂର୍ତ୍ତି ମଧ୍ୟ ଦାରୁ (ଦାରବୀ) ବୋଲି ସ୍ୱୀକୃତ ହୋଇଅଛି । ଶବରମାନଙ୍କର 'ଶବରୀ ନାରାୟଣ' ପରବର୍ତ୍ତୀ କାଳରେ ଜଗନ୍ନାଥଙ୍କ ସହିତ ସମୀକୃତ ହୋଇଛନ୍ତି । ଏହି ଶବରୀ ନାରାୟଣ ନିମ୍ବ କାଠରେ ତିଆରି ଏକ ମୁଣ୍ଡଯୁକ୍ତ ସ୍ତମ୍ଭବିଶେଷ ବୋଲି ନୀଳକଣ୍ଠ ଦାସ ଉଲ୍ଲେଖ କରିଛନ୍ତି ।

ପଞ୍ଚଦଶ ଶତାବ୍ଦୀ ବେଳକୁ ଜଗନ୍ନାଥ ଯେ ଶବର ଦେବତା (ଶବରୀ ନାରାୟଣ) ଏ ଧାରଣା ଜନମାନସରେ ବଦ୍ଧମୂଳ ହୋଇସାରିଛି । ଯାହା ଫଳରେ ଓଡ଼ିଆ ଭାଷାର ଆଦିକବି ସାରଳା ଦାସ ତାଙ୍କ ମହାଭାରତର ବହୁ ସ୍ଥଳରେ ତାହାର ସୂଚନା ଦେଇଛନ୍ତି– 'ବୋଲନ୍ତି ମାଧବ ସାବଧାନେ ଶୁଣ, ମୁହିଁ ସେ ଅନାଦିନାଥ ଶବରୀ ନାରାୟଣ' । 'ଅଗ୍ରବୃକ୍ଷକୁ ଯେ ଆଉଜି ଦେବ ହରି, ଶବରୀ ନାରାୟଣ ରୂପେ ଅବତରି ।' ଶୁଣି ନାରାୟଣ ପ୍ରତିବାକ୍ୟ ଦ୍ୟନ୍ତି, 'ତୋହର ଅବରେ ଆମ୍ଭେ ହୋଇବୁ ବିପ୍ରୁତି । ଆକାଶେ ଶବର ଯେ ଛାଡ଼ିଲା ମନ ଭ୍ରାନ୍ତି, ଯିସ ଅନ୍ନ ଉପୁଜାଇ ସେ ଦେଉଥାଇ ନିତି । ଛାମୁରେ ଯୋଡ଼ିଲା ସେ ଶବର ଆଡ଼େ ହୋଇ, ଆପଣେ ଭୁଞ୍ଜନ୍ତି ତାହା ଜଗତ ଭୁଞ୍ଜପାଇଁ । 'ଯେତେକ ବଚନେ ସେ ବନଇ କୃତାନ୍ତ, ଅଗ୍ର ବୃକ୍ଷତଳେ ଦେଖିଲା ମାଧବନ୍ତ । ବନ୍ଧୁରେ ଦ୍ୱିଜନାଥ ବସାଇବି ନେଇ, କଳିଯୁଗ ପ୍ରବେଶ ହେଲା ଯେଣୁ ନଥିବା ଗୋସାଇଁ ।' 'ସପନ ଦେଖିଣ ଉଠିଲା ଶବର, ଦେଖଇ ମାଧବ ରୂପେ ଶଙ୍ଖ, ଚକ୍ରଧର । ସେ ପ୍ରତିମା ଘେନିଗଲା ଚଳବଳ, ବୁଢ଼ା ନଦୀ ତୀରେ ବନ ହି ଅନେକ । ଧବଳା ପର୍ବତ ଉପରେ ଅଗ୍ରବୃକ୍ଷ, ତହିଁର ତଳେ ନେଇଁ ଥୋଇଲା ଶିରିଷ ।' ଯାଇଁ ମିଳିଲା ସେ ବୁଢ଼ା ନଦୀ କୂଳେ । ବିଜେ ଜଗମୋହନ ଅଗ୍ର ବୃକ୍ଷମୂଳେ । ବ୍ରାହ୍ମଣର ଅନ୍ଧ ପଟଳ ଫେଡ଼ିଲା କିରାତ, ହେଲା ମାଧବ ସେ ପ୍ରତ୍ୟକ୍ଷ ସାକ୍ଷାତ ।' 'ଶବରୀ ବୋଲି କରି ଯେତେକେ ସତ୍ୟ ଯୁଗେ, ଶବରୀ ନାରାୟଣ ରୂପ ହୋଇବୁ ମଧ୍ୟ ସ୍ୱର୍ଗେ, +++ ସେ ଶବରିକି ଆମ୍ଭେ ହୋଇବୁଁ ବିଭା, ଶବରୀ ନାରାୟଣ ରୂପେ ବନେ ହୋଇବୁଁ ଶୋଭା ।'' +++, ଯମନିକ ତାର୍ଥେ ଆମ୍ଭକୁ କର ଆରୋପଣ । ସେ ତାର୍ଥେ ଅଧିକାରୀ ଯମେଶ୍ୱର ଦେବ । ଆମ୍ଭର ନାମ ଯେ ହୋଇବ (ନୀଳ) ମାଧବ, ଯେ କାରା ଶବର ବଂଶ ଥିବେଟି ଆମ୍ଭ କତି, ଯେହାଙ୍କୁ ଦେଖିଲେ ସ୍ନାନ ଭୋଜନ ଆମ୍ଭେ ହେଉ ଦିପ୍ତି । ନଗରା ବିମାନେ ଆମ୍ଭକୁ ଘେନିଯାଅ ହୋ ନୃପ, ନୀଳଗିରି ସ୍ଥାନେ ଆମ୍ଭକୁ ନେଇ ସ୍ଥାପ ।'' ରାତ୍ରେ ବାରାନିଧି କୂଳେ ନରୋପଇ ଜାରା କିରାତ । ସାଗରୁ ବାହାର ହୋଇ ହୋଇଲେ ଉପଗତ । ଦେଖିଣ ଜାରା ଶବର ପରିଣାମି, ନୀଳଗିରିରେ ବିଜେ କରିବ କି ଦେବ ସ୍ୱାମୀ ?'

ଡକ୍ଟର ବଂଶୀଧର ମହାନ୍ତିଙ୍କ ମତରେ, ଓଡ଼ିଆ ସଂସ୍କୃତିର ପରିଚୟରେ ଆଦିବାସୀ ସଂସ୍କୃତି ହିଁ ଆମ୍ଭମାନଙ୍କର ପ୍ରଥମ ଓ ପ୍ରଧାନ ପଥପ୍ରଦର୍ଶକ ଏବଂ ଜଗନ୍ନାଥ ଧର୍ମ ମୁଖ୍ୟତଃ ଓ ପ୍ରଥମତଃ ଆଦିବାସୀ ଧର୍ମ । ପରବର୍ତ୍ତୀକାଳୀନ ଜୈନ 'ଜଗନ୍ନାଥ' ମୂଳରେ ରହିଛି ଏହି ଆଦିବାସୀର 'ଜଗନ୍ତ' । ଜୈନମାନେ 'ଜଗନ୍ତ' ସହିତ ସ୍ୱଧର୍ମର ସର୍ବୋଚ୍ଚ ପ୍ରତିପାଦକ ଶବ୍ଦ 'ନାଥ (ଯଥା: ଋଷଭନାଥ, ପାର୍ଶ୍ୱନାଥ, ନେମିନାଥ ଇତ୍ୟାଦି) ଯୋଗ କରି ଜଗନ୍ତନାଥ ବୋଲି ଅଭିହିତ କଲେ ଓ 'ଜଗନ୍ନାଥ' ଶବ୍ଦ ହେଉଛି ଏହି 'ଜଗନ୍ନାଥ' ଶବ୍ଦର ରୂପାନ୍ତର । ଋଗବେଦର ଯେଉଁ 'ଅଦୋ ଯଦ୍ଦାରୁ....' ମନ୍ତ୍ରଟିରେ ଥିବା 'ଅପୁରୁଷମ୍' ଶବ୍ଦରେ ଯଦି ଆର୍ଯ୍ୟେତର ଜାତି ଦେବମୂର୍ତ୍ତି ପ୍ରତି ଘୃଣାର ବ୍ୟଞ୍ଜନା ଥାଏ ଏବଂ ଏହାକୁ ଶବର ଜାତିର ଦାରୁମୂର୍ତ୍ତି ବୋଲି ଗ୍ରହଣ କରାଯାଏ ତେବେ ଜଗନ୍ନାଥ-ଚେତନାର ବିକାଶ ପ୍ରାୟ ଖ୍ରୀ: ପୂ: ୧୩୦୦ ବର୍ଷ ପୂର୍ବରୁ ହୋଇ ସାରିଥିଲା ବୋଲି ସ୍ୱୀକାର କରିବାକୁ ହେବ; କାରଣ ଋଗ୍‌ବେଦର ରଚନାକାଳ ଖ୍ରୀଷ୍ଟପୂର୍ବ ଦେଢ଼ ହଜାର ବା ତତ୍‌ପୂର୍ବ ବୋଲି ବହୁ ବିଦ୍ୱାନଙ୍କ ଦ୍ୱାରା ନିର୍ଦ୍ଧାରଣ ହୋଇଅଛି ।

ଶବରମାନେ ପ୍ରଥମେ ଭୟାବହ ମୂର୍ତ୍ତି ପୂଜା କରୁଥିଲେ । ଓଡ଼ିଶା ଓ ମଧ୍ୟପ୍ରଦେଶର ପାର୍ବତ୍ୟ ଅଞ୍ଚଳମାନଙ୍କରେ ବହୁ ଶବର ବାସ କରିଅଛି । ସେମାନଙ୍କ ସମ୍ପର୍କରେ ବହୁ କିମ୍ବଦନ୍ତୀ ଶୁଣାଯାଏ, ଯା' ସହିତ ଶବର ଓ ଜଗନ୍ନାଥ ସମ୍ପୃକ୍ତ । ଗୋଟିଏ କିମ୍ବଦନ୍ତୀ ଅନୁଯାୟୀ ପୁରୀର ସର୍ବପ୍ରଥମ ବଡ଼ ଦେଉଳ ନିର୍ମାଣ ସମୟରେ ରଥ ଟାଣିବା ପାଇଁ ଓ ପଣ ବୋହିବା ପାଇଁ ସେମାନଙ୍କର ସୃଷ୍ଟି ହୋଇଥିଲା । ଅନ୍ୟ ଏକ କିମ୍ବଦନ୍ତୀ ଅନୁସାରେ, ଶବର ସର୍ଦ୍ଦାର ବିଶ୍ୱାବସୁ ନୀଳମାଧବ (ଜଗନ୍ନାଥଙ୍କ ଆଦିରୂପ)ଙ୍କୁ ପୂଜା କରୁଥିଲା । ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ପ୍ରେରିତ ବ୍ରାହ୍ମଣ ବିଦ୍ୟାପତି ଏହି ବିଶ୍ୱାବସୁର କନ୍ୟା ଲଳିତାଙ୍କୁ ବିବାହ କରି ନୀଳମାଧବର ସନ୍ଧାନ ପାଇଥିଲେ ଓ ପୁରୀକୁ ନୀଳମାଧବଙ୍କୁ ଆଣିବାର କାରଣ ହୋଇଥିଲେ । ଅନ୍ୟ ଏକ କିମ୍ବଦନ୍ତୀ ଅନୁଯାୟୀ, ଜଣେ ଭାଲ୍ ପୂର୍ବ ପୁରୁଷଙ୍କର ନାମ ଶବର । ସେ ମଧ୍ୟପ୍ରଦେଶର ସେଓରି ନାରାୟଣ ନିକଟସ୍ଥ କରୋଡ଼ରେ ବାସ କରୁଥିଲେ । କରୋଡ଼ରେ ଜଗନ୍ନାଥଙ୍କର ଆବିର୍ଭାବ ହୋଇଥିଲା ଓ ଶବର ଦ୍ୱାରା ଜଗନ୍ନାଥ ସେଠାରେ ପୂଜିତ ହେଉଥିଲେ । ଓଡ଼ିଶାର ରାଜା ଜଣେ ବ୍ରାହ୍ମଣଙ୍କୁ ପଠାଇ ଏହି ଠାକୁରଙ୍କ ଦର୍ଶନ ପାଇଁ ସେ ଶବରଙ୍କୁ ଅନୁରୋଧ କରନ୍ତେ ସେ ବାଟ ଦେଖି ନପାରିବା ବ୍ୟବସ୍ଥା ପାଇଁ ବ୍ରାହ୍ମଣଙ୍କ ଆଖିରେ ଶବର ଅନ୍ଧପୁଟୁଳି ବାନ୍ଧି ଦେଉଥିଲେ । ବ୍ରାହ୍ମଣ କାନିରେ ସୋରିଷ ବାନ୍ଧି ଟିକିଏ କଣା କରି ଦେଉଥିଲେ । ଶବର ସାଥରେ ଗଲାବେଳେ ସୋରିଷ ବିଛୁହୋଇ ଯାଉଥାଏ । ଠାକୁରଙ୍କୁ ଦର୍ଶନ କରି ସେ ଫେରି ଆସିଲେ । କିଛିଦିନ ପରେ ସୋରିଷ ଗଛ ହେଲା । ବ୍ରାହ୍ମଣ ବାଟ ପାଇ ଠାକୁରଙ୍କ ପାଖକୁ ଗଲେ ଓ ପୁରୀକୁ ଯିବା ପାଇଁ ଅନୁରୋଧ କଲେ । ଠାକୁର ରାଜି ହେଲେ । ଦାରୁରୂପ ଧାରଣ କରି ମହାନଦୀରେ ଭାସି ଭାସି ପୁରୀରେ ପହଞ୍ଚିଲେ । ସେହି ଦାରୁରୁ ମୂର୍ତ୍ତି ଗଠନ କରି

ଓଡ଼ିଶାର ରାଜା ମନ୍ଦିରରେ ସ୍ଥାପନ କରି ପୂଜା କଲେ । ବୁଢ଼ା ଶବରଙ୍କୁ ସନ୍ତୁଷ୍ଟ କରିବା ପାଇଁ ପ୍ରଭୁ ନିଜର ନାମ ରଖିଲେ ଶବରୀ ନାରାୟଣ ଓ ପୂର୍ବ ଆସ୍ଥାନର ନାମ ମଧ ରହିଲା ଶବରୀ ନାରାୟଣ (ସେଓରୀ ନାରାୟଣ) । ବିଶ୍ୱାବସୁ ଶବର ସମ୍ପର୍କିତ ଗଳ୍ପ ସହିତ ସେଓରୀ ନାରାୟଣର ଶବର ସମ୍ପର୍କିତ ଗଳ୍ପ ପ୍ରାୟ ସମାନ । ମଧପ୍ରଦେଶର ବିଳାସପୁର ଗେଜେଟିଅରରେ ମଧ ସମପ୍ରକାରର ଗଳ୍ପଟି ରହିଛି । ଡକ୍ଟର ବଂଶୀଧର ମହାନ୍ତି ଅନୁମାନ କରନ୍ତି ଯେ, ସହଜିୟା ବୌଦ୍ଧଯୁଗର ଶବରୀପା ଭିଲ୍ ଜାତିର ଏହି ଶବର ହୋଇପାରନ୍ତି । 'ବୌଦ୍ଧଗାନ ଓ ଦୋହା' ଗ୍ରନ୍ଥରେ ଥିବା ସିଦ୍ଧ ଶବରୀପାଙ୍କ ନାମ ମଧ ଏହି ଜଗନ୍ନାଥଙ୍କ ଦାରୁପୂଜା ସହିତ ସମ୍ପୃକ୍ତ ହେବା ଅସମ୍ଭବ ନୁହେଁ; କିନ୍ତୁ ଏସବୁ କେବଳ ଅନୁମାନ ।

ସାରଳା ମହାଭାରତରେ କୁହାଯାଇଛି, ଜାରାଶବର ଦ୍ୱାରା ନିଧନ ପରେ କୃଷ୍ଣ 'ନୀଳ ସୁନ୍ଦରୀ' ପର୍ବତ (ନୀଳଗିରି ବା ପୁରୀ)ରେ ପୂଜା ପାଇବେ । ଏହି ଗ୍ରନ୍ଥରେ ବସୁ ଶବର (ବିଶ୍ୱାବସୁ ନାମ ସହିତ ସାମ୍ୟ ଅଛି) ଶବରୀ ନାରାୟଣଙ୍କୁ ପୂଜା କରୁଥିବାର ଆଖ୍ୟାୟିକା ଅଛି । ବସୁ ଶବର ବ୍ରାହ୍ମଣର ଆଖିରେ ଅନ୍ଧପୁଟୁଳି ବାନ୍ଧି ଶବରୀ ନାରାୟଣଙ୍କ ଆସ୍ଥାନ ପାଖକୁ ନେଇ ଯାଇଥିଲା । ଏ ଆଖ୍ୟାୟିକାରେ ସୋଗିଶ ପରିବର୍ତ୍ତେ ଯବଧାନର ଉଲ୍ଲେଖ ଅଛି । ରାଜାଙ୍କ ନାମ ଗାଲମାଧବ ବୋଲି ଉଲ୍ଲେଖ ଅଛି । ଗାଲମାଧବ ଇନ୍ଦ୍ରଦ୍ୟୁମ୍ନଙ୍କର ପୁଅ ବୋଲି ସାରଳା ଦାସ ଲେଖିଛନ୍ତି: କିନ୍ତୁ କେହି କେହି ଗାଲମାଧବଙ୍କ ସହ ଇନ୍ଦ୍ରଦ୍ୟୁମ୍ନଙ୍କର ଏକତ୍ୱ କଳ୍ପନା କରିଛନ୍ତି । ସେ ଯାହା ହେଉ, ବହୁ ପ୍ରାଚୀନ କାଳରୁ ଏହି କିମ୍ବଦନ୍ତୀଗୁଡ଼ିକ ଜଗନ୍ନାଥଙ୍କ ସହିତ ଶବର ଜାତିକୁ ସମ୍ପୃକ୍ତ କରି ଆସିଛି ।

'କଳା ପିଠିଆ' ଶବରମାନେ ପୁରୀ ନିକଟବର୍ତ୍ତୀ ଅଞ୍ଚଳରେ ବାସ କରନ୍ତି ଓ ରଥଟଣା ବେଳେ ନିଯୁକ୍ତ ହୋଇଥାନ୍ତି । ସେଥିପାଇଁ ଏମାନେ ଭାଗିନି ଭୋଗ କରୁଛନ୍ତି ।

ଶବର ଛଡ଼ା ଆଦିବାସୀ କନ୍ଧ ଜାତିକୁ ମଧ ଜଗନ୍ନାଥ ପୂଜା ସହିତ ସମ୍ପୃକ୍ତ କରାଯାଇପାରେ । କନ୍ଧ ଭାଷାରେ ଦେବତାଙ୍କୁ କୁହାଯାଏ 'ପେନୁ' । ଏମାନେ କେଉଁ ସ୍ମରଣାତୀତ କାଳରୁ ଜାକେରି ପେନୁ, ତାନା ପେନୁ ଓ ମୁଣ୍ଡବି ପେନୁଙ୍କର ପୂଜା କରିଆସୁଛନ୍ତି । ଗ୍ରାମ ସୀମାରେ ରହୁଥିଲେ ଗୋଟିଏ ଧାଡ଼ିରେ ତିନୋଟି ମୂର୍ତ୍ତି ଏକ ଧାଡ଼ିରେ ପାଖାପାଖି ସ୍ଥାପିତ ହୋଇଥାଏ । ତିନିମୂର୍ତ୍ତି ଉପରେ ଛାତ ଭଳି ଏକ ଚଉଡ଼ା ପଥର ଲଦା ହୋଇଥାଏ । ଏହି ତିନିମୂର୍ତ୍ତି ହେଉଛନ୍ତି ତିନି ଦେବତା । ମଝି ମୂର୍ତ୍ତି ତାନା ପେନୁ (ଧରଣୀ ଦେବୀ), ଡାହାଣ ମୂର୍ତ୍ତିଟି ଜାକେରି ପେନୁ (ଧରଣୀ ଦେବୀଙ୍କ ସ୍ୱାମୀ), ବାମ ମୂର୍ତ୍ତିଟି ମୁଣ୍ଡବି ପେନୁ (ତାନା ପେନୁ ବା ଧରଣୀ ଦେବୀଙ୍କ ଭାଇ) । କାଳକ୍ରମେ ଏହି ତିନିମୂର୍ତ୍ତି ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥ ରୂପରେ ପୂଜା ପାଇଥିବେ ଓ ଉପର ପଥରଟି ସୁଦର୍ଶନ ରୂପରେ ସ୍ଥାନ ପାଇଥିବେ । ବର୍ତ୍ତମାନ ମୂର୍ତ୍ତିଗୁଡ଼ିକ ପଥର, କିନ୍ତୁ ପୂର୍ବେ ଏଗୁଡ଼ିକ ଦାରୁମୂର୍ତ୍ତି ହୋଇଥିବେ ବୋଲି ଅନୁମାନ କରାଯାଇପାରେ । ଏଠାରେ ଲକ୍ଷ୍ୟ କରିବା କଥା, ତାନା ପେନୁଙ୍କ ସମ୍ପର୍କରେ ଏକ ଗଳ୍ପ ଅଛି ଯେ, ସେ ଅତୀବ ଭୟଙ୍କରୀ ଥିଲେ ଓ ସୃଷ୍ଟିର ଆରମ୍ଭ ପରେ ଜନ-ସମାଜ ଉପରେ ରାଗିଯାଇ ବହୁ ଅତ୍ୟାଚାର କରିଥିଲେ । ପରେ ତାଙ୍କ ଅନୁରୋଧରେ ଶାନ୍ତ ହୋଇ ଜଗତର ମଙ୍ଗଳକାରିଣୀ ହୋଇଥିଲେ । ସୁଭଦ୍ରାଙ୍କୁ ଭୈରବୀ ଭାବରେ ଲୋକମାନେ କଳ୍ପନା କରି ଆସିଛନ୍ତି । ଜଗନ୍ନାଥ ସୁଭଦ୍ରାଙ୍କର ଭାଇ । ବଳଭଦ୍ର ଶିବଙ୍କ ଅବତାର ଓ ଭୈରବ ବୋଲି ମଧ ଲୋକମାନଙ୍କର ବିଶ୍ୱାସ ଅଛି । ତେଣୁ କନ୍ଧ ଜାତିର ଦେବତା-ତତ୍ତ୍ୱ ସହିତ ଜଗନ୍ନାଥ ତ୍ରିମୂର୍ତ୍ତି ଏବଂ ଚତୁର୍ଦ୍ଧାମୂର୍ତ୍ତି ତତ୍ତ୍ୱର ଅନେକ ସାମ୍ୟ ପ୍ରତିପାଦିତ ହେଉଅଛି ।

ଡକ୍ଟର ହରେକୃଷ୍ଣ ମହତାବ ଓଡ଼ିଶାରେ ବିଭିନ୍ନ ଧର୍ମ ପ୍ରବର୍ତ୍ତନର ଇତିହାସ ତନ୍ନ ତନ୍ନ ଆଲୋଚନା କରି ଶେଷରେ ଜଗନ୍ନାଥଙ୍କ ଇତିହାସ ସମ୍ପର୍କରେ ଏକ ବିଚାରଧାରା ଉପସ୍ଥାପନ କରିଛନ୍ତି ଯେ, ପ୍ରଥମେ ଜଗନ୍ନାଥ ଶବରମାନଙ୍କ ଦ୍ୱାରା ପୂଜିତ ହେଉଥିଲେ । ଅଶୋକଙ୍କ ସମୟରେ ଓଡ଼ିଶାର ଶବରମାନେ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇଥିଲେ । ପୁରୀରେ ବୌଦ୍ଧସ୍ତୂପ ନିର୍ମିତ ହୋଇଥିଲା ଓ ତହିଁରେ ବୌଦ୍ଧ ତ୍ରିରତ୍ନ ଚିହ୍ନ ଅଙ୍କନ କରାଯାଇଥିଲା । ଏହି ସ୍ତୂପ ବୌଦ୍ଧ ଧର୍ମରେ ଦୀକ୍ଷିତ ଶବରମାନଙ୍କର ଥିଲା ପ୍ରଧାନ ପୂଜାପୀଠ । ଖ୍ରୀ:ପୂ: ୧ମ ବା ଖ୍ରୀଷ୍ଟାବ୍ଦ ୧ମ ଶତାବ୍ଦୀରେ ଓଡ଼ିଶାରେ ମହାଯାନ ପନ୍ଥାର ପ୍ରବର୍ତ୍ତନ ଫଳରେ ବୁଦ୍ଧ ଓ ବୋଧିସତ୍ତ୍ୱଙ୍କର ପୂଜା ପ୍ରଚଳିତ ହେଲା । ସରଳପ୍ରାଣ ଶବରମାନେ ଏତେ ଜଟିଳତା ଭିତରକୁ ପ୍ରବେଶ କଲେ ନାହିଁ । ସେମାନେ ଏହି ସ୍ତୂପର ତ୍ରିରତ୍ନ ଚିହ୍ନଗୁଡ଼ିକୁ ତିନି ଦେବତା ଭାବି ପୂଜା କଲେ । ଚିହ୍ନପୂଜା ସପକ୍ଷରେ ଡକ୍ଟର ମହତାବ ପ୍ରମାଣ ଦର୍ଶାଇଛନ୍ତି ଯେ, ଚିହ୍ନ ପୂଜା ଆଜି ପର୍ଯ୍ୟନ୍ତ ଭାରତରେ ପ୍ରଚଳିତ ଅଛି । ଯେଉଁ ସ୍ୱସ୍ତିକ ଚିହ୍ନଟି ପୂଜା କରାଯାଏ ତାହା ବାସ୍ତବତଃ ଦୁଇଟି ପ୍ରାଚୀନ ପାଲି ଅକ୍ଷର 'ସୁ' ଓ 'ତି'ର ଏକତ୍ର ସମାବେଶ । 'ସୁତି' ହେଉଛି 'ସ୍ୱସ୍ତିକ' ଶବ୍ଦର ପାଲି ରୂପାନ୍ତର ।

ବୌଦ୍ଧ ଶବରମାନଙ୍କ ଦ୍ୱାରା ଉପାସିତ ସ୍ତୂପର ଏହି ତ୍ରିରତ୍ନ ଚିହ୍ନତ୍ରୟକୁ କୁହାଯାଉଥିଲା ଜଗନ୍ନାଥ । କିଛି କାଳପରେ ଯେତେବେଳେ ମୂର୍ତ୍ତିପୂଜାର ପ୍ରଚଳନ ହେଲା, ସେତେବେଳେ ଲୋକମାନେ ଏହି ତିନୋଟି ଚିହ୍ନକୁ କାଠ ମୂର୍ତ୍ତିରେ ବସାଇ ପୂଜା କଲେ । କ୍ରମଶଃ କାଠମୂର୍ତ୍ତିଗୁଡ଼ିକୁ ମନୁଷ୍ୟାକୃତି ଦେବା ପାଇଁ ଇଚ୍ଛା ଜାଗ୍ରତ ହୋଇଥିଲା ଓ ଏଥିରେ ଆଖି ନାକ ଦେଖାଇବା ପାଇଁ ଚିତ୍ରର ବ୍ୟବସ୍ଥା ହୋଇଥିଲା । ତେବେ ଏ ଚିହ୍ନକୁ ପାଷାଣ ବା ମୃଣ୍ମୟ ମୂର୍ତ୍ତିରେ ଚିତ୍ରିତ କରା ନଯାଇ କାଷ୍ଠ ମୂର୍ତ୍ତିରେ ଚିତ୍ରିତ କରିବା ମୂଳରେ ନିଶ୍ଚୟ ରହିଛି ଶବରମାନଙ୍କର ପ୍ରାଚୀନ ଉଦ୍ୟମ । କାରଣ ସେମାନେ ବୌଦ୍ଧ ଧର୍ମରେ ଦୀକ୍ଷିତ ହେବାର ବହୁ ପୂର୍ବରୁ କାଷ୍ଠମୂର୍ତ୍ତି (ଦାରୁ) ପୂଜା କରି ଆସୁଥିଲେ ।

ଜଗନ୍ନାଥ ସଂସ୍କୃତିର ଐତିହାସିକ ବିଚାର କ୍ଷେତ୍ରରେ ଆଦିବାସୀ ସଂସ୍କୃତିର ଅଧ୍ୟୟନ ଯେ ଅପରିହାର୍ଯ୍ୟ, ଏହା ଅବଶ୍ୟ ସ୍ୱୀକାର୍ଯ୍ୟ ।

• • •



# ଶ୍ରୀ ଶ୍ରୀ ଜଗନ୍ନାଥ ଚେତନାରେ ‘ଶଙ୍କାପଞ୍ଚକ’

● ପଣ୍ଡିତ ସୂର୍ଯ୍ୟନାରାୟଣ ରଥଶର୍ମା

ସର୍ବରୂପମୟୋ ହ୍ୟେଷ ସର୍ବମନ୍ତ୍ରମୟଃପରୋ

ଆରାଧତେ ଯଥା ଯେନ ତଥା ତସ୍ୟ ଫଳପ୍ରଦମ୍ ।।

ଆର୍ଯ୍ୟଭୂମି ଭାରତବର୍ଷରେ ପରମପାବନ ଜଗନ୍ନାଥଧାମ ପୁରୀର ନୀଳାଦ୍ରିକନ୍ଦର ମଧ୍ୟରେ ରତ୍ନସିଂହାସନ ଉପରେ ପୁରୁଷୋତ୍ତମ ବିଗ୍ରହ ସ୍ମରଣାତୀତ କାଳରୁ ବିରାଜମାନ । ଆଧାତ୍ମବାଦୀ ପ୍ରବର୍ତ୍ତକଗଣ ଜଗନ୍ନାଥ ପୁରୁଷୋତ୍ତମଙ୍କୁ ନିଜର ଇଷ୍ଟ ରୂପରେ ଗ୍ରହଣ କରିଅଛନ୍ତି । ସମନ୍ୱୟ ଯେହିଠାରେ ସମନ, ଯେଉଁଠାରେ ମୌଳିକ ଓ ଶୁଦ୍ଧ ସିଦ୍ଧାନ୍ତର ସମନ୍ୱୟ ଭାବ ପ୍ରତୀତ ହେଉଅଛ । ଜଗନ୍ନାଥ ପୁରୁଷୋତ୍ତମ ସ୍ୱୟଂ ପ୍ରକାଶବାନ ବିଗ୍ରହ ହୋଇଥିବାରୁ ସମସ୍ତ ସିଦ୍ଧାନ୍ତ ସୂତ୍ର ତାଙ୍କଠିଠାରେ ହିଁ ସନ୍ନିବେଶିତ ହୋଇପାରିଛି । ତେଣୁ ସ୍କନ୍ଦ ପୁରାଣରେ ଜଗନ୍ନାଥଙ୍କୁ ଅପୌରୁଷେୟ ବୋଲି ପ୍ରତିପାଦନ କରାଯାଇଅଛି–

ଅପୌରୁଷେୟ ଭଗବାନ ବିଚାର ମତମାସ୍ଥିତଂ

ପୁରୁଷାୟାଂ ମହାଦେବ୍ୟାଂ ସ୍ୱୟଂସୋଽବତରିଷ୍ୟତି ।

ଶ୍ରୀ ଜଗନ୍ନାଥ ପୁରୁଷୋତ୍ତମଙ୍କୁ କେନ୍ଦ୍ରକରି ତାଙ୍କର ସୃଷ୍ଟି ଓ ସ୍ଥିତି କାଳ ସମ୍ବନ୍ଧରେ ବହୁ ମତ ମତାନ୍ତର ରହି ଆସିଛି । ଋଗବେଦ ଠାରୁ ଆରମ୍ଭ କରି ପୁରାଣ ସାହିତ୍ୟ, ଇତିହାସ, ମାନବଜୀବନ ଓ ସଂସ୍କୃତିର କ୍ରମ ବିବର୍ତ୍ତନ ଚିରକାଳ ପ୍ରତିଭାତ କିନ୍ତୁ କାଳର ଗର୍ଭରେ ସେ ଲୀନ ହୋଇଗଲେ ମଧ୍ୟ ସତ୍ୟ, ଶାଶ୍ୱତ ଓ ସନାତନ ଈଶ୍ୱରୀୟ ସତ୍ତା ଅପରିବର୍ତ୍ତନୀୟ ରହିଥାଏ । ସେଥିପାଇଁ ସବୁକାଳରେ ସତ୍ୟଦ୍ରଷ୍ଟା ମୁନି, ଋଷି, ଆଚାର୍ଯ୍ୟ, ସାଧକମାନେ ପାବନ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରକୁ ଆଗମନକରି ଆପଣାର କରିନେଇଛନ୍ତି ଓ ତଦ୍ଦ୍ୱାରା ଗୌରବାନ୍ୱିତ ହୋଇଛନ୍ତି । ମହାପ୍ରଭୁ ଶ୍ରୀଜଗନ୍ନାଥ ପୁରୁଷୋତ୍ତମ ନିର୍ଗୁଣ, ନିରାକାର, ପରମବ୍ରହ୍ମଙ୍କର ସଗୁଣ, ସାକାର ସ୍ୱରୂପ । ତାଙ୍କର ସଂପୂର୍ଣ୍ଣ ସ୍ୱରୂପ ଅବର୍ଣ୍ଣନୀୟ କିନ୍ତୁ ଉପଲବ୍ଧିର ବିଷୟବସ୍ତୁ ଯୁଗେ ଯୁଗେ ନିଷ୍କପଟ ଭକ୍ତ ଓ ନିର୍ମଳ ହୃଦୟର ସାଧକ ତାହା ହିଁ ଉପଲବ୍ଧି କରିଛନ୍ତି ଏବଂ ଶ୍ରୀ ଶ୍ରୀଜଗନ୍ନାଥ ମହାପ୍ରଭୁ ସମସ୍ତ ସଂକୀର୍ଣ୍ଣ ମତବାଦ ଓ ଚିନ୍ତାଧାରାର ଉର୍ଦ୍ଧ୍ୱରେ ବୋଲି ଉଦ୍‌ଘୋଷଣା କରିଯାଇଛନ୍ତି ।

## (୧) ରଥଯାତ୍ରାର ମୌଳିକ ହେତୁ

ଆଷାଢ଼ ଶୁକ୍ଳ ଦ୍ୱିତୀୟା ପୁଷ୍ୟା ନକ୍ଷତ୍ର ଯୋଗରେ ଗୁଣ୍ଡିଚା ଯାତ୍ରା ହୁଏ । ଦାରୁବ୍ରହ୍ମ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ରଥ ତ୍ରୟରେ ବିରାଜମାନ କରାଇ ଯଜ୍ଞଶାଳା ଗୁଣ୍ଡିଚା ଘର ବା ଆଡପ ମଣ୍ଡପକୁ ଯାତ୍ରା କରାଇଥାନ୍ତି । ପୂର୍ବେ ଗୁଣ୍ଡିଚା ଯାତ୍ରା ସ୍ନାନ ପୂର୍ଣ୍ଣିମାଠାରୁ ଶୟନପୂର୍ଣ୍ଣିମା ଏକମାସ ଯାତ୍ରା । ତାହା ମଧ୍ୟରେ ଜ୍ୟେଷ୍ଠପୂର୍ଣ୍ଣିମା ଠାରୁ ଆଷାଢ଼ ଅମାବାସ୍ୟା ପର୍ଯ୍ୟନ୍ତ ପନ୍ଦର ଦିନ ଶାବର ପୂଜା ବା ଗୁପ୍ତପୂଜା ହୁଏ, ଯାହାର ନାମ ଅନବସର । ଏହି ସମୟରେ ଶାବର ଭାବର ପୂଜା ମନ୍ତ୍ରହୀନ ରୂପରେ ଅବଗିତ ହୁଏ । ଗୁଣ୍ଡିଚା ଠାରୁ ସାତଦିନ ଆଡପମଣ୍ଡପ ଯଜ୍ଞଶାଳାରେ ସପ୍ତାହୁତି ପୂଜା, ଆଷାଢ଼ ଶୁକ୍ଳ ନବମୀରେ "ଇନ୍ଦ୍ରଦ୍ୟୁମ୍ନ ମହୋତ୍ସବ", ଦଶମୀ ପୁନଃ ତ୍ରୟୋଦଶୀ ବା ପୂର୍ଣ୍ଣିମା ' ଦକ୍ଷିଣମୁଖୀ ଉତ୍ସବ", ତତ୍‌ପରେ ପୁନର୍ବାର ରତ୍ନସିଂହାସନ ପିଣ୍ଡି ବିଜେ । ରଥଯାତ୍ରାର ମୂଳ କାରଣ ପ୍ରତିବର୍ଷର ଦେବତା ନଗର ପରିକ୍ରମା ଭ୍ରମଣ ବିଧି ବୈଦିକ ପରମ୍ପରା ଅଟେ । ଉକ୍ତ ନଗର ଭ୍ରମଣ ରୀତି ଉପରେ ହିଁ ରଥଯାତ୍ରା ପ୍ରତିଷ୍ଠିତ । ଏହି ଅନୁସାରେ ନଗର ଭ୍ରମଣ ହିଁ ବାହୁଡ଼ାଯାତ୍ରା, ପିଣ୍ଡି ଆରୋହଣ ନୀଳାଦ୍ରି ବିଜେ । ଏହା ଗୁଣ୍ଡିଚା ଆସ୍ତ ପାରମ୍ପରିକ କ୍ରମ ବିଧାନ । କର୍ମକାଣ୍ଡର ଅନ୍ତର୍ଗତ ବ୍ରହ୍ମୋତ୍ସବ ଏହାର ନାମ । ଭାରତର ପ୍ରତ୍ୟେକ ମନ୍ଦିରରେ ବ୍ରହ୍ମୋତ୍ସବ ନଗର ଭ୍ରମଣ ଯାତ୍ରା ଅନୁଷ୍ଠିତ ହୁଏ । ଉକ୍ତଦିନ ଦେବତାମାନେ ସ୍ୱ ସ୍ୱ ଅନୁକୂଳ ଯାନରେ ଭ୍ରମଣ କରନ୍ତି । ଉକ୍ତ ନ୍ୟାୟରେ ଜଗନ୍ନାଥ ପୁରୁଷୋତ୍ତମ ଦାରୁବ୍ରହ୍ମ । ତାଙ୍କର ଯାନ ରଥ, ତେଣୁ ଜଗନ୍ନାଥ ଯେତେବେଳେ ବ୍ରହ୍ମୋତ୍ସବ କରନ୍ତି, ରଥରେ ହିଁ ଯାତ୍ରା କରନ୍ତି । ବିଶ୍ୱର ସର୍ବ ପ୍ରଥମ ଯାତ୍ରା ହିଁ ଜଗନ୍ନାଥଙ୍କ ରଥଯାତ୍ରା । ଏହା ସାମବେଦ ମନ୍ତ୍ର ଓ ରଥ ସହିତ ସମ୍ପୃକ୍ତ । ରଥଯାତ୍ରାର ମୂଳ ହେତୁ "ବ୍ରହ୍ମୋତ୍ସବ ଲୀଳା" । ଏଥିରେ ଆଉ ଯେତେ କଳ୍ପନା, ଜଳ୍ପନା, ପ୍ରମାଣ ପ୍ରମେୟ ଅଛି, ତାହା ସବୁ ପରବର୍ତ୍ତୀ କାଳର ।

## ଚତୁର୍ଦ୍ଧାମୂର୍ତ୍ତି ବିରାଜମାନ କରିଥିବା ସ୍ଥାନରେ "ଶାଳଗ୍ରାମ" ଥିବା ସତ୍ୟକି ?

ସାଧାରଣ ଲୋକମାନେ କଳ୍ପନା କରିଥାନ୍ତି, ଜଗନ୍ନାଥଙ୍କର ଗର୍ଭଗୃହ ପୋଖରିଆ ତଳରେ ଲକ୍ଷେ ଶାଳଗ୍ରାମ ପୋତା ହୋଇଛନ୍ତି । ତେଣୁ ଯିବା ଅନୁଚିତ । ଏହି କଳ୍ପନାକୁ ବିଚାର କଲେ ଜଣାଯାଏ ଏହା ଗ୍ରହଣ ଅଶାସ୍ତ୍ରୀୟ । ଯେଉଁ ସ୍ଥାନରେ ଅହରହ ଭୋଗ ବଢ଼ାଯାଏ, ସେଠାରେ ଶାଳଗ୍ରାମ (ବିଷ୍ଣୁଶିଳା) ରହିବା ଅସମ୍ଭବ ।

"ବିଷ୍ଣୁଶିଳା ସମାବେଶେ ଦ୍ରବ୍ୟାଃ ନୈବେଦ୍ୟତା ଗତମ୍" ।

ଶାଳଗ୍ରାମରେ ଛୁଆଁଇ ଦେଲେ ଦ୍ରବ୍ୟ ପ୍ରସାଦ ହୋଇଯାଏ । ତେଣୁ ନୈବେଦ୍ୟ ଲାଗୁଥିବା ସ୍ଥଳରେ ଶାଳଗ୍ରାମ ଶିଳା ରହିନପାରନ୍ତି । ନିତ୍ୟ ଓ ବାସ୍ତବ ତଥ୍ୟ ହେଉଛି, ସିଂହାସନର ଚକାପିଣ୍ଡିତଳେ ପଞ୍ଚ ବିଷ୍ଣୁଶିଳା ରହିବାର ପ୍ରମାଣ ଅଛି । ତେଣୁ ସେବା କରୁଥିବା ସେବକମାନେ ଚକାପିଣ୍ଡିରେ ପାଦ ବାଜିଯିବା ପ୍ରତି ସଦାସର୍ବଦା ସାବଧାନ ଥାନ୍ତି । ଶାଳଗ୍ରାମ ଶିଳା ଯଦି ଏହିସବୁ ସ୍ଥାନରେ ଥାନ୍ତା, ତେବେ ସେବକମାନେ

ଅପର ପୃଷ୍ଠା

କିପରି ସେ ସ୍ଥାନରେ ପାଦ ଦିଅନ୍ତେ ? ମାର୍ଜନୀରେ ମାର୍ଜନା କରନ୍ତେ ? ତେଣୁ ସିଂହାସନକୁ ମାର୍ଜନୀରେ ମାର୍ଜନା କରାଯାଏ ନାହିଁ । ଶ୍ରୀମଦ୍ ଭାଗବତ ୧୨ଶ ସ୍କନ୍ଧରେ କୁହାଯାଇଛି, ଏହି ସ୍ଥାନର ନାମ ପୃଥିବୀର ମୂଳ, ଯାହା ମହାପ୍ରଳୟରେ ମଧ ନଷ୍ଟ ହୁଏ ନାହିଁ ।

ତସ୍ମିନ୍ ପୃଥିବ୍ୟାଃ କକୁଦି ପ୍ରରୂଢ଼ଂ ବଟଂ ତତ୍ ପର୍ଣ୍ଣ ପୁଟେ ଶୟାନମ୍ ।
୧୨।୯।୩୧

ଏହି ପବିତ୍ରତମ ବେଦୀରେ ଗୋଡ଼ ନଚକାଇ ଅତ୍ୟନ୍ତ ନିଷ୍ଠା ଓ ଭକ୍ତିର ସହିତ ପରିକ୍ରମା କରିବା ଜଗନ୍ନାଥପ୍ରେମୀମାନଙ୍କର ବିଧେୟ । ଗଜପତି ପୁରୁଷୋତ୍ତମଦେବ "ମୁକ୍ତି ଚିନ୍ତାମଣୀ" ରେ କହିଛନ୍ତି–

ରତ୍ନସିଂହାସନ ଦିବ୍ୟ ବିଷ୍ଣୁ ଶିରୋପମ ପରଂ
ତଦଙ୍ଘ୍ରି ସ୍ପର୍ଶନେ ପୁଣ୍ୟାଃ ବିନଶ୍ୟନ୍ତି ପଦେ ପଦେ
ଭକ୍ତ୍ୟା ପ୍ରଦକ୍ଷିଣଂ କୁର୍ଯ୍ୟାଦ୍ ସ୍ମରଣେ ନାମ ଯତ୍ନତଃ
କୋଟିତୀର୍ଥ ଫଳଂ ତସ୍ୟ ଲଭନ୍ତି ମାନବାଃ ଧ୍ରୁବମ୍ ।

## (୩) ଶ୍ରୀ ମନ୍ଦିରରେ ମୈଥୁନ ମୂର୍ତ୍ତି ରହିବାର କାରଣ କ'ଣ ?

ଅଗ୍ନିପୁରାଣ, ସ୍କନ୍ଦ ପୁରାଣ ମତରେ ବଜ୍ରପାତ ଭୟରୁ ମନ୍ଦିରକୁ ରକ୍ଷା କରିବା ନିମନ୍ତେ ଏହା ରହିଛି । ଅଗ୍ନିପୁରାଣରେ କୁହାଯାଇଛି–

ବଜ୍ରୋତ୍ପାତାଦି ଭୀତ୍ୟାର୍ଥ ବାରଣାର୍ଥ ସୁରୋତ୍ତମେ
ମିଥୁନୈ ରଥ ବଲ୍ଲୀଭି ଅଧୋଶାଖା ବିମଣ୍ଡୟେତ୍ ।

ଏହା ଏକ ପ୍ରାଚୀନ ପ୍ରଥା । " ବିଚିତ୍ର ବନ୍ଧ ମିଥୁନ ପୁତଳୀ ବନୟାନ୍ୱିତମ୍" ଶିଳ୍ପଗତ ପ୍ରଥା ଅଟେ । ଆଧ୍ୟାତ୍ମିକ ମତ ହେଲା ଯେ ଏଗୁଡ଼ିକ ଦେଖି ମଧ ମନରେ ସଂଯମତା ଆଣି ପ୍ରଭୁଙ୍କୁ ଦର୍ଶନ କରିବାରେ ଅନ୍ତର ଭିତରେ ଶ୍ରଦ୍ଧା ଜନ୍ମାଅ । ଏହା ମନକୁ ପରୀକ୍ଷା କରିବାକୁ ରହିଛି ମାତ୍ର ଏହା ବଳିଷ୍ଠ କାରଣ ନୁହେଁ ।

ମୈଥୁନଂ ମିଥୁନାଚଣଂ ପ୍ରତିମା ଦର୍ଶନାନ୍ତରେ
ମନଃ ସଂଯମତାଂ ଯାନ୍ତି ନବିକାର ଭବେତଧ୍ରୁବମ୍

ତାନ୍ତ୍ରିକ ଅଭିମତ ହେଲା–

"ଏବଂ କାମକଳା ବିଦ୍ୟା ଆତ୍ମ ସଂଯମ ଦାୟକ
ଯନ୍ତ୍ର ପ୍ରାସାଦ ପୀଠେ ଚ ମୈଥୁନ ମୂର୍ତ୍ତି ପୂଜୟେତ୍ ।"

କାମକଳା ରହସ୍ୟ

ଏହି ତାନ୍ତ୍ରିକ ଅଭିମତ କିନ୍ତୁ ସନ୍ତୋଷପ୍ରଦ କାରଣ ନୁହେଁ ତେଣୁ ଶିଳ୍ପଗତ କାରଣକୁ ଦେଖିବା ଶ୍ରେୟସ୍କର ଅଟେ ।

ପ୍ରାଚୀନ 'ଶିଳ୍ପସାରିଣୀ" ଗ୍ରନ୍ଥ କହନ୍ତି, ମନ୍ଦିର ନିର୍ମାଣ କାର୍ଯ୍ୟ କଲାବେଳେ ମନ୍ଦିରର କଳାରେ ଚଉଦଶ ଯୋନି ପାଇଁ ମୂର୍ତ୍ତିମାନ ରହିବ । ଯେପରିକି କୌଣସି ଜୀବ ବସ୍ତୁ ଆନନ୍ଦରୁ ବଞ୍ଚିତ ହେବ ନାହିଁ । ସମସ୍ତ ଜୀବର ଆନନ୍ଦ ପାଇଁ ଏହାହିଁ ଉଚିତ୍ତ ।

(୧) ଦେବ ମୂର୍ତ୍ତି – ଦେବତାଙ୍କ ଆନନ୍ଦ ନିମନ୍ତେ ।

(୨) ବିକଟମୂର୍ତ୍ତି – ଅସୁରମାନଙ୍କ ଆନନ୍ଦ ନିମନ୍ତେ ।

(୩) ଯକ୍ଷମୂର୍ତ୍ତି – ଯକ୍ଷଯୋନିର ଆନନ୍ଦ ନିମନ୍ତେ ।

(୪) ନୃତ୍ୟ ମୂର୍ତ୍ତି – ଗନ୍ଧର୍ବ ଯୋନିର ଆନନ୍ଦ ନିମନ୍ତେ ।

(୫) କିନ୍ନରୀ ମୂର୍ତ୍ତି – କିନ୍ନର ଆନନ୍ଦ ନିମନ୍ତେ ।

(୬) ନାଗ ବନ୍ଧ – ନାଗଲୋକର ଆନନ୍ଦ ନିମନ୍ତେ ।

(୭) ପଶୁବନ୍ଧ – ପଶୁମାନଙ୍କର ଆନନ୍ଦ ନିମନ୍ତେ ।

(୮) ପକ୍ଷୀବନ୍ଧ – ପକ୍ଷୀମାନଙ୍କର ଆନନ୍ଦ ନିମନ୍ତେ ।

(୯) ପୁଷ୍ପବନ୍ଧ – ଭ୍ରମରାଦି ପତଙ୍ଗଙ୍କର ଆନନ୍ଦ ନିମନ୍ତେ ।

(୧୦) ରାଜବନ୍ଧ – ନରମାନଙ୍କର ଆନନ୍ଦ ନିମନ୍ତେ ।

ଏହି ଦଶଗୋଟି ସୌମ୍ୟ ଯୋନି, ଏହାଛଡ଼ା ଚାରିଗୋଟି ତୀର୍ଯ୍ୟକ ଯୋନି ଅର୍ଥାତ୍ ଭୂତ, ପ୍ରେତ, ପିଶାଚ, କୀଟମାନେ ଏହି ମୈଥୁନ ମୂର୍ତ୍ତି ଦେଖିଲେ ସୁଖୀ ହୁଅନ୍ତି । ଏକ ଉଦାର କାରଣରୁ ଶିଳ୍ପୀମାନେ ଏହାକୁ କଳାର ମହତ୍ତ୍ୱ ପାଇଁ ରଖିଛନ୍ତି । କେହି କେହି କହନ୍ତି, ବହୁବର୍ଷ ଧରି ସ୍ଥପତିମାନେ ସଂସାର ମାର୍ଗ ବା ଗାର୍ହସ୍ଥ୍ୟ ଧର୍ମ ଛାଡ଼ି ମନ୍ଦିର ନିର୍ମାଣ ସ୍ଥଳରେ ରହିବାରୁ ନିଜର ମନର ବିକାରରୁ ସେମାନେ ଏପରି ନଗ୍ନ ମୂର୍ତ୍ତିମାନ ରଖିଛନ୍ତି ମାତ୍ର ଜାହାର କାମର ବିକାରରୁ ସ୍ଥାପତ୍ୟ ଶାସ୍ତ୍ର ଏଭଳି ଏକ ଅଶୁଦ୍ଧ ବିକାରକୁ ମନ୍ଦିରର ପବିତ୍ର ଗାତ୍ରରେ ରଖିବା କଥଣ ଶାସ୍ତ୍ରସମ୍ମତ ? ତେଣୁ ସ୍ଥାପତ୍ୟ ମତ ହିଁ ପ୍ରଣିଧାନଯୋଗ୍ୟ । ଭୂତ, ପ୍ରେତ, ପିଶାଚାଦି ତୀର୍ଯ୍ୟକ ଯୋନିମାନେ ଏହି ଅଶ୍ଳୀଳ ମୂର୍ତ୍ତି ଦର୍ଶନରେ କାମ ତୃପ୍ତିଲାଭ କରି ଭକ୍ତଗଣଙ୍କ ନିକଟରୁ ଦୂରରେ ରହନ୍ତି । ଏହି କାରଣରୁ ସମ୍ପୂର୍ଣ୍ଣ ସ୍ଥାପତ୍ୟ ସୂତ୍ରରେ ଏହି ମୂର୍ତ୍ତିମାନ ଜଗନ୍ନାଥମନ୍ଦିର, କୋଣାର୍କ ତଥା ମାର୍କଣ୍ଡେଶ୍ୱର ମନ୍ଦିରମାନଙ୍କରେ ରହିଛନ୍ତି । ଏଥିରେ ଶାକ୍ତ କାମକଳା ବିଦ୍ୟାର ସମର୍ଥନ ଥିବାରୁ ଶିଳ୍ପୀମାନେ କେଉଁଠାରେ ଊଣା ଅଧିକ ରଖିଛନ୍ତି ସିନା, ଏହାର କାରଣ ଶିଳ୍ପଶାସ୍ତ୍ରର ନିର୍ଦ୍ଦେଶ ଉପରେ ପ୍ରତିଷ୍ଠିତ ଅଟେ ।

## ଜଗନ୍ନାଥଙ୍କ ମାଉସୀ ମା କିଏ ?

ଜଗନ୍ନାଥ ସ୍ୱୟଂ ବ୍ରହ୍ମ । ଯାହାଙ୍କର ମାତା ପିତା କିଏ ହେଲେ ନାହାନ୍ତି, ତାଙ୍କର ମାଉସୀ ଆସିଲେ କେଉଁଠୁ ? ପ୍ରକାରାନ୍ତରେ ଅଦ୍ୱୈତବାଦୀମାନେ କହନ୍ତି, ପୁରୁଷୋତ୍ତମଙ୍କର ପିତା ସବିତୃ ଓ ମାତା ରାତ୍ରି । ସେ ସ୍ୱୟଂ କାଳ । "କାଳୋବୈ ପୁରୁଷଃ ମହତ୍" । ମାତ୍ର ଏହା ନିଧାର୍ଯ୍ୟ ଶାସ୍ତ୍ର ବଚନ ନୁହେଁ । ତେବେ ମାଉସୀ ମା ଆସିଲେ କୁଆଡୁ ? ମାତୃ ଭଗ୍ନୀକୁ ମାତୃସ୍ୱସା ବା ମାଉସୀ କୁହାଯାଏ । ଜଗନ୍ନାଥ ପ୍ରଥମେ ସ୍ଥାପନ ହେଲାବେଳେ ଯଜ୍ଞ ଅନୁଷ୍ଠିତ ହୋଇ ଯଜ୍ଞ ମଧ୍ୟରୁ ପ୍ରକଟିତ ହେଲେ । ତେଣୁ ସେ ଯଜ୍ଞୋଦ୍‌ଭବ । ଯଜ୍ଞ ଜଗନ୍ନାଥଙ୍କର କଳ୍ପିତ ଜନକ । ଯଜ୍ଞଙ୍କର ପତ୍ନୀ ସ୍ୱାହା ଓ ଯଜ୍ଞଙ୍କର ଶକ୍ତି ଯୂପର ପ୍ରତୀକ ଅଟେ । ଜଗନ୍ନାଥଙ୍କ ଯଜ୍ଞର ପ୍ରତିଷ୍ଠିତ ଯୂପଙ୍କର ନାମ "ଅର୍ଦ୍ଧଶୋଷଣୀ" ବା 'ଅର୍ଦ୍ଧାଶନୀ" । ସେହିଠାରେ ଯଜ୍ଞର ଉଦକ ଅର୍ପିତ ହୋଇଥିଲା ବୋଲି ସେ ଏପରି ନାମ ବହନ କରିଛନ୍ତି । ସେ ଯଜ୍ଞ ପତ୍ନୀ ସ୍ୱାହାଙ୍କର ପ୍ରତୀକ ବିଗ୍ରହ । ରହସ୍ୟମୟ ଏ ବିଗ୍ରହଙ୍କ ଉପରକୁ ସୁଭଦ୍ରାଙ୍କର ସାଦୃଶ୍ୟଥିବା ଏକ ଶାସ୍ତ୍ରୀୟ ଦେବୀମୂର୍ତ୍ତି ପ୍ରସ୍ତର ନିର୍ମିତ ଭାବରେ ଅଛନ୍ତି । ବାସ୍ତବରେ ମହାଯଜ୍ଞର ସହଜାତ ଶକ୍ତି ଲୋକମତରେ ମାଉସୀ ମା' । ସ୍କନ୍ଦପୁରାଣ ତାଙ୍କୁ ଅର୍ଦ୍ଧାଶନୀ କହିଛନ୍ତି । ତାଙ୍କର ଧାନରୁ

- ଉତ୍କଳ ପ୍ରସଙ୍ଗ

ଜଣାପଡ଼େ, ସେ ଦ୍ୱିଭୁଜା, ମାଳା ଓ ଅଭୟ ମୁଦ୍ରା ବିଭୂଷିତା । ବିଷ୍ଣୁଙ୍କର ପ୍ରିୟଦେବୀ ଓ ପ୍ରଳୟବାରି ଶୋଷଣକାରିଣୀ ।

ଦ୍ୱିଭୁଜା ସୌମ୍ୟ ବଦନାଂ — ଅଭୟ ଅକ୍ଷଧାରିଣୀ
ବିଷ୍ଣୁପ୍ରିୟାଙ୍ଗସମ୍ଭୁତା — ପ୍ରଳୟବାରି ଶୋଷିକା
ନାନା ବସନ ଭୂଷିତାଂ — ଆର୍ତ୍ତତ୍ରାଣ ପରାୟଣୀ
ଅର୍ଦ୍ଧାଶନୀ ନମୋଽସ୍ତେତୁ — ଭକ୍ତାନାମଭୟପ୍ରଦାନୀ ।

ମହାପ୍ରଭୁଙ୍କ ବାହୁଡ଼ା ଦଶମୀ ଦିନ ଯଜ୍ଞ ପୁରୋଡ଼ାସ ସମର୍ପଣ ବିଧି ଅନୁଷ୍ଠିତ ହୋଇଥାଏ ।

## (୫) ପୁରୀର ଦାହଭୂମି ''ଶ୍ମଶାନ''କୁ ସ୍ୱର୍ଗଦ୍ୱାର କୁହାଯାଏ କାହିଁକି ?

ବ୍ରହ୍ମପୁରାଣ, ସ୍କନ୍ଦପୁରାଣ, ପଦ୍ମପୁରାଣ, କପିଳସଂହିତାମାନେ ପୁରୀ ପୁରୁଷୋତ୍ତମ କ୍ଷେତ୍ରକୁ ମୁକ୍ତି କ୍ଷେତ୍ରବୋଲି କହିଛନ୍ତି । ଏହାର ରହସ୍ୟ ହେଲା, ଭାରତରେ ଲୋକସମାଜରେ ବିଶ୍ୱାସ ପ୍ରତିଷ୍ଠିତ ଅଛି ଯେ, ଯଦି କାହାର ''ଅଳକାନନ୍ଦା'' ବା ଗଙ୍ଗାରେ ଶରୀର ବିସର୍ଜିତ ହୁଏ, ସେ ମୁକ୍ତିଲାଭ କରେ । ଯଦି କେହି ଶ୍ରୀବଦ୍ରଭୂମିରେ ଗୋକୁଳର ଭୂମି ବା ଭୂମିରେ ଦେହତ୍ୟାଗ କରେ, ସେ ମୁକ୍ତ ହୁଏ । କିନ୍ତୁ ପୁରୁଷୋତ୍ତମ କ୍ଷେତ୍ର ପୁରୀରେ ଜଳରେ ହେଉ ବା ଭୂମିରେ ହେଉ ବା ଯେକୌଣସି ସ୍ଥାନରେ ହେଉ, ଦେହତ୍ୟାଗ କଲେ ସେ ମୁକ୍ତିଲାଭ କରେ ।

ଜଳେଚ ବଦରୀ କ୍ଷେତ୍ରେ ସ୍ଥଳେଚ ଗୋକୁଳଂସ୍ତଥା
ଜଳେ ସ୍ଥଳେଚାନ୍ତରୀକ୍ଷେ ମୁକ୍ତି ଶ୍ରୀ ପୁରୁଷୋତ୍ତମେ ।

ପୃଥିବୀର ସବୁଠାରୁ ପବିତ୍ର ବୃକ୍ଷ କଳ୍ପବଟ, ପବିତ୍ରତମ ତୀର୍ଥ ''ତୀର୍ଥରାଜ ମହୋଦଧି''ର ମଧ୍ୟବର୍ତ୍ତୀ ଭୂମି ମହାପ୍ରଳୟରେ ମଧ୍ୟ ନଷ୍ଟ ହୁଏନାହିଁ । ଏଣୁ ଶ୍ରୀମଦ୍ ଭାଗବତ ଏହାକୁ 'ପୃଥିବ୍ୟା ନନ୍ଦନ' ବୋଲି କହିଛନ୍ତି । ଏହି ଶାଶ୍ୱତ ଭୂମିରେ ପ୍ରେତତ୍ୱର ପ୍ରଶ୍ନ ଉଠେନାହିଁ । ତେଣୁ ଏଠାରେ ଶ୍ମଶାନଟି ସ୍ୱର୍ଗଦ୍ୱାର ନାମରେ ପରିଚିତ । ସ୍କନ୍ଦ ପୁରାଣ କହେ,

ନ ପ୍ରେତତ୍ୱ ସ୍ୱର୍ଗଦ୍ୱାରେ ଦାହନାତ୍ତେ କଦାଚନଂ
ଜାୟତେ ମୁକ୍ତି ତଦ୍‌କ୍ଷେତ୍ରେ ସ୍ୱର୍ଗଦ୍ୱାର ପରସ୍ଥଳମ୍ ।

*ପଥୁରିଆ ସାହି, ପୁରୀ*

• • •

# ରଥଯାତ୍ରା

● ଶ୍ରୀ ସୁବାସ ଚନ୍ଦ୍ର ମିଶ୍ର

ଜଗତର ନାଥ ଆହେ ଜଗନ୍ନାଥ
ବଡ଼ ଦେଉଳରେ ରହି
ପତିତ ଜନଙ୍କୁ ଉଦ୍ଧାରିବା ପାଇଁ
ରଥେ ବିଜେ କରୁ ତୁହି ।
ବଡ଼ଦାଣ୍ଡ ଆଜି ଜନଗହଳିରେ
ଦିଶଇ ସାଗର ପରି
ଭକତେ ତୋର ଆନନ୍ଦେ ନାଚନ୍ତି
ନାମ ସଂକୀର୍ତ୍ତନ କରି ।
ଶଙ୍ଖ ହୁଳହୁଳି ଘଣ୍ଟ କାହାଳୀରେ
ବାଜୁଥାଏ ଘନଘନ
ଭକତଙ୍କ ମନ ଉଲ୍ଲାସ ହୁଅଇ
ଦେଖିବେ ଚକାନୟନ ।
ଆଗେ ବଳଭଦ୍ର, ତା'ପରେ ସୁଭଦ୍ରା
ଶେଷେ ଜଗତ-ଗୋସେଇଁ
ମାଉସୀ ଘରକୁ ଗମନ କରିବେ
ତିନିରଥେ ସିଏ ଯାଇ ।
ବରଷକେ ଥରେ ରଥ ଦେଖିଗଲେ
ସବୁ ଦୁଃଖ ଯାଏ ସରି
ରଥ ଦଉଡ଼ିରେ ହାତ ଛୁଇଁ ଦେଲେ
ସବୁ ପାପ ଯାଏ ତରି ।
ଭକତ ଡାକନ୍ତି ଜୟ ଜଗନ୍ନାଥ
ସଂସାରୁ ହେବାକୁ ପାରି
ରଥ, ଜଗନ୍ନାଥ, ଜନତା ମଧ୍ୟରେ
ରଥଯାତ୍ରା ଯାଏ ସରି ।

*ହିନ୍ଦୁ ଦେବୋତ୍ତର କମିଶନରଙ୍କ କାର୍ଯ୍ୟାଳୟ*
*ଓଡ଼ିଶା, ଭୁବନେଶ୍ୱର*



# ତନ୍ତ୍ର ମତରେ ଶ୍ରୀଜଗନ୍ନାଥ

● ଡକ୍ଟର ସିଦ୍ଧାର୍ଥ କାନୁନ୍‌ଗୋ

ଶ୍ରୀଜଗନ୍ନାଥ ଏକ ରହସ୍ୟମୟ ଦେବତା । ଆଦ୍ୟରେ ଶବର ଉପଜାତିର ଠାକୁର ଦାରୁଦେବତା ରୂପେ ପୂଜାପାଉଥିବା ଶ୍ରୀଜଗନ୍ନାଥ ପରେ ପରେ ଶୈବ, ଶାକ୍ତ, ଜୈନ, ବୌଦ୍ଧ ଆଦି ବିଭିନ୍ନ ସମ୍ପ୍ରଦାୟଦ୍ୱାରା ପୂଜିତ ହୋଇ ଆସିଛନ୍ତି । ଗବେଷକମାନେ ତାଙ୍କୁ ଶବରର ଦାରୁଦେବତା, ବୌଦ୍ଧଙ୍କର ତ୍ରିତତ୍ତ୍ୱ, ଜୈନଙ୍କର ତ୍ରିରତ୍ନ, ବୈଷ୍ଣବମାନଙ୍କର ଶ୍ରୀପତି, ଶୈବମାନଙ୍କର ଭୈରବ, ଗାଣପତ୍ୟଙ୍କର ଶ୍ରୀଗଣେଶ ଏବଂ ତାନ୍ତ୍ରିକମାନଙ୍କର ଦକ୍ଷିଣକାଳୀ ଭାବେ ଅଭିହିତ କରିଛନ୍ତି । ବେଦ ଦୃଷ୍ଟିରୁ ପୁଣି ସେ ପ୍ରଣବର ପ୍ରତୀକ । ଏବେ ମଧ ଶୈବ, ଶାକ୍ତ, ବୈଷ୍ଣବ ତଥା ତନ୍ତ୍ରମତର ପୂଜାବିଧି ଶ୍ରୀମନ୍ଦିରରେ ପ୍ରଚଳିତ । ସୁତରାଂ ଜଗନ୍ନାଥଙ୍କୁ ଏକ ନିର୍ଦ୍ଦିଷ୍ଟ ସମ୍ପ୍ରଦାୟର ଠାକୁରଭାବେ ବିବେଚନା କରିବା ଠିକ୍ ନୁହେଁ । ଉପରୋକ୍ତ ବର୍ଣ୍ଣିତ ବିଭିନ୍ନ ଧର୍ମ ତଥା ମତବାଦର ସମନ୍ୱୟରେ ଗଢ଼ିଉଠିଛି ଜଗନ୍ନାଥ ଧର୍ମ ବା ସଂସ୍କୃତି ।

ଶ୍ରୀଜଗନ୍ନାଥ ଧର୍ମ ତନ୍ତ୍ରମତ ଦ୍ୱାରା ବହୁଧା ପ୍ରଭାବିତ ତନ୍ତ୍ରର ଦେବତା ଭାବେ ଶ୍ରୀଜଗନ୍ନାଥ କେଉଁ ସ୍ମରଣାତୀତ କାଳରୁ ଭୈରବଚକ୍ର ଉପରେ ଉପବିବେଶନ ପୂର୍ବକ ସ୍ୱ ମହିମାର ପରାକାଷ୍ଠା ପ୍ରଦର୍ଶନ କରିଆସୁଛନ୍ତି । ଜଗନ୍ନାଥ କୃଷ୍ଣ ବାସୁଦେବ ରୂପେ ପୂଜିତ ହୋଇଥିବା ବେଳେ ତନ୍ତ୍ର ମତର ପ୍ରଭାବରେ ସ୍ଥଳବିଶେଷରେ ବଳଭଦ୍ରଙ୍କୁ ଶୁଭ୍ର ଜ୍ୟୋତିର୍ମୟୀ ତାରା, ଶ୍ରୀ ଜଗନ୍ନାଥଙ୍କୁ ଦକ୍ଷିଣକାଳୀ ଏବଂ ଦେବୀ ସୁଭଦ୍ରାଙ୍କୁ ଅରୁଣବର୍ଣ୍ଣା ଆଦ୍ୟାଶକ୍ତି ଭୁବନେଶ୍ୱରୀ ରୂପେ ପରିକଳ୍ପନା କରାଯାଇଛି ।

ବିଭିନ୍ନ ତନ୍ତ୍ର ଶାସ୍ତ୍ରରେ ବର୍ଣ୍ଣିତ ଉପାଖ୍ୟାନରୁ ଜଣାଯାଏ ଯେ ଓଡ଼ିଶା ତଥା ଶ୍ରୀକ୍ଷେତ୍ର ଏକ ମହାନ ତନ୍ତ୍ରପୀଠ । ଦକ୍ଷଯଜ୍ଞରେ ସତୀଙ୍କ ଦେହାବସାନ ପରେ ତାଙ୍କ ଶବକୁ ସ୍କନ୍ଧରେ ଧାରଣ କରି ଭଗବାନ ଶିବ ଯେତେବେଳେ ତାଣ୍ଡବ୍ୟ ନୃତ୍ୟ ପ୍ରଦର୍ଶନ କଲେ, ସେତେବେଳେ ସତୀଙ୍କ ଶରୀରର ବିଭିନ୍ନ ଅଂଶ ପୃଥିବୀ ବକ୍ଷରେ ପତିତ ହୋଇ ୬୪ଟି ତନ୍ତ୍ରପୀଠ ବା ଶକ୍ତିପୀଠ ସୃଷ୍ଟି ହୋଇଥିଲା । ୪ଟି ମୁଖ୍ୟପୀଠର ବର୍ଣ୍ଣନା କରି "କାଳିକା ପୁରାଣ" କହେ-

" ଓଡ୍ୟାଣ ପ୍ରଥମଂ ପୀଠଂ
ଦ୍ୱିତୀୟଂ କାଳ ଶୈଳକଂ
ତୃତୀୟଂ ପୂର୍ଣ୍ଣପୀଠଂ ତୁ
କାମରୂପଂ ଚତୁର୍ଥକମ୍ ।"

ଓଡ଼ିଶାରେ ତନ୍ତ୍ର ଉପାସନା ଅତି ପ୍ରାଚୀନ । ଓଡ଼ିଶାର ଅନେକ ପୀଠ ଅଦ୍ୟାବଧି ତନ୍ତ୍ର ସାଧନା ସହ ସଂପୃକ୍ତ ଥିଲେ ମଧ ଶ୍ରୀକ୍ଷେତ୍ର ବା ପୁରୀ ଏକ ଶକ୍ତିପୀଠ ଭାବେ ପ୍ରସିଦ୍ଧି ଲାଭ କରିଛି । ସତୀଙ୍କ ଶରୀରର ବିଭିନ୍ନ ଅଂଶ ମଧ୍ୟରୁ ନାଭି ଅଂଶ ନାଭି ଗୟା କ୍ଷେତ୍ର ବିରଜା(ଯାଜପୁର) ଏବଂ ଶ୍ରୀକ୍ଷେତ୍ରରେ ଯୋନି ଅଂଶ ପଡ଼ିଥିଲା । ତେଣୁ ବିଭିନ୍ନ ତନ୍ତ୍ରଶାସ୍ତ୍ରରେ ଶ୍ରୀକ୍ଷେତ୍ର ବିଷୟରେ ବିସ୍ତୃତ ବର୍ଣ୍ଣନା ଦେଖିବାକୁ ମିଳେ । "ଦେବୀ ଭାଗବତରେ ଉଲ୍ଲେଖ ଅଛି-

" ଉତ୍କଳେ ନାଭିଦେଶେ ଚ
ବିରଜା କ୍ଷେତ୍ର ମୁଚ୍ୟତେ,
ବିମଳା ଚ ମହାଦେବୀ
ଜଗନ୍ନାଥସ୍ତୁ ଭୈରବଃ ।"

ନାଭିଦେଶ ଉତ୍କଳର କ୍ଷେତ୍ରନାମ ବିରଜାକ୍ଷେତ୍ର । ଏହି ତନ୍ତ୍ରପୀଠର ଅଧିଷ୍ଠାତ୍ରୀ ବିମଳା ଭୈରବୀ ଅଟନ୍ତି ଏବଂ ଜଗନ୍ନାଥ ହେଉଛନ୍ତି ଭୈରବ ।

ଓଡ଼ିଶାରେ ତନ୍ତ୍ରର ତିନୋଟି ଧାରା ଦୃଷ୍ଟିଗୋଚର ହୁଏ । ସେଗୁଡ଼ିକ ହେଲା (୧) ଆଦିବାସୀ ତନ୍ତ୍ର, (୨)ବୌଦ୍ଧ ତନ୍ତ୍ର (୩) ହିନ୍ଦୁତନ୍ତ୍ର ।

ପୂର୍ବରୁ ଉଲ୍ଲେଖ ଅଛି ଯେ ଆଦ୍ୟରେ ଶବର ଉପଜାତିର ଠାକୁରଭାବେ ଶ୍ରୀଜଗନ୍ନାଥ ଶାବରୀ ତନ୍ତ୍ରରେ ପୂଜା ପାଉଥିଲେ । ଏବେ ମଧ ଏହି ଶାବରୀ ତନ୍ତ୍ରର ପ୍ରଭାବ ବାଣପୁର, ଗଞ୍ଜାମ, କୋରାପୁଟ, ନୟାଗଡ଼, ବଲାଙ୍ଗୀର ଓ ସୋନପୁର ଆଦି ଶାବରୀୟ କ୍ଷେତ୍ରରେ ଅନୁଭୂତ ହୁଏ ।

ଏକଦା ମହାଯାନ ବୌଦ୍ଧ ଧର୍ମ ତନ୍ତ୍ର, ମନ୍ତ୍ର, ମଣ୍ଡଳ, ମୁଦ୍ରା ଧାରଣୀ ଇତ୍ୟାଦି ତାନ୍ତ୍ରିକ ସାଧନା ଦ୍ୱାରା ପ୍ରଭାବିତ ହୋଇଥିଲା । ମହାଯାନ ବୌଦ୍ଧଧର୍ମରେ ତନ୍ତ୍ରର ପ୍ରାଧାନ୍ୟ ହେତୁ ଏହା କାଳକ୍ରମେ 'ମନ୍ତ୍ରଯାନ' ନାମ ଧାରଣ କଲା । ତାନ୍ତ୍ରିକ ବୌଦ୍ଧଧର୍ମ କ୍ରମେ ତିନି ଭାଗରେ ବିଭକ୍ତ ହୋଇ ବଜ୍ରଯାନ, ସହଜଯାନ ଓ କାଳଚକ୍ରଯାନରେ ନାମିତ ହେଲା । ମହାଯାନ ବୌଦ୍ଧଧର୍ମର ଶୂନ୍ୟ ସାଧନା ଦ୍ୱାରା ତନ୍ତ୍ର ସାଧନା ଅଧିକ ଘନିଷ୍ଠତର ହେଲା । ଫଳତଃ କାଳୀ, ନୀଳସରସ୍ୱତୀ, ପର୍ଣ୍ଣଶବରୀ ଇତ୍ୟାଦି ଦେବଦେବୀଙ୍କ ପରିକଳ୍ପନା ହେଲା- ଏପରିକି ବୁଦ୍ଧଙ୍କ ସହ କାଳୀ ମଧ ପୂଜିତା ହେଲେ ।

ସପ୍ତମ/ଅଷ୍ଟମ ଶତାବ୍ଦୀ ବେଳକୁ ମହାଯାନ, ବଜ୍ରଯାନ, ସହଜଯାନ ଓ କାଳଚକ୍ରଯାନରେ ରୂପାନ୍ତରିତ ବୌଦ୍ଧଧର୍ମ, ଉଡ୍ଡିୟାନ ରାଜ୍ୟ ବା ଆଧୁନିକ ଓଡ଼ିଶାରେ ବ୍ୟାପକ ଭାବେ ପ୍ରସାର ଲାଭ କରିଥିଲା । ବୌଦ୍ଧମାନେ ଜଗନ୍ନାଥଙ୍କୁ ସେମାନଙ୍କ ତନ୍ତ୍ରସାଧନାର ଦେବତା ରୂପେ ଆଦରି ନେଉଥିଲେ । ଓଡ଼ିଶାର ତନ୍ତ୍ର ଜଗତରେ ସମ୍ବଲର ରାଜା ଇନ୍ଦ୍ରଭୂତି ବୌଦ୍ଧ ଧର୍ମାବଲମ୍ବୀ ଥିଲେ । ଇନ୍ଦ୍ରଭୂତି ପ୍ରଣୀତ 'ଜ୍ଞାନସିଦ୍ଧି' ଗ୍ରନ୍ଥରେ ଜଗନ୍ନାଥଙ୍କୁ ପ୍ରାର୍ଥନା କରି କହିଛନ୍ତି-

"ପ୍ରଣିପତ୍ୟ ଜଗନ୍ନାଥମ୍ ସର୍ବଜିନ ବରାର୍ଚ୍ଚିତମ୍
ସର୍ବ ବୁଦ୍ଧମୟ ସିଦ୍ଧି ବ୍ୟାପିନଂ ଗଗନୋପମମ୍ ।"

ଏହି ସମୟରେ ରତ୍ନଗିରି, ଲଳିତଗିରି, ଉଦୟଗିରି ଇତ୍ୟାଦି ବୌଦ୍ଧବିହାରମାନ ପ୍ରତିଷ୍ଠିତ ହୋଇଥିଲା ଏବଂ ଏଠାରେ ତାନ୍ତ୍ରିକ ବୌଦ୍ଧ ଧର୍ମର ଚର୍ଚ୍ଚା ହେଉଥିଲା । ପୁନଶ୍ଚ ୮୪ ବୌଦ୍ଧ ସିଦ୍ଧାଚାର୍ଯ୍ୟଙ୍କ ମଧ୍ୟରୁ କାହ୍ନୁପା, ଲୁଇପା, ଶବରୀପା ଇତ୍ୟାଦି ସିଦ୍ଧାଚାର୍ଯ୍ୟମାନେ ଓଡ଼ିଶାରେ ତନ୍ତ୍ର ସାଧନାର ବ୍ୟାପକ ପ୍ରଚାର ଓ ପ୍ରସାର କରିଥିଲେ । କେହି କେହି ଆଲୋଚକ ମତବ୍ୟକ୍ତ କରନ୍ତି ଯେ ଶ୍ରୀ ଜଗନ୍ନାଥ ମନ୍ଦିର, କୋଣାର୍କ ମନ୍ଦିର ଓ ଓଡ଼ିଶାର ଅନ୍ୟାନ୍ୟ ବହୁ ମନ୍ଦିରରେ ଯେଉଁ ଅଶ୍ଳୀଳ ତଥା ନଗ୍ନ ମୂର୍ତ୍ତି ଦୃଷ୍ଟିଗୋଚର ହୁଏ, ତାହା ବୌଦ୍ଧ ତନ୍ତ୍ର ସାଧନାର ପ୍ରଭାବ ବ୍ୟତୀତ ଅନ୍ୟ କିଛି ନୁହେଁ ।

ତନ୍ତ୍ର ମତରେ ଶ୍ରୀଜଗନ୍ନାଥ ଭୈରବ ଓ ବିମଳା ଭୈରବୀ । ରତ୍ନସିଂହାସନ ଏକ ତ୍ରିପୁରାଯନ୍ତ୍ର ଉପରେ ଅଧିଷ୍ଠିତ । ଶ୍ରୀ ଜଗନ୍ନାଥ ମନ୍ଦିରରେ ପଞ୍ଚମକାର ପୂଜାର ନିଦର୍ଶନ ଦେଖିବାକୁ ମିଳେ । ଏହି ପଞ୍ଚମକାର ପୂଜା ମଧ୍ୟରେ ମଦ୍ୟ, ମାଂସ, ମତ୍ସ୍ୟ, ମୁଦ୍ରା ଓ ମୈଥୁନ ପ୍ରଧାନ । ଶ୍ରୀ ମନ୍ଦିରରେ ଏହା ସିଧାସଳଖ ଭାବେ ପ୍ରୟୋଗ ନହୋଇ ଏହାର ଅନୁରୂପ ଭାବେ ଶ୍ରୀ ଜଗନ୍ନାଥଙ୍କ ଭୋଗରେ ବିରିପିଠା, କାଂସ୍ୟପାତ୍ରରେ ପଇଡ଼ପାଣି, ଅଦାପଚ୍ଚା ଖେଚେଡ଼ି ଓ ଘଣ୍ଟାକଳ ଇତ୍ୟାଦି ତାନ୍ତ୍ରିକ ପଞ୍ଚମକାରର ପରିପ୍ରକାଶ ମାତ୍ର । ତନ୍ତ୍ର ମତରେ ଦଶହରା ପର୍ବରେ ସପ୍ତମୀ, ଅଷ୍ଟମୀ ଓ ନବମୀଦିନ ତିନୋଟି ମେଣ୍ଢା ଓ ମାଛ ବଳୀ ବିମଳାଙ୍କ ପାଠରେ ଦିଆଯାଏ ଏବଂ ନିକଟରେ ଥିବା ବିଭିନ୍ନ ଉପଦେବୀ ଛାୟା, ମାୟା, ବ୍ୟାଘ୍ରମୁଖୀ, ସିଂହମୁଖୀ ଓ ଯୋଗିନୀଗଣଙ୍କୁ ଅର୍ପଣ କରାଯାଏ । ଏହାଛଡ଼ା କାକୁଡ଼ିଖାଇ ଠାକୁରାଣୀଙ୍କ ନିକଟରେ ବିମଳାଙ୍କ ଉଦ୍ଦେଶ୍ୟରେ ବହୁ ଛାଗବଳୀ ଦିଆଯାଏ । ଏହା ବାମାଚାରୀ ତାନ୍ତ୍ରିକତା ଅଟେ ।

ତାପରେ ଆସନ୍ତୁ ମହାପ୍ରସାଦକୁ । ବିମଳା ଯେ ତନ୍ତ୍ରର ଦେବୀ– ଏଥିରେ କୌଣସି ସନ୍ଦେହ ନାହିଁ । ଜଗନ୍ନାଥଙ୍କ ପ୍ରସାଦ ବିମଳାଙ୍କୁ ଅର୍ପିତ ହେଲାପରେ ମହାପ୍ରସାଦରେ ପରିଣତ ହୁଏ । ତାନ୍ତ୍ରିକମାନଙ୍କ ମତରେ ମା' ପ୍ରସାଦରୁ 'ମହାପ୍ରସାଦ'ର ଉତ୍ପତ୍ତି । ମହାପ୍ରସାଦର ବିଶେଷତ୍ୱ ଏହି ଯେ ଷଡ଼ାଙ୍ଗନ୍ୟାସ ବିଧି ଦ୍ୱାରା ଏହାର ଅଭକ୍ଷ୍ୟତ୍ୱ ଲୋପ କରାଯାଇ ଏଥିରେ ବ୍ରହ୍ମତ୍ୱ ସଂଯୋଗ କରାଯାଏ । ପୁନଶ୍ଚ ପାକଶାଳାରେ ଥିବା ଚୁଲିର ଛଅଗୋଟି ହିଙ୍କାଥାଏ । ଏହା ଷଟ୍‌କୋଣାତ୍ମକ ଅଗ୍ନିଯନ୍ତ୍ର ନାମରେ ପରିଚିତ । ଏଥିରେ ପାକ କରାଯାଇ ଷଟ୍‌ଚକ୍ରକୁ ଆରୋପିତ କରି ନୈବେଦ୍ୟ ଅର୍ପଣ କରାଯାଏ । ଏହି ଷଟ୍‌ଚକ୍ରଗୁଡ଼ିକ ହେଲା ବ୍ରହ୍ମଚକ୍ର, ଭୈରବୀଚକ୍ର, ପୀଠଚକ୍ର, ନୀଳଚକ୍ର ଓ ଦେବଚକ୍ର । ରତ୍ନବେଦୀ ଭୈରବୀ ଚକ୍ର ଉପରେ ଅଧିଷ୍ଠିତ । ତତ୍‌ଉପରେ ଅଧିଷ୍ଠିତ ସ୍ୱୟଂ ଦାରୁବ୍ରହ୍ମ ନୀଳଚକ୍ର ସ୍ୱରୂପ ଅଟେ ଏବଂ ବଳଭଦ୍ରଙ୍କ ଅଧିଷ୍ଠାନ ଦେବଚକ୍ର ଅଟେ । ଏହି ଷଟ୍‌ଚକ୍ରର ସଂଯୋଗକାରିଣୀ ମହାଶକ୍ତି ହିଁ ହେଉଛନ୍ତି- ଦେବୀ ସୁଭଦ୍ରା । ପୁନଶ୍ଚ ମହାପ୍ରସାଦ କୈବଲ୍ୟ ସ୍ୱରୂପ ଓ ଏହାକୁ ଜାତିଧର୍ମ ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ସେବନ କରିଥାନ୍ତି । ଏ ପ୍ରସଙ୍ଗରେ 'କୁଳାର୍ଣ୍ଣବ ତନ୍ତ୍ର' କହେ–

'ପ୍ରବୃତ୍ତେ ଭୈରବୀ ଚକ୍ରେ
ସର୍ବେ ବର୍ଣ୍ଣାଃ ଦ୍ୱିଜାତୟଃ
ନିବୃତ୍ତେ ଭୈରବୀ ଚକ୍ରେ
ସର୍ବେ ବର୍ଣ୍ଣାଃ ପୃଥକ୍ ପୃଥକ୍ ।"

ବୌଦ୍ଧତନ୍ତ୍ର, ଶାକ୍ତତନ୍ତ୍ର, ଶୈବତନ୍ତ୍ର ଓ ବୈଷ୍ଣବତନ୍ତ୍ର ଦ୍ୱାରା ଶ୍ରୀଜଗନ୍ନାଥ ଧର୍ମ ଯେ ପ୍ରଭାବିତ ହୋଇଛି– ଏହା ଅସ୍ୱୀକାର କରିବାର ଉପାୟ ନାହିଁ । ଏହାର ପ୍ରମାଣ ବହୁ ତନ୍ତ୍ରଶାସ୍ତ୍ରରେ ଦେଖିବାକୁ ମିଳେ । ଉତ୍କଳ ବିଶ୍ୱବିଦ୍ୟାଳୟର ପାଣ୍ଡୁଲିପି ଗ୍ରନ୍ଥାଗାରରେ ସଂରକ୍ଷିତ ତନ୍ତ୍ରସାର ପୋଥିର ଏକ ଚିତ୍ରରେ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ଷୋଡ଼ଶୀର ଧ୍ୟାନ କରୁଥିବାର ଦେଖାଯାଏ । ତନ୍ତ୍ରସାର ପୋଥିର ବିଭିନ୍ନ ଚିତ୍ରରେ ବଗଳା, ତାରିଣୀ,ତାରା, କୁରୁକୁଲ୍ଲା, କାଳୀ, ମହାକାଳୀ, ଦକ୍ଷିଣକାଳୀ, ଶ୍ମଶାନକାଳୀ, ଦୁର୍ଗା ଓ ରାଧାକୃଷ୍ଣ ଧ୍ୟାନ ତାନ୍ତ୍ରିକ ବିଧି ଅନୁସାରେ ପ୍ରଦତ୍ତ ହୋଇଅଛି । ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ହ୍ଲୀଂ, ଶ୍ରୀଂ ଓ କ୍ଲୀଂ ବୀଜ ଯନ୍ତ୍ରରେ ସ୍ଥାପିତ ହୋଇଛନ୍ତି । ଏହାର ବିସ୍ତୃତ ବର୍ଣ୍ଣନା ତନ୍ତ୍ରସାର ପୋଥିରେ ଦେଖିବାକୁ ମିଳିଥାଏ ।

ପୁନଶ୍ଚ ପଞ୍ଚସଖା ଯଥା– ବଳରାମ, ଅନନ୍ତ, ଯଶୋବନ୍ତ, ଅଚ୍ୟୁତ ଓ ଜଗନ୍ନାଥ ବୈଷ୍ଣବ ଧର୍ମାବଲମ୍ବୀ ଥିଲେ । କିନ୍ତୁ ଏମାନଙ୍କ ରଚିତ ବିପୁଳ ସାହିତ୍ୟ ମଧ୍ୟରେ ଯନ୍ତ୍ର, ମନ୍ତ୍ର ଓ ତନ୍ତ୍ରର ବହୁଳ ବର୍ଣ୍ଣନା ଦେଖିବାକୁ ମିଳେ । ଅଚ୍ୟୁତାନନ୍ଦଙ୍କ ରଚିତ ୮୪ ଯନ୍ତ୍ର ଗ୍ରନ୍ଥରେ ତନ୍ତ୍ର, ମନ୍ତ୍ର ଓ ଯନ୍ତ୍ରର ବର୍ଣ୍ଣନା ସହ ବହୁ ଉପଦେଶ ଦେଖିବାକୁ ମିଳିଥାଏ ।

ପଞ୍ଚସଖାଙ୍କ ମତରେ ଶ୍ରୀଜଗନ୍ନାଥ ଉଭୟ ସଗୁଣ ଓ ନିର୍ଗୁଣ ବ୍ରହ୍ମ । ଯନ୍ତ୍ର, ମନ୍ତ୍ର, ତନ୍ତ୍ର ଓ ଛାୟା ହେଉଛି ସଗୁଣ ସାଧନା ଓ ହୃଦସମାଧି ଅନାହ୍ଦ ଜ୍ୟୋତି ଅଟେ ନିର୍ଗୁଣ ସାଧନା– ଏହି ସାଧନା ଦ୍ୱାରା ହିଁ ପରବ୍ରହ୍ମ ସଚ୍ଚିଦାନନ୍ଦଙ୍କ ସତ୍ତା ନିଜ ଶରୀର ମଧ୍ୟରେ ହିଁ ଉପଲବ୍ଧି କରିହୁଏ ।

ଏତଦ୍ ଭିନ୍ନ ଶ୍ରୀ ଜଗନ୍ନାଥଙ୍କ ନବକଳେବର ଓ ରଥଯାତ୍ରା ସମୟରେ ତାନ୍ତ୍ରିକ ବିଭାଗ ଦୃଷ୍ଟିଗୋଚର ହୁଏ ।

ନବକଳେବର ସମୟରେ ଦାରୁ ଅନ୍ୱେଷଣରେ ବାହାରି ଶ୍ରୀଜଗନ୍ନାଥଙ୍କ ସେବକମାନେ କାକଟପୁର ମଙ୍ଗଳାଙ୍କ ନିକଟକୁ ଯାଆନ୍ତି । ସେଠାରେ ପ୍ରତ୍ୟୁଷରୁ ସ୍ନାନାଦି ନିତ୍ୟକର୍ମ ପରେ ଜପ, ତପ କରିବା ସହ 'ସପ୍ତଶତୀ ଚଣ୍ଡୀ' ପାଠ କରନ୍ତି ଏବଂ ରାତିରେ 'ସ୍ୱପ୍ନାବତୀ ମନ୍ତ୍ର' ଜପ କରନ୍ତି । ଉପର ବର୍ଣ୍ଣିତ 'ସପ୍ତଶତୀଚଣ୍ଡୀ' ପାଠ ସହ ବିଭିନ୍ନ ଧ୍ୟାନ, ଧାରଣା ଇତ୍ୟାଦି ତନ୍ତ୍ରାଶ୍ରୟୀ ଅଟେ । ପୁନଶ୍ଚ ମଙ୍ଗଳା ପାଠ ହେଉଛି ଏକ ତନ୍ତ୍ର ପାଠ ।

ଦାରୁର ସନ୍ଧାନ ପରେ ବନଯୋଗ କର୍ମପାଇଁ ଭୂମିଶୋଧନ, ଅଙ୍କୁରାରୋପଣ ଆଦି କାର୍ଯ୍ୟ ସମାପନ ପରେ ତାନ୍ତ୍ରିକ ଯନ୍ତ୍ର କରାଯାଏ । ଏହା 'ମଣ୍ଡଳ' ଭାବେ ପରିଚିତ । ଏହି ମଣ୍ଡଳ ଉପରେ ବିଭିନ୍ନ ଦେବଦେବୀଙ୍କୁ ଆବାହନ କରି ହୋମଯଜ୍ଞ ଆଦି କରାଯାଏ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ତନ୍ତ୍ରର ମୁଖ୍ୟକର୍ମ ରୂପେ ପରିଚିତ ବଳି ଭାବେ ଅତ୍ୟନ୍ତ ଗୋପନୀୟ ଭାବେ ବୃକ୍ଷମୂଳରେ କୁଷ୍ମାଣ୍ଡ ବଳି ଦିଆଯାଏ ।

ତନ୍ତ୍ର ମତ ଅନୁସାରେ ତନ୍ତ୍ର ସାଧନାର ସମସ୍ତ କାର୍ଯ୍ୟ ଦେବୀ ପୀଠ ବା ଶ୍ମଶାନ ନିକଟରେ ସମ୍ପନ୍ନ କରାଯାଏ । ଶ୍ରୀ ଜଗନ୍ନାଥଙ୍କ ମୂର୍ତ୍ତି ନିର୍ମାଣଠାରୁ ଆରମ୍ଭ କରି ମୂର୍ତ୍ତି ପ୍ରତିଷ୍ଠା ଆଦି ସମସ୍ତ କାର୍ଯ୍ୟ ଶ୍ମଶାନ ନିକଟରେ କରାଯାଏ । ଏଠାରେ ଚଣ୍ଡୀପାଠ, ଦେବୀ ଭାଗବତ ପାଠ, ରୁଦ୍ରାଭିଷେକ ଓ ଅଷ୍ଟଚଣ୍ଡୀଙ୍କୁ ପୂଜା କରାଯାଏ । ଏହାପରେ

ଉତ୍କଳ ପ୍ରସଙ୍ଗ

ଅଶୀଟିପୋଇଙ୍କୁ ବଳି ଓ ଗୁପ୍ତ କର୍ମ ଭାବେ ପ୍ରତିଷ୍ଠା ମଣ୍ଡପର ଈଶାଣ କୋଣରେ ମାଗୁର ଓ ଶୋଲ ମାଛର ବଳି ଦିଆଯାଇ ଉଭୟ ମାଛ ଓ ...ନ୍ଦ ବରାହୀ, କୌମାରୀ ଆଦି ନବଶକ୍ତିଙ୍କୁ ଉତ୍ସର୍ଗ କରାଯାଏ । ଏସବୁ ...ର୍ଯ୍ୟ ତାନ୍ତ୍ରିକ ମତାନୁସାରେ ସଂପନ୍ନ କରାଯାଏ ।

ଏହାପରେ ଆସନ୍ତୁ ରଥଯାତ୍ରାକୁ । ଆଷାଢ଼ ମାସରେ ଅନୁଷ୍ଠିତ ଏହି ରଥଯାତ୍ରାକୁ ନବଦିନ ଯାତ୍ରା ମଧ କୁହାଯାଏ । ତାନ୍ତ୍ରିକ ମତରେ 'ନ' ସଂଖ୍ୟାଟି ଅତି ଶୁଭ ଓ ଶ୍ରେଷ୍ଠ ସଂଖ୍ୟା ଅଟେ । ପୁନଶ୍ଚ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରାରେ ସୁଭଦ୍ରାଙ୍କ ରଥରେ ବଜ୍ର ବା ଲିଙ୍ଗରୂପୀ ସୁଦର୍ଶନଙ୍କୁ ରଖାଯାଇଥାଏ । ଏସବୁ ବଜ୍ରଯାନର ପ୍ରଭାବ ବ୍ୟତୀତ ଅନ୍ୟ କିଛି ନୁହେଁ ।

ସାଂଖ୍ୟ ଦର୍ଶନର ପ୍ରକୃତି ପୁରୁଷତତ୍ତ୍ୱ ମଧ ଶ୍ରୀଜଗନ୍ନାଥ ଧର୍ମ ତଥା ସଂସ୍କୃତିରେ ନିହିତ । ପୁରୁଷ ଓ ପ୍ରକୃତି ଏକ ଓ ଅଭିନ୍ନ । ଶ୍ରୀଜଗନ୍ନାଥ ହେଉଛନ୍ତି ପରଂବ୍ରହ୍ମ, ଯାହାଙ୍କଠାରେ ପ୍ରକୃତି ଓ ପୁରୁଷର ମିଳନ ଘଟିଛି । ଶାବର ତତ୍ତ୍ୱ, ବୌଦ୍ଧତତ୍ତ୍ୱ ଓ ହିନ୍ଦୁ ବା ବ୍ରାହ୍ମଣ୍ୟତତ୍ତ୍ୱ ଶ୍ରୀଜଗନ୍ନାଥ ଧର୍ମକୁ ପ୍ରଭାବିତ କରିଛି । ଶାବରତତ୍ତ୍ୱ ଯୁଗରେ ସେ 'ଶବରୀନାରାୟଣ', ବୌଦ୍ଧତତ୍ତ୍ୱ ଯୁଗରେ 'ବୁଦ୍ଧ' ଓ ହିନ୍ଦୁ ତତ୍ତ୍ୱ ଯୁଗରେ ସେ ଜଗନ୍ନାଥ ରୂପେ ପୂଜା ପାଉଛନ୍ତି । ବିମଳା ବୌଦ୍ଧତତ୍ତ୍ୱ ଦେବୀ । ଜଗନ୍ନାଥ ହେଲେ ଭୈରବ ଓ ବିମଳା ହେଲେ ଭୈରବୀ ।

ଶ୍ରୀଜଗନ୍ନାଥ ମନ୍ଦିରରେ ତନ୍ତ୍ରର ପ୍ରଭାବକୁ ଅସ୍ୱୀକାର କରାଯାଇ ନପାରେ । ମାତ୍ର କେଉଁ ତତ୍ତ୍ୱ ଦ୍ୱାରା ଏହା ବିଶେଷଭାବେ ପ୍ରଭାବିତ, ଏହା ବ୍ୟକ୍ତ କରିବା କଷ୍ଟସାଧ ବ୍ୟାପାର ।

*ପଠାଣିଶ୍ଚ ସାମନ୍ତଙ୍କର ପ୍ଲାନେଟୋରିୟମ,*
*ଭୁବନେଶ୍ୱର ୨ ମଣ୍ଡଳ, ଭୁବନେଶ୍ୱର-୪*

# ପ୍ରେମମୟ...

● ଶ୍ରୀ ପ୍ରଫୁଲ୍ଲ କୁମାର ପଣ୍ଡା

ହେ ପ୍ରେମମୟ, ପ୍ରାଣର ଈଶ୍ୱର ;
ସର୍ବ ଘଟେ ପୂରି ରହିଅଛ
ଏହି ବିଚିତ୍ର ଲୀଳା ତୁମର
ପ୍ରେମିକା ରାଧିକା କିମ୍ବା ରୁକ୍ମିଣୀଙ୍କୁ
ଭୁଲି ସର୍ବଶେଷେ
ଧ୍ୟାଇଁ ଚାଲ
ତୁମେ ଅଟ ଏକା ଭକତର ।

ସମାଜର କଳଙ୍କିତ ବ୍ୟାଧି ସବୁ ତୁଟି
ଶ୍ରୀମନ୍ଦିର ପରିତ୍ୟାଗ କରି
ଆଗେଇ ଆସୁଛ ତୁମେ ଦେବାପାଇଁ
ମୁକ୍ତିର ମଶାଲ ।

ଆର୍ଯ୍ୟ ଅନାର୍ଯ୍ୟର ଭେଦଭାବ
ସବୁ ଭୁଲି, ବଡ଼ଦାଣ୍ଡେ ଭକ୍ତ ବୃନ୍ଦ ଦେଖିବାକୁ
ତୋ ଚକା ଆଖିର ଖେଳ ।

ହେ ଉତ୍କଳ ଆରାଧ ଦେବତା
ବଇଶୀ ପାହାଚ ପରେ
ମୁକ୍ତିର ଚାହିଁଥା ହଲେଇ
ବିଶ୍ୱାସର ଅଭୟ ମୁଦ୍ରାରେ
ନଦିଘୋଷେ ବିରାଜିତ କରି
ବାଣ୍ଟିଦିଅ ଶାନ୍ତି ମୈତ୍ରୀ ପ୍ରୀତି
ମୁକ୍ତିର ପସରା ।
କଳୁଷିତ ହୃଦୟରୁ ଧୋଇ ଦେଇ
ଭେଦ ଭାବ ସବୁ ।
ସମ୍ମୋହନେ ମଜି ମଜି ସର୍ବେ
ଉତ୍‌ଫୁଲ୍ଲେ ଦେଖନ୍ତି
ଏ ଲୀଳା ତୋହର ।

ମାଉସୀର ପୋଡ଼ ପିଠାର ମୋହରେ
ଶରଧାବାଲିର ପ୍ରେମେ
ମଜିବାକୁ ଆସୁ ତୁହି
ବଡ଼ ଦେଉଳକୁ କରି ଶୁନ୍‌ଶାନ୍,
ଭରିବାକୁ ଶୀତଳ ଚନ୍ଦନ
ଭକତର ବିବଶ ଦେହରେ ।

ତେଣୁ ନାହିଁ ମୋର ଅଭିମାନ
ନାହିଁ ଦୁଃଖ, ନାହିଁ ମୋର
ତିଳେ ମନସ୍ତାପ, ଯେହେତୁ ତୁ
ଆର୍ତ୍ତତ୍ରାଣ, ଅନ୍ତର୍ଯ୍ୟାମୀ
ପାଇବାକୁ ତୋ ଚରଣ ସ୍ପର୍ଶ
ଅପେକ୍ଷା ମୋ ତୋ ସିଂହଦ୍ୱାରରେ ।

*ପଣସ ବନ୍ଧ, ବାଘମାରି, ଖୋର୍ଦ୍ଧା*

# ଭକ୍ତି

● ଶ୍ରୀ ରମାରମଣ ଭୋଇ

କି ନାମେ ତୁମକୁ ଡାକିବି ମୁଁ ପ୍ରଭୁ
ତୁମେତ ସବୁରି ନାମ
କି ଦେଇ ପୂଜିବି ତବ ଶ୍ରୀଚରଣ
ସବୁପରା ତୁମଦାନ ।୧।
ଭକ୍ତି ମୋ ଚନ୍ଦନ, ଭକ୍ତି ମୋର ଫୁଲ,
ଭକ୍ତି ମୋ ତୁଳସୀ ଧୂପ
ସକାଳ ସନ୍ଧ୍ୟାରେ ସତ୍ୟ ମୋର ବାକ୍ୟ
ତବ ଆରତୀର ଦୀପ ।୨।
ସତ୍ୟ ମୋ ଭକତି, ସତ୍ୟ ମୋ ଶକତି
ସତ୍ୟ ମୋ ପଥ ମୁକତି
ସତ୍ୟ ବଳେ ପ୍ରଭୁ ଅଗାଧ ସାଧନ
ମନେ ଭରିଦେବ ଶାନ୍ତି ।୩।
ଚନ୍ଦ୍ର ସୂର୍ଯ୍ୟ ସତ୍ୟ, ଧର୍ମ ଅଟେ ସତ୍ୟ
ସତ୍ୟ ଏକା ତୁମେ ପ୍ରଭୁ
ତୁମରି ଆଶିଷେ ଦୁନିଆଁ ବୁକୁରୁ
ପାପତାପ ସବୁ ଲିଭୁ ।୪।
ଦେଶ ଜାତି ପାଇଁ ଜାଗି ଉଠୁ ପ୍ରାଣ
ସତ୍ୟକୁ ପକାଇ ମନ
ବଞ୍ଚିଥିବା ଯାଏ ତବ ପାଶେ ପ୍ରଭୁ
ଏତିକି ମୋ ନିବେଦନ ।୫।

*କ୍ୱାର୍ଟର୍ସ-୧, ଅଫିସ୍,*
*ଏ.ଜି. ଅଫିସ, ଭୁବନେଶ୍ୱର*

**ଉତ୍କଳ ପ୍ରସଙ୍ଗ**



# ଶ୍ରୀଜୀଉଙ୍କ ଗଜାନନ ବେଶ

● ଶ୍ରୀ ଲକ୍ଷ୍ମୀନାରାୟଣ ରାଉତରାୟ

ଦେବ ସ୍ନାନ ପୂର୍ଣ୍ଣିମା ଦିନ ସ୍ନାନ ମଣ୍ଡପରେ ସ୍ନାନାଦି ସମାପନ ପରେ ଶ୍ରୀଜୀଉ ଗଜାନନ ବେଶ ଧାରଣ କରିଥାନ୍ତି । କଳିଯୁଗରେ ଶ୍ରୀଜୀଉଙ୍କର ଗଜାନନ ବେଶ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ଓ ଗଭୀର ଭାବାତ୍ମକ ଅଟେ । ଦୁଃଖ ଶୋକରେ ପ୍ରପୀଡ଼ିତ ମାନବର ଉଦ୍ଧାରଣ ପାଇଁ ଶ୍ରୀଜଗନ୍ନାଥ ଗଜାନନ ବେଶରେ ଭୂଷିତ ହୋଇ ଭାଗବତରେ ବର୍ଣ୍ଣିତ ଗଜ ଉଦ୍ଧାରଣ ପ୍ରସଙ୍ଗକୁ ଅନୁଧ୍ୟାନ କରିବାକୁ ପ୍ରୋତ୍ସାହିତ କରିଛନ୍ତି ।

ଶ୍ରୀମଦ୍‌ଭାଗବତ ଅଷ୍ଟମ ସ୍କନ୍ଧରେ ବର୍ଣ୍ଣିତ-ପୂର୍ବକାଳରେ ତ୍ରିକୂଟ ନାମରେ ଏକ ପର୍ବତ (ଅୟୁତ ଯୋଜନ ବିସ୍ତୃତ, ସର୍ବ ସମ୍ପଦରେ ପରିପୂର୍ଣ୍ଣ ଥିଲା । ଏହି ପର୍ବତ ସୁନା,ରୁପା, ମଣି ମାଣିକ୍ୟାଦିରେ ଭରପୂର ଥିଲା । ଏହାର ଚତୁଃପାର୍ଶ୍ୱରେ ବିଶାଳ ଜଳ ଭଣ୍ଡାର ଘେରି ରହିଥିଲା । ପର୍ବତଟି ଘଞ୍ଚ ଅରଣ୍ୟରେ ଭରି ହୋଇ ଦୂରକୁ ଶ୍ୟାମଳବର୍ଣ୍ଣ ଭୂମି ଭଳି ଶୋଭାପାଉଥିଲା । କ୍ଷୀରନିର୍ମଳ ଜଳ ପର୍ବତର ପାଦଦେଶକୁ ଧୋଇ ଦେଉଥିଲା । ଅରଣ୍ୟରେ ନାନା ଜାତିର ପଶୁପକ୍ଷୀ ବାସ କରୁଥିଲେ । ଅରଣ୍ୟର ଶୋଭା ଅତ୍ୟନ୍ତ ଲୋଭନୀୟ ଥିବାରୁ ଅପସରା, ଗନ୍ଧର୍ବ, କିନ୍ନର, ଦେବ କାମିନୀଗଣ ପ୍ରତ୍ୟହ ସ୍ନାନ କରୁଥିଲେ । ସେମାନଙ୍କ ଅଙ୍ଗ ଗନ୍ଧ ଚନ୍ଦନ ଓ ପାରିଜାତ ପୁଷ୍ପରେ ମଣ୍ଡିତ ହୋଇଥିବାରୁ ପବନରେ ସୁଗନ୍ଧ ଭାସି ଯାଉଥିଲା । ନାନା ପ୍ରକାର ଫୁଲ ଓ ଫଳରେ ପର୍ବତଟି ଅଳଙ୍କୃତ ହୋଇଥିଲା । ଏକ ହସ୍ତୀ ଦଳରେ ଗୋଟିଏ ମହାବଳବନ୍ତ ଦନ୍ତାହସ୍ତୀ ଥିଲା । ଅନନ୍ତର ଏକ ଦିନ ଗଜପତି ଗଜ ଯୂଥ ସହିତେ ଜଳ ଭଣ୍ଡାରରେ ପ୍ରବେଶ କରି ସ୍ନାନ କରିଥିଲେ । ଶୀତଳ ଜଳରେ ହସ୍ତୀମାନେ ଜଳ କ୍ରୀଡ଼ାରେ ମତ୍ତ ଥିଲେ । ସେହି ଜଳ ଭଣ୍ଡାରରେ ଗୋଟିଏ ଅତ୍ୟନ୍ତ ବଳଶାଳୀ କୁମ୍ଭୀର ବାସ କରୁଥିଲା । ହସ୍ତୀମାନଙ୍କ ଜଳକ୍ରୀଡ଼ା ଯୋଗୁଁ ମେଘ ଗର୍ଜନ ଭଳି ଶବ୍ଦ ଉଠୁଥିଲା । ଗଭୀର ଜଳ ମଧ୍ୟରୁ କୁମ୍ଭୀର ବାହାରି ଆସି ଗଜପତିର ଗୋଟିଏ ଗୋଡ଼କୁ ନେଇ ଗଲା । ଜଳ ମଧ୍ୟରେ କୁମ୍ଭୀର ଅତ୍ୟନ୍ତ ବଳଶାଳୀ ଥିବାରୁ ଗଜପତିକୁ ଗଜଯୂଥ ଏକ ସଙ୍ଗେ ଟାଣିଲେ ମଧ୍ୟ ଶତ୍ରୁର କବଳରୁ ଉଦ୍ଧାର କରିପାରିଲେ ନାହିଁ ।

ଗଜପତି ଆସନ୍ନ ମୃତ୍ୟୁକୁ ଦେଖିପାରିଲା । ଏପରି ଅବସ୍ଥାରେ ଗଜ କୁମ୍ଭୀର ସଙ୍ଗେ ବହୁଦିନ ଧରି ଯୁଦ୍ଧରେ ବ୍ୟାପୃତ ରହିଲା । ଧୀରେ ଧୀରେ ଗଜପତି ବଳହୀନ ଓ କ୍ଲାନ୍ତ ହୋଇ ପଡ଼ିଲା । ପୂର୍ବ ଜନ୍ମର ପୁଣ୍ୟ ଫଳରେ ଗଜ ମଧ୍ୟରେ ତାର ବୁଦ୍ଧି ସ୍ଫୁରଣ ହେଲା । ଘୋର ସଙ୍କଟରୁ ଉଦ୍ଧାର ପାଇଁ ସେ ଶ୍ରୀହରିଙ୍କର ଶରଣାପନ୍ନ ହେଲା ।

ନାରାୟଣ ଗଜରାଜର ସ୍ତୁତିରେ ପ୍ରୀତ ହୋଇ ଗରୁଡ଼ ପୃଷ୍ଠରେ ଆରୋହଣ କରି ଗଜପତିକୁ ଦର୍ଶନ ଦେଇଥିଲେ । ସୁଦର୍ଶନ ଚକ୍ରରେ କୁମ୍ଭୀରର ମସ୍ତକ ଛେଦନ କରି ସ୍ୱହସ୍ତରେ ଗଜରାଜର ପାଦକୁ କୁମ୍ଭୀର ପାଟି ମଧ୍ୟରୁ ଉଦ୍ଧାର କରିଥିଲେ ।

ସୁଦର୍ଶନ ଚକ୍ରରେ ମୃତ୍ୟୁ ହୋଇଥିବାରୁ କୁମ୍ଭୀର ମଧ୍ୟ ମୋକ୍ଷ ପାଇଥିଲା । ହୁ ହୁ ବୋଲି ଗୋଟିଏ ଗନ୍ଧର୍ବ ଶାପ ବଳରେ କୁମ୍ଭୀର ହୋଇଥିଲେ । ପୂର୍ବ ଜନ୍ମରେ ଗଜପତି ଦ୍ରାବିଡ଼ଦେଶର ରାଜା ହୋଇଥିଲେ । ତାଙ୍କର ନାମ ଥିଲା ଇନ୍ଦ୍ରଦ୍ୟୁମ୍ନ । ସେ ବିଷ୍ଣୁ ଭକ୍ତ ଥିଲେ । ଥରେ ସେ ରାଜା ଗୋଟିଏ ଦିନ ବିଷ୍ଣୁ ପୂଜାର ଆୟୋଜନ କରିଥିଲେ । ଅନେକ ସାଧୁଜନ, ମୁନି ଋଷି ପୂଜାକୁ ନିମନ୍ତ୍ରିତ ହୋଇଥିଲେ । ରାଜା ବିଷ୍ଣୁ ଭଜନରେ ଏକାନ୍ତ ଭାବେ ନିମଗ୍ନ ହୋଇ ପଡ଼ିବାରୁ ଅଗସ୍ତି ଋଷି ବିଜେ କରିବା ସମୟରେ ଭଜନରୁ ଉଠି ସ୍ୱାଗତ ସମ୍ଭାଷଣ କଲେ ନାହିଁ । ଅଗସ୍ତି ଋଷି ଓ ଅନ୍ୟ ଋଷିଗଣ ଅପମାନ ବୋଧ କରି ରାଜାଙ୍କୁ ଗଜ ହେବା ପାଇଁ ଆରଜନ୍ମରେ ଗଜ ହୋଇ ଜନ୍ମ ଗ୍ରହଣ କରିବା ପାଇଁ ଅଭିଶାପ ଦେଲେ । ହ୍ରଦ ଜଳରେ କୁମ୍ଭୀର ଗ୍ରାସ କରିବ ବୋଲି ଅଭିଶାପ ମଧ୍ୟ ଦେଇଥିଲେ । ହରିଙ୍କୁ ଭଜନ କରୁଥିବାରୁ ରାଜା ଗଜ ଯୋନିରେ ଜନ୍ମ ଗ୍ରହଣ କରି ମଧ୍ୟ ହରିଙ୍କୁ ସ୍ମରଣ କରି ଗଜ ଯୋନିରୁ ମୁକ୍ତି ପାଇଥିଲେ । ଏଠାରେ ତାତ୍ପର୍ଯ୍ୟ ଏହି ଯେ କଳିଯୁଗରେ ମାନବମାନେ ଅହଂକାର ବଶବର୍ତ୍ତୀ ହୋଇ ନାରାୟଣଙ୍କୁ ସମ୍ପୂର୍ଣ୍ଣ ଭୁଲିଗଲେ । କଳିଯୁଗର ପ୍ରାଦୁର୍ଭାବରେ ନାନା ପ୍ରକାର ଅନ୍ୟାୟ, ଅନୀତି, ହିଂସା, ଅତ୍ୟାଚାର ଫଳରେ ଦୁଃଖ ଶୋକରେ ମାନବ ସମାଜ ସର୍ବଦା ପ୍ରପୀଡ଼ିତ ହୋଇ ପଡ଼ିଛି । ନାନା ପ୍ରକାର ରୋଗ ବ୍ୟାଧିରେ ଆକ୍ରାନ୍ତ ହୋଇ ମନୁଷ୍ୟ ମୃତ୍ୟୁ ବରଣ କରୁଛି । ଜନ୍ମ ମୃତ୍ୟୁ ଚକ୍ରରୁ ପରିତ୍ରାଣ ପାଇଁ ଶ୍ରୀହରିଙ୍କୁ ସ୍ମରଣ କରୁ ନାହିଁ । ପୂର୍ବଜନ୍ମର କିଛିତ ପୁଣ୍ୟ ବଳରେ ଏ ଜନ୍ମରେ ମନୁଷ୍ୟ ଜନ୍ମ ଗ୍ରହଣ କରିଛନ୍ତି । ଗ୍ରାହ ରୂପରେ କଳି ଯୁଗ ମନୁଷ୍ୟମାନଙ୍କୁ ଗ୍ରାସ କରୁଛି । ଏଥିରୁ ମୁକ୍ତି ଲାଭ ପାଇଁ ଶ୍ରୀହରିଙ୍କର ଶରଣାପନ୍ନ ହେବା ବିଧେୟ ।

ଭଗବାନ ଶ୍ରୀକୃଷ୍ଣ କଳିଯୁଗରେ ଜଗନ୍ନାଥଙ୍କ ରୂପରେ ବିଜେ କରି ଭକ୍ତଜନଙ୍କର ହାରି ଗୁହାରି ଶୁଣିବା ପାଇଁ ରଥରେ ବିଜେ କରି ଘୋଷଯାତ୍ରା ସମାପନ କରୁଛନ୍ତି । ପୁରପଲ୍ଲୀରେ ଶ୍ରୀଜଗନ୍ନାଥ ଭକ୍ତି ନାମରେ ବେଶ ପରିଚିତ । ଯେ ଯେଉଁଭଳି ଭାବରେ ଭକ୍ତି ଓ ଶ୍ରଦ୍ଧାରେ ଡ଼ାକିଛି, ସେ ସେପରି ଫଳ ପାଇଛି । ଦାସିଆ ବାଉରିର ଭକ୍ତିରେ ନାରିକେଳ ଗ୍ରହଣ ତାଙ୍କ ପ୍ରଭୁପଣିଆକୁ ସୂଚିତ କରେ । ଭକ୍ତ ସାଲବେଗଙ୍କୁ କୁଷ୍ଠ ରୋଗରୁ ପରିତ୍ରାଣ କରି ସେ ଭକ୍ତମାନଙ୍କ ମନରେ ଅଗାଧ ବିଶ୍ୱାସ ଆଣିଦେଇଛନ୍ତି । ଏହିପରି ଅନେକ ଭକ୍ତ ଶ୍ରୀଜଗନ୍ନାଥଙ୍କର କୃପାରେ ଅନୁଭୂତି ଲାଭ କରି ପାରିଛନ୍ତି । ଅନେକ ଭକ୍ତଙ୍କର ଅନେକ ଅନୁଭୂତି ଲୋକଲୋଚନକୁ ଆସି ପାରିଛି । ଯେଉଁ ଭକ୍ତମାନେ ତାଙ୍କୁ ପ୍ରାଣର ପ୍ରାଣ, ଚକ୍ଷୁର ଚକ୍ଷୁ ଶ୍ରୋତ୍ରର ଶ୍ରୋତ୍ର, ଅନ୍ନର ଅନ୍ନ ଓ ମନର ମନ ବୋଲି ଜାଣନ୍ତି, ସେମାନେ ହିଁ ଶ୍ରୀଜଗନ୍ନାଥଙ୍କର କୃପାଲାଭ କରିଛନ୍ତି ।

ଭଗବାନଙ୍କ ସୃଷ୍ଟିରେ ମନୁଷ୍ୟର ଶକ୍ତି ଅତି ନଗଣ୍ୟ । ଏହି ଜଗତର ସମସ୍ତ ଲୀଳା ଖେଳା ଈଶ୍ୱରଙ୍କ ନିର୍ଦ୍ଦେଶରେ ହିଁ ସମ୍ପାଦିତ ହେଉଛି । ଏ ଜଗତର କର୍ତ୍ତା ଏକ, ଯାହାଙ୍କ ଦ୍ୱାରା ଏ ସୃଷ୍ଟିର ସ୍ଥିତି ଓ ପ୍ରଳୟ ସାଧିତ ହୋଇଥାଏ । ତେଣୁ ଜଗତର ନାଥ ଶ୍ରୀଜଗନ୍ନାଥଙ୍କୁ ଆରାଧନା କଲେ ଗୁଣାଭିମୁଖୀ ମନୁଷ୍ୟ ନିର୍ଗୁଣତାକୁ ପ୍ରାପ୍ତ ହେବ ।

ଶୋଭାଟ ନଗର, କୁଜଙ୍ଗ
ଜଗତସିଂହପୁର

# ଏକବିଂଶ ଶତାବ୍ଦୀ ଓ ପୃଥିବୀ

● ଡାକ୍ତର ଦେବେନ୍ଦ୍ରନାଥ ମାନସିଂହ

ଆମେ ଆଜି ଏକବିଂଶ ଶତାବ୍ଦୀର ପୃଥିବୀକୁ ସାମନା ହେବାକୁ ଯିବାବେଳେ ତା'ର ଚିତ୍ରପଟ କ'ଣ ହେବ, ମନ ଭିତରେ ଉଙ୍କି ମାରୁଛି ।

ପୃଥିବୀ ଧ୍ୱଂସ ହେବାକୁ ଯାଉଥିବା ମଧ୍ୟରାତ୍ରିର ଘଣ୍ଟା ଓ ମିନିଟ୍ କଣ୍ଟା ଏକାଠି ହେବା ପୂର୍ବର ଅବସ୍ଥା... ଟିକ୍ ଟିକ୍ ଟିକ୍ ଟିକ୍ ଘଣ୍ଟାର ପେଣ୍ଡୁଲମ୍‌ର ଦୋଳନର ଶବ୍ଦ କେବେ ହଠାତ୍ ବନ୍ଦ ହୋଇଯିବ ?

ଏ ପୃଥିବୀ ପୃଷ୍ଠରେ ଯେଉଁଦିନ ଜୀବନର ସ୍ପୁରଣ ଘଟିଥିଲା, ତା'ପରେ ଗୋଟିଏ ରଙ୍ଗୀନ ପ୍ରଜାପତିକୁ ଡେଣାମେଲି ଘୁରି ବୁଲିବା ପାଇଁ ଅନେକ ବର୍ଷ ଲାଗିଥିଲା । ସେପରି, ସୁନ୍ଦର ଲାଲ ଗୋଲାପଟିଏ ପ୍ରସ୍ଫୁଟିତ ହେବା ପାଇଁ ଆହୁରି ଅନେକ ବର୍ଷ ଲାଗିଥିଲା ।

ଜେଲିଫିସ୍‌ରୁ ମାମାଲ । ସ୍ତନ୍ୟପାୟୀ ଜୀବ । ବହୁ ବିବର୍ତ୍ତନ ଭିତରେ ମଣିଷ ''ଷ୍ଟୋନ୍ ଏଜ୍''ରୁ ''ଏଟୋମିକ୍ ଏଜ୍'' (ଆଣବିକ ଯୁଗ)ରେ ପଦାର୍ପଣ କରିଛି ।

ଆଜିର ଯୁଗ ''ସୁପର କମ୍ପ୍ୟୁଟର''ର ଯୁଗ । ଜାତକ ଗଣନାଠାରୁ ବହୁ ଜଟିଳ ଗାଣିତିକ ସୂତ୍ରର ସମାଧାନ କରିପାରୁଛି । ଗୋଟିଏ ସେକେଣ୍ଡରେ ନିୟୁତ ନିୟୁତ ଛବିକୁ ଧରିପାରୁଛି । ଆଜି ପୁଣି ଆମେରିକାରେ ''ମେଲିସା'' କମ୍ପ୍ୟୁଟର ଭୂତାଣୁର ଆତଙ୍କ ଦେଖାଦେଇଛି । "E-mail" ଜରିଆରେ Digital Super Highway କୁ ସଂକ୍ରମିତ କରୁଛି । ଆଜିର ଯୁଗ ''ସଫ୍ଟୱେର'' ଟେକ୍‌ନୋଲଜିର ଯୁଗ । ଆଜିର ଯୁଗ ''ଇନ୍‌ଫରମେସନ ଟେକ୍‌ନୋଲଜି''ର ଯୁଗ । ''ଇଂଟରନେଟ''ର ଯୁଗ । ବିଶ୍ୱରେ ଏକ ଦେଶ ଅନ୍ୟଠାରୁ ଖୁବ୍ ନିକଟତର ହୋଇପାରିଛି । ଇନ୍‌ଫରମେସନ ଟେକ୍‌ନୋଲଜି କ୍ଷେତ୍ରରେ ଗବେଷଣା କରୁଥିବା ବୈଜ୍ଞାନିକମାନେ କମ୍ପ୍ୟୁଟର କଲମ ''ସ୍ମାର୍ଟକ୍ୱିଲ'' ଯାହାସବୁ ଲେଖୁଛି, ତାକୁ କିପରି ହାର୍ଡ଼ ଡିସ୍କରେ ସଂଗୃହୀତ କରି ରଖିପାରୁଛି, ତାର ସଫଳତା ହାସଲ କରିଛନ୍ତି ।

ଆଜିର ଯୁଗ ''ରୋବଟ'' ଯନ୍ତ୍ରମାନବର ଯୁଗ । ମଣିଷ ଭଳି ସବୁ ଇନ୍ଦ୍ରିୟ ଚକ୍ଷୁ, କର୍ଣ୍ଣ, ନାସା, ହସ୍ତ ଦ୍ୱାରା ବାହ୍ୟ ଜଗତର ଜ୍ଞାନ ଲାଭ କରିପାରୁଛି ।

ଆଜିର ଯୁଗ ମହାକାଶଯାନର ଯୁଗ । ବେଲୁନରୁ ରକେଟ, କୃତ୍ରିମ ଉପଗ୍ରହ-ସାଟେଲାଇଟ୍ ଉତ୍‌କ୍ଷେପଣର ଯୁଗ ।

ଟେଲିଯୋଗାଯୋଗରୁ ଟେଲିଭିଜନ ଚ୍ୟାନେଲ ବହନ । ସାବେଲାଇଟ ଟେଲିଫୋନ୍ ନେଟୱାର୍କ ବିଶ୍ୱରେ ଯେ କୌଣସି ସହରକୁ ବାର୍ତ୍ତାଳାପ କରିପାରୁଛି । ପୃଥିବୀ ପୃଷ୍ଠରୁ ଅନ୍ୟଗ୍ରହ ଉପଗ୍ରହକୁ ଯାତ୍ରା । ମହାକାଶରେ ଷ୍ଟେସନ ପ୍ରତିଷ୍ଠା । ମାସ ମାସ ଧରି ଘୁରିବାର ନିଶା ।

ଆଜିର ଯୁଗ କୃତ୍ରିମ ହୃତପିଣ୍ଡ, ମୂତ୍ରାଶୟ ଅବା ଶରୀରର ବିଭିନ୍ନ ଅଂଗ, ଭିସେରା ରୋପଣର କାରିଗରୀ କୌଶଳର ସଫଳତାର ଯୁଗ । ମୂକ, ବଧିର, ଅନ୍ଧ, ବିକଳାଙ୍ଗ ପାଇଁ ବଞ୍ଚି ରହିବାର ଆଶାର ସଂଚାର ।

## ''ଟେଷ୍ଟଟ୍ୟୁବ୍'' ବେବିର ଜନ୍ମଦାତାଙ୍କର କାହାଣୀ

ଆମେରିକାର ''ମାସାଚୁସେଟ୍‌ସ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଟେକ୍‌ନୋଲଜି''ର ବୈଜ୍ଞାନିକମାନେ ଏବେ ପ୍ରୟୋଗଶାଳାରେ କୃତ୍ରିମ ନାକ ସୃଷ୍ଟି ପରେ ଏବେ ହାତ ସୃଷ୍ଟି କରିପାରିଛନ୍ତି ।

ଆଜିର ଯୁଗ କ୍ଲୋନିଂ (CLONING) ର ଯୁଗ । ଯେ କୌଣସି ଜୀବକୋଷରୁ ''ଜିନ୍''କୁ (Gene-Unit in chromosome which controls Heredity) ନେଇ ଆଉ ଏକ ଅବିକଳ ଜୀବର ସୃଷ୍ଟି । କଲମୀ ପ୍ରକ୍ରିୟାରେ ''ଡଲି'' ମେଣ୍ଢାର ସୃଷ୍ଟି । ତା'ର ପୁଣି ଛୁଆ ଜନ୍ମ ହେଲାଣି ।

ଆଜି ବ୍ରହ୍ମାଣ୍ଡର ଗୁପ୍ତରହସ୍ୟ ଜାଣିବା ପାଇଁ ''ଆଣ୍ଟିମିଟର'' ''ଫ୍ୟାକ୍ଟ୍ରୀ''ର ପରିକଳ୍ପନା । ଆଣ୍ଟି ହାଇଡ୍ରୋଜେନର ପରମାଣୁ ଗୁଡ଼ିକ ୨୭୩ ଡିଗ୍ରୀ ପର୍ଯ୍ୟନ୍ତ ଶୀତଳ କରାଯାଇ, ତା ଉପରେ ଶକ୍ତିଶାଳୀ ''ଲେଜର ରଶ୍ମି'' ମାଡ଼ କରାଯିବ । ଏଥିରୁ ଉତ୍ପନ୍ନ ଆଣ୍ଟିମିଟର ଇନ୍ଧନରେ ମହାକାଶଯାନର ପରିକ୍ରମାଠାରୁ ଶକ୍ତିଶାଳୀ, ପରମାଣୁ ବୋମାଠାରୁ ଅଧିକ ବିଧ୍ୱଂସୀ ବୋମା ପ୍ରସ୍ତୁତ ହୋଇପାରିବ ।

ଆଜିର ଯୁଗ ସୁପର କମ୍ପ୍ୟୁଟର ଠାରୁ ଆଗେଇ ଯାଇ ଜୈବ କମ୍ପ୍ୟୁଟରର ପରୀକ୍ଷା ନିରୀକ୍ଷାର ବେଳ ।

## ଜୈବ କମ୍ପ୍ୟୁଟର କ'ଣ ?

ସାଧାରଣ ଜିଆ (EARCH WORM) ର ଚିନ୍ତା ଓ ଚେତନାଶକ୍ତି ବର୍ତ୍ତମାନର ସୁପର କମ୍ପ୍ୟୁଟରମାନଙ୍କର ମେଧାଶକ୍ତିଠାରୁ ଅଧିକ ଉନ୍ନତ । ଗୋଟିଏ ନ୍ୟୁରନ୍‌ରୁ ଆଉ ଏକ ନ୍ୟୁରନ୍ ପର୍ଯ୍ୟନ୍ତ ସିଗ୍‌ନାଲ୍ ପ୍ରେରଣ ପ୍ରକ୍ରିୟା ଆମର ଅତ୍ୟାଧୁନିକ କମ୍ପ୍ୟୁଟରଠାରୁ ମଧ ଅଧିକ ।

ଜୀବମାନଙ୍କର ଏପରି କମ୍ପ୍ୟୁଟିଙ୍ଗ୍ କ୍ଷମତାର ସଦ୍ ଉପଯୋଗର ସମୟର ଆହ୍ୱାନ ଆସିଛି ।

ବୈଜ୍ଞାନିକମାନେ ଜୈବ ପଦାର୍ଥ ଓ ଜୈବ ପ୍ରକ୍ରିୟାର ରହସ୍ୟକୁ ଉଦ୍‌ଘାଟନ କରି ଜୀବମାନଙ୍କ ଭଳି ବୁଦ୍ଧିମାନ ଓ ତର୍କକ୍ଷମତା ଅର୍ଜନ କରି ସୁଚିନ୍ତିତ ନିଷ୍ପତ୍ତି ନେଇ ପାରୁଥିବା କମ୍ପ୍ୟୁଟର ପ୍ରସ୍ତୁତି ପାଇଁ ଗବେଷଣା କରୁଛନ୍ତି ।

ଆଜିର ଯୁଗ " Nanotechnology" ର ଯୁଗ । People can scan their brains into a computer and create self replicas.

ପ୍ରଶ୍ନ ଉଠୁଛି, ଏକ ମଣିଷର ''ବ୍ରେନ୍''ର ପ୍ରତିରୂପ କିପରି ହାସଲ କରିପାରିବା ?

ଆମେ ନ୍ୟୁରନ୍‌ରୁ ନ୍ୟୁରନ୍ କନେକ୍‌ସନ ବାଇ କନେକ୍‌ସନ, ବିଟ୍‌ବାଇ ବିଟ୍ କପି କରିପାରିବା ।

ବୈଜ୍ଞାନିକମାନେ Music Synthesisers" ପ୍ରସ୍ତୁତ କରିପାରିଛନ୍ତି ।

"The Age of Spititual Machines" ର ଲେଖକ Raymond Kurzweil ମଣିଷର "Reinstantiation" " Immortality" ର ଯୁଗ ଯୁଗ ପାଇଁ ଅମର ହୋଇ ରହିବାର କଳ୍ପନା କରିଛନ୍ତି ।

ଆଗାମୀ ଅର୍ଦ୍ଧଶତାବ୍ଦୀ ଭିତରେ କମ୍ପ୍ୟୁଟର ମଣିଷଠାରୁ ଅଧିକ ପ୍ରତିଭାବାନ ଶକ୍ତିଶାଳୀ ହେବ । ସଫ୍‌ଟୱେର ମଣିଷର ବ୍ରେନକୁ ଏପରି ଅନୁକରଣ କରିପାରିବ ଯେ, ଫୋନ୍‌ରେ, ଇଣ୍ଟରନେଟ୍‌ରେ ମଣିଷ ଓ କମ୍ପ୍ୟୁଟର ଭିତରେ ପ୍ରଭେଦ ଜାଣିହେବ ନାହିଁ । ଆମେ ମଣିଷ ଭିତରେ ମେସିନର ଏପରି ପ୍ରୟୋଗ କରିବୁ, ଯାହା ଫଳରେ ମଣିଷର ବାର୍ଦ୍ଧକ୍ୟ, ମରଣ ଅବସ୍ଥା ଦୂରେଇ ଯିବ । ଆଜି ଦୀର୍ଘସ୍ଥାୟୀ ଯୌବନ- ଚିର ଯୌବନ । ଯୌବନ ମୁଁ ଯେ ଯୌବନ– " ନବଜାତ ଏକ ଶିଶୁର କପାଳେ ପ୍ରଥମ ସୂର୍ଯ୍ୟ ଚୁମ୍ବନ'' ପାଇଁ ମଣିଷର ମନ ଆଜି ଚହଳ-ବିକଳ ।

ଏକବିଂଶ ଶତାବ୍ଦୀର ପ୍ରଥମ ଦିବସ ୧-୧-୨୦୦୦, ଯେତେବେଳେ ୧-୧-''୦୦'' ଲେଖାଯିବ, ସେତେବେଳେ ୧୯୦୦ ବୁଝାଇବ । ଜାନୁଆରୀ ପହିଲାର ସେଇ ମଧ୍ୟରାତ୍ରି, ଘଣ୍ଟାରେ ବାରଟା ବାଜିବାର ଶବ୍ଦର ତାଳ ସଙ୍ଗେ ସଙ୍ଗେ ବିଶ୍ୱର ସମସ୍ତ କମ୍ପ୍ୟୁଟର ବନ୍ଦ ହୋଇଯିବ । ''ମିଲେନିୟମ୍ ବଗ୍'' (Millennium Bug) ''ଡିଜିଟାଲ ଟାଇମ୍‌ବମ୍''ର ବିସ୍ଫୋରଣ ହେବ । ସମସ୍ତେ ଚେତ୍ରରେ ଆକ୍ରାନ୍ତ ହେବେ ।

ଆମେରିକାରେ ''ଭାଏଗ୍ରା'', DHEA (DIHYDROE PIANDROSTERONE), ''ମେଲା ଟୋନିନ'' (Melatonin), ''ପିରାସେଟାମ୍'' ଆଦି ''ମୃତ ସଂଜୀବନୀ ସୁଧା'' ଭଳି କାର୍ଯ୍ୟ କରୁଥିବା ''ଚିର ଯୌବନ'' ଲାଭ ପାଇଁ ନାମି ଦାମୀ ହରମୋନ ଔଷଧ ପ୍ରାପ୍ତି ପାଇଁ ମଣିଷ ପାଗଳ ।

ଆଜିର ଯୁଗ ''ସିଲିକନ୍ ଏଜ୍'' (SILICON AGE)ର ଯୁଗ । ''ଷ୍ଟୋନ୍ ଏଜ୍'', ''ବ୍ରୋଞ୍ଜ ଏଜ୍'', ''ଇଣ୍ଡଷ୍ଟ୍ରିଆଲ ଏଜ୍'', ଆଇରନ ଓ ଷ୍ଟିଲ୍ ଆଲୁମିନା ଏଜ୍‌ରୁ ଆଗାମୀ ଏକବିଂଶ ଶତାବ୍ଦୀ ହେବ '' ସିଲିକନ ଏଜ ।'' NEW CENTURY WILL BE DEFINED BY SILICON. ସିଲିକନ ''କାଟାରାକ୍ଟ'' ''ସ୍ପାଇନାଲ୍ କର୍ଡ଼'' ଅପରେସନ୍‌ରେ ପ୍ରମୁଖ ଭୂମିକା ଗ୍ରହଣ କରିବ । ଏହା ଏପରି ପ୍ରସ୍ତୁତ ହେବ ଯେ ସୁସ୍ଥ ଟିସୁ ଓ ରୋଗଗ୍ରସ୍ତ ଟିସୁକୁ ଚିହ୍ନିପାରିବ ଏବଂ ଯନ୍ତ୍ରଣାବିହୀନ ଶଲ୍ୟ ଚିକିତ୍ସାରେ ସହାୟକ ହେବ ।

ଆଜି ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍, ଛାତ୍ରାବାସ ତଥା କଲେଜ, ବି... ବ୍ୟାପକ ନିଶା ଔଷଧ (Drug Addiction) ମାଦକ ଦ୍ରବ୍ୟର ବ୍ୟବ... ଗଭୀର ଉଦ୍‌ବେଗ ସୃଷ୍ଟି କରିଛି ।

ସାମାଜିକ ଜୀବନରେ ନୈରାଶ୍ୟ, ଯନ୍ତ୍ରଣା, ଘାତ ପ୍ରତିଘାତର ଶି... ହୋଇ ଆଜିର ଅଂଗ୍ରୀ ଅବା ହଂଗ୍ରୀ ଯୁବକ ମନରେ ହିପି, ଓ... ସଭ୍ୟତାର ପ୍ରଭାବ, ପପ୍, ଡିସ୍କୋ, କାବାରେ, ''ଲିଡୋ''ରେ ନା... ପୁରୁଷର ନଗ୍ନ ନୃତ୍ୟ ଗଭୀର ଭାବାବେଗ ସୃଷ୍ଟି କରୁଛି ।

ଗଂଜେଇ, ଅଫିମ, ହିପ୍‌ଟୋଜିନ୍, କାମୋଜ୍, ବାର୍ବିଚୁରେଟ୍, ମାନ୍‌ଡ୍ରାକସ୍, ଆଁଜେଲଡଷ୍ଟ, ଏଭ, ରାସ୍‌ବେରି, କୋକେନ୍, ଫେନ୍... ( Phenyl Ethyl amine) L.S.D. (Lysergic Acid Diethyl amide), speed, (Amphetamine) ଦେଇ ଯନ୍ତ୍ରଣାକୁ ଭୁଲିବା ପାଇଁ ଚେଷ୍ଟା କରୁଛି ସିଜୋଫ୍ରେନିଆ, ସାଇକୋସିସ୍ । ''ପଏଣ୍ଟ ଅଫ୍ ନୋ ରିଟର୍ଣ୍ଣ'' ସ୍ଥିତି କ'ଣ ପରିବର୍ତ୍ତନ ହୋଇ ପାରିବ ? Everybody who does drugs, knows the crash. ଭାରତୀୟ ... ଶାନ୍ତିନିକେତନ, ଜବାହରଲାଲ ନେହେରୁ ବିଶ୍ୱବିଦ୍ୟାଳୟ ଅକ୍‌ସଫୋର୍ଡ୍, କେମ୍ବ୍ରିଜ୍, ହାବାର୍ଡ୍‌ରୁ ହୁନ୍ ସ୍କୁଲ, ... ଟରେଣ୍ଟୋ, କାନାଡ଼ା, ସିକାଗୋ, ଲଣ୍ଡନରୁ ... ବିଶ୍ୱବିଦ୍ୟାଳୟ । କାହିଁ ଶିକ୍ଷା ?

ଆଜିର ଯୁଗ ''ହାମବର୍ଗର'' (Ham-burger) ଏକ ... ଜେକ୍ । ମଲଟିନେସନାଲ କମ୍ପାନୀ ''ମ୍ୟାକଡୋନାଲ୍ଡ'' ... ରେସ୍ତୋରାଁ ଖୋଲି ଏହାର ବିକ୍ରୀରେ ସଫଳତା ଲାଭ କରି ... ନେଇ ରହୁଛି ।

ଭାରତରେ ''ହ୍ୟାମ୍'' ଘୁଷୁରୀ ମାଂସ ଦେବେଟେ ଗ୍ରହଣୀୟ ନୁହେଁ । ଏଣୁ ''ମଟନ୍- ବର୍ଗର'' ''ଚିକେନ୍-ବର୍ଗର'' ''ଚିଜ୍-ବର୍ଗର'' ... ଗ୍ରାହକମାନଙ୍କ ମନକୁ କିଣି ନେଲେଣି ।

ଆମେରିକାରୁ ଚୀନ୍, ଋଷିଆ, ବିଶ୍ୱର ୧୧୫ଟି ଦେଶର ... ସଂପ୍ରଦାୟକୁ ଆକୃଷ୍ଟ କରୁଛି ହାମ୍‌ବର୍ଗର ।

ଆଜିର ଯୁଗରେ କୃଷି ଉତ୍ପାଦନ ବୃଦ୍ଧି ପାଇଁ ରାସାୟନିକ ... (Chemical Fertiliser) କୃଷି କ୍ଷେତ୍ରରେ ବହୁତ ... ବେଳେ, ଆଜି ପ୍ରାକୃତିକ ସାର ପାଇଁ ''ୱର୍ମ କଲଚର'' (Worm Culture) ''ଆର୍ଥୱାର୍ମ'' ବା ''ଜିଆ''ର ମଳକୁ ସାର ... ବ୍ୟବହାର ପାଇଁ ''ପୁନେ''ରେ ପରୀକ୍ଷା ନିରୀକ୍ଷା ଚାଲିଛି ।

ଆଜିର ଯୁଗ ଅମର ହୋଇ ରହିବାର ଗଭୀର ଆଶା ଓ ... ଯୁଗ । ରୋଗୀର ''କ୍ଲିନିକାଲ ଡେଥ୍ (CLINICAL DEATH) ... ଜୈବିକ (BIOLOGICAL DEATH) ମୃତ୍ୟୁ ପୂର୍ବରୁ ... ଯବକ୍ଷାରଜାନ ଭିତରେ ଯୁଗ ଯୁଗ ଧରି ସାଇତି ରଖିବାର ... ରୋଗର ଅବ୍ୟର୍ଥ ଔଷଧ ଉଦ୍‌ଭାବନ ପର୍ଯ୍ୟନ୍ତ ରୋଗୀର ... ଏ ପ୍ରତୀକ୍ଷା । ''ହୀମ ଶଯ଼ନ'' । ଆମେରିକାରେ ଅଛି Life Extension Society ର ଗଠନ ।

କ୍ରମଶଃ

ଆଜି ବିଶ୍ୱର "CANCER", "AIDS", "IBOLA" ରୋଗରୁ ନିଶ୍ଚିତ ମୁକ୍ତି ପାଇଁ କୌଣସି ଔଷଧ ବାହାରି ନଥିବା ବେଳେ ଆଗାମୀ ଦିନରେ ହୁଏତ ବୈଜ୍ଞାନିକମାନେ ସବୁ ରୋଗର ଉପଶମ ପାଇଁ ଔଷଧ ଉଦ୍ଭାବନ କରିପାରିବେ ? ମଣିଷ ହାମଶୟନରୁ ପୁଣି ଜାଗି ଉଠିବ ?

ଆଜିର ବିଜ୍ଞାନୀ ନିଜ ହାତରେ ମଣିଷଟିଏ ଗଢ଼ି ପୃଥିବୀ ପୃଷ୍ଠରେ ଠିଆ କରାଇବା ନିମନ୍ତେ "ବ୍ରେନ୍" ଟିଏ ପାଇଁ ପରୀକ୍ଷା ନିରୀକ୍ଷା କରୁଛି । ଏତିକି ସଫଳତା ପରେ ଦିନେ ଭଗବାନଙ୍କ ସ୍ଥିତି ସମ୍ପର୍କରେ ମଣିଷ ମନରେ ନାନା ପ୍ରଶ୍ନ ଉଙ୍କି ମାରିବ ?

ବିଜ୍ଞାନର ଏତେ ପ୍ରଗତି, ଉନ୍ନତି ଭିତରେ ଜଗତର ଶ୍ରେଷ୍ଠ ଜୀବ ରୂପେ ପରିଗଣିତ ମଣିଷ ଆଜି ନିଜର ଧ୍ୱଂସ ସାଧନ ପାଇଁ ବିଜ୍ଞାନର ଗବେଷଣା ନାମରେ ସକଳ ବୋଧଶକ୍ତିର ବିଲୋପ ସାଧନ ପାଇଁ କାର୍ଯ୍ୟ କରୁଛି ।

ଆଜି ବିଶ୍ୱ ସଭ୍ୟତା ଉପରେ "ଡିମୋକ୍ଲିସ"ର ଖଡ୍ଗ ଝୁଲୁଛି ।

ପୃଥିବୀରେ ପ୍ରତିମିନିଟ୍‌ରେ ଦୁଇଶହ ଏକର ଚାଷ ଜମି ମୃତ୍ତିକାକ୍ଷୟ ହୋଇ ନଦୀ ସ୍ରୋତରେ ମହାସାଗରରେ ମିଶି ଯାଉଛି ।

ବ୍ୟାପକ ଶିଳ୍ପାୟନ, ସହର, ନଗରରେ ଜନସଂଖ୍ୟା ବୃଦ୍ଧି ବ୍ୟାପକ ଜଙ୍ଗଲ କ୍ଷୟର ମୁଖ୍ୟ କାରଣ । ପୃଥିବୀର ବହୁ ସହର ଆଜି ଧୂଳି ଧୂଆଁରେ ଆକ୍ରାନ୍ତ । ବେଲଜିୟମ, ଲଣ୍ଡନରେ "ସ୍ମଗ" ଦ୍ୱାରା ହଜାର ହଜାର ଲୋକ ମୃତ୍ୟୁ ବରଣ କରୁଛନ୍ତି ।

ପୃଥିବୀରେ କୋଇଲା, ପେଟ୍ରୋଲଜାତ ଦ୍ରବ୍ୟ, ଗ୍ୟାସ ଆଦି ବହୁଳ ବ୍ୟବହାର ଫଳରେ ମଣିଷର ଶ୍ୱାସନଳୀ ଆଜି ସଂକ୍ରମିତ ।

ଏକବିଂଶ ଶତାବ୍ଦୀ ଶେଷ ଭାଗରେ ପୃଥିବୀର ଉତ୍ତାପ ୪.୫ ଡିଗ୍ରୀ ସେଲ୍‌ସିୟସ୍ ବୃଦ୍ଧି ହେବ । ପୃଥିବୀର ଉତ୍ତର, ଦକ୍ଷିଣ ମେରୁରେ ଥିବା ବରଫର ଚଟାଣ ତରଳିଯାଇ ମହାସାଗରର ପତନ ୬୦ ମିଟର ବୃଦ୍ଧି ହେବ । ଟୋକିଓ, ଲଣ୍ଡନ ଭଳି ବଡ଼ ବଡ଼ ସହର ବୁଡ଼ିଯିବ ।

ବ୍ୟାପକ ଜଙ୍ଗଲକ୍ଷୟ ଫଳରେ ଜଳବାୟୁରେ ବିରାଟ ପରିବର୍ତ୍ତନ ଦେଖାଦେଇଛି । ବନ୍ୟା, ମରୁଡ଼ି, ଅତିବୃଷ୍ଟି ବର୍ଷା, ଅଂଶୁଘାତ ଜନ ଜୀବନକୁ ବିପନ୍ନ କରିଛି ।

"ELNINO" ଯାହାକୁ କୁହାଯାଉଛି "Christ Child"– ମହାସାଗରର ଉତ୍ତପ୍ତ ଜଳସ୍ରୋତର ପ୍ରଭାବରେ ପୃଥିବୀର ବାୟୁମଣ୍ଡଳରେ ବ୍ୟାପକ ପରିବର୍ତ୍ତନ ଦେଖାଦେଇଛି । ପୁଣି କୁହାଯାଉଛି ମହାସାଗରର ଜଳସ୍ରୋତ ଯେତେ ପରିମାଣର $CO_2$ ଗ୍ରହଣ କରୁଛି, ତାହା ଯଦି ବାୟୁମଣ୍ଡଳରେ ସଂଚରଣ କରିବ, ଜୀବଜଗତ ଧ୍ୱଂସ ହେବ । ନିଆଁରେ ଜଳିଯିବ । ଫିଲିପାଇନସ୍‌ରେ ଜଙ୍ଗଲ ଜଳୁଛି । ଧୂଆଁରେ ଆକାଶ ପଥ, ଜଳପଥ ବନ୍ଦ ହୋଇଯାଉଛି ।

ବହୁଳ ପ୍ଲାଷ୍ଟିକ୍ ଦ୍ରବ୍ୟର ବ୍ୟବହାର ଫଳରେ ପ୍ଲାଷ୍ଟିକ୍ ମୁଣାରେ ଅଣନିଃଶ୍ୱାସୀ ହୋଇଯାଉଛି ବିଶ୍ୱ । ପ୍ଲାଷ୍ଟିକ୍ ଥରେ ଜନ୍ମ ନେଲେ ତା'ର ଆଉ ମୃତ୍ୟୁ ନାହିଁ । ପରିବେଶକୁ ପ୍ରଦୂଷଣ କରୁଛି ।

ବ୍ୟାପକ ଶୀତତାପ ନିୟନ୍ତ୍ରିତ ଯନ୍ତ୍ରରୁ ନିର୍ଗତ କ୍ଲୋରୋ ଫ୍ଲୁରୋକାର୍ବନ ବାୟୁ ମଣ୍ଡଳରେ ସଂଚରିତ ହେବା ଫଳରେ ମେରୁ ଅଞ୍ଚଳରେ "ଓଜୋନ" ସ୍ତରରେ ଗର୍ତ୍ତ ଦେଖାଦେଇଛି । ଏହା ଫଳରେ ସୂର୍ଯ୍ୟରଶ୍ମିର Ultra Violet ରଶ୍ମିର କୁପ୍ରଭାବ ଜୀବ ଓ ଉଦ୍ଭିଦ ଜଗତ ଉପରେ ପଡ଼ିବ ।

ଆଜି ବିଶ୍ୱର ଅନେକ ଦେଶ ଜନସଂଖ୍ୟାର ବିସ୍ଫୋରଣ, ଖାଦ୍ୟ ସଂକଟ ଓ ବେକାରୀ ସମସ୍ୟା ଭିତରେ ଜର୍ଜରିତ ।

ଜଳ, ବାୟୁ, ଧ୍ୱନିର ପ୍ରଦୂଷଣ ଏକବିଂଶ ଶତାବ୍ଦୀରେ ମଣିଷ ସମାଜର ବିଲୟ ପାଇଁ ହେଉଛି "ସ୍ଲୋ ପଏଜନ" ।

ଆଜି ବିଶ୍ୱରେ ଯେତିକି ପରମାଣୁ ଅସ୍ତ୍ର ମହଜୁଦ୍ ଅଛି, ତାହା ଯଦି ଏକ ଯୁଦ୍ଧରେ ବ୍ୟବହୃତ ହୁଏ ତେବେ ପୃଥିବୀରେ ଏକ ଘନ ଅନ୍ଧକାର ଶୀତ ଋତୁ ସୃଷ୍ଟି ହେବ । ଆମେ ପ୍ରତ୍ୟେକ ଚାରିଟନ୍ ଓଜନର ଡିନାମାଇଟ୍ ଉପରେ ବସିଛୁ । ବିସ୍ଫୋରଣ ହେଲେ ମଣିଷର ଶରୀର ଖଣ୍ଡ ବିଖଣ୍ଡିତ ହୋଇ ମାଟିରେ ପଡ଼ିବ ।

ସାରା ବିଶ୍ୱରେ ବିଷ ବୃଷ୍ଟି ହେବ । ତରଳ ନିଆଁଭଳି ଝକମକ୍ ଜଳରାଶି ଭିତରେ ଛଟପଟ ହୋଇ ମରିଯିବେ ଜଳଜ ପ୍ରାଣୀକୁଳ । ଡେଣା ମେଲାଇ ପକ୍ଷୀମାନେ ଉଡ଼ିବା ପାଇଁ ନଥିବ ନୀଳ ଆକାଶ । କବିର ଚନ୍ଦ୍ରମାର ଜେନାଏ ହସ, ସମୁଦ୍ରର ନିର୍ଜନ ବେଳାଭୂମି, ଝାଉଁବଣ, କୃଷ୍ଣଚୂଡ଼ାର ହସ, ପ୍ରଜାପତିର ରୂପର ସମ୍ଭାର ସବୁ ନିରର୍ଥକ ହୋଇଯିବ । ବର୍ଷା ଋତୁରେ ଗାଁ ଦାଣ୍ଡରେ ଚାଲି ଗୁଲୁ ଗୁଲୁ ସାଧବ ବୋହୂଟି ଆଉ ଦେଖିବାକୁ ମିଳିବ ନାହିଁ । ସୁନ୍ଦର ଗୋଲାପ ଫୁଲଟିଏ ଉପହାର ଦେବାପାଇଁ ଦୁଷ୍ପ୍ରାପ୍ୟ ହେବ ।

ବରଫ ଯୁଗ ପୁଣି ଆସିଯିବ ?

ଆଜିର ଏ ସଂକଟ କାଳରେ ଦାର୍ଶନିକ, ଚିନ୍ତକ ଭକ୍ତକବି ମଧୁସୂଦନ ରାଓଙ୍କ "ଜୀବନଚିନ୍ତା" କବିତା ଆମକୁ ପ୍ରେରଣା ଦେଉ, ଜୀବନର ଘାତ- ପ୍ରତିଘାତର ସାମନା ହେବା ପାଇଁ ।

ରେ ଆତ୍ମନ ! ନିଦ୍ରା ପରିହରି
ଫେଡ଼ି ଚିନ୍ତାର ଲୋଚନ,
କର କର ନିରୀକ୍ଷଣ
ନିଃଶବ୍ଦେ ଜୀବନ ସ୍ରୋତ ଧାଉଁଛି କିପରି
ଭେଟିବାକୁ ମୃତ୍ୟୁସିନ୍ଧୁ କରାଳ ଲହରୀ ।

ରାଜ୍ୟମନ୍ତ୍ରୀ, ଶିକ୍ଷା,
ଓଡ଼ିଶା ସରକାର, ଭୁବନେଶ୍ୱର

ଭକ୍ତ ପ୍ରସଙ୍ଗ

# ମୁଖ୍ୟମନ୍ତ୍ରୀଙ୍କ ଗହଣରେ ଗୋଟିଏ ଦିନ

● ଶ୍ରୀ ଗୁରୁକଲ୍ୟାଣ ମହାପାତ୍ର

ଆମ ରାଜ୍ୟର ଅଦ୍ୱିତୀୟ ଆଦିବାସୀ ନେତାଭାବେ ଏବର ମୁଖ୍ୟମନ୍ତ୍ରୀ ଡ଼ଃ ଗିରିଧର ଗମାଙ୍ଗଙ୍କୁ ଜାଣିଥିଲି । ସେ କେନ୍ଦ୍ରରେ ଗଣଯୋଗାଯୋଗ ମନ୍ତ୍ରୀ ଥିବା ବେଳେ ତାଙ୍କ ସଂସ୍ପର୍ଶରେ ଆସିଥିଲି । କିନ୍ତୁ ତାଙ୍କ ସହ ଗୋଟିଏ ଦିନ ବିତାଇବାର ସୁଯୋଗ କେବେ ଲାଭ କରି ନଥିଲି । ସେପରି ଏକ ସୁଯୋଗ ଉଣ୍ଡୁ ଥାଏ । ସୌଭାଗ୍ୟକ୍ରମେ ଗତ ଜୁନ୍ ୧୯ ତାରିଖରେ, ଲକ୍ଷ୍ମୀପୁର ଉପନିର୍ବାଚନ ପାଇଁ ପ୍ରଚାରର ଅନ୍ତିମ ଦିବସରେ ମୋର ତାଙ୍କ ସହ ଭେଟ ହେଲା । ମୁଁ ତାଙ୍କ ସହ ଦିନଟିଏ କଟାଇବାର ସୁଯୋଗ ପାଇ ନିଜକୁ ଧନ୍ୟ ମନେ କଲି ।

ରାୟଗଡ଼ାରେ ଡ଼ାକ୍ତର ଚୌଧୁରୀଙ୍କ ବାସଭବନ । ଏହି ଆଦିବାସୀ ନେତା ଡ଼ଃ ଗମାଙ୍ଗ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଥିବା ଯୋଗୁଁ ଲକ୍ଷ୍ମୀପୁର ଉପନିର୍ବାଚନରେ ପ୍ରାର୍ଥୀ ହୋଇଥାନ୍ତି । ଗତ ଜୁନ୍ ୨୧ ରେ ନିର୍ବାଚନ ଲାଗି ମୁଖ୍ୟ ନିର୍ବାଚନ କମିଶନ ବିଜ୍ଞପ୍ତି ଜାରୀ କରିଥିଲେ । ନିର୍ବାଚନ ମାତ୍ର ଦୁଇଟି ଦିନ । ଡଃ ଗମାଙ୍ଗ ଖୁବ୍ ବ୍ୟସ୍ତ ଥାଆନ୍ତି । ତାଙ୍କୁ ଘେରିଥାନ୍ତି ତାଙ୍କ ଦଳର କର୍ମୀମାନେ । ଡ଼ଃ ଗମାଙ୍ଗ ଯେତେବେଳେ ମିଲ୍ ଖାଇବା ପରି ଜଳଖିଆ ଖାଉଥାନ୍ତି ଓ ଖାଉ ଖାଉ ଦଳୀୟ କର୍ମୀ ଓ ନେତାଙ୍କ ସହ ତାଙ୍କ ନିର୍ବାଚନର ରଣ କୌଶଳ ସମ୍ପର୍କରେ ଗପୁଥା'ନ୍ତି । ଡ଼ଃ ଗମାଙ୍ଗଙ୍କ ଭାଇ ରାୟଗଡ଼ା ଜିଲ୍ଲା ପରିଷଦର ଅଧ୍ୟକ୍ଷ ଶ୍ରୀ ବିଜୟ ଗମାଙ୍ଗ, ରାଜ୍ୟ ସୂଚନା ଓ ଲୋକସମ୍ପର୍କ ମନ୍ତ୍ରୀ ଶ୍ରୀ ଭୂପିନ୍ଦର ସିଂ, ପୂର୍ବତନ ମନ୍ତ୍ରୀ ଓ ବିଧାୟକ ଶ୍ରୀ ଜୟଦେବ ଜେନା, ସୁପରିଚିତ ଲେଖକ ଓ ଦଳୀୟ ନେତା ଶ୍ରୀ ଅଲଦାପ୍ରସାଦ ରାୟ ପ୍ରଭୃତି ଉପସ୍ଥିତ ଥାଆନ୍ତି । ବାହାରେ 'ଏସିଆନ୍ ଏଜ୍'ର ସାମ୍ବାଦିକ ଅକ୍ଷୟ ଅପେକ୍ଷା କରି ରହିଥାନ୍ତି ।

ଇତି ମଧ୍ୟରେ ମୁଁ ଓ ମୋର ସାମ୍ବାଦିକ ବନ୍ଧୁ ସୌମ୍ୟଜିତ୍ ଘରର ପଛଦ୍ୱାର ଦେଇ ମୁଖ୍ୟମନ୍ତ୍ରୀ ଚାଲି ଯାଉଥିବାବେଳେ ତାଙ୍କୁ ଧରିଲୁ ।

'ଏଥର ଉପନିର୍ବାଚନରେ ନିଶ୍ଚୟ ଜିତିବେ' – ପ୍ରଥମ ସାକ୍ଷାତ ବେଳେ ହିଁ ପ୍ରଶ୍ନ କଲି ତାଙ୍କୁ ।

'ନିଶ୍ଚୟ ମୁଁ ଜିତିବି ।' ସେ ଦୃଢ଼ ଭାବେ କହିଲେ । 'ବିରୋଧୀ ଦଳ ଅଭିଯୋଗ କଲେ ଯେ ମୁଁ ଗୋଟିଏ ଭୋଟରେ କେନ୍ଦ୍ର ସରକାରଙ୍କୁ ହରାଇ ଦେଲି । କିନ୍ତୁ ନିଜ ଦଳ ସପକ୍ଷରେ ଭୋଟ ଦେବା କିଛି ଅନ୍ୟାୟ ଓ ବିଶୃଙ୍ଖଳିତ ଆଚରଣ ନୁହେଁ କି ସାମ୍ବିଧାନିକ ଦୃଷ୍ଟିରୁ ତ୍ରୁଟିପୂର୍ଣ୍ଣ ନୁହେଁ । ପ୍ରତିଟି ଭୋଟର ମର୍ଯ୍ୟାଦା ରହିଛି । ଏପରିକି ଗୋଟିଏ ଅଧିକ ଭୋଟ ପାଇଲେ ମୁଁ ଜିତିବି ଯିବି । ଦୁଃଖର କଥା, ଆଜିକାଲି ଜଣକର ଗୋଟିଏ ଭୋଟକୁ ପ୍ରାୟ କେହି ଗୁରୁତ୍ୱ ଦିଅନ୍ତି ନାହିଁ ।'

'ଏପରି ପରିସ୍ଥିତିରେ ବିରୋଧୀ ଦଳର ଅପପ୍ରଚାର ଆପଣଙ୍କୁ ଅସୁବିଧାରେ ପକାଇବ ନାହିଁତ ?' ମୁଁ ପଚାରିଲି ।

'ନା, ବାବୁ, ନା । ପୂର୍ବରୁ ୧୯୭୨ରୁ ମୁଁ ଏହି ଲୋକସଭା ଆସନରୁ ଲଢ଼ି ଜିତି ଆସୁଛି । ଏଠି ଲୋକେ ମୋତେ ଓ ମୋର ଦଳକୁ ଜାଣିଛନ୍ତି । ଗତ ୧୯୯୮ ର ଲୋକସଭା ନିର୍ବାଚନରେ ମୁଁ ୮୦ ହଜାରରୁ ଅଧିକ ଭୋଟ ବ୍ୟବଧାନରେ ନିର୍ବାଚିତ ହୋଇଥିଲି । ମୁଁ କିନ୍ତୁ ଗତଥର ପ୍ରଚାର ଅଭିଯାନରେ ଯାଇ ନଥିଲି । ଅବଶ୍ୟ ପରୀକ୍ଷାମୂଳକଭାବେ ମୁଁ ଚେଷ୍ଟା କରିଥିଲି । କାରଣ ମୁଁ ଅପ୍ରତିଦ୍ୱନ୍ଦ୍ୱୀ ହେବାକୁ ଇଚ୍ଛା କରୁଥିଲି । କିନ୍ତୁ ମୋର କେତେକ ବନ୍ଧୁ ଏଥିରେ ବାଧା ଦେଲେ । ତଦ୍ୱାରା ଗଣତାନ୍ତ୍ରିକ ମନୋବୃତ୍ତି ବ୍ୟାହତ ହେବ ବୋଲି ସେମାନେ କହିଲେ । ତେଣୁ ମୁଁ ପ୍ରଚାରକୁ ନଯାଇ ପରୀକ୍ଷାମୂଳକ ଭାବେ ଜିତିବାକୁ ଚେଷ୍ଟା କରି ।'

''କିନ୍ତୁ ଆପଣ ସାଂସଦ ଥିବା ବେଳେ ଲକ୍ଷ୍ମୀପୁର ଅଞ୍ଚଳର ଅନେକ ଅଞ୍ଚଳ ମାଡ଼ି ନାହାନ୍ତି ବୋଲି ବିରୋଧୀ ଦଳ ଯେଉଁ ଅଭିଯୋଗ କରୁଛନ୍ତି ?'' ମୁଁ ପ୍ରଶ୍ନ କଲି ।

ସେ ହସି ହସି କହିଲେ-'ଏହି ନିର୍ବାଚନମଣ୍ଡଳୀର ଛୋଟ ଛୋଟ ଅଞ୍ଚଳକୁ ଯଦି ଜଣେ ସରପଞ୍ଚ ସବୁ ସମୟରେ ଓ ସବୁ ଅବସ୍ଥାରେ ସମୟ କରି ନପାରୁଛି, ତାହାହେଲେ ଜଣେ ସାଂସଦ ଯିବା ସମ୍ଭବ କି ? ମୁଁ ଏ ଅଞ୍ଚଳର ଲୋକଙ୍କ ସମସ୍ୟା ଜାଣି ତାହାର ସମାଧାନ ମୋ ଲୋକେ କରିଆରେ କରି ଆସିଛି । କିନ୍ତୁ ଏ ଅଞ୍ଚଳର ଲୋକେ ମୋତେ ବିରୋଧ କରି ନାହାନ୍ତି । ମୁଁ ଏ ଅଞ୍ଚଳର ଲୋକଙ୍କ ସାମାଜିକ ଜୀବନ ପ୍ରଣାଳୀ ସହିତ ଓତଃପ୍ରୋତ ଭାବେ ଜଡ଼ିତ । ଏ ଅଞ୍ଚଳ ଗୁଣାବସ୍ଥାରେ ବଢ଼ିଯାଉ, ଏହା ମୁଁ ଚାହେଁନି ।'

ଅପ୍ରତ୍ୟାଶିତ ଭାବେ ଜଣେ ଦଳୀୟ କର୍ମୀ ସେଠାରେ ପହଞ୍ଚି କହିଲେ ଯେ ଭୁବନେଶ୍ୱରରୁ କେତେଜଣ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱରେ ଥିବା ମନ୍ତ୍ରୀ ନିର୍ବାଚନ ପ୍ରଚାରରେ ଆସୁଛନ୍ତି । ଡ଼ଃ ଗମାଙ୍ଗଙ୍କର ପ୍ରତିକ୍ରିୟା ପ୍ରକାଶ ପାଇଲା -'କାହିଁକି ! ଏଠିକୁ କେହି ଆସିବା ଦରକାର ନାହିଁ, ଏଠାରେ କେହି ଦେଖେଇ ହବା ଅନାବଶ୍ୟକ । ନିର୍ବାଚନ କେଉଁ ଭାବେ ଲଢ଼ିବି, ତାହା ମୋତେ ମାଲୁମ ଅଛି । ମୋ ଦଳୀୟ ପାର୍ଟିରେ ଅନେକ ପଇସା ଜମା କରିବା ବି ଦରକାର ନାହିଁ । ମୁଁ ନିର୍ବାଚନ କମିଶନଙ୍କ ନିକଟରେ ଏ କ୍ଷେତ୍ରରେ ଗୋଟିଏ ଦୃଷ୍ଟାନ୍ତ ସୃଷ୍ଟି କରିବାକୁ ଚାହେଁ ।'

ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ଗମାଙ୍ଗ ଏଠି ମୁଖ୍ୟମନ୍ତ୍ରୀ ଭାବେ ନେଇ ହୋଇ ଆସିଲେ । ଏଠି ଶାସକ ଦଳର ଭାବମୂର୍ତ୍ତି କ୍ରମଶଃ ନଷ୍ଟ ହେଉଥିବା ଓ ଦଳର ଅଧୋଗତି ହେଉଥିବା କଥା ସେତେବେଳେ ପ୍ରାୟ ସମସ୍ତେ ଅନୁଭବ କରୁଥିଲେ ।

ନିର୍ବାଚନ ପ୍ରଚାରର ସେଇ ଅନ୍ତିମ ଦିବସରେ ମୁଖ୍ୟମନ୍ତ୍ରୀ ମୋତେ ପ୍ରଚାର ଅଭିଯାନରେ କାଶୀପୁର ବାହାରିଲେ । ବିରାବରିତ ରାସ୍ତା

ସେ ଜିପ୍‌ରେ ବସି ଯାଉଥାନ୍ତି । ସେ ବସିଥିବା ଜିପ୍‌ର ନମ୍ବର ଥିଲା ଓ.ଏସ୍.କେ. ୭୨୬୧ । ତାଙ୍କ ଗାଡ଼ି ପଛରେ ମାତ୍ର ଗୋଟିଏ ଦୁଇଟି ଗାଡ଼ିଯିବା ଲାଗି ସେ ଇଚ୍ଛା କରୁଥାନ୍ତି । ମୁଖ୍ୟମନ୍ତ୍ରୀଙ୍କ ନିରାପତ୍ତା ବାହିନୀର ଗାଡ଼ିଟି ତାଙ୍କର ଗତିପଥକୁ ଅପେକ୍ଷା କରିଥାଏ । ଅଯଥା ନିର୍ବାଚନ ଖର୍ଚ୍ଚରୁ ରକ୍ଷା ପାଇବା ଡ଼ଃ ଗମାଙ୍ଗଙ୍କର ଉଦ୍ଦେଶ୍ୟ ଥାଏ । ଆମେ ଏକ ପ୍ରେସ୍ କାର୍‌ରେ ଯାଉଥାଉଁ । ଗାଡ଼ି ଆଗ କାଚରେ କାଗଜ ମଡ଼ା ହୋଇ 'ପ୍ରେସ୍' ବୋଲି ଲେଖିଥାଉଁ । 'ଆମ କାର୍‌ର ଖର୍ଚ୍ଚ ଆପଣଙ୍କ ନିର୍ବାଚନ ଖର୍ଚ୍ଚରୁ ବାଦ ପଡ଼ିବ-କାରଣ ପ୍ରେସ୍ ଲେଖା ଯାଇଛି ' ବୋଲି ମୁଁ ମୁଖ୍ୟମନ୍ତ୍ରୀଙ୍କୁ କହିଲି । ସେ ଅଳ୍ପ ହସି ଦେବା ପରେ କହିଲେ -'କିନ୍ତୁ ଆପଣମାନେ କାହିଁକି ମୋ ପଛେ ପଛେ କାଶୀପୁର ଯିବେ ? ମୁଁ ପହଞ୍ଚିବା ପୂର୍ବରୁ ଆପଣ ସେଠିକୁ ଯାଉନାହାଁନ୍ତି ?'

ମୁଁ ତାଙ୍କ କଥା ବୁଝି ପାରିଲି । ଆଦିବାସୀ ଅଧ୍ୟୁଷିତ ଗ୍ରାମାଞ୍ଚଳର ନିଜ ଅଞ୍ଚଳକୁ ଗଲା ବେଳେ ମୁଖ୍ୟମନ୍ତ୍ରୀ ଏକ ବିରାଟ ପଟୁଆର କରି ଆଡ଼ମ୍ବର ଭଙ୍ଗୀରେ ପୂର୍ବତନ କେତେକ ମୁଖ୍ୟମନ୍ତ୍ରୀଙ୍କ ପରି ଯିବାକୁ ଚାହୁଁ ନଥିଲେ ।

କିଛି ସମୟ ପରେ ମୁଁ ଆମ ଗାଡ଼ିର ଡ୍ରାଇଭରକୁ କହିଲି-ରାୟଗଡ଼ା ବସ୍‌ଷ୍ଟାଣ୍ଡକୁ ଚାଲ । କିଛି ଖବର କାଗଜ ଆଣିବା । କିନ୍ତୁ ଖବର କାଗଜ ମିଳିଲାନି । ସରି ଯାଇଥିଲା । ଏହି ଉପନିର୍ବାଚନ ବେଳେ ଖବର କାଗଜ ହକର୍‌ମାନଙ୍କର ବେଶ୍ ଦୁଇପଇସା ହାତକୁ ଆସୁଥିବ ବୋଲି ମୁଁ ଭାବିଲି । ଡ୍ରାଇଭର ବଳରାମକୁ ତେଣୁ କହିଲି, ସିଧା କାଶୀପୁର ଚାଲ । ସୌମ୍ୟଜିତ୍ ମଧ ସେୟା କହିଲେ ।

ମନୋଜ୍ଞ ଘାଟି ଅଞ୍ଚଳ ଦେଇ ଆମ କାର୍‌ଟି ଆଗକୁ ବଢ଼ୁଥାଏ । ସର୍ପିଳ ଗତି ପରି ବଙ୍କା ବଙ୍କା ଘାଟି ରାସ୍ତା । ପର୍ବତର ଶୀର୍ଷସ୍ଥାନକୁ ମେଘ ଯେପରି ଆଲିଙ୍ଗନ କରି ଏକ ଧୂମର ଭ୍ରମ ସୃଷ୍ଟି କରୁଥାଏ । ଏ ଦୃଶ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ ଥାଏ । ଡ୍ରାଇଭର ଗାଡ଼ିର ଗତିକୁ ଧୀର ବେଗରେ ଆଣି ବହୁଦେଲା । ସାମ୍ନାରେ ଦୁଇ ତିନୋଟି ଗାଡ଼ି ଛିଡ଼ା ହୋଇଥାଏ । ଘାଟି ରାସ୍ତା କଡ଼ରେ ଛୋଟ ଗୋଟିଏ ମନ୍ଦିର । ଡ୍ରାଇଭର କହିଲା -ଏ ହେଉଛନ୍ତି ମା' ଶଙ୍କରେଶ୍ୱରୀ । ଘାଟି ରାସ୍ତାରେ ଲୋକଙ୍କୁ ସେ ବିପଦରୁ ଉଦ୍ଧାର କରନ୍ତି । ମୁଖ୍ୟମନ୍ତ୍ରୀ ମା' ଶଙ୍କରେଶ୍ୱରୀଙ୍କଠାରେ ପୂଜାର୍ଚ୍ଚନା ସାରି ବାହାରି ଆସିଲେ । ମୁଁ ଡ୍ରାଇଭରକୁ କହିଲି-ଭିଡ଼ ହେଇଯିବ-ଗାଡ଼ି ଷ୍ଟାର୍ଟ କର । ସେ ଗାଡ଼ି ଷ୍ଟାର୍ଟ କଲା । କିନ୍ତୁ କିଛି ଦୂରରେ ଗୋଟିଏ ଛକ ଦେଖିଲୁ । ଛକର ବାମ ପଟେ ଥିବା ରାସ୍ତାଟି ଯାଇଛି କାଶୀପୁରକୁ । କାଶୀପୁର ସେଠାରୁ ମାତ୍ର ୩୩ କିଲୋମିଟର ଦୂର । ଗୋଟିଏ ବିଧାନସଭା ନିର୍ବାଚନ ମଣ୍ଡଳୀ । କିନ୍ତୁ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନର ଦୂରତା ଏତେ ବେଶୀ ଯେ ତାହା କଳ୍ପନାତୀତ ।

କିନ୍ତୁ ଆମକୁ ସେଇଠୁ ମୁଖ୍ୟମନ୍ତ୍ରୀଙ୍କ ଗାଡ଼ି ପଛେ ପଛେ ଅନୁସରଣ କରିବାକୁ ହେଲା କାଳେ ରାସ୍ତା ଭୁଲିଯିବୁ ବୋଲି । ଇଂରାଜୀ କବି ରବର୍ଟ ଫ୍ରଷ୍ଟଙ୍କର କବିତାର ସେହି ଧାଡ଼ିଟି କେତୋଟି ମନେ ପଡୁଥିଲା ।

' Woods are lovely dark and deep,
But I have promises to keep,
And miles to go before I sleep...'

ଅର୍ଥାତ୍, ଜଙ୍ଗଲ ଅତ୍ୟନ୍ତ ଘନ ଓ ଚିତ୍ତାକର୍ଷକ । କିନ୍ତୁ ଆଖିବୁଜିବା ପୂର୍ବରୁ ଅନେକ କିଛି କରିବାକୁ ଅଛି ।'

ଏପରି ଭାବୁଥାଏଁ-ଆଗରେ ମୁଖ୍ୟମନ୍ତ୍ରୀଙ୍କ ଗାଡ଼ିଟି ଅଟକିଗଲା କିଛି ସମୟ ପାଇଁ । କ'ଣ ହୋଇଛି ବୋଲି ଦେଖିବାକୁ ଗାଡ଼ିରୁ ଓହ୍ଲାଇ ପଡ଼ିଲି । କେହି ଜଣେ ଗଛଟିଏ ହାଣି ଦେଇଥାଏ ଓ ଗଛଟି ରାସ୍ତା ଉପରେ ପଡ଼ି ରାସ୍ତା ଅବରୋଧ କରିଥାଏ । ଏହି ଆଦିବାସୀ ଅଞ୍ଚଳରେ କ'ଣ ବିରୋଧୀ ଦଳ ଏପରି କାଣ୍ଡ କଲା କି ବୋଲି ମନରେ ଶଙ୍କା ପଶିଲା । ଏକଥା ମୁଖ୍ୟମନ୍ତ୍ରୀଙ୍କୁ କହିଲି । ସେ କିନ୍ତୁ କଥା ବୁଲେଇ ଦେଇ ଜଲଦି ତାଙ୍କ ଡ୍ରାଇଭରକୁ ଗାଡ଼ି ଚଳାଇବାକୁ ନିର୍ଦ୍ଦେଶ ଦେଲେ ।

ଆମେ ସେଠୁ ଯାଇ ପହଞ୍ଚିଲୁ ଟିକିରିରେ । ବିରୋଧୀ ଦଳର ପ୍ରାର୍ଥୀଙ୍କ ପୋଷ୍ଟର କାନ୍ଥବାଡ଼ ଯାକ ଭର୍ତ୍ତି ହୋଇଥିଲା । କିନ୍ତୁ ଏଥିରେ ମୁଖ୍ୟମନ୍ତ୍ରୀ ବିବ୍ରତ ହୋଇ ନଥିଲେ । ସ୍ୱଭାବସୁଲଭ ଢ଼ଙ୍ଗରେ ଉତ୍‌ଫୁଲ୍ଲ ମୁଖ୍ୟମନ୍ତ୍ରୀ ରାସ୍ତାକଡ଼ର ଲୋକଙ୍କୁ ହାତ ହଲାଇ ହଲାଇ ସ୍ୱାଗତ କରୁଥାନ୍ତି । ଗାଡ଼ି ଚାଲିଥାଏ ।

ଆଗରେ ଜଟେଇ ପଦର ଗାଁ ଭିତରକୁ ପଶିଲୁ । ଏହି ଲକ୍ଷ୍ମୀପୁରର ପୂର୍ବତନ ବିଧାୟକ ଶ୍ରୀ ଅନନ୍ତ ରାମ ମାଝୀଙ୍କ ଘର ଏଇ ଗାଁରେ । ଗତ ୧୯୯୫ ସାଧାରଣ ନିର୍ବାଚନରେ ଶ୍ରୀ ମାଝୀ ଶାସକ ଦଳର ଟିକେଟରେ ଲକ୍ଷ୍ମୀପୁରରୁ ନିର୍ବାଚିତ ହୋଇଥିଲେ । ଏଇ ସିଟ୍‌ରୁ ଦୀର୍ଘ ୨୫ ବର୍ଷ ହେଲା ଜିତି ଆସୁଛନ୍ତି । ଡ଼ଃ ଗମାଙ୍ଗ ମୁଖ୍ୟମନ୍ତ୍ରୀ ହୋଇ ଆସିବା ପରେ ତାଙ୍କୁ ମନ୍ତ୍ରିମଣ୍ଡଳରେ ନେଇଥିଲେ । ତାଙ୍କୁ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ ମିଳିଥିଲା । କିନ୍ତୁ ଆମ ରାଜ୍ୟପତି ଓ ମୁଖ୍ୟମନ୍ତ୍ରୀଙ୍କ ପ୍ରତି ଶ୍ରୀ ମାଝୀଙ୍କ ଆନୁଗତ୍ୟ ରହିଥିଲା । ସେଥିପାଇଁ ଲକ୍ଷ୍ମୀପୁର ଆସନଟି ସେ ମୁଖ୍ୟମନ୍ତ୍ରୀ ନିର୍ବାଚନ ଲଢ଼ିବାକୁ ଛାଡ଼ି ଦେଇଥିଲେ ।

ଇତି ମଧ୍ୟରେ ଶ୍ରୀ ଗମାଙ୍ଗ ଆମ ମନ ଭିତରେ ଥିବା ସନ୍ଦେହକୁ ଦୂର କରି କହିଲେ, 'ଶ୍ରୀ ମାଝୀଙ୍କ ସହ ମୋର କୌଣସି ମତ ପାର୍ଥକ୍ୟ ଆଦୌ ହୋଇନାହିଁ । କେବଳ ବିରୋଧୀ ଦଳ ଏ ବିଷୟରେ ଅପପ୍ରଚାର କରୁଛନ୍ତି ।' ହଠାତ୍ ସେ ଗୋଟିଏ କ୍ଷୁଦ୍ରକୁଟୀର ଭିତରକୁ ପଶିଗଲେ । ଆମେ ତାଙ୍କୁ ଅନୁସରଣ କଲୁ । ସେ କୁଟୀରଟି ଥିଲା ଶ୍ରୀ ଅନନ୍ତରାମ ମାଝୀଙ୍କ ଘର । ତାଙ୍କ ଘର ଲୋକେ ପାଚିଲା ଆମ୍ବ ଖାଉଥାନ୍ତି । ଡ଼ଃ ଗମାଙ୍ଗ ସେମାନଙ୍କୁ ଅଭିନନ୍ଦନ ଜଣାଇ ଟିକେ କଥାବାର୍ତ୍ତା କରିବା ପରେ ଫେରି ଆସିଲେ । ଶ୍ରୀ ମାଝୀ ଘରେ ନଥାନ୍ତି ଓ ଲକ୍ଷ୍ମୀପୁର ଅଞ୍ଚଳରେ ସେତେବେଳେ ଗମାଙ୍ଗଙ୍କ ଲାଗି ନିର୍ବାଚନ ପ୍ରଚାରରେ ବ୍ୟସ୍ତ ଥାଆନ୍ତି । ଗ୍ରାମଟି ଯେପରି ଯୋଜନାବଦ୍ଧ ଭାବେ ବେଶ ସୁନ୍ଦର ଭାବେ ହୋଇଛି, ସେପରି ମନେ ହେଲା । ଇନ୍ଦିରା ଆବାସ ଯୋଜନାର ସଫଳତା ଏଇ ! ଆମ ଉପକୂଳବର୍ତ୍ତୀ ଅଞ୍ଚଳରେ ଇନ୍ଦିରା ଆବାସ ଯୋଜନାରେ ଏପରି ସୁନ୍ଦର ଓ ପରିଷ୍କାର ପରିଚ୍ଛନ୍ନ ଗ୍ରାମଟିଏ ନାହିଁ ବୋଲି ଭାବୁଥାଏଁ । ଭାବୁ ଭାବୁ ପଚାରି ଦେଲି । ଗମାଙ୍ଗ କହିଲେ-ଉପକୂଳବର୍ତ୍ତୀ ଅଞ୍ଚଳରେ ଏ ଯୋଜନାରେ ଯେତେ ଅର୍ଥ ଆସେ, ଅଧାରୁ ଅଧିକ ଟଙ୍କା ହେରଫେର ହୋଇଯାଏ । ରାସ୍ତାଗୁଡ଼ିକର ଅବସ୍ଥାରେ ମଧ ସେହି କଥା । ଏଠାରେ କିନ୍ତୁ ଏସବୁ ଉନ୍ନୟନ ଯୋଜନାରେ ଆସୁଥିବା ଅର୍ଥରୁ ବେଶୀ ବାଟମାରଣା ହୋଇ ପାରେ ନାହିଁ । ସେଥିପାଇଁ ଏପରି ଦୁରଦୁରାନ୍ତରେ ବି ଗାନ୍ଧ ଓ ରାସ୍ତାଗୁଡ଼ିକ ଅପେକ୍ଷାକୃତ ଭଲ ଅବସ୍ଥାରେ ଅଛି ।

ଆନନ୍ଦରେ ଗ୍ରାମବାସୀମାନେ ତାଙ୍କୁ ବଧାଇ ଜଣାଉଥାନ୍ତି । ସେମାନେ ମୁଖ୍ୟମନ୍ତ୍ରୀଙ୍କର ଉପସ୍ଥିତିକୁ ଯେପରି ଅପେକ୍ଷା କରି ରହିଥିଲେ । ଗୋଟିଏ

ଛୋଟକାଟର ସଭା ପରି ହେଲା । ଆଦିବାସୀ ଲୋକେ ତାଙ୍କୁ ଘେରିଗଲେ । କିଏ କେତେ ପ୍ରକାର ମନ ଭିତରର କଥା ତାଙ୍କୁ କହୁଥାନ୍ତି । ମୁଖ୍ୟମନ୍ତ୍ରୀ ନିର୍ଦ୍ଦିଷ୍ଟ ଚିତ୍ତରେ ସେ ସବୁ ଶୁଣି ଯାଉଥାନ୍ତି । କିନ୍ତୁ ମଦ୍ୟପାନ କରିଥିବା କେତେକ ଆଦିବାସୀ ଲୋକ ସାମାନ୍ୟ ଗଣ୍ଡଗୋଳ ଆରମ୍ଭ କରିବାକୁ ଉଦ୍ୟମ କଲେ ସେହି ଅପରାହ୍ଣରେ । ସେଠାରେ ପ୍ରସ୍ତାବିତ ଉତ୍କଳ ଆଲୁମିନା ପ୍ରକଳ୍ପକୁ ସେମାନେ ବିରୋଧ କରୁଥିଲେ । ମୁଖ୍ୟମନ୍ତ୍ରୀ ସେମାନଙ୍କୁ ବୁଝାଇବା ଲାଗି ଚେଷ୍ଟା କରି କହୁଥାନ୍ତି -ଦେଖ, ମୁଁ ବାହାର ଲୋକ ନୁହେଁ । ମୁଁ ତମ ଭିତରୁ ଜଣେ, ତମରି ଅଞ୍ଚଳର । ତମମାନଙ୍କ କଥା ବୁଝିବା ଲାଗି ମୋତେ ମୁଖ୍ୟମନ୍ତ୍ରୀ କରାଯାଇଛି । ମୋତେ ତମେ ବିଶ୍ୱାସ ନକରି ବାହାର ଲୋକଙ୍କର ଅପପ୍ରଚାରରେ କାହିଁକି ମାତୁଛ ? ତମ ପାଖକୁ ସେମାନେ ଏବେ ଆସି ତୁମକୁ ଭୁଲ୍ କଥା କହୁଛନ୍ତି । କିନ୍ତୁ ମୋ ପାଖକୁ ଆସି ସେମାନେ ମୋତେ ବୁଝାଉ ନାହାନ୍ତି ଓ ଠିକ୍ କଥା କହୁନାହାନ୍ତି କାହିଁକି ? ହିଣ୍ଡଲ କମ୍ପାନୀର ଟିକିରିରେ ଥିବା ଏ ଆଲୁମିନିଅମ କାରଖାନା ବିଷୟରେ ବଡ଼ ଗୋଟାଏ ଆଲୋଚନା ହେଉ । ତମେ ଆସ, କାରଖାନାବାଲା ଆସନ୍ତୁ , ଯିଏ ତମକୁ ମତାଇ ବିରୋଧ କରୁଛନ୍ତି, ସେମାନେ ବି ଆସନ୍ତୁ । ସଫା ସଫା, ସାମନା ସାମନି କଥା ହୋଇଯିବ ।

ଗଣ୍ଡଗୋଳ କରୁଥିବା ଦୁଇ ତିନି ଜଣଙ୍କୁ ଗ୍ରାମବାସୀ ପଛକୁ ଟାଣି ନେଇଗଲେ । ସେମାନେ ମାତାଲ ଅବସ୍ଥାରେ ଥିଲେ । ପୂର୍ବତନ ସାଂସଦ ଅନାଦି ଦାସ ବି ମୁଖ୍ୟମନ୍ତ୍ରୀଙ୍କ ସାଙ୍ଗରେ ଥିଲେ ସେଠି । ଲୋକଙ୍କୁ ଶ୍ରୀ ଦାସଙ୍କ ସହିତ ଶ୍ରୀ ଜୟଦେବ ଜେନା ଓ ଶ୍ରୀ ଅନନ୍ତ ରାୟ କ'ଣ ବୁଝାଉଥାନ୍ତି । ମୁଖ୍ୟମନ୍ତ୍ରୀ ସେଠୁ ବାଟ ଭାଙ୍ଗି ଗାଡ଼ିରେ ବସିଲେ, କାଶୀପୁର ଅଭିମୁଖେ ଯାତ୍ରା କରିବାକୁ । ବାଟରେ ପଡ଼ିଲା ତୁଙ୍ଗାସିଲ । ଛୋଟ ବଜାରଟିଏ । ସେଠି ଲୋକଙ୍କ ସାଙ୍ଗରେ ମୁଖ୍ୟମନ୍ତ୍ରୀ ଚୁଲିରେ ବସି ଚା' ଖାଇଲେ । ଆମେ ସେଠି ପହଞ୍ଚିବାରୁ, ବାହାର ଲୋକ ଭାବି ଲୋକେ ଆମକୁ ଭିନ୍ନ ଦୃଷ୍ଟିରେ ଅନେଇଲେ । ମୁଖ୍ୟମନ୍ତ୍ରୀ କିନ୍ତୁ ଚିହ୍ନେଇ ଦେଲେ- ଆମେ ସବୁ ସାମ୍ବାଦିକ ବୋଲି । ଲୋକେ ଆଶ୍ୱସ୍ତ ହେଲେ । ମୁଖ୍ୟମନ୍ତ୍ରୀ କଥାବାର୍ତ୍ତା ଛଳରେ କହୁଥା'ନ୍ତି -ଗୋଟିଏ ରାଜ୍ୟର ମୁଖ୍ୟମନ୍ତ୍ରୀ ହେବା କଷ୍ଟିଆ କାମ । ତା'ଠାରୁ କଷ୍ଟକର କାମ ହେଉଛି ଗୋଟିଏ ଅଞ୍ଚଳର ବିଧାୟକ ହେବା । ଏ ଦୁଇଟି କାମ ଏକାସାଙ୍ଗେ ମୁଁ ତୁଲାଇବା ବିକେ କଷ୍ଟ । କାରଣ ନିର୍ବାଚନମଣ୍ଡଳୀର ଲୋକଙ୍କ ସମସ୍ୟା ଅନେକ । ନିର୍ଦ୍ଦିଷ୍ଟ ସମୟରେ ସେ ସବୁର ସମାଧାନ ନହେଲେ ଅସୁବିଧା ।

ଆମେ ସେଠୁ ଯାଇ କାଶୀପୁରର ଏକ ପଡ଼ା ଅଞ୍ଚଳରେ ପହଞ୍ଚିଲୁ । ପଡ଼ାର ନାଁ ମାଇକଞ୍ଚ । ପଡ଼ା ମଝିରେ ଏକ ସ୍ତମ୍ଭ ନିର୍ମିତ ହୋଇଥାଏ । ଏ କ'ଣ ବୋଲି ଆଗ୍ରହରେ ପଚାରିଲି । ମୁଖ୍ୟମନ୍ତ୍ରୀ ସେଠି ମୁଣ୍ଡିଆଟିଏ ମାରିଲେ ଓ କହିଲେ -'ଏ ହେଉଛନ୍ତି ପାଟମୁଣ୍ଡା ଠାକୁର । ଗ୍ରାମବାସୀଙ୍କର ତାଙ୍କ ଉପରେ ଅଗାଧ ବିଶ୍ୱାସ ।'

ଜଣେ ଦୁଇଜଣଙ୍କ ସାଙ୍ଗରେ ବୁଢ଼ୀଟିଏ ଆସିଲା-ଗ୍ରାମର ଅତିଥି ଓ ମୁଖ୍ୟମନ୍ତ୍ରୀଙ୍କୁ ବନ୍ଦାପନା କରିବାକୁ । ହଳଦୀ ଓ ଚାଉଳମିଶା ପାଣିରେ ସେ ମୁଖ୍ୟମନ୍ତ୍ରୀଙ୍କର ପାଦ ପ୍ରକ୍ଷାଳନ ପାଇଁ ଆଗେଇ ଆସିଲା । ମୁଖ୍ୟମନ୍ତ୍ରୀ ଗୋଡ଼ ଦୁଇଟିକୁ ତାଙ୍କର ଲୁଚେଇ ଦେଇ ମୁଣ୍ଡ ଦେଖାଇ ଦେଲେ । ସେ ଜଣକ ମୁଖ୍ୟମନ୍ତ୍ରୀଙ୍କ କପାଳରେ ଓ ଆମମାନଙ୍କ କପାଳରେ ସେ ଚାଉଳ ହଳଦୀ ପାଣିକୁ ବୋଳିଦେଲା । ତା'ପରେ ଧୂଣା ଧୂଆଁରେ ବନ୍ଦାଇ ଦେଲା ।

ଏ କ'ଣ ବନ୍ଦାପନା ଏଠି । ପଚାରିଲି । ମୁଖ୍ୟମନ୍ତ୍ରୀ ଶ୍ରୀ ଗମାଙ୍ଗ ବର୍ଣ୍ଣନା କଲେ- 'ଏ ଅଞ୍ଚଳରେ ଅତିଥି ସତ୍କାର ଲାଗି ଯୁଗ ଯୁଗ ଧରି ପ୍ରଥା ପ୍ରଚଳିତ । ପୂର୍ବରୁ କାଶୀପୁର କଳାହାଣ୍ଡି ଜିଲ୍ଲାରେ ଥିଲା । କଳାହାଣ୍ଡି ରାଜାଙ୍କ ରାଜ୍ୟରେ ଏପରି ପରମ୍ପରା ଥିଲା । ତା' ପରେ ୧୯୬୨ ଅପ୍ରେଲ ପହିଲାରେ କାଶୀପୁର କୋରାପୁଟ ଜିଲ୍ଲାରେ ମିଶିଲା । ଏବଂ ପୁଣି ୧୯୯୨ ଅପ୍ରେଲ ପହିଲାରେ ପ୍ରାୟ ୩୦ ବର୍ଷ ପରେ କାଶୀପୁର ରାୟଗଡ଼ା ଜିଲ୍ଲାକୁ ଆସିଲା । ୧୯୮୬ରେ ଆମର ପ୍ରିୟ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀ ଏହି ଅଞ୍ଚଳକୁ ଗସ୍ତରେ ଆସିଥିଲେ । ସେଥିପାଇଁ ଏ ଅଞ୍ଚଳରେ ଇନ୍ଦିରା ଗାନ୍ଧୀ କିମ୍ବା ତାଙ୍କର ସୁପୁତ୍ର ରାଜୀବ ଗାନ୍ଧୀ ବହୁତ ଲୋକପ୍ରିୟ । ଏହି ଅଞ୍ଚଳକୁ ଆଦିବାସୀ ଅଞ୍ଚଳର ଅନ୍ତର୍ଭୁକ୍ତ କରିବାକୁ ସେ ପରେ ଉଦ୍ୟମ କରିଥିଲି ।"

ଅସଲ କାଶୀପୁର ଅଞ୍ଚଳ ସେଠାରୁ ମାତ୍ର ୧୦ କିଲୋମିଟର ଦୂରରେ ଥାଏ । ସେତେବେଳକୁ ୪ଟା ବାଜିଲାଣି । ଆମେ କାଶୀପୁର ଅଭିମୁଖେ ମୁହାଁଇଲୁ । ବାଟରେ ଫୁଲ ଓ ଫୁଲମାଳରେ ସମସ୍ତଙ୍କୁ ସମ୍ବର୍ଦ୍ଧନା ଦିଆଯାଉଥାଏ । ଆମକୁ ଅଟକି ଅଟକି ଯିବାକୁ ପଡୁଥାଏ । ମୁଖ୍ୟମନ୍ତ୍ରୀଙ୍କ ବିଜୟ ହେବା ସମ୍ବନ୍ଧରେ ବିଭିନ୍ନ ସ୍ଲୋଗାନ୍ ଶୁଣାଯାଉ ଥାଏ । ପ୍ରଥମେ ପଶିଲୁ କାଶୀପୁରର ଅର୍ଜୁନ ସାହି ଭିତରେ । ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦିଆଗଲା ତାଙ୍କୁ । ଗତକାଲି ପର୍ଯ୍ୟନ୍ତ ଏହି ଅଞ୍ଚଳଟି ବିରୋଧୀ ଦଳର ଦୁର୍ଗ ଥିଲା ବୋଲି ଆମେ ଶୁଣିବାକୁ ପାଇଥିଲୁ । କିନ୍ତୁ ଅଦ୍ଭୁତ, ସେଠିକି କିନ୍ତୁ ସେପରି ମନେ ହେଲା ନାହିଁ । ଲୋକେ ତାଙ୍କର ପାରମ୍ପରିକ ଢୋଲ ବଜାଉଥିଲେ । ଏପରିକି ବିରୋଧୀ ଦଳର ନିର୍ବାଚନ ସଙ୍କେତ 'ଶଙ୍ଖ' ମଧ୍ୟ ବଜାଇ ମୁଖ୍ୟମନ୍ତ୍ରୀଙ୍କୁ ସ୍ୱାଗତ କରୁଥାନ୍ତି ।

ଅପରାହ୍ଣ ୫ଟା ହୋଇଗଲେ ନିୟମ ଦୃଷ୍ଟିରୁ ନିର୍ବାଚନ ପ୍ରଚାର ସରିଯିବ । ନିର୍ବାଚନର ୨୪ ଘଣ୍ଟା ପୂର୍ବରୁ ପ୍ରଚାର ବନ୍ଦ କରିବା ହେଉଛି ବିଧି । ମୁଁ ହାତ ଘଣ୍ଟା ଦେଖିଲି । ଜଣେ ଦଳୀୟ କର୍ମୀ ଆମମାନଙ୍କ ପାଇଁ ତାଙ୍କ ଘରେ ନିରାମିଷ ଭୋଜନର ବ୍ୟବସ୍ଥା କରିଥିଲେ । ସେଠି ଖାଇଲୁ । ଖାଇସାରି କିଛି ସମୟ ଗପିଲୁ । ମୁଖ୍ୟମନ୍ତ୍ରୀ ଆମମାନଙ୍କ ସାଙ୍ଗରେ ନିର୍ବାଚନ ବିଷୟରେ କେବଳ ନୁହେଁ, ସାହିତ୍ୟ, ସଙ୍ଗୀତ ଓ ରାଜନୀତି ନାନା ବିଷୟରେ ଆଲୋଚନା କରିଗଲେ ।

ନିର୍ବାଚନ ପ୍ରଚାର ଶେଷ ହେବାକୁ ଦଶ କି ପନ୍ଦର ମିନିଟ୍ ଖାଲି ବାକି ! 'ଆମେ ଜିତାପଟ ନେଇ ଏଠୁ ଫେରୁଛୁ' ବୋଲି ଖୁବ୍ ହସ ବଦନରେ ମୁଖ୍ୟମନ୍ତ୍ରୀ କହିଲେ । 'କେବଳ ମୋ' ଦ୍ୱାରାରେ ନୁହେଁ ଦେଉଛି ଏବେ ।' ସେ କହିଲେ । ତାଙ୍କର ପାର୍ଷଦ ଓ ପାର୍ଟିଲୋକେ ତାଙ୍କୁ ଘେରି ରହିଥାନ୍ତି । ଆମେ ତାଙ୍କଠାରୁ ବିଦାୟ ନେଇ ଫେରି ଆସିଲୁ ରାୟଗଡ଼ାକୁ, ରାତି ଯାପନ ଲାଗି ।

ନର୍ସିଂ କଲୋନି
ପ୍ଲଟ୍ ୧୦/୫, ...
ଭୁବନେଶ୍ୱର

# ସମ୍ବାଦ ପରିକ୍ରମା

## ଲକ୍ଷ୍ମୀପୁର ଉପନିର୍ବାଚନରେ ଡଃ ଗମାଙ୍ଗଙ୍କ ବିପୁଳ ବିଜୟ



ମୁଖ୍ୟମନ୍ତ୍ରୀ ଡକ୍ଟର ଗିରିଧର ଗମାଙ୍ଗ ଲକ୍ଷ୍ମୀପୁର ଉପ-ନିର୍ବାଚନରେ ବିପୁଳ ଭୋଟ୍‌ରେ ବିଜୟ ଲାଭ କରି ବିଧାନସଭାକୁ ନିର୍ବାଚିତ ହୋଇଛନ୍ତି । ସେ ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ବି.ଜେ.ଡି.-ବି.ଜେ.ପି. ମେଣ୍ଟ ପ୍ରାର୍ଥୀ ଶ୍ରୀ ବିଭୀଷଣ ମାଝିଙ୍କୁ ୧୯ ହଜାର ୩୯୩ଟି ଅଧିକ ଭୋଟ୍‌ରେ ପରାଜିତ କରିଛନ୍ତି ।

ଡଃ ଗମାଙ୍ଗ ବିଗତ ୨୮ ବର୍ଷ ମଧ୍ୟରେ ୮ଥର ନିରବଚ୍ଛିନ୍ନ ଭାବରେ ଲୋକସଭାକୁ ନିର୍ବାଚିତ ହୋଇଥିଲେ ମଧ୍ୟ ପ୍ରଥମ ଥରପାଇଁ ବିଧାନସଭାକୁ ନିର୍ବାଚିତ ହୋଇ ଆସିଛନ୍ତି ।

ଗତ ୨୮ ତାରିଖରେ ବାଚସ୍ପତିଙ୍କ ପ୍ରକୋଷ୍ଠରେ ଅନୁଷ୍ଠିତ ଏକ ଉତ୍ସବରେ ଡଃ ଗମାଙ୍ଗ ବିଧାନସଭା ସଦସ୍ୟ ଭାବରେ ଶପଥ ଗ୍ରହଣ କରିଥିଲେ । ବାଚସ୍ପତି ଶ୍ରୀ ଚିନ୍ତାମଣି ଦ୍ୟାନ ସାମନ୍ତରାୟ ତାଙ୍କୁ ଶପଥପାଠ କରାଇଥିଲେ ।

ଏହି ନିର୍ବାଚନମଣ୍ଡଳୀର ମୋଟ ଏକଲକ୍ଷ ୩୮ ହଜାର ୫୮୭ ଜଣ ଭୋଟରଙ୍କ ମଧ୍ୟରୁ ଉପନିର୍ବାଚନରେ ୬୯ ହଜାର ୩୩୫ ଜଣ ଭୋଟର ଭୋଟ ଦେଇଥିଲେ । ତନ୍ମଧ୍ୟରୁ ୨୬୨ ଟି ଭୋଟ ନାକଚ ହୋଇଯାଇଥିଲା । କାଏମ ରହିଥିବା ୬୬ ହଜାର ୭୦୯ଟି ଭୋଟ ମଧ୍ୟରୁ ଡଃ ଗମାଙ୍ଗ ୪୩ ହଜାର ୫୧ଟି ଭୋଟ ପାଇଥିବା ବେଳେ ତାଙ୍କ ପ୍ରତିଦ୍ୱନ୍ଦ୍ୱୀ ୨୩ ହଜାର ୬୫୮ ଟି ଭୋଟ ପାଇଥିଲେ ।

ଡକ୍ଟର ଗମାଙ୍ଗ ଏହି ଉପନିର୍ବାଚନରେ ଏକ ଶାନ୍ତ, ସ୍ୱଚ୍ଛ ଓ ସ୍ୱଚ୍ଛନ୍ଦ ପ୍ରଚାର ଅଭିଯାନର ଶୁଭାରମ୍ଭ କରି ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ସୃଷ୍ଟି କରିଛନ୍ତି । ଏହିଭଳି ନିରାଡ଼ମ୍ବର ପ୍ରଚାର ରାଜ୍ୟର ଆଗାମୀ ନିର୍ବାଚନରେ ଅନୁସୃତ ହେବବୋଲି ସେ ଆଶା ପ୍ରକାଶ କରିଛନ୍ତି ।

ରାଜ୍ୟର ଦରିଦ୍ର ଓ ଦୁର୍ବଳ ଶ୍ରେଣୀର ଲୋକଙ୍କ ଉନ୍ନତି ପାଇଁ କାର୍ଯ୍ୟ କରିବାକୁ ଜନସାଧାରଣ ତାଙ୍କୁ ସୁଯୋଗ ଦେଇଥିବାରୁ ମୁଖ୍ୟମନ୍ତ୍ରୀ ସେମାନଙ୍କ ପ୍ରତି ଗଭୀର କୃତଜ୍ଞତା ଜଣାଇଛନ୍ତି ।

## ରାଜ୍ୟ ମନ୍ତ୍ରୀମଣ୍ଡଳର ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି

ଗତ ୨୯ ତାରିଖରେ ମୁଖ୍ୟମନ୍ତ୍ରୀ ଡକ୍ଟର ଗିରିଧର ଗମାଙ୍ଗଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ରାଜ୍ୟ ମନ୍ତ୍ରିମଣ୍ଡଳ ବୈଠକରେ ସରକାରଙ୍କ ପକ୍ଷରୁ କେତେକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ଗ୍ରହଣ କରାଯାଇଛି ।

ଏସମ୍ପର୍କରେ ସୂଚନା ଦେଇ ମୁଖ୍ୟ ଶାସନସଚିବ ଶ୍ରୀ ସହଦେବ ସାହୁ କହିଛନ୍ତି– ରାଜ୍ୟ ସରକାରଙ୍କ ସମସ୍ତ ଚାକିରିରେ ମହିଳାମାନଙ୍କ ପାଇଁ ଶତକଡ଼ା ୩୩ଭାଗ ସ୍ଥାନ ସଂରକ୍ଷଣ କରାଯିବ । ଏଥିପାଇଁ ସରକାର ସିଭିଲ ସର୍ଭିସ କୋର୍ଡ୍‌ର ସଂଶୋଧନ କରିଛନ୍ତି ।

ଏକ ବର୍ଷ ଧରି ବିଧାନସଭା ସଦସ୍ୟ ଥିବା ବ୍ୟକ୍ତିଙ୍କୁ ପେନସନ ଦିଆଯିବ । ପୂର୍ବତନ ବିଧାୟକଙ୍କ ମାସିକ ପେନସନ୍ ୭୦୦ଟଙ୍କାରୁ ୨ ହଜାର ଟଙ୍କାକୁ ବୃଦ୍ଧି କରାଯିବ ।

ଓଡ଼ିଶାରେ ଅଧିକ ତିନୋଟି ବିଶ୍ୱବିଦ୍ୟାଳୟ ସ୍ଥାପନ ପ୍ରସ୍ତାବ ମନ୍ତ୍ରିମଣ୍ଡଳ ବୈଠକରେ ଅନୁମୋଦିତ ହୋଇଛି । ଏଥିପାଇଁ ଓଡ଼ିଶା ବିଶ୍ୱବିଦ୍ୟାଳୟ ଆଇନ ୧୯୮୯ କୁ ସଂଶୋଧନ କରାଯାଇଛି ।

ବାଲେଶ୍ୱରରେ ଫକୀରମୋହନ ବିଶ୍ୱବିଦ୍ୟାଳୟ, ବାରିପଦାରେ ଉତ୍ତର ଓଡ଼ିଶା ବିଶ୍ୱବିଦ୍ୟାଳୟ ସ୍ଥାପନ କରାଯିବ ।

ଓଡ଼ିଶାର ସଂସ୍କୃତିର ବିକାଶ ଓ ସୁରକ୍ଷା ପାଇଁ ଏକ ସଂସ୍କୃତି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରାଯିବ ।

ବୃତ୍ତିକର, ପ୍ରବେଶକର ଓ ଅବକାରୀ କର ଧାର୍ଯ୍ୟ ପ୍ରସ୍ତାବର ସମୀକ୍ଷାପାଇଁ ଏକ କ୍ୟାବିନେଟ ସବ୍ କମିଟି ଗଠନ କରାଯାଇଛି ।

ନବଗଠିତ ସଂଖ୍ୟାଲଘୁ ଓ ଅନୁନ୍ନତ ଶ୍ରେଣୀ କଲ୍ୟାଣ ବିଭାଗକୁ ଅନୁମୋଦିତ କରାଯାଇଛି ।

ଆଇନଜୀବୀ କଲ୍ୟାଣ ପାଣ୍ଠି ବ୍ୟବସ୍ଥାକୁ ସଂଶୋଧନ କରାଯାଇ ଆଇନଜୀବୀଙ୍କ ଦ୍ୱାରା ପ୍ରଦତ୍ତ ଅର୍ଥ ପରିମାଣକୁ ବୃଦ୍ଧି କରାଯାଇଛି । ଏହି ପାଣ୍ଠିରୁ ସର୍ବନିମ୍ନ ସାହାଯ୍ୟ ପରିମାଣ ୨ ହଜାରରୁ ୩ ହଜାର ଟଙ୍କାକୁ ବୃଦ୍ଧି କରାଯାଇଛି । ଜଣେ ଆଇନଜୀବୀ ୬୦ ହଜାର ଟଙ୍କା ପରିବର୍ତ୍ତେ ୯୦ହଜାର ଟଙ୍କା ପର୍ଯ୍ୟନ୍ତ ଏହି ପାଣ୍ଠିରୁ ସାହାଯ୍ୟ ପାଇବାର ବ୍ୟବସ୍ଥା କରାଯାଇଛି ।

ଉତ୍କଳ ପ୍ରସଙ୍ଗ

ଗଣିତ ଓ ପ୍ରୟୋଗ ସଂସ୍ଥାନାମରେ ଏକ ସ୍ୱୟଂଚାଳିତ ଡିମ୍ ବିଶ୍ୱବିଦ୍ୟାଳୟ ସ୍ଥାପନ ପ୍ରସ୍ତାବକୁ ଅନୁମୋଦନ ଦିଆଯାଇଛି ।

## ପ୍ରାକୃତିକ ବିପର୍ଯ୍ୟୟର ମୁକାବିଲା ପାଇଁ ସରକାରଙ୍କ ଦୃଢ଼ ପଦକ୍ଷେପ

ମୁଖ୍ୟମନ୍ତ୍ରୀ ଡଃ ଗିରିଧର ଗମାଙ୍ଗଙ୍କ ଅଧ୍ୟକ୍ଷତାରେ ଗତ ଜୁନ୍ ୩୦ ତାରିଖରେ ରାଜ୍ୟ ପ୍ରାକୃତିକ ବିପର୍ଯ୍ୟୟ କମିଟିର ବୈଠକ ବସି ମରୁଡ଼ି ଇତ୍ୟାଦି ପ୍ରାକୃତିକ ବିପର୍ଯ୍ୟୟର ମୁକାବିଲା ପାଇଁ ବହୁ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ଗ୍ରହଣ କରାଯାଇଛି ।

ଏହି ବୈଠକରେ ଘୋଷଣା କରାଯାଇଛି ଯେ ମରୁଡ଼ି ଘୋଷିତ ଗ୍ରାମମାନଙ୍କରେ ସମବାୟ ବ୍ୟାଙ୍କ ଓ ବ୍ୟବସାୟିକ ଋଣକୁ ମଧ୍ୟମ ମିଆଦି ଋଣରେ ପରିଣତ କରାଯିବ । ଶତକଡ଼ା ୫୦ ରୁ ୭୦ ଫସଲହାନି ଘଟିଥିବା ଗ୍ରାମରେ ରାଜସ୍ୱ ଆଦାୟ ସ୍ଥଗିତ ରଖାଯିବ ଏବଂ ଶତକଡ଼ା ୭୫ ଭାଗରୁ ଅଧିକ ଫସଲ ହାନି ହୋଇଥିବା ଗ୍ରାମରେ ରାଜସ୍ୱ ଛାଡ଼ କରାଯିବ । ମରୁଡ଼ି ଘୋଷିତ ଗ୍ରାମମାନଙ୍କରେ ଥିବା ଉଠା ଜଳସେଚନ ଯୋଜନାରେ ଚଳିତ ବର୍ଷର ରବି ଜଳକରର ଶତକଡ଼ା ୫୦ ଭାଗ ରିହାତି ଦିଆଯିବ । ଏଥିପାଇଁ ପ୍ରାକୃତିକ ବିପର୍ଯ୍ୟୟ ପାଣ୍ଠିରୁ ଏକ କୋଟି ୧୫ଲକ୍ଷ ଟଙ୍କା ମଞ୍ଜୁର କରାଯାଇଛି । ୨୫କୋଟି ଟଙ୍କା ଅତିରିକ୍ତ କେନ୍ଦ୍ରୀୟ ଯୋଜନା ସହାୟତାରୁ ୧୨ କୋଟି ଟଙ୍କା ମରୁଡ଼ିଗ୍ରସ୍ତ ଜିଲ୍ଲାରେ ଜଳଯୋଗାଣ, ଶ୍ରମନିବିଡ଼ କାର୍ଯ୍ୟପାଇଁ ପଞ୍ଚାୟତିରାଜ ବିଭାଗ ଜରିଆରେ ୬କୋଟି ଟଙ୍କା, ୧୦୦ଟି ନୂତନ ଉଠା ଜଳସେଚନ ପଏଣ୍ଟ ସ୍ଥାପନ ପାଇଁ ୩କୋଟି ଟଙ୍କା, ୯୦ଟି କ୍ଷୁଦ୍ର ଜଳସେଚନ ଯୋଜନାର ପୁନରୁଦ୍ଧାର ପାଇଁ ୪କୋଟି ଟଙ୍କା ଆବଣ୍ଟନ କରାଯାଇଛି ।

ମୁଖ୍ୟମନ୍ତ୍ରୀ ଡଃ ଗମାଙ୍ଗ କହିଥିଲେ ଯେ ପ୍ରାକୃତିକ ବିପର୍ଯ୍ୟୟ ସମୟରେ ଉପଗ୍ରହ ମାଧ୍ୟମରେ ରାଜ୍ୟର ସମସ୍ତ ୩୧୪ଟି ବ୍ଲକକୁ ରାଜଧାନୀ ସହ ସଂଯୋଗ କରିବା ପାଇଁ ସ୍ୱତନ୍ତ୍ର ପଦକ୍ଷେପ ଗ୍ରହଣ କରାଯିବ । ପ୍ରାକୃତିକ ବିପର୍ଯ୍ୟୟର ପ୍ରତିକାର ପାଇଁ ନିର୍ଦ୍ଦିଷ୍ଟ ପ୍ରକଳ୍ପକୁ ଅଗ୍ରାଧିକାର ଦିଆଯିବ । ଉପକୂଳବର୍ତ୍ତୀ ଅଞ୍ଚଳର ଉନ୍ନତି ପାଇଁ ଯୋଜନା କରାଯିବ ।

## ସହରାଞ୍ଚଳ ଦାରିଦ୍ର୍ୟ ଦୂରୀକରଣ ଯୋଜନାର ସମୀକ୍ଷା

ସହରାଞ୍ଚଳ ଦାରିଦ୍ର୍ୟ ଦୂରୀକରଣ ଯୋଜନାର ସଫଳ ରୂପାୟନ ନିମିତ୍ତ ଗତ ଜୁନ୍ ୩୦ ତାରିଖରେ ରାଜ୍ୟର ସମସ୍ତ ଅତିରିକ୍ତ ଜିଲ୍ଲାପାଳ ତଥା 'ଡୁଡା'ର ପ୍ରକଳ୍ପ ଅଧିକାରୀମାନଙ୍କୁ ନେଇ ଏକ ସମୀକ୍ଷା ବୈଠକ ନଗର ଉନ୍ନୟନ ମନ୍ତ୍ରୀ ଶ୍ରୀ ଭୂପିନ୍ଦର ସିଂହଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇଥିଲା । ସହରାଞ୍ଚଳରେ ବସବାସ କରୁଥିବା ଗରିବ ଲୋକମାନଙ୍କର ସଂଖ୍ୟା ସହରର ମୋଟ ଲୋକସଂଖ୍ୟାର ପ୍ରାୟ ଏକ ତୃତୀୟାଂଶ । ଗ୍ରାମାଞ୍ଚଳ ଭଳି ସହରାଞ୍ଚଳରେ ଦାରିଦ୍ର୍ୟ ଦୂରୀକରଣ ଯୋଜନାକୁ ଆବଶ୍ୟକୀୟ ଗୁରୁତ୍ୱ ଦିଆଯାଇ ନଥିବାରୁ ମନ୍ତ୍ରୀ ଶ୍ରୀ ସିଂହ କ୍ଷୋଭ ପ୍ରକାଶ କରିଥିଲେ ।

ସହରାଞ୍ଚଳରେ ବାସ କରୁଥିବା ଗରିବ ଲୋକମାନଙ୍କର ଆର୍ଥିକ ମାନଦଣ୍ଡକୁ ସୁଦୃଢ଼ କରିବା ପାଇଁ କେନ୍ଦ୍ର ସରକାର ୧.୧୨.୯୮ ତାରିଖଠାରୁ ସ୍ୱର୍ଣ୍ଣ ଜୟନ୍ତୀ ସହରୀ ରୋଜଗାର ଯୋଜନା ପ୍ରଣୟନ କରିଛନ୍ତି । ଆମ ରାଜ୍ୟର ୧୦୨ଗୋଟି ପୌର ସଂସ୍ଥା ଗତବର୍ଷ ଏହି ଯୋଜନାରେ ପ୍ରାୟ ୧୫ ହଜାର ଗରିବ ଲୋକଙ୍କୁ ଅନ୍ତର୍ଭୁକ୍ତ କରିବା ପାଇଁ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ରଖାଯାଇ ବିଭିନ୍ନ ବ୍ୟବସାୟିକ ବ୍ୟାଙ୍କମାନଙ୍କୁ ୧୬ ହଜାରରୁ ଊର୍ଦ୍ଧ୍ୱ ଦରଖାସ୍ତ ପୌର ସଂସ୍ଥାମାନଙ୍କଠାରୁ ଦିଆଯାଇଥିଲା । ଏଥି ନିମିତ୍ତ ବ୍ୟାଙ୍କମାନଙ୍କର ଆଶାନୁରୂପ ସହଯୋଗ ପରିଲକ୍ଷିତ ହେଉନଥିବା ମନ୍ତ୍ରୀ ଶ୍ରୀ ସିଂହ ପ୍ରକାଶ କରିଥିଲେ ।

ଜାତୀୟ ବସ୍ତି ଉନ୍ନୟନ ଯୋଜନା ଜରିଆରେ ପୌର ସଂସ୍ଥାମାନଙ୍କୁ ଏ ପର୍ଯ୍ୟନ୍ତ ପ୍ରଦାନ କରାଯାଇଥିବା ୯କୋଟି ଟଙ୍କା ମଧ୍ୟରୁ ଅଧିକାଂଶ ବହୁ ଅର୍ଥ ଖର୍ଚ୍ଚ କରାନଯାଇ ପଡ଼ି ରହିଥିବାରୁ ଏହାକୁ ତ୍ୱରାନ୍ୱିତ କରିବା ପାଇଁ ଅତିରିକ୍ତ ଜିଲ୍ଲାପାଳମାନଙ୍କୁ ମନ୍ତ୍ରୀ ଶ୍ରୀ ସିଂହ ପରାମର୍ଶ ଦେଇଥିଲେ ।

## ସୂଚନା ନୀତି ପ୍ରଣୀତ ହେଲେ ଲୋକମାନଙ୍କ ପାଖରେ ତଥ୍ୟ ପହଞ୍ଚିବା ସହଜ ହେବ

### ସୂଚନା ମନ୍ତ୍ରୀ ଶ୍ରୀ ସିଂହ

ରାଜ୍ୟରେ ପ୍ରଥମ ଥର ପାଇଁ ସୂଚନା ନୀତି ପ୍ରଣୟନ କରିବା ନିମନ୍ତେ ପ୍ରସ୍ତୁତି ଆରମ୍ଭ ହୋଇଛି । ଏଥିନିମନ୍ତେ ଗତ ୨୬ ତାରିଖରେ ସୂଚନା ଓ ଲୋକ ସମ୍ପର୍କ ବିଭାଗ ସମ୍ମିଳନୀ କକ୍ଷରେ ଦ୍ୱିତୀୟ ପର୍ଯ୍ୟାୟରେ ଇଲେକ୍ଟ୍ରୋନିକ୍ସ ଗଣ ମାଧ୍ୟମର ମୁଖ୍ୟ ଓ ଜାତୀୟ ସ୍ତରର ପତ୍ର ପତ୍ରିକାଗୁଡ଼ିକରପ୍ରତିନିଧିମାନଙ୍କୁ ନେଇ ଆଲୋଚନା ବୈଠକ ଅନୁଷ୍ଠିତ ହୋଇଥିଲା ।

ଏଥିରେ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଭୂପିନ୍ଦର ସିଂହ ଅଧ୍ୟକ୍ଷତା କରି କହିଲେ ଯେ ଆଧୁନିକ ଯୁଗରେ ଏକ ଯୁଗୋପଯୋଗୀ ସୂଚନା ନୀତିର ଆବଶ୍ୟକତା ରହିଛି । ସୂଚନା ଓ ପ୍ରସାରଣର ମାନ ବୃଦ୍ଧି ହେଲେ, ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟଗୁଡ଼ିକ ଲୋକମାନଙ୍କ ପାଖରେ ଅଳ୍ପ ସମୟରେ ପହଞ୍ଚି ପାରିବ ଏବଂ ଜନସାଧାରଣ ଏହାର ସୁବିଧା ଉପଭୋଗ କରିବା ସଙ୍ଗେ ସଙ୍ଗେ ରାଜ୍ୟର ସାମୂହିକ ଉନ୍ନତି ସାଧନ ହୋଇପାରିବ । ଏଥିପାଇଁ ମନ୍ତ୍ରୀ ଶ୍ରୀ ସିଂହ ଯୋଗ ଦେଇଥିବା ପ୍ରତିନିଧିମାନଙ୍କଠାରୁ ସୁଚିନ୍ତିତ ମତାମତ ଲୋଡ଼ିଥିଲେ ।

ଏହି ବୈଠକରେ ଭୁବନେଶ୍ୱର ଦୂରଦର୍ଶନ ଓ କଟକ ଆକାଶବାଣୀର ନିର୍ଦ୍ଦେଶକ, ପି.ଆଇ.ବି. ଅଧିକାରୀ, କ୍ଷେତ୍ର ପ୍ରଚାର ସଂସ୍ଥା ଅଧିକାରୀ, ଡି.ଏ.ଭି.ପି.ର ସହକାରୀ ନିର୍ଦ୍ଦେଶକ, ଜି.ଟି.ଭି., ଷ୍ଟାର୍ ଟି.ଭି. ଓ ଓ.ଟି.ଭି.ର ପ୍ରତିନିଧିବୃନ୍ଦ ଏବଂ ଜାତୀୟ ସ୍ତରରେ ପ୍ରକାଶ ପାଉଥିବା ସମ୍ବାଦପତ୍ରର ଭୁବନେଶ୍ୱର ପ୍ରତିନିଧିମାନେ ଯୋଗଦେଇ ସେମାନଙ୍କ ମତାମତ ଦେଇଥିଲେ । ଏହି ବୈଠକରେ ଯୋଗ ଦେଇଥିବା ଗଣ ମାଧ୍ୟମର ପ୍ରତିନିଧିମାନେ ତଥ୍ୟ ସଂଗ୍ରହ କଲା ବେଳେ ବିଭିନ୍ନ ବିଭାଗର ସହଯୋଗ ମିଳୁ ନଥିବା ଓ କେନ୍ଦ୍ର ସରକାରଙ୍କ ଅଧୀନରେ ଥିବା ଗଣ ମାଧ୍ୟମ ସଂସ୍ଥାଗୁଡ଼ିକରେ ଆବଶ୍ୟକୀୟ ଅଧିକାରୀ ଓ କର୍ମଚାରୀ ଅଭାବ ଥିବାରୁ ତଥ୍ୟ ସଂଗ୍ରହ ଓ ପରିବେଷଣରେ ବ୍ୟାଘାତ ସୃଷ୍ଟି ହେଉଥିବା ସମ୍ପର୍କରେ ମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । କେନ୍ଦ୍ର ସରକାରଙ୍କ ସହ ଯୋଗାଯୋଗ କରି ଖାଲି ପଡ଼ିଥିବା ପଦବୀଗୁଡ଼ିକ ପୂରଣ କରିବା ପାଇଁ ମନ୍ତ୍ରୀ ଶ୍ରୀ ସିଂହ ମତ ଦେଇଥିଲେ ।

ବୈଠକରେ ବିଭାଗୀୟ ଶାସନ ସଚିବ ଶ୍ରୀ ଜୟନ୍ତ କୁମାର ଦେବ ପ୍ରାସଙ୍ଗିକ ସୂଚନା ଦେଇ ସୂଚନା ନୀତିର ଆଭିମୁଖ୍ୟ ସମ୍ପର୍କରେ ଆଲୋକପାତ କରିଥିଲେ । ଶେଷରେ ନିର୍ଦ୍ଦେଶକ ଶ୍ରୀ ବସନ୍ତ ଚରଣ ସ୍ୱାଇଁ ଧନ୍ୟବାଦ ଅର୍ପଣ କରିଥିଲେ ।

## ଧାମରା ବନ୍ଦର ୨୦୦୨ ମସିହା ସୁଦ୍ଧା କାର୍ଯ୍ୟକ୍ଷମ ହୋଇପାରିବ

ଜୁନ୍ ୨୪ ତାରିଖରେ ରାଜ୍ୟ ପର୍ଯ୍ୟଟନ, ଯୋଜନା ଓ ସମନ୍ୱୟ ମନ୍ତ୍ରୀ ଶ୍ରୀ ନେତ୍ରାନନ୍ଦ ମଲ୍ଲିକଙ୍କ ସଚିବାଳୟ ପ୍ରକୋଷ୍ଠରେ ଆନ୍ତର୍ଜାତିକ ସାମୁଦ୍ରିକ ବନ୍ଦର ପ୍ରା.ଲି (ଆଇ.ଏସ୍.ପି.)ର ପ୍ରତିନିଧି ଶ୍ରୀ ଆର୍. ରଙ୍ଗରାଜନ୍ ଓ ଶ୍ରୀ ଏସ୍. ଜଭାନ୍ ମନ୍ତ୍ରୀଙ୍କୁ ସାକ୍ଷାତ କରି ଧାମରା ବନ୍ଦର ନିର୍ମାଣ କାର୍ଯ୍ୟର ଅଗ୍ରଗତି ସମ୍ପର୍କରେ ଆଲୋଚନା କରିଥିଲେ ।

ଧାମରା ବନ୍ଦର ଆସନ୍ତା ୨୦୦୨ ମସିହା ସୁଦ୍ଧା କାର୍ଯ୍ୟକ୍ଷମ ହୋଇପାରିବ ବୋଲି ସୂଚନା ଦେଇ ଶ୍ରୀ ରଙ୍ଗରାଜନ କହିଥିଲେ ଯେ ବନ୍ଦର ନିର୍ମାଣ ପାଇଁ ସାମରିକ ବିଭାଗ ଓ ପରିବେଶ ବିଭାଗର ଅନୁମତି ପ୍ରାପ୍ତ ହୋଇସାରିଛି ଏବଂ ୩୫୦୦ ଏକର ଜମି ଅଧିଗ୍ରହଣ ପାଇଁ ଆଇ.ଏସ୍.ପି. ପକ୍ଷରୁ ଅର୍ଥ ଭରଣା କରାଯାଇ ସାରିଛି । ଭଦ୍ରକରୁ ଧାମରା ପର୍ଯ୍ୟନ୍ତ ୬୨ କିଲୋମିଟର ପରିମିତ ଚାରି-ଲେନ୍ ବିଶିଷ୍ଟ ଏକ୍ସପ୍ରେସ୍ ରାସ୍ତା ନିର୍ମାଣ କରାଯିବାର ଯୋଜନା ରହିଛି । ଏହି ବୃହତ୍ତମ ବନ୍ଦର ନିର୍ମାଣ ପରେ ଏଠାରୁ ଏକ ଲକ୍ଷ କୋଡ଼ିଏ ହଜାର ଟନ୍ ମାଲ ପରିବହନ କରିପାରୁଥିବା ଜାହାଜ ଚଳାଚଳ କରିବ । ଏହି ମାଲକୁ ଟ୍ରେନ୍ ଦ୍ୱାରା ବନ୍ଦରକୁ ସ୍ଥାନାନ୍ତରିତ କରିବାକୁ ସେଠାରେ ନୂତନ ରେଳରାସ୍ତା ନିର୍ମାଣ ମଧ୍ୟ କରାଯିବାର ବ୍ୟବସ୍ଥା ହେଉଛି ବୋଲି ଆଇ.ଏସ୍.ପି.ର ପ୍ରତିନିଧି ପ୍ରକାଶ କରିଛନ୍ତି । ଧାମରାକୁ ନଦୀ ବାଟେ ମଧ୍ୟ ବଇତରଣୀ ଦ୍ୱାରା ମାଲ ପରିବହନ କରାଯିବାର ପରିକଳ୍ପନା କରାଯାଉଛି । ହଳଦିଗଣ୍ଡ ଯୋଜନାକୁ କାର୍ଯ୍ୟକାରୀ କରି ବନ୍ଦରକୁ ପାନୀୟ ଜଳ ଯୋଗାଇ ଦେବା ପାଇଁ ଆଇ.ଏସ୍.ପି. ପକ୍ଷରୁ ଚିନ୍ତା କରାଯାଉଛି ବୋଲି ଶ୍ରୀ ରଙ୍ଗରାଜନ୍ ସୂଚନା ଦେଇଥିଲେ ।

ଏହି ଆଲୋଚନା ସମୟରେ ମନ୍ତ୍ରୀ ଶ୍ରୀ ମଲ୍ଲିକ ଧାମରାଠାରୁ ବୈତରଣୀ କୂଳେ କୂଳେ ଚାନ୍ଦବାଲି ପର୍ଯ୍ୟନ୍ତ ଏକ ରାସ୍ତା ନିର୍ମାଣ କରିବା ପାଇଁ ପ୍ରସ୍ତାବ ଦେଇଛନ୍ତି । ଫଳରେ ଏହି ଦୁଇସ୍ଥାନ ମଧ୍ୟରେ ଦୂରତ୍ୱ ମାତ୍ର ୧୫ କିଲୋମିଟର ହୋଇଯିବ ବୋଲି ମନ୍ତ୍ରୀ ପ୍ରକାଶ କରିଛନ୍ତି । ଏସିଆର ବୃହତ୍ତର ବନ୍ଦର ପ୍ରତିଷ୍ଠା ହେଉଥିବାରୁ ବଡ଼ କମ୍ପାନୀମାନେ ଧାମରାର ଆଖପାଖରେ ଶିଳ୍ପ ତଥା କାରଖାନା ପ୍ରତିଷ୍ଠା କରିବା ପାଇଁ ଆଗ୍ରହ ପ୍ରକାଶ କରୁଥିବା ବିଷୟରେ ମଧ୍ୟ ମନ୍ତ୍ରୀ ଶ୍ରୀ ମଲ୍ଲିକ ସୂଚନା ଦେଇଥିଲେ ।

## ଓଡ଼ିଶା ସୈନିକ ସହାୟତା ପାଣ୍ଠି ଗଠନ ପାଇଁ ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶ

ରାଜ୍ୟରେ ଏକ "ସୈନିକ ସହାୟତା ପାଣ୍ଠି" ଗଠନ ନିମନ୍ତେ ମୁଖ୍ୟମନ୍ତ୍ରୀ ଡ଼ଃ ଗିରିଧର ଗମାଙ୍ଗ ରାଜ୍ୟ ଅର୍ଥ ବିଭାଗକୁ ନିର୍ଦ୍ଦେଶ ଦେଇଛନ୍ତି । ଏହି ପାଣ୍ଠିର ନାମ "ଓଡ଼ିଶା ସୈନିକ ସହାୟତା ପାଣ୍ଠି" ରଖାଯିବ ବୋଲି ମୁଖ୍ୟମନ୍ତ୍ରୀ ପ୍ରକାଶ କରିଛନ୍ତି । ମୁଖ୍ୟମନ୍ତ୍ରୀ କହିଲେ, ଦେଶ ପାଇଁ ଯୁଦ୍ଧ କରି ପ୍ରାଣବଳୀ ଦେଇଥିବା ବୀର ଜବାନମାନଙ୍କ ପରିବାରବର୍ଗଙ୍କୁ ଉକ୍ତ ପାଣ୍ଠିରୁ ସହାୟତା ଦିଆଯିବ । ଏହି ପାଣ୍ଠି ଗଠନ ଯୋଗୁଁ ଅଧିକରୁ ଅଧିକ ଯୁବକ ଦେଶମାତୃକାର ସେବାଲାଗି ସେନାବାହିନୀରେ ଯୋଗ ଦେବାର ସମ୍ଭାବନା ସୃଷ୍ଟି ହୋଇ ପାରିଛି । ନିୟନ୍ତ୍ରଣ ରେଖା ଅତିକ୍ରମ କରିଥିବା ପାକ୍ ଅନୁପ୍ରବେଶକାରୀଙ୍କ ସହିତ ପ୍ରତିକୂଳ ଜଳବାୟୁ ଓ ସ୍ଥାନକୁ ଭ୍ରୂକ୍ଷେପ ନକରି ସହସ୍ରାଧିକ ଭାରତୀୟ ଜବାନ୍ ଯେପରିଭାବେ ମାତୃଭୂମି ପାଇଁ ଲଢ଼ି ଚାଲିଛନ୍ତି, ସେଥି ନିମନ୍ତେ ସେମାନେ ଦେଶବାସୀଙ୍କର ଧନ୍ୟବାଦର ପାତ୍ର । ମାତୃଭୂମିର ସମ୍ମାନ ରକ୍ଷା ପାଇଁ ଏହି ଅଘୋଷିତ ଯୁଦ୍ଧରେ ପ୍ରାଣବଳୀ ଦେଇଥିବା ବୀର ଓଡ଼ିଆ ଯୁବକମାନେ ଆମ ରାଜ୍ୟ ପାଇଁ ଗୌରବ । ଭବିଷ୍ୟତରେ ମଧ୍ୟ ଅନେକ ବୀର ଜୱାନ ଦେଶ ପାଇଁ ପ୍ରାଣବଳୀ ଦେଇପାରନ୍ତି । ଅସୀମ ସ୍ୱାର୍ଥ ତ୍ୟାଗ କରିଥିବା ଆମ ରାଜ୍ୟର ଏହି ବୀର ଜବାନ୍‌ମାନଙ୍କ ବୃଦ୍ଧ ପିତାମାତା, ବିଧବା ପତ୍ନୀ ଏବଂ ପୁତ୍ରକନ୍ୟାଙ୍କ ପାଇଁ ଆମର ନୈତିକ ଦାୟିତ୍ୱ ରହିଛି ବୋଲି ମୁଖ୍ୟମନ୍ତ୍ରୀ କହିଥିଲେ । ଏହି ପାଣ୍ଠି ଏକ ସହାୟତା ପାଣ୍ଠିଭାବେ ପରିଗଣିତ ହେବ । ଏଥିପାଇଁ ଦାନ ଦେଉଥିବା ବ୍ୟକ୍ତି ୧୯୬୧ ଆୟକର ନିୟମ ଧାରା ୮୦ (ଜି) ଅନୁସାରେ ଆୟକର ରିହାତି ପାଇ ପାରିବେ ।

ରାଜ୍ୟ ଅର୍ଥ ବିଭାଗ ଏହି ପାଣ୍ଠି ଗଠନ ନିମନ୍ତେ ପ୍ରଥମେ ୫ ଲକ୍ଷ ଟଙ୍କା ଯୋଗାଇ ଦେବେ ଏବଂ ଏହାପରେ ରାଜ୍ୟବାସୀଙ୍କଠାରୁ ଦାନ ସଂଗ୍ରହ କରାଯିବ ବୋଲି ମୁଖ୍ୟମନ୍ତ୍ରୀ ପ୍ରକାଶ କରିଥିଲେ । ପ୍ରତ୍ୟେକ ସରକାରୀ କର୍ମଚାରୀ ନିଜ ଦରମାରୁ ଅନ୍ୟୂନ ଦିନକର ଦରମା ଏହି ପାଣ୍ଠିକୁ ଦାନ କରିବାକୁ ବିଭାଗୀୟ କର୍ମକର୍ତ୍ତାଙ୍କୁ ପରାମର୍ଶ ଦେଇଥିଲେ ।

## ରାଜ୍ୟର ସମସ୍ତ ଜଳକ୍ଳିଷ୍ଟ ଅଞ୍ଚଳରେ ବିଶୁଦ୍ଧ ପାନୀୟ ଜଳ ଯୋଗାଇ ଦିଆଯିବ : ପଞ୍ଚାୟତିରାଜ ମନ୍ତ୍ରୀ ଶ୍ରୀ ଲେଙ୍କା

ରାଜ୍ୟର ପ୍ରତ୍ୟେକ ଲୋକଙ୍କୁ ବିଶୁଦ୍ଧ ପାନୀୟ ଜଳ ଯୋଗାଇ ଦେବା ନିମନ୍ତେ ରାଜ୍ୟ ସରକାର ପ୍ରତିଶ୍ରୁତିବଦ୍ଧ ବୋଲି ଗ୍ରାମ୍ୟଉନ୍ନୟନ ଓ ପଞ୍ଚାୟତିରାଜ ମନ୍ତ୍ରୀ ଶ୍ରୀ କାହ୍ନୁଚରଣ ଲେଙ୍କା ଏକ ପ୍ରେସ୍ ବିଜ୍ଞପ୍ତିରେ କହିଛନ୍ତି । ରାଜ୍ୟର ଉପକୂଳବର୍ତ୍ତୀ ଲୁଣିପାଣି ଅଞ୍ଚଳମାନଙ୍କରେ କୂଅ, ପୋଖରୀ ଓ ନଳକୂପରୁ ଲୌହ ମିଶ୍ରିତ ଲୁଣିପାଣି ବାହାରୁଥିବାରୁ ବିଶୁଦ୍ଧ ପିଇବା ପାଣି ପାଇବା ପାଇଁ ଲୋକମାନେ ବହୁ କଠିନ ସମସ୍ୟାର ସମ୍ମୁଖୀନ ହେଉଛନ୍ତି । ସେ ସବୁ ଅଞ୍ଚଳଗୁଡ଼ିକ ପ୍ରତି ବିଶେଷ ଗୁରୁତ୍ୱ ଦିଆଯାଇ ପାଇପ୍ ଯୋଗେ ବିଶୁଦ୍ଧ ପାନୀୟ ଜଳ ଯୋଗାଇ ଦେବା ପାଇଁ ଏକ ବ୍ୟାପକ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଉଛି ବୋଲି ଶ୍ରୀ ଲେଙ୍କା କହିଛନ୍ତି ।

ଖୋର୍ଦ୍ଧା ଜିଲ୍ଲାର ଟାଙ୍ଗୀ ବ୍ଲକ୍‌ର କୁଣ୍ଡେଇପୁର ଓ ତା'ର ଆଖପାଖ ଗ୍ରାମ, ପୁରୀ ଜିଲ୍ଲାର କଣାସ ବ୍ଲକ୍‌ର ଦେପୁର ଓ ଅଡ଼ଙ୍ଗ ଗ୍ରାମପଞ୍ଚାୟତର କେତେକ ଗ୍ରାମ ଆଜି ପର୍ଯ୍ୟନ୍ତ ଏହିଭଳି ପିଇବା ପାଣିର ଅସୁବିଧା ଭୋଗ କରି ଆସୁଛନ୍ତି । ଏଣୁ ଏହି ଅଞ୍ଚଳର ୧୫ଟି ଗ୍ରାମ ଯଥା : କଣ୍ଡୁଲବାଲି, କରଞ୍ଜପୁର ଶାସନ, ଉତ୍ତରମୁଖୀ, ଅରଣ୍ୟମୁଖୀ, ବିଧାରପୁର, ପାଟଣା, ବାଲିପାଟପୁର, ଅଡ଼ଙ୍ଗ, ବଢ଼ଙ୍ଗ, ବିଜୟପୁର, କଣ୍ଟପୁର,

ଗଡ଼ଖଗଡ଼ା, ମାଙ୍ଗାଁ, ବଡ଼ପଦର ଓ ବାଡାବର ଗ୍ରାମଗୁଡ଼ିକୁ ନେଇ ପ୍ରାୟ ୩୫ ହଜାର ଲୋକଙ୍କର ପାନୀୟ ଜଳ ଭଳି ମୌଳିକ ଆବଶ୍ୟକତା ପୂରଣ ପାଇଁ ୩ କୋଟି ୭୭ ଲକ୍ଷ ୯୧ ହଜାର ଟଙ୍କା ବ୍ୟୟରେ ଏକ ପାଇପ୍ ଜଳ ଯୋଗାଣ ପ୍ରକଳ୍ପ କାର୍ଯ୍ୟକାରୀ କରିବାକୁ ପଞ୍ଚାୟତିରାଜ ଓ ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ଶ୍ରୀ କାହ୍ନୁଚରଣ ଲେଙ୍କା ପଦକ୍ଷେପ ଗ୍ରହଣ କରିଛନ୍ତି । ଚିଲିକାର ଉପକୂଳବର୍ତ୍ତୀ ଏହି ଅଞ୍ଚଳଗୁଡ଼ିକରେ ବିଶୁଦ୍ଧ ପାନୀୟ ଜଳଯୋଗାଇ ଦେବା ପାଇଁ ଅନ୍ୟ କୌଣସି ବ୍ୟବସ୍ଥା ସମ୍ଭବପର ହୋଇ ପାରୁ ନଥିବାରୁ ବର୍ତ୍ତମାନ ଏହି ପ୍ରକଳ୍ପଟି କାର୍ଯ୍ୟକାରୀ ହେଲେ 'ମକର' ନଦୀରୁ ପାଇପ୍ ଯୋଗେ ପାନୀୟ ଜଳ ଲୋକଙ୍କୁ ଯୋଗାଇ ଦେବା ସମ୍ଭବପର ହେବ ।

ଦୁଇବର୍ଷ ମଧ୍ୟରେ ଏହି ପ୍ରକଳ୍ପ ନିର୍ମାଣ ଶେଷ କରାଯିବାର ଲକ୍ଷ୍ୟଧାର୍ଯ୍ୟ ରହିଛି । କଣାସ ବ୍ଲକ୍‌ର ଦେଉଳ ଗ୍ରାମପଞ୍ଚାୟତ ଓ ଅଡ଼ଙ୍ଗ ଗ୍ରାମ ପଞ୍ଚାୟତର ବାଟ ଦେଇ ଭୁବନପୁର ପର୍ଯ୍ୟନ୍ତ ପାଇପ୍ ବିଛା ଯିବ । ପ୍ରତି ୨୫୦ ଜଣଙ୍କ ନିମନ୍ତେ ଗୋଟିଏ ଲେଖା ପାଣି ଟ୍ୟାପ ରଖାଯିବ ଯେଉଁଥିରେ କି ସେମାନେ ପିଇବା ପାଣି ସଂଗ୍ରହ କରି ପାରିବେ । ୧୪୦ଟି ଏହିପରି ପାଣିଟ୍ୟାପ ମାଧ୍ୟମରେ ଦୈନିକ ମୁଣ୍ଡ ପିଛା ୪୦ ଲିଟର ଲେଖାଏଁ ପିଇବାପାଣି ଯୋଗାଇ ଦିଆଯିବ ।

ରାଜ୍ୟର ପ୍ରତ୍ୟେକ ଜଳକ୍ଲିଷ୍ଟ ଅଞ୍ଚଳମାନଙ୍କରେ ବିଶୁଦ୍ଧ ପାନୀୟ ଜଳ ଯୋଗାଇ ଦେବା ପାଇଁ ରାଜ୍ୟ ସରକାର ଯୁଦ୍ଧକାଳୀନ ଭିତ୍ତିରେ କାର୍ଯ୍ୟକ୍ରମ ଗ୍ରହଣ କରୁଛନ୍ତି ବୋଲି ମନ୍ତ୍ରୀ ଶ୍ରୀ ଲେଙ୍କା ଦର୍ଶାଇଛନ୍ତି । ମରୁଡ଼ି ଅଞ୍ଚଳର ଜଳକ୍ଲିଷ୍ଟ ଅଞ୍ଚଳଗୁଡ଼ିକରେ ପିଇବା ପାଣି ଯୋଗାଇ ଦେବା ପାଇଁ ସରକାର କାର୍ଯ୍ୟ ଖସଡ଼ାକୁ କାର୍ଯ୍ୟକାରୀ କରୁଛନ୍ତି । ଏତଦ୍‌ବ୍ୟତୀତ ଜଳକ୍ଲିଷ୍ଟ ଜନସାଧାରଣଙ୍କ ପାଇଁ ବିଶୁଦ୍ଧ ପାନୀୟ ଜଳ ଯୋଗାଇ ଦେବା ନିମନ୍ତେ ସରକାର ବିଶ୍ୱବ୍ୟାଙ୍କ ସହିତ ଆଲୋଚନା କରି ଏକ ସ୍ୱତନ୍ତ୍ର ଯୋଜନା ପ୍ରସ୍ତୁତ କରୁଛନ୍ତି । ଏହି ଯୋଜନା ଅନୁଯାୟୀ ପ୍ରକଳ୍ପ ମୂଲ୍ୟର ଶତକଡ଼ା ୧୦ ଭାଗ ପଞ୍ଚାୟତ ବହନ କରିବ । ଅବଶିଷ୍ଟର ୫୦ ଭାଗ ବିଶ୍ୱବ୍ୟାଙ୍କ ଏବଂ ୫୦ ଭାଗ ରାଜ୍ୟ ସରକାର ବହନ କରିବେ । ପଞ୍ଚାୟତକୁ କ୍ଷମତା ହସ୍ତାନ୍ତର ଦ୍ୱାରା ପିଇବା ପାଣି ପ୍ରକଳ୍ପର ପରିଚାଳନା ଏବଂ ରକ୍ଷଣାବେକ୍ଷଣ ଭାର ପଞ୍ଚାୟତ ବହନ କରିବ । ପଞ୍ଚାୟତଗୁଡ଼ିକୁ ବିଶୁଦ୍ଧ ପିଇବା ପାଣି ଯୋଗାଣ ବ୍ୟବସ୍ଥା ଦାୟିତ୍ୱ ଦେବା ସରକାରଙ୍କ ଏକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି । ଏଣିକି ନଳକୂପଗୁଡ଼ିକର ରକ୍ଷଣାବେକ୍ଷଣ ଭାର ପଞ୍ଚାୟତ ବୁଝିବ । ପ୍ରତ୍ୟେକ ୨୦ଟି ନଳକୂପ ପାଇଁ ଜଣେ ଗ୍ରାମ୍ୟ ମିସ୍ତ୍ରୀ ନିଯୁକ୍ତି ପାଇବେ । ସେମାନଙ୍କୁ ମାସିକ ଭତ୍ତା ଦେଇ ସଙ୍ଗେ ସଙ୍ଗେ ମରାମତି ପାଇଁ ସରଞ୍ଜାମ ଓ ଯନ୍ତ୍ରପାତି ଯୋଗାଇ ଦିଆଯିବ । ମାନବ ସମ୍ବଳ ବିକାଶ ସଂସ୍ଥା ଦ୍ୱାରା ସାରା ରାଜ୍ୟରେ ପ୍ରଶିକ୍ଷଣ କେନ୍ଦ୍ର ଖୋଲି ଗ୍ରାମର ଯୁବକମାନଙ୍କୁ ମରାମତି କାର୍ଯ୍ୟପାଇଁ ତାଲିମ ଦେଇ ବେକାର ଯୁବକମାନଙ୍କୁ ନିଯୁକ୍ତି ଦିଆଯିବା ପାଇଁ ଗ୍ରାମ୍ୟ ଉନ୍ନୟନ ବିଭାଗ ଏକ ବ୍ୟାପକ କାର୍ଯ୍ୟକ୍ରମ ପ୍ରସ୍ତୁତ କରୁଛନ୍ତି ବୋଲି ମନ୍ତ୍ରୀ ଶ୍ରୀଲେଙ୍କା ତାଙ୍କ ପ୍ରେସ୍ ଇସ୍ତାହାରରେ କହିଛନ୍ତି ।

## ପାଠକମାନଙ୍କର ରୁଚିକୁ ଦୃଷ୍ଟିରେ ରଖି ସମ୍ବାଦ ପରିବେଷଣ କରାଯାଉ : ସୂଚନା ମନ୍ତ୍ରୀ

ଗତ ଜୁଲାଇ ୧ ତାରିଖରେ ସୂଚନା ଓ ଲୋକ ସମ୍ପର୍କ ବିଭାଗ ସମ୍ମିଳନୀ କକ୍ଷରେ ଆୟୋଜିତ ଦୈନିକ ସମ୍ବାଦପତ୍ର 'ସମ୍ବାଦ କେଶରୀ'ର ୧୧ତମ ବାର୍ଷିକ ଉତ୍ସବରେ ମୁଖ୍ୟ ଅତିଥି ଭାବେ ଯୋଗ ଦେଇ ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଭୂପିନ୍ଦର ସିଂହ କହିଲେ ଯେ ପାଠକମାନଙ୍କର ରୁଚିକୁ ଆଖି ଆଗରେ ରଖି ସମ୍ବାଦ ପରିବେଷଣ କରାଗଲେ, ଉଭୟ ସମ୍ବାଦପତ୍ର ଓ ପାଠକ ଉପକୃତ ହୋଇପାରିବେ । ସମ୍ବାଦପତ୍ରଗୁଡ଼ିକୁ ସେମାନଙ୍କର ବାର୍ଷିକ ଉତ୍ସବ ପାଳନ କରିବା ଠିକ୍ ଏକ ୱାର୍କସପ୍‌ର ଆୟୋଜନ କରି ବିଭିନ୍ନ ଖବର କାଗଜର ସମ୍ପାଦକ, ବୁଦ୍ଧିଜୀବୀ ତଥା ପାଠକମାନଙ୍କୁ ନେଇ ସମ୍ବାଦଗୁଡ଼ିକର ଗୁଣାତ୍ମକ ମାନ, ପାଠକମାନଙ୍କର ରୁଚି ଅନୁଯାୟୀ ସମ୍ବାଦ ପରିବେଷଣ ବିଷୟରେ ଚର୍ଚ୍ଚା କରିବା ଆବଶ୍ୟକ । ରାଜ୍ୟରେ ସାକ୍ଷରତା ହାର ଯେତେଦିନ ପର୍ଯ୍ୟନ୍ତ ବୃଦ୍ଧି ପାଉନାହିଁ, ସେତେଦିନ ପର୍ଯ୍ୟନ୍ତ ସମ୍ବାଦପତ୍ରର ଚାହିଦା ପୂରଣ ହୋଇପାରିବ ନାହିଁ । ଦେଶର ସାକ୍ଷରତା ହାର ବୃଦ୍ଧି ପାଇଁ ସମ୍ବାଦପତ୍ରମାନେ ବାତାବରଣ ସୃଷ୍ଟି କରିବା ଉଚିତ । ତଥ୍ୟ ଓ ସୂଚନା ନଥାଇ କୌଣସି ଖବର କାଗଜ, କିମ୍ବା ପତ୍ରପତ୍ରିକା ଛାପିଲେ, ତାକୁ କେହି ଆଦର କରିବେ ନାହିଁ । ତଥ୍ୟ ଓ ଅନୁସନ୍ଧାନମୂଳକ ସମ୍ବାଦ ପରିବେଷଣ ପାଇଁ ମନ୍ତ୍ରୀ ଶ୍ରୀ ସିଂହ ସାମ୍ବାଦିକମାନଙ୍କୁ ପରାମର୍ଶ ଦେଇଥିଲେ ।

ସମ୍ମାନିତ ଅତିଥି ବାଣିଜ୍ୟ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ନବୀନଚନ୍ଦ୍ର ନାରାୟଣ ଦାସ କହିଲେ ଯେ ପ୍ରତ୍ୟେକ ଜିନିଷର ଗୁଣାତ୍ମକ ମାନ ବୃଦ୍ଧି ପାଇଲେ ତାହା ସବୁ କ୍ଷେତ୍ରରେ ଆଦୃତ ହୋଇଥାଏ । ସମ୍ବାଦପତ୍ରର ଗୁଣାତ୍ମକ ମାନ ବୃଦ୍ଧି ପାଇଁ ସାମ୍ବାଦିକମାନେ ଚେଷ୍ଟା କରି ଲୁକ୍କାୟିତ ସତ୍ୟଗୁଡ଼ିକୁ ଲୋକ ଲୋଚନକୁ ଆଣିବା ଆବଶ୍ୟକ ।

ଆଦିବାସୀ, ହରିଜନ ଅର୍ଥ ଲଗାଣ ସଂସ୍ଥାର ଅଧ୍ୟକ୍ଷ ଶ୍ରୀ ପ୍ରଭାତ ଶେଠୀ କହିଲେ ଯେ ଦେଶ ଗଠନ ଓ ସମାଜରେ ଶୃଙ୍ଖଳା ଆଣିବା ଦିଗରେ ସମ୍ବାଦପତ୍ରର ଭୂମିକା ଅତୁଳନୀୟ । ଦେଶର ବିକାଶ ପାଇଁ ସମ୍ବାଦପତ୍ର ଓ ସାମ୍ବାଦିକମାନେ ତତ୍ପର ହେବାକୁ ସେ ପରାମର୍ଶ ଦେଇଥିଲେ ।

ସୂଚନା ଓ ଲୋକ ସମ୍ପର୍କ ବିଭାଗ ଶାସନ ସଚିବ ଶ୍ରୀ ଜୟନ୍ତ [illegible] ଦେବ କହିଲେ ଯେ ଆମ ରାଜ୍ୟରେ ଖୁବ୍‌ଶୀଘ୍ର 'ସୂଚନା ନୀତି' ପ୍ରଣୟନ ହେବାକୁ ଯାଉଛି । ଏହା ଫଳରେ କ୍ଷୁଦ୍ର, ମଧ୍ୟମ ଓ ବୃହତ୍ ସମ୍ବାଦପତ୍ରମାନଙ୍କୁ ସୁବିଧା ଯୋଗାଇ ଦିଆଯିବ ।

ଏହି ଅବସରରେ ମୁଖ୍ୟ ଅତିଥି, ସମ୍ମାନିତ ଅତିଥିମାନଙ୍କୁ 'ସମ୍ବାଦ କେଶରୀ' ତରଫରୁ ସ୍ୱାଧୀନତାପ୍ରାପ୍ତିର ୫୦ବର୍ଷର ସ୍ମାରକୀ ପ୍ରଦାନ କରାଯାଇଥିଲା । ବିଭିନ୍ନ କ୍ଷେତ୍ରରେ କୃତିତ୍ୱ ଅର୍ଜନ କରିଥିବା ବ୍ୟକ୍ତିମାନଙ୍କୁ ମନ୍ତ୍ରୀ ଶ୍ରୀ ସିଂହ ସମ୍ମାନିତ କରିଥିଲେ ।

'ସମ୍ବାଦ କେଶରୀ'ର ମୁଖ୍ୟ ସମ୍ପାଦକ ଶ୍ରୀ ସଞ୍ଜୟ କୁମାର ପ୍ରଧାନ ବିବରଣୀ ପାଠ କରିଥିଲେ ଏବଂ ସାମ୍ବାଦିକ ଶ୍ରୀ ବିଜୟଶ୍ରୀ ରଥ ପ୍ରାରମ୍ଭିକ ସୂଚନା ଦେଇଥିଲେ । ଶେଷରେ ଶ୍ରୀ ରମେଶ ଚନ୍ଦ୍ର ଧନ୍ୟବାଦ ଅର୍ପଣ କରିଥିଲେ ।



OGP—MP—PTS (I. & P. R.) 1· ·000—7-7-1999



ବିଜୟୀ ମୁଖ୍ୟମନ୍ତ୍ରୀ ଡଃ ଗିରିଧର ଗମାଙ୍ଗଙ୍କୁ ବିଧାନସଭାର ସଦସ୍ୟ ଭାବେ
ବାଚସ୍ପତି ଶ୍ରୀ ଚିନ୍ତାମଣି ଦ୍ୟାନ ସାମନ୍ତରାୟ ପଦ ଓ ଗୋପନୀୟତାର ଶପଥ ପାଠ କରାଉଛନ୍ତି । ୨୮/୬



ସଚିବାଳୟଠାରେ ମୁଖ୍ୟମନ୍ତ୍ରୀ ଡଃ ଗିରିଧର ଗମାଙ୍ଗ ଭାରତୀୟ ମହାକାଶ ଗବେଷଣା ଅନୁଷ୍ଠାନ
ସହାୟତାରେ ଓଡ଼ିଶାର ଉନ୍ନତି ସମ୍ପର୍କରେ ମହାକାଶ ବିଭାଗ ସଚିବ ଡଃ କସ୍ତୁରି ରଙ୍ଗନ
ଓ ପ୍ରତିନିଧିମାନଙ୍କ ସହ ଆଲୋଚନା କରୁଛନ୍ତି । ୨୮/୬



ବିଦାୟୀ ମୁଖ୍ୟମନ୍ତ୍ରୀ ଡକ୍ଟର ଗିରିଧର ଗମାଙ୍ଗଙ୍କୁ ବିଜୁ ପଟ୍ଟନାୟକ ବିମାନ ବନ୍ଦରଠାରେ ଉପସ୍ଥିତ ଜନ ସମ୍ବର୍ଦ୍ଧନା । ୨୪/୬




ପୁରୀ ପାନ୍ଥନିବାସଠାରେ ଜାତୀୟ ରାଜ୍ୟ ସମବାୟ ବ୍ୟାଙ୍କ ସଂଘର
ପୁରସ୍କାର ବିତରଣ ଉତ୍ସବରେ ମୁଖ୍ୟମନ୍ତ୍ରୀ ଡଃ ଗିରିଧର ଗମାଙ୍ଗ । ୨୮/୬

